





# ପରଂବ୍ରହ୍ମଙ୍କ ଦାରବୀ ଲୀଳା

**ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର**

ବେଦରେ ସର୍ବବ୍ୟାପୀ, ସର୍ବଶକ୍ତିମାନ, ସର୍ବଜ୍ଞ, ସର୍ବେନ୍ଦ୍ରିୟ ଗୁଣାଭାସ ତଥା ପରିବର୍ତ୍ତନଶୀଳ ବ୍ରହ୍ମାଣ୍ଡର ଅପରିବର୍ତ୍ତନଶୀଳ ତତ୍ତ୍ୱଙ୍କୁ ପରଂବ୍ରହ୍ମ କୁହାଯାଇଛି । ପ୍ରାଚୀନ ଯୁଗରୁ ଭାରତୀୟ ପ୍ରଚେତାବୃନ୍ଦ ଅନେକ ରୂପାତ୍ମକ ତଥା କ୍ଷଣକ୍ଷଣରେ ବିଲକ୍ଷଣ ରୂପ ଧାରଣ କରୁଥିବା ବ୍ରହ୍ମାଣ୍ଡର ଅନ୍ତଃସ୍ଥଳରେ ବିଦ୍ୟମାନ ଥିବା ଅପରିବର୍ତ୍ତନଶୀଳ ତତ୍ତ୍ୱର ସତ୍ତାକୁ ବ୍ରହ୍ମାଣ୍ଡର ନିୟାମକ ବା ପରଂବ୍ରହ୍ମ ନାମରେ ନାମିତ କରିଯାଇଛନ୍ତି । ଭାରତୀୟ ଦର୍ଶନରେ ବ୍ରହ୍ମାଣ୍ଡ ଓ ପିଣ୍ଡାଣ୍ଡର ଐକ୍ୟ ସର୍ବତୋଭାବେ ସ୍ୱୀକୃତ ତଥା ବ୍ରହ୍ମ ଓ ଆତ୍ମାର ଏକତା ପ୍ରତିପାଦିତ । ସେହି ବ୍ରହ୍ମସତ୍ତାର ଉପଲବ୍ଧି ନିମିତ୍ତ ପ୍ରାଚୀନ ଯୁଗରୁ ତପୋନିଷ୍ଠ ମହର୍ଷିବୃନ୍ଦ ଆପଣା ଆପଣାର କୁଶାଗ୍ର ବୁଦ୍ଧିରେ ବହୁ ପ୍ରଯତ୍ନ କରିଆସିଛନ୍ତି ଏବଂ ଏହାକୁ ମାନବ ଜୀବନର ପରମ ଲକ୍ଷ୍ୟ ଭାବରେ ଅଭିହିତ କରିଯାଇଛନ୍ତି । ମହନୀୟତା ହେଉଛି, ବ୍ରହ୍ମୋପଲବ୍ଧିକୁ ସରଳ, ସହଜ ଓ ସୁଗମ କରିବା ନିମିତ୍ତ ବେଦରେ ପୁରୁଷୋତ୍ତମ ତତ୍ତ୍ୱର ଅବତାରଣା କରାଯାଇଛି । ସେହି ବେଦୋକ୍ତ ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀଭୂ ହେଉଛନ୍ତି ପୁରୁଷୋତ୍ତମ ଜଗନ୍ନାଥ, ଅଗଣିତ ମୁମୁକ୍ଷୁଜନଙ୍କୁ ବ୍ରହ୍ମବୋଧରେ ଅବଗାହନ କରାଇବାର ମହାଭିପ୍ରାୟରେ ପରଂବ୍ରହ୍ମ ସ୍ୱଇଚ୍ଛାରେ ଦିବ୍ୟ ନୀଳାଚଳରେ ଦାରବୀ ଲୀଳା ସଂରଚନା କରିଛନ୍ତି । ଏହି ଦିବ୍ୟ ଦୃଷ୍ଟିରେ କୁହାଯାଇଛି–

ଯୋ ଦାରୁବ୍ରହ୍ମମୂର୍ତ୍ତିଃ ପ୍ରଣବତନୁଧରଃ ସର୍ବବେଦାନ୍ତସାରଃ,
ଭକ୍ତାନାଂ କଳ୍ପବୃକ୍ଷୋ ଭବ ଜଳତରଣିଃ ସର୍ବତତ୍ତ୍ୱାନୁତତ୍ତ୍ୱମ୍ ।

ପରଂବ୍ରହ୍ମ ହେଉଛନ୍ତି ଅବିନାଶୀ, ଅଥଚ ବ୍ରହ୍ମଧାମ ନୀଳାଚଳରେ ସେ ନାଶଶୀଳ ଦାରୁ ରୂପରେ ବିରାଜମାନ । ତାଙ୍କ ସ୍ୱରୂପ ହେଉଛି ଦାରୁ ଓ ବ୍ରହ୍ମ ଉଭୟଙ୍କର ଏକ ଅପୂର୍ବ ସମନ୍ୱୟ । ସେ ସ୍ଥୂଳ ଓ ସୂକ୍ଷ୍ମ ଅର୍ଥାତ୍ ଅକ୍ଷର ଓ କ୍ଷର ପୁରୁଷଠାରୁ ଊର୍ଦ୍ଧ୍ୱରେ ଏକ ଉତ୍ତମ ପୁରୁଷ ବା ପୁରୁଷୋତ୍ତମ । ଦାରୁବିଗ୍ରହ ମଧ୍ୟରେ ଯେଉଁ ବ୍ରହ୍ମ ସଂସ୍ଥାପିତ, ସେ ହେଉଛନ୍ତି 'ଅକ୍ଷର ପୁରୁଷ' । ଦାରୁବିଗ୍ରହଙ୍କର ଯେଉଁ ରୂପ ଆମେ ଦର୍ଶନ କରିଥାଉ, ତାହା ହେଉଛି 'କ୍ଷରପୁରୁଷ' । ଯଥାର୍ଥ ଦାରୁବିଗ୍ରହ ହେଉଛନ୍ତି ଅଗଣିତ ମୁମୁକ୍ଷୁ ଜନଙ୍କ ନିମିତ୍ତ ସୂକ୍ଷ୍ମତମ ଅଦୃଶ୍ୟ ବ୍ରହ୍ମର ଏକ ସ୍ଥୂଳ ତଥା ଦୃଶ୍ୟମାନ ପରିପ୍ରକାଶ । ବେଦୋକ୍ତ ପୁରୁଷୋତ୍ତମ ତତ୍ତ୍ୱକୁ ଆଧାର କରି ପରଂବ୍ରହ୍ମ ଏହି ଦାରବୀ ଲୀଳା ସଂରଚନା କରିଛନ୍ତି । ସେ ହିଁ ଭାରତୀୟ ଧର୍ମ ଓ ଦର୍ଶନର ପ୍ରାଣ ସ୍ୱରୂପ ସହସ୍ରଶୀର୍ଷା ପୁରୁଷ । ବେଦବର୍ଣ୍ଣିତ ପୁରୁଷସୂକ୍ତ ମନ୍ତ୍ରରେ ତାଙ୍କ ମହତ୍ୱ ପ୍ରତିପାଦିତ । ବେଦ ରଚନାର ବହୁପୂର୍ବରୁ ସେ ଦାରବୀ ଲୀଳା ସଂରଚନା କରିଛନ୍ତି । ବେଦରେ ତାଙ୍କ ଦାରବୀ ଲୀଳାର ସୂଚନା ସ୍ପଷ୍ଟ ଭାବରେ ବିଦ୍ୟମାନ ।

ଅଦୌ ଯଦ୍ଦାରୁ ପ୍ଲବତେ ସିନ୍ଧୋର୍ମଧ୍ୟେ ଅପୌରୁଷମ୍,
ତଦା ଲଭସ୍ୱ ଦୁର୍ଦ୍ଦୁନୋ ତେନ ଯାହି ପରଂସ୍ଥଳମ୍ ।

ଏହି ମନ୍ତ୍ରଟିକୁ ଭିନ୍ନ ଭିନ୍ନ ବେଦଭାଷ୍ୟକାର ଆପଣା ଅପଣା ଦୃଷ୍ଟିରେ ବାଖ୍ୟା କରିଥିଲେ ହେଁ ପ୍ରକୃତରେ ମନ୍ତ୍ରଟିରେ ଦାରବୀ ଲୀଳାର ମହନୀୟତା ପ୍ରତିପାଦିତ । ସାଧାରଣ ଦୃଷ୍ଟିରେ ମନ୍ତ୍ରଟିର ଉପଲବ୍ଧି ହୁଏ, 'ଆଦୌ ଅର୍ଥାତ୍ ବର୍ତ୍ତମାନ ସିନ୍ଧୁ ମଧ୍ୟରେ ଯେଉଁ ଅପୌରୁଷେୟ ଦାରୁ ଭାସୁଅଛି, ତହିଁର ଉପାସନା ଦ୍ୱାରା ପରମଲୋକ ପ୍ରାପ୍ତି ହୋଇଥାଏ ।'' ଏହି ବୈଦିକ ମନ୍ତ୍ରଟିରେ ଅଦୌ ବା ସଂପ୍ରତି ଉଲ୍ଲେଖ ଥିବାରୁ ହୃଦବୋଧ ହୁଏ ଏହି ମନ୍ତ୍ର ରଚନା ବେଳକୁ ଦାରବୀ ଲୀଳା ସଂରଚନା ହୋଇସାରିଥିଲା । ମନ୍ତ୍ରଦ୍ରଷ୍ଟା ଆର୍ଯ୍ୟଋଷିଗଣ ସେହି ଦାରୁଙ୍କୁ ଅପୌରୁଷ ଅର୍ଥାତ୍ କୌଣସି ବ୍ୟକ୍ତିବିଶେଷଙ୍କ ଦ୍ୱାରା ସୃଷ୍ଟ ନୁହନ୍ତି ବୋଲି ବ୍ୟକ୍ତ କରିଛନ୍ତି । କେବଳ ସେତିକି ନୁହେଁ, ''ତେନଗଚ୍ଛ ପରସ୍ତରମ୍'' ଉଲ୍ଲେଖ ଥିବାରୁ ହୃଦ୍‌ବୋଧ ହୁଏ ଏହି ଦାରୁ ଉପାସନାରେ ପରମଲୋକ ପ୍ରାପ୍ତି ହୋଇଥାଏ । ସୂଚନାଯୋଗ୍ୟ ଯେ, ବୈଦିକ ଆର୍ଯ୍ୟଗୋଷ୍ଠୀ ସଗୁଣ




ଉପାସନାର ପକ୍ଷପାତି ନଥିଲେ ହେଁ ଏହି ଦାରୁମୂର୍ତ୍ତିଙ୍କ ମହତ୍ୱ ପ୍ରତିପାଦନ କରିବାରେ ଶତମୁଖ ହୋଇଛନ୍ତି । ବୈଦିକ ପ୍ରଚେତାଙ୍କର ଚେତନା ରହିଥିଲା ଯେ,'' ଦାରୁ ଜଡ ହେଲେ ହେଁ ସେଥିରେ ଚେତନ ସତ୍ତା ବିଦ୍ୟମାନ ।'' ତେଣୁ ସେମାନେ ବୈଦିକ ଯଜ୍ଞାଦି କର୍ମରେ ଶିଳା ବା ଧାତୁ ନିର୍ମିତ ଉପକରଣ ବ୍ୟବହାର ନକରି ଯୂପ, ଶ୍ରୁବ, ଶ୍ରୁଚ, ପ୍ରଣୀତା, ପ୍ରୋକ୍ଷଣୀ ପ୍ରଭୃତି ଯାବତୀୟ ଯଜ୍ଞୋପକରଣ ଦାରୁରେ ନିର୍ମାଣ କରୁଥିଲେ । ଏପରିକି ପିପ୍ପଳ ତତ୍ତ୍ୱକୁ ସେମାନେ ଦାରୁ ଉପାସନାର ପ୍ରତୀକ ଭାବରେ ଗ୍ରହଣ କରିଥିଲେ । କଠୋପନିଷଦ୍‌ରେ ସଂସାର ସ୍ୱରୂପ ଅଶ୍ୱତ୍ଥ ବୃକ୍ଷ ସମ୍ବନ୍ଧରେ ବର୍ଣ୍ଣନା ରହିଛି । ତୈତ୍ତିରୀୟୋପନିଷଦ୍‌ରେ ପରଂବ୍ରହ୍ମଙ୍କୁ ସଂସାର ବୃକ୍ଷର ଛେଦନ କର୍ତ୍ତା ଭାବରେ ଅଭିହିତ କରାଯାଇଛି । ଈଶାବାସ୍ୟୋପନିଷଦ୍‌ରେ ଜ୍ୟୋତି ରୂପରେ ପରମ ପୁରୁଷ ବିଦ୍ୟମାନ ଥିବା କଥା କୁହାଯାଇଛି । ଅନ୍ୟାନ୍ୟ ଉପନିଷଦ୍‌ରେ ମଧ୍ୟ ପରଂବ୍ରହ୍ମଙ୍କୁ 'ବ୍ରହ୍ମ' ଅପେକ୍ଷା 'ପୁରୁଷ' ନାମରେ ସୂଚିତ କରାଯାଇଛି । ଏହି ଦିବ୍ୟ ଦୃଷ୍ଟିରେ ସିଦ୍ଧାନ୍ତ ନିଆଯାଇପାରେ ଯେ, ବୈଦିକ ଯୁଗରୁ 'ଦାରୁତତ୍ତ୍ୱ' ଓ 'ବ୍ରହ୍ମତତ୍ତ୍ୱ' ପୁରୁଷୋତ୍ତମ ତତ୍ତ୍ୱ ସହିତ ସ୍ଥୂଳ ତଥା ସୂକ୍ଷ୍ମ ରୂପରେ ଜଡିତ, ଯାହାକି ଅନେକ ମନ୍ତ୍ରରେ ପରିଦୃଷ୍ଟ । ପ୍ରଶ୍ନ ଉପନିଷଦ୍‌ରେ ପୁରୁଷଙ୍କୁ ଓଁକାରରୂପୀ ବ୍ରହ୍ମବୋଲି ବ୍ୟକ୍ତ କରାଯାଇଛି । କଠ ଉପନିଷଦ୍‌ରେ ପୁରୁଷ ମହିମାକୁ ବ୍ୟାପକ ଭାବରେ ବର୍ଣ୍ଣନା କରାଯାଇଛି । ଶ୍ୱେତାଶ୍ୱତର ଉପନିଷଦ୍‌ରେ କୁହାଯାଇଛି–

ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ,
ସେ ବେତ୍ତି ବେଦ୍ୟଂ ନଚ ତସ୍ୟାସ୍ତି ବେତ୍ତା ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ।

ତଦନୁରୂପ କୈବଲ୍ୟ ଉପନିଷଦ୍‌ରେ ଉଲ୍ଲେଖ ରହିଛି–

ଅପାଣି ପାଦୋଝହଂ ଅଚିନ୍ତ୍ୟଶକ୍ତି ପଶ୍ୟାମଚକ୍ଷୁ ଶୃଣୋମ୍ୟକର୍ଣ୍ଣ
ଅହଂ ବିଜାନାମି ବିବିକ୍ତରୂପୋ ନଗସ୍ତିବେତ୍ତା ମମଚିସ୍ଦାହମ୍ ।

ଯଜୁର୍ବେଦରେ ମଧ୍ୟ ପ୍ରତିପାଦିତ ହୋଇଛି–

ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣ ତମସଃ ପରସ୍ତାତ୍,
ତମେବବିଦ୍ୱିତ୍ୱାତି ମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଝୟନାୟ ।

ବେଦ ଓ ଉପନିଷଦ୍‌ରେ ବହୁ ସ୍ଥଳରେ ପରଂବ୍ରହ୍ମଙ୍କୁ ପୁରୁଷ ନାମରେ ଅଭିହିତ କରାଯାଇଛି । ଏହାର ମୂଳସୂତ୍ର ହେଉଛି ଋକ୍‌ବେଦୋକ୍ତ ପୁରୁଷସୂକ୍ତ ମନ୍ତ୍ର–

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ,
ସ ଭୂମିଂ ସର୍ବତୋ ବ୍ୟାପ୍ୟ ଅଧିତିଷ୍ଠତ୍ ଦଶାଙ୍ଗୁଳମ୍,
ଯଃ ପୁମାନ୍ ପରଂବ୍ରହ୍ମ ପରମାତ୍ମେତ ଗୀୟତେ
ଭୂତାଂ ଭବ୍ୟଂ ଭବିଷ୍ୟଂ ଚ ସର୍ବଂ ପୁରୁଷ ଏବତତ୍ ।

ପୁରୁଷସୂକ୍ତ ମନ୍ତ୍ରରେ ପରଂବ୍ରହ୍ମଙ୍କ ମହିମା ପ୍ରତିପାଦିତ ଓ 'ଆଦୌଯଦ୍ଦାରୁ' ମନ୍ତ୍ରରେ ପରଂବ୍ରହ୍ମଙ୍କ ଦାରବୀ ଲୀଳାର ସୂଚନା ପ୍ରଦତ୍ତ ତଥା ଉପନିଷଦ୍‌ମାନଙ୍କରେ ପରଂବ୍ରହ୍ମଙ୍କ ପୁରୁଷତତ୍ତ୍ୱ ବ୍ୟାପକ ରୂପ ଧାରଣ କରିଛି । ବେଦୋକ୍ତ ପରମତତ୍ତ୍ୱ ପୁରୁଷୋତ୍ତମ ମହିମାରେ ଅଗଣିତ ମୁମୁକ୍ଷୁଜନଙ୍କୁ ଅବଗାହନ କରାଇ ବ୍ରହ୍ମୋପଲବ୍ଧିକୁ ସହଜ ବୋଧଗମ୍ୟ କରିବା ନିମିତ୍ତ ପରଂବ୍ରହ୍ମ ସ୍ୱୟଂ ଦାରବୀ ଲୀଳା ସଂରଚନା କରିଛନ୍ତି । ଏହା ତାଙ୍କର ସ୍ୱୟଂ ଲୀଳା ।

ସ୍ୱଇଛାରେ ପରଂବ୍ରହ୍ମ ଦାରୁଶରୀର ଧାରଣ କରିଅଛନ୍ତି । ତାଙ୍କ ଶରୀର ଅଭ୍ୟନ୍ତରରେ ଗୋପନୀୟ ଜ୍ଞାନଗମ୍ୟ ଅନିର୍ବଚନୀୟ ବ୍ରହ୍ମ । ସେହି ବ୍ରହ୍ମଙ୍କୁ କେହି ଦେଖିନାହାନ୍ତି । ଏପରିକି ନବ କଳେବର ସମୟରେ ଯେଉଁ ସେବାୟତ ପୁରାତନ ଦାରୁବିଗ୍ରହରୁ ନୂତନ ଦାରୁବିଗ୍ରହକୁ ବ୍ରହ୍ମ ସ୍ଥାନାନ୍ତରିତ କରିଥାନ୍ତି ସେ ମଧ୍ୟ ଅନ୍ଧପୁଟୁଳି ବନ୍ଧା ହୋଇଥିବା ଯୋଗୁଁ ଦେଖିପାରନ୍ତି ନାହିଁ । ଯୁଗ ଯୁଗ ଧରି ବ୍ରହ୍ମଙ୍କର ଗୋପନୀୟତା ରହିଆସିଛି । ବିଶ୍ୱର ମହା ମହା ଜ୍ଞାନୀ, ସିଦ୍ଧ ଯୋଗୀ ଓ ପରମାର୍ଥୀ ବ୍ରହ୍ମଙ୍କ ସ୍ୱରୂପ ଜାଣିବାକୁ ନୀଳାଚଳଧାମକୁ ଧାଇଁ ଆସିଥିଲେ ହେଁ ଶରଧାବାଲି ସ୍ପର୍ଶ କରିବା ମାତ୍ରେ ଆପଣା ଆପଣାର ଜ୍ଞାନା ନାଭିମାନ, ଯୋଗାଭିମାନ ପରିତ୍ୟାଗ କରି ସେହି ଅନିର୍ବଚନୀୟ ବ୍ରହ୍ମଙ୍କର ଆକର୍ଷଣରେ ନୀଳାଚଳଧାମରେ ମଠ, ଆଶ୍ରମ ନିର୍ମାଣ ବା ଛତା ପୋତି ରହି ଆସିଛନ୍ତି । ଧନ୍ୟ ପରଂବ୍ରହ୍ମଙ୍କର ଦାରବୀ ଲୀଳା । ପରଂବ୍ରହ୍ମଙ୍କର ଦାରୁରୂପର ନାମ ପୁରୁଷୋତ୍ତମ, ତତ୍ତ୍ୱ ପୁରୁଷୋତ୍ତମ ଏବଂ ଲୀଳାସ୍ଥଳୀର ନାମ ମଧ୍ୟ ପୁରୁଷୋତ୍ତମ ।

ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ,
ସର୍ବୋଷାଂ ଚୈବ ଦେବାନାଂ ରାଜା ଶ୍ରୀପରୁଷୋତ୍ତମଃ ।

ଋଗ୍‌ବେଦରେ ସେ ଅପୌରୁଷେୟ ଦାରୁବ୍ରହ୍ମ, ବେଦାନ୍ତରେ ବ୍ରହ୍ମ, ସାଂଖ୍ୟଲ ପୁରୁଷ, ଓ ଗୀତାରେ ପୁରୁଷୋତ୍ତମ । ସେ ହିଁ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରଣବର ବାଚ୍ୟରୂପ ଭାବରେ ଦାରୁ ଶରୀରରେ ବିରାଜିତ । ସରଳ ଭାଷାରେ କହିଲେ, ପ୍ରତିମାବାଦର ଝଲକରେ ପରଂବ୍ରହ୍ମଙ୍କର ପ୍ରତୀକବାଦର ରହସ୍ୟ ଦାରବୀ ଲୀଳାରେ ପ୍ରତିଭାତ । ନିର୍ଗୁଣ ନିରାକାର ପରଂବ୍ରହ୍ମଙ୍କର ପ୍ରଥମ ସଗୁଣ ବିଗ୍ରହ ହେଉଛି ଦାରୁଶରୀର । ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ସେ ଦାରୁବ୍ରହ୍ମ ହେଲେ ହେଁ ବେଦୋକ୍ତ ପୁରୁଷୋତ୍ତମ । ଦାରୁମୂର୍ତ୍ତି ଗଠନ ପରେ ତାଙ୍କର ପ୍ରାଣ ପ୍ରତିଷ୍ଠା ପୁରୁଷସୂକ୍ତ ମନ୍ତ୍ରରେ ହୋଇଥିଲା ।

ତ୍ରୟୀ ପ୍ରସିଦ୍ଧଂ ଯତ୍‌ସୂକ୍ତଂ ପାବନଂ ପୌରୁଷଂ ମହତ୍,
ତେଜ ନାରାୟଣଂ ଭୂପଃ ପଜୟାମାସ ଶକ୍ତିତଃ ।

କେବଳ ପୁରୁଷମୁକ୍ତ ମନ୍ତ୍ରରେ ଦାରୁବ୍ରହ୍ମଙ୍କ ପ୍ରାଣପ୍ରତିଷ୍ଠା ହୋଇନଥିଲା, ନିତ୍ୟନୈମିତିକ ପୂଜା ପ୍ରକରଣରେ ପ୍ରଣବନ୍ୟାସ ସମୟରେ ବଳଭଦ୍ରଙ୍କୁ ଅକାର, ସୁଭଦ୍ରାଙ୍କୁ ଉକାର ଓ ଜଗନ୍ନାଥଙ୍କୁ ମକାର ରୂପେ ଚିନ୍ତନ କରାଯାଏ ।

ଓଁକାର ସତ୍ତ୍ୱଗୁଣଂ ଶୁକ୍ଳବର୍ଣ୍ଣଂ ନମଃ ନଭେ
ଓଁ ଉକାର ରଜୋଗୁଣଂ ରକ୍ତବର୍ଣ୍ଣଂ ନମଃ ହୃଦୟେ
ଓଁ ମକାର ତମୋଗୁଣଂ କୃଷ୍ଣବର୍ଣ୍ଣଂ ନମଃ ମୂର୍ଦ୍ଧନି ।

ସ୍କନ୍ଦ ପୁରାଣରେ ଋଗ୍‌ବେଦୋକ୍ତ ମନ୍ତ୍ରକୁ ଆଧାରକରି ଶ୍ଳୋକଟିଏ ରହିଛି, ଯହିଁରୁ ପ୍ରମାଣିତ ହୁଏ ଦାରୁବ୍ରହ୍ମହିଁ ବେଦବର୍ଣ୍ଣିତ ପରଂବ୍ରହ୍ମ ।

ଅହୋ ତବାୟଖଳୁ ଭାଗ୍ୟରାଶି ଯୌନ୍ୟବିରାସୀଦ୍ ଭୂବି ଦାରୁମୂର୍ତ୍ତି ଯସ୍ୟାପ୍ୟୁପାପ୍ତିଂ ଶ୍ରୁତିରାହମୁକ୍ତି ପ୍ରଦାଳମାସ୍ୱଞ୍ଜ ବିମୋହିତନାମ୍ । ଯ(ସ) ଏଷ ପ୍ଲବତେ ଦାରୁଃ ସିନ୍ଧୁ ପାରେହ୍ୟୁ ପୌରୁଷଃ, ତମୁପାସ୍ୟଦୁରୀରାଧଂ ମୁକ୍ତି ଯାତି ସୁଦୁର୍ଲଭମ୍ ।

ଏଥିରୁ ହୃଦ୍‌ବୋଧ ହୁଏ, ବେଦୋକ୍ତ ପରଂବ୍ରହ୍ମହିଁ ନୀଳାଚଳ ଧାମରେ ଦାରବୀ ଲୀଳା ସଂରଚନା କରିଛନ୍ତି ।

ପବିତ୍ର ଭାରତବର୍ଷର କୋଣେ ଅନୁକୋଣେ ବହୁ ଦେବଦେବୀ ପୂଜିତ । ଏହିସବୁ ଦେବଦେବୀ ବିଦ୍ୟଭାବର ସହିତ ପୂଜିତ ହେଉଥିଲେ ହେଁ ଦାରୁବ୍ରହ୍ମ ଲୌକିକ ଭାବଧାରାରେ ଉପାସିତ । ତାଙ୍କ ଉପାସନାରେ ଉପାସକ ଉପାସ୍ୟଙ୍କୁ ଆପଣାଠାରୁ ଭିନ୍ନ ଭାବିପାରେ ନାହିଁ । ଦାରୁବ୍ରହ୍ମ ବାହୁପ୍ରସାରି ସଭିଁଙ୍କୁ କୋଳାଗ୍ରତ କରିବାକୁ ତତ୍ପର । ଭକ୍ତ ମଧ୍ୟ ତାଙ୍କୁ କୋଳ କରିବାକୁ ଲାଳାୟିତ ହୋଇଥାଏ । ସେ ଭକ୍ତବନ୍ଧୁ, ଜଗତ୍‌ବନ୍ଧୁ ଜଗନ୍ନାଥ । ଅନ୍ୟ ଦେବତା ଚିରସ୍ଥାୟୀ ଶିଳା ବା ଧାତୁରେ ନିର୍ମିତ ହୋଇଥିଲେ ହେଁ, ଶ୍ରୀଜଗନ୍ନାଥ ନଶ୍ୱର କ୍ଷୟଶୀଳ ଦାରୁରେ ନିର୍ମିତ । ତାଙ୍କର ପୁଣି ନବ କଳେବର ହୁଏ । ଏହାହିଁ ଦାରୁଦେବତାଙ୍କ ସ୍ୱାତନ୍ତ୍ର୍ୟ । ସେ ସମ୍ପୂର୍ଣ୍ଣ ଲୌକକ ଓ ଜାଗତିକ । ତାଙ୍କ ନବକଳେବର ପ୍ରକ୍ରିୟା ଦେଖିଲେ ହୃଦ୍‌ବୋଧ ହୁଏ ସେ ଯେପରି ଆମରି ଭିତରୁ ଜଣେ । ତାଙ୍କ ସକଳ ପ୍ରକ୍ରିୟା ମାନବୀୟ । କେବଳ ମାନବୀୟ ନୁହେଁ, ଆଦି ମାନବୀୟ । ବେଦ ରଚନାର ବହୁପୂର୍ବରୁ ସେ ଆଦିମାନବ ଗୋଷ୍ଠୀ ଦ୍ୱାରା ଉପାସିତ ଏବଂ ବେଦରଚନା ପରେ ବେଦଭିତ୍ତିକ ସକଳ ଦାର୍ଶନିକ ଧାରାରେ ସ୍ୱୀକୃତ । ମାନବୀୟ ପ୍ରଭୃତି ମଧ୍ୟରେ ଭାବଗତ ପ୍ରକୃତିର ପ୍ରକାଶ ହିଁ ତାଙ୍କ ଲୀଳାର ବୈଶିଷ୍ଟ୍ୟ । ସେ ତାଙ୍କ ଦାରବୀ ଲୀଳାରେ ସକଳ ଐଶ୍ୱର୍ଯ୍ୟକୁ ମାଧୁର୍ଯ୍ୟରେ ରୂପାନ୍ତରିତ କରିଛନ୍ତି । ମାନବବାଦର ପ୍ରଚାର ହିଁ ତାଙ୍କ ଲୀଳାର ମହତ ଲକ୍ଷ୍ୟ । ତାଙ୍କ ପାଖରେ ସାନ, ବଡ, ଛୁଆଁ, ଅଛୁଆଁ, ଧନୀ, ଦରିଦ୍ର, ଜାତି, ଅଜାତିର ଭାବନାହିଁ । ସ୍ନାନ ଓ ଘୋଷଯାତ୍ରାର ମାଧୁର୍ଯ୍ୟ ଲୀଳାରେ ସେ ରତ୍ନସିଂହାସନରୁ ତଳକୁ ଓହ୍ଲାଇଆସି ଅଗଣିତ ଭକ୍ତଙ୍କ ସହିତ ଏକାକାର ହୋଇଯାଆନ୍ତି । ତାଙ୍କ ନିକଟରେ କେହି ପତିତ ନୁହନ୍ତି । ଆପଣାର ଦିବ୍ୟଲୀଳାରେ ସେ ପତିତ ପାବନତ୍ୱକୁ ହିଁ ସ୍ୱୀକାର କରିଛନ୍ତି । ଯୁଗେ ଯୁଗେ ଦାରୁବ୍ରହ୍ମ ପତିତମାନଙ୍କୁ ପାବନ କରି ପତିତପାବନ ନାମ ଧାରଣ କରିଛନ୍ତି । ତାଙ୍କ ପତାକା ହେଉଛି ପତିତପାବନବାନା । ତାଙ୍କ ଘୋଷଯାତ୍ରାର ଅନ୍ୟନାମ ପତିତପାବନ ଯାତ୍ରା । ତାଙ୍କର ସହସ୍ର ସହସ୍ର ନାମ ମଧ୍ୟରୁ ପତିତପାବନ ନାମର ସ୍ୱାତନ୍ତ୍ର୍ୟ, ବୈଶିଷ୍ଟ୍ୟ, ମୂଲ୍ୟବୋଧ ଓ ମହନୀୟତା ଅବର୍ଣ୍ଣନୀୟ ।

ଦାରୁବ୍ରହ୍ମଙ୍କ ମୂଳତତ୍ତ୍ୱ ହେଉଛି ପୁରୁଷୋତ୍ତମ ତତ୍ତ୍ୱ ଏବଂ ଲୀଳା ହେଉଛି ପତିତପାବନ ଲୀଳା । ଭାରତୀୟ ଆଧାତ୍ମିକ ଚେତନାର ସେ ହେଉଛନ୍ତି ପରମ ଓ ଚରମ ଅଭିବ୍ୟକ୍ତି । ବିଶ୍ୱରେ ମାନବବାଦକୁ ସୁପ୍ରତିଷ୍ଠିତ କରିବା ନିମିତ୍ତ ଏହି ଦାରବୀ ଲୀଳା ହେଉଛି ତାଙ୍କର ସ୍ୱୟଂ ଲୀଳା । ସେ ବିଶ୍ୱ ସମ୍ବିଧାନର ପ୍ରତୀକାତ୍ମକ ସଗୁଣ ସାକାର ଦାରୁବିଗ୍ରହ । ଭୂସ୍ୱର୍ଗ ପୁରୁଷୋତ୍ତମରେ ସେ ଯୁଗେ ଯୁଗେ ଲୀଳା ସଂରଚନା ପୂର୍ବକ ଏହାକୁ ବ୍ରହ୍ମଧାମର ପବିତ୍ରତା ପ୍ରଦାନ କରିଅଛନ୍ତି । ଜୀବ ଗୋସ୍ୱାମୀଙ୍କ ଭାଷାରେ–

ନୌମି ଦେବଂ ଜଗନ୍ନାଥଂ ସଚ୍ଚିଦାନନ୍ଦ ବିଗ୍ରହମ୍,
ଯେ ନିତ୍ୟଂ ରମତେ ନୀଳାଚଳେଚୈ ବ୍ରହ୍ମଧାମନି ।

ସଦସ୍ୟ
ଓଡ଼ିଶା ସାହିତ୍ୟ ଏକାଡେମୀ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ








# ପୁରୀରେ ଶ୍ରୀଜଗନ୍ନାଥଙ୍କ ପ୍ରତିଷ୍ଠାର ଇତିହାସ

ଡକ୍ଟର ହରିହର କାନୁନ୍‌ଗୋ

ଶ୍ରୀଜଗନ୍ନାଥଙ୍କ ଉପାସନା ଓଡ଼ିଶାରେ କେବେଠାରୁ ଆରମ୍ଭ ହେଲା, ତାହା ଅଦ୍ୟାବଧି ନିରୂପିତ ହୋଇପାରିନାହିଁ । ଏହାର ପ୍ରାଚୀନତା ତଥା ଆଦିପୀଠ ସମ୍ପର୍କରେ ପ୍ରମାଣ କରିବାକୁ ଯାଇ ଗବେଷକମାନେ ନାନା କାଳ୍ପନିକ ଯୁକ୍ତିର ଆଶ୍ରୟ ନେଇଥାନ୍ତି, ମାତ୍ର ବାସ୍ତବତା ସହିତ ତା'ର ମେଳ ଖାଏ ନାହିଁ । ଏହି ପ୍ରାଚୀନତା ପ୍ରମାଣ କରିବାକୁ ଯାଇ ଗବେଷକମାନେ ରାମାୟଣ, ମହାଭାରତ ଓ ବେଦ ଇତ୍ୟାଦିରେ ଏହାର ସଂକେତ ରହିଛି ବୋଲି ଦର୍ଶାଇବାକୁ ଉଦ୍ୟମ କରିଅଛନ୍ତି, ମାତ୍ର ଏହା ସମ୍ପୂର୍ଣ୍ଣ ଭିତ୍ତିହୀନ ଓ କାଳ୍ପନିକ । ଖ୍ରୀଷ୍ଟୀୟ ସପ୍ତମ ଅଷ୍ଟମ ଶତାବ୍ଦୀ ପୂର୍ବରୁ କୌଣସି ସାହିତ୍ୟ, ଇତିହାସ ବା ଅଭିଲେଖରେ ଜଗନ୍ନାଥଙ୍କର ଉପାସନା ନା ଥିଲା ବା ଯଦି ଥିଲା, ତାହାର କୌଣସି ପ୍ରାଧାନ୍ୟ ବା ଗୁରୁତ୍ୱ ନଥିଲା କିମ୍ବା ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀ ପୂର୍ବରୁ ଏହା ସ୍ୱଳ୍ପ କେତେକ ଲୋକ ବା ଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ହୋଇ ପୂଜିତ ହେଉଥିଲେ ମଧ୍ୟ ଅନ୍ୟତ୍ର ଲୋକଲୋଚନକୁ ଆସିପାରି ନଥିଲା । ଖ୍ରୀଷ୍ଟୀୟ ୭୧୭ରେ ରଚିତ ଇନ୍ଦ୍ରଭୂତିଙ୍କ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ଆମେ ପ୍ରଥମ ଥର ପାଇଁ ଜଗନ୍ନାଥଙ୍କର ନାମୋଲ୍ଲେଖ ଓ ତାହାଙ୍କ ଉପାସନାର ପରିଚୟ ପାଇଥାଉ । ଏହାର ପରବର୍ତ୍ତୀ କେତେକ ତନ୍ତ୍ର ସାହିତ୍ୟରେ ମଧ୍ୟ ଜଗନ୍ନାଥ ଉପାସନାର ସୂଚନା ମିଳେ । ଏଥିରୁ ମନେହୁଏ ଯେ ଖ୍ରୀଷ୍ଟୀୟ ସପ୍ତମ ବା ଅଷ୍ଟମ ଶତାବ୍ଦୀର ପରବର୍ତ୍ତୀ ସମୟରେ ଜଗନ୍ନାଥ ବୌଦ୍ଧ ତନ୍ତ୍ରର ଦେବତା ରୂପେ ଲୋକଲୋଚନକୁ ଆସିଲେ । ଲୋକଲୋଚନକୁ ଆସିବା ପୂର୍ବରୁ ଜଗନ୍ନାଥ କେଉଁଠାରେ ପୂଜା ପାଉଥିଲେ, ତାହା ଅଦ୍ୟାବଧି ସ୍ଥିରୀକୃତ ହୋଇପାରିନାହିଁ ।



ସୋମବଂଶୀ ଯଯାତିକେଶରୀଙ୍କ ସମୟଠାରୁ ପୁରୀ ଜଗନ୍ନାଥ କ୍ଷେତ୍ର ନାମରେ ପରିଚିତ ହୋଇ ପ୍ରାଧାନ୍ୟ ଲାଭ କରିଆସୁଛି ଏଥିରେ କାହାରି ଦ୍ୱିମତ ନାହିଁ । କିନ୍ତୁ ଯଯାତିଙ୍କ ସମୟ ପୂର୍ବରୁ ଏହା 'ଜଗନ୍ନାଥ କ୍ଷେତ୍ର' ଭାବରେ ପରିଚିତ ହେବାର କୌଣସି ପ୍ରମାଣ ଇତିହାସରୁ ମିଳେନାହିଁ । ଅତି ପ୍ରାଚୀନ କାଳରୁ ଓଡ୍ରଦେଶ ରାଜବଂଶ ଦ୍ୱାରା ଜଗନ୍ନାଥ ରାଷ୍ଟ୍ର ଦେବତା ରୂପେ ପୂଜା ପାଇଆସୁଥିଲେ, ଏହା ଗ୍ରହଣ କରାଯାଇପାରେ, ମାତ୍ର ଅତି ପ୍ରାଚୀନ କାଳରୁ ରାଜତ୍ୱ କରିଆସୁଥିବା ଏହି ଓଡ୍ର ରାଜବଂଶ କିଏ ଓ କେଉଁଠାରେ ରାଜତ୍ୱ କରୁଥିଲେ, ସେ ସମ୍ପର୍କରେ ଡକ୍ଟର ମିଶ୍ର କୌଣସି ସୂଚନା ଦେଇନାହାଁନ୍ତି । ଇତିହାସର କୌଣସି ସମୟରେ ପୁରୀ ଓଡ୍ର ରାଜ୍ୟର ଅଂଶ ବିଶେଷ ନଥିଲା । ପ୍ରାଚୀନ କାଳରେ ଓଡ୍ରଦେଶ ବୋଲି ଯାହାକୁ କୁହାଯାଉଥିଲା, ପୁରୀ ତାହାର ଅନ୍ତର୍ଭୁକ୍ତ ନୁହେଁ ବା ନଥିଲା । 'ଓଡ୍ରଦେଶ ରାଜବଂଶାବଳୀ' ଗ୍ରନ୍ଥରେ ଯେଉଁ ଓଡ୍ର ରାଜାମାନଙ୍କର ବିବରଣୀ ଦିଆଯାଇଛି, ସେମାନଙ୍କର ସଂଖ୍ୟା ପ୍ରାୟ ଅଶୀ ବୋଲି ଜଣାଯାଏ । ଅଶୀ ଜଣ ରାଜା ରାଜତ୍ୱ କରୁଥିବା ଭଳି ପୁରାତନ ରାଜବଂଶ ଓଡ଼ିଶା ଇତିହାସରେ ନାହାଁନ୍ତି । ଉଭୟ ଖିଞ୍ଜାଳିମଣ୍ଡଳର ଭଞ୍ଜ ରାଜବଂଶ ଓଡ଼ିଶାର ସର୍ବପୁରାତନ



ରାଜବଂଶ ବୋଲି ଇତିହାସରୁ ଜଣାଯାଏ । ଏହି ଭଞ୍ଜରାଜବଂଶ ଓଡ୍ର ରାଜବଂଶ ରୂପେ ଇତିହାସରେ ପରିଚିତ ଓ ଅଭିଲେଖମାନଙ୍କରେ ବର୍ଣ୍ଣିତ ହୋଇଛନ୍ତି । ଓଡ୍ରଦେଶ ରାଜବଂଶାବଳୀରେ ଯେଉଁ ରାଜାମାନଙ୍କର ବର୍ଣ୍ଣନା ଦିଆଯାଇଛି, ସେହି ରାଜାମାନଙ୍କର ଅବିକଳ ବର୍ଣ୍ଣନା ମାଦଳାପାଞ୍ଜିରେ ମଧ୍ୟ ସ୍ଥାନ ପାଇଛି । ମାଦଳାପାଞ୍ଜି ସଂକଳନ କଲାବେଳେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ ଏ ସମ୍ପର୍କରେ ଇଙ୍ଗିତ ଦେଇଛନ୍ତି– 'ସୋମବଂଶ, କେଶରୀବଂଶ ରାଜାମାନଙ୍କ ମଧ୍ୟରେ ଭଞ୍ଜବଂଶ, କରବଂଶ ରାଜାମାନେ ଗୃହୀତ ହେବା ସମ୍ଭବପର । ଏ ବିଷୟ ଐତିହାସିକମାନଙ୍କ ଆଲୋଚ୍ୟ' । ଓଡ୍ରଦେଶ ରାଜବଂଶାବଳୀ ବା ମାଦଳାପାଞ୍ଜିର ବର୍ଣ୍ଣନାନୁସାରେ ଯଯାତିକେଶରୀଙ୍କ ଆବିର୍ଭାବ ପୂର୍ବରୁ ଯେଉଁ ଅଠସ୍ତରି ବା ଅଶୀ ଜଣ ରାଜାଙ୍କର ପରିଚୟ ଦିଆଯାଇଅଛି, ସେମାନେ ଯେ ଭୌମକର । ସୋମବଂଶୀୟ ରାଜାନଥିଲେ, ଏହା ନିଃସନ୍ଦେହରେ କୁହାଯାଇପାରେ ।

ସେମାନଙ୍କ ମଧ୍ୟରୁ ଶୋଭନଦେବଙ୍କ ସହିତ ଭୌମକରବଂଶୀୟ ଶୁଭାକର ଦେବଙ୍କୁ ଚିହ୍ନିତ କରାଇବା ପାଇଁ ଐତିହାସିକମାନେ ଉଦ୍ୟମ କରିଛନ୍ତି । କାରଣ ଓଡ଼ିଶା ଇତିହାସରେ ପ୍ରଥମେ ଶୁଭାକର ଦେବ (ଖ୍ରୀ.ଅ.୭୯୦)ଙ୍କ ପରବର୍ତ୍ତୀକାଳରେ ଦୀର୍ଘ ୧୩୩ ବର୍ଷ ଅର୍ଥାତ୍ ୯୨୩ କିମ୍ବା ୯୪୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭୌମକର ରାଜାମାନେ ରାଜତ୍ୱ କରିଥିଲେ ମଧ୍ୟ କେହି ଜଣେ ହେଲେ ରାଜା ପାତାଳି ହୋଇଥିବା ଜଗନ୍ନାଥଙ୍କୁ ଉଦ୍ଧାର କରିବା ପାଇଁ ଉଦ୍ୟମ କରିନଥିଲେ । ଅପରପକ୍ଷେ ମାଦଳାପାଞ୍ଜି ବର୍ଣ୍ଣିତ ଶୋଭନଦେବ ୯୬ ବର୍ଷ ରାଜତ୍ୱ କରିଥିବାବେଳେ ଭୌମକର ବଂଶୀୟ ପ୍ରଥମ ଶୁଭାକରଦେବ ମାତ୍ର ୨୦ବର୍ଷ ରାଜତ୍ୱ କରିଛନ୍ତି । ଓଡ୍ରଦେଶ ରାଜବଂଶାବଳୀ ବା ମାଦଳା ପାଞ୍ଜିରେ ଶୋଭନଦେବଙ୍କ ସମ୍ପର୍କରେ ଯେଉଁ ଯତ୍କିଞ୍ଚିତ ବିବରଣୀ ଦିଆଯାଇଅଛି, ତାହା ଭୋମକରବଂଶୀୟ ଶୁଭାକର ଦେବଙ୍କ ସହିତ ଚିହ୍ନିତ କରାଇବା କଥାଟିକୁ ନିଃସନ୍ଦେହରେ ଗ୍ରହଣ କରାଯାଇ ନପାରେ ।

ପୂର୍ବୋକ୍ତ ଅଠସ୍ତରି ବା ଅଶୀ ଜଣ ରାଜାଙ୍କର ବିବରଣୀରୁ ସେମାନେ ସମସ୍ତେ ଯେ ଗୋଟିଏ ବଂଶର ବା ଭିନ୍ନ ଭିନ୍ନ ବଂଶର ତା'ର କୌଣସି ସୂଚନା ମିଳେନାହିଁ, ମାତ୍ର ଯେଉଁ କ୍ରମରେ ସେହି ବିବରଣୀଗୁଡିକ ଦିଆଯାଇଅଛି, ସେଥିରୁ ଏପରି ମନେ କରିବା ସ୍ୱାଭାବିକ ଯେ ସେମାନେ ସମସ୍ତେ ଗୋଟିଏ ରାଜବଂଶର ରାଜା ହୋଇଥିବେ । ଓଡ଼ିଶାର ଇତିହାସରେ ଏପରି ଏକ ବିରାଟ ରାଜବଂଶର ବିବରଣୀ କେବଳ ଖିଞ୍ଜିଳିମଣ୍ଡଳର ଭଞ୍ଜ ରାଜବଂଶରୁ ମିଳିଥାଏ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ ଖିଞ୍ଜିଳିମଣ୍ଡଳର ଭଞ୍ଜରାଜବଂଶ ଦୀର୍ଘ ୧୫୦୦ ବର୍ଷକାଳ ଶାସନ କରି ପ୍ରତିଷ୍ଠା ଲାଭ କରିଥିଲେ ।

ସୋନପୁରଠାରେ ପାତାଳି ହେବା ପୂର୍ବରୁ ଜଗନ୍ନାଥ ଯେ ପୁରୀରେ ଅବସ୍ଥାନ କରୁଥିଲେ, ତାହା ପ୍ରମାଣ କରିବାକୁ ଯାଇ ଜଗବନ୍ଧୁ ସିଂହ ଏପରି ଏକ କିମ୍ବଦନ୍ତୀର ଆଶ୍ରୟ ନେଇଛନ୍ତି, 'ଶୋଭନ ଦେବଙ୍କ ୨ୟ ଅଙ୍କରେ ରକ୍ତବାହୁ ଜାହାଜରେ ସମୁଦ୍ର ପଥରେ ଆସି କନିକାଠାରେ ବୋଇତରୁ ଓହ୍ଲାଇ ପୁରୁଷୋତ୍ତମରେ ପ୍ରବେଶ ହେଲା । ଇତିମଧ୍ୟରେ ସେବକମାନେ ଏହାଙ୍କ ଆଗମନ ବାର୍ତ୍ତା ଶୁଣି ମହାପ୍ରଭୁଙ୍କୁ ନେଇ ଗୋପଲ୍ଲି ଗ୍ରାମ (ସୁନ୍ନପୁର ମଧ୍ୟରେ ବୌଦ ସୀମାରେ)ରେ ପାତାଳି କରି ରଖାଇଲେ । ରକ୍ତବାହୁ ପୁରୀରେ ଠାକୁରଙ୍କୁ ନଦେଖି ସହର ମଧ୍ୟରେ ଅତ୍ୟାଚାର କଲା, ଗୁଣ୍ଡାମାନଙ୍କୁ ମାଡ ମାଇଲା । ଏହି ସମୟରେ ବାଙ୍କି ମୁହାଣ ଭାଙ୍ଗି ପାଣି ସହରରେ ପ୍ରବେଶ କଲା । ତେଣେ ବଡମୂଳ ଘାଟି ସରିକି ସମୁଦ୍ର ମାଡିଯାଇଥିଲା । ଏହି ସମୟରୁ ଚିଲିକା ହେଲା । ପାଞ୍ଚ ଅଙ୍କରେ ରାଜା ପଳାୟନ କରି ଝାଡଖଣ୍ଡ ଭିତରେ ସ୍ୱର୍ଗ ପ୍ରାପ୍ତି ହେଲେ ।' ଏଠାରେ ଯେଉଁ ଶୋଭନଦେବଙ୍କ କଥାର ଅବତାରଣା କରାଯାଇଅଛି, ସେ କେଉଁ ବଂଶର ରାଜା ଥିଲେ ସେ ସମ୍ପର୍କରେ ଜଗବନ୍ଧୁ ସିଂହ କିଛି କହିନାହାଁନ୍ତି । ଏହି ସମ୍ପୂର୍ଣ୍ଣ ତଥ୍ୟଟି ସ୍ୱର୍ଗତ ସିଂହ କେଉଁଠୁ ପାଇଲେ, ତାହା ମଧ୍ୟ ସେ ଉଲ୍ଲେଖ କରିନାହାଁନ୍ତି । ଜଗବନ୍ଧୁ ସିଂହଙ୍କ ପୂର୍ବରୁ ମାଦଳାପାଞ୍ଜି ଏବଂ ପରବର୍ତ୍ତୀ ଓଡ୍ରଦେଶ ଓ କଟକ ରାଜବଂଶାବଳୀ ଗ୍ରନ୍ଥଗୁଡିକରେ ଏହି ତଥ୍ୟମାନ ଭିନ୍ନଭିନ୍ନ ରୂପରେ ପରିବେଷଣ କରାଯାଇଅଛି, ମାତ୍ର ସେଥିରେ ରକ୍ତବାହୁ ପୁରୀ ଆସିଥିଲା ବୋଲି କୁତ୍ରାପି କୁହାଯାଇନାହିଁ । ଓଡ୍ରଦେଶ ଓ କଟକ ରାଜବଂଶାବଳୀ ଗ୍ରନ୍ଥରେ ରକ୍ତବାହୁ 'କନକାକ୍ଷ' ରାଜ୍ୟର ସୀମା ପର୍ଯ୍ୟନ୍ତ ଆସିଥିବା କଥା କୁହାଯାଇଅଛି । ଏହି 'କନକାକ୍ଷ' ଶବ୍ଦଟିକୁ ସମ୍ଭବତଃ ଜଗବନ୍ଧୁ ସିଂହ ଓ ଡକ୍ଟର କାହ୍ନୁଚରଣ ମିଶ୍ର 'କନିକା' ବୋଲି ପଢିବାକୁ ଉଦ୍ୟମ କରିଅଛନ୍ତି, ମାତ୍ର ତା'ର କୌଣସି ଯଥାର୍ଥତା ନାହିଁ ।

ଓଡ୍ରଦେଶ ରାଜବଂଶାବଳୀକୁ କଟକ ରାଜବଂଶାବଳୀ ସହିତ ମିଳାଇ ପଢିଲେ ଅନେକ ଅସଂଗତି ଦୃଷ୍ଟିଗୋଚର ହୁଏ । ଗୋଟିଏ ସମାନ ଘଟଣାକୁ ପରିବେଷଣ କଲାବେଳେ ଯେଉଁ ପ୍ରକାର ପରସ୍ପର ବିରୋଧୀ ତଥ୍ୟମାନଙ୍କର ଅବତାରଣା କରାଯାଇଛି, ତହିଁରୁ ସତ୍ୟାସତ୍ୟ ନିରୂପଣ କରିବା ବଡ କଷ୍ଟକର ବ୍ୟାପାର । କଟକ ରାଜବଂଶାବଳୀରେ ଘଟଣାଟି ଯେଉଳି ଭାବେ ଅବତାରଣା କରାଯାଇଛି, ସେଥିରୁ ଜଣାଯାଏ ଯେ ରକ୍ତବାହୁ ସମୁଦ୍ର ପଥରେ





'କନକ' ନାମକ ରାଜ୍ୟର ସୀମାକୁ ଆସିଥିଲା । ସେଥିରେ ସେହି କନକ ନାମକ ରାଜ୍ୟଟିକୁ 'ପୁରୁଷୋତ୍ତମ' ବୋଲି କୁହାଯାଇଅଛି ଓ ସେହି କନକ ନାମକ ରାଜ୍ୟର ପୁରୁଷୋତ୍ତମ କ୍ଷେତ୍ରରେ ମଧ୍ୟ ଗୋଟିଏ ସ୍ୱର୍ଗଦ୍ୱାର ରହିଛି । ଏଥିରୁ ଏହା ପୁରୀ ବୋଲି କିପରି ବୁଝାଯିବ ? ମାଦଳାପାଞ୍ଜି, ଓଡ୍ରଦେଶ ଓ କଟକ ରାଜବଂଶାବଳୀରେ ଯେଉଁ ପୁରୁଷୋତ୍ତମ ଶବ୍ଦଟି ବ୍ୟବହାର କରାଯାଇଛି, ତାହା ଯେ ପୁରୀ ନୁହେଁ, ଏକଥା ସେହି ସେହି ଗ୍ରନ୍ଥମାନଙ୍କର ବର୍ଣ୍ଣନାରୁ ଜଣାଯାଏ । ଏହିସବୁ ଗ୍ରନ୍ଥମାନଙ୍କୁ ବାଦ ଦେଇ ସ୍ୱର୍ଗତ ସିଂହ ଯଦି ଅନ୍ୟକୌଣସି ସୂତ୍ରରୁ ଆଧାର କରି ଏପରି ଲେଖିଥାଆନ୍ତି, ତେବେ ତାହା ଭିନ୍ନ କଥା ହେବ, ମାତ୍ର ଯଦି ଏହି ଗ୍ରନ୍ଥଗୁଡ଼ିକୁ ଆଧାର କରି ଜଗବନ୍ଧୁ ସିଂହ ତାହାଙ୍କ ଉପରୋକ୍ତ ତଥ୍ୟମାନ ଦେଇଥାନ୍ତି, ତେବେ ତାଙ୍କ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର କଦାପି ପୁରୀ ହୋଇ ନପାରେ । କଟକ ରାଜବଂଶାବଳୀରେ କନକାକ୍ଷ ରାଜ୍ୟକୁ 'କନକ' ନାମକ ରାଜ୍ୟ ରୂପେ ବର୍ଣ୍ଣନା କରାଯାଇଥିବା ବେଳେ ପ୍ରାଚୀନ ଉତ୍କଳ ଏବଂ 'ଓଡ୍ରଦେଶ ରାଜବଂଶାବଳୀ'ରେ ତାହାକୁ 'କନିକା' ବୋଲି ଅଭିହିତ କରାଯାଇଛି । ସେହିଭଳି କଟକ ଏବଂ ଓଡ୍ର ରାଜବଂଶାବଳୀରେ ରକ୍ତବାହୁ ସମୁଦ୍ର ମଧ୍ୟକୁ 'ଗୁଣ୍ଡ' ନାମକ ଆଗ୍ନେୟାସ୍ତ୍ର ନିକ୍ଷେପ କରିଥିବାର ଉଲ୍ଲେଖ ଥିବାବେଳେ ପ୍ରାଚୀନ ଉତ୍କଳରେ 'ଗୁଣ୍ଡା'ମାନଙ୍କୁ ମାଡ ମାରିବା ପ୍ରସଙ୍ଗର ଅବତାରଣା କରାଯାଇଛି । ଏତଦ୍‌ବ୍ୟତୀତ ଓଡ୍ରଦେଶ ରାଜବଂଶାବଳୀରେ ସମୁଦ୍ରରେ ଆଗ୍ନେୟାସ୍ତ୍ର ନିକ୍ଷେପ ଫଳରେ ଜଳପ୍ରବାହ ଦଶପଲ୍ଲା ରାଜ୍ୟ ପର୍ଯ୍ୟନ୍ତ ଯାଇ ସେଠାରୁ ବାଧାପ୍ରାପ୍ତ ହୋଇ ଫେରିଆସୁଥିବା ସମୟରେ ଜଳସ୍ରୋତର ବେଗରେ ଦଶଯୋଜନ ପରିଧି କ୍ରମରେ 'ଜଳବା' ନାମକ ଖାତ ସୃଷ୍ଟି ହୋଇଥିବା ବେଳେ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥର ବର୍ଣ୍ଣନାରେ ବାଙ୍କି ମୁହାଣ ଭାଙ୍ଗି ପାଣି ସହରରେ ପ୍ରବେଶ କରି ବଡମୂଳଘାଟି ପର୍ଯ୍ୟନ୍ତ ସମୁଦ୍ର ମାଡିଯାଇ ଚିଲିକା ହ୍ରଦ ସୃଷ୍ଟି ହେଲା ବୋଲି କୁହାଯାଇଛି । କଟକ ରାଜବଂଶାବଳୀରେ ଓଡ୍ରଦେଶ ରାଜବଂଶାବଳୀ ପରି ଏକା ପ୍ରକାରର ବର୍ଣ୍ଣନା ରହିଥିଲେ ମଧ୍ୟ ଜଳବା ପରିବର୍ତ୍ତେ ଚିଲିକା ହ୍ରଦ ସୃଷ୍ଟି ହେଲା ବୋଲି କୁହାଯାଇଛି । ମାଦଳାପାଞ୍ଜିରେ ରକ୍ତବାହୁ ପୁରୁଷୋତ୍ତମ ବୁଲି ଆଇଲା ବୋଲି କୁହାଯାଇଥିଲା ବେଳେ ଓଡ୍ରଦେଶ ଓ କଟକ ରାଜବଂଶାବଳୀରେ ରକ୍ତବାହୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆସି ପ୍ରାସାଦ ଶୂନ୍ୟ ଥିବାର ଦେଖି ସମୁଦ୍ର ଉପରେ ଦାଉ ସାଧିବା ଘଟଣାଟି ବର୍ଣ୍ଣିତ ହୋଇଛି । ଏଥିରୁ ଜଣାଯାଏ ଯେ ପୁରୁଷୋତ୍ତମ ବା ପୁରୁଷୋତ୍ତମ କ୍ଷେତ୍ର କଦାପି ପୁରୀର ପୁରୁଷୋତ୍ତମ କ୍ଷେତ୍ର ନୁହେଁ, ବରଂ କନକ ନାମକ ରାଜ୍ୟର ପୁରୁଷୋତ୍ତମ କ୍ଷେତ୍ରକୁ ବୁଝାଉଅଛି । ଯଦି ପୁରୀକୁ ପୁରୁଷୋତ୍ତମ କ୍ଷେତ୍ର ବୋଲି ଧରି ନିଆଯାଏ, ତେବେ ସେହି ପୁରୀରେ ଅବସ୍ଥିତ ସମୁଦ୍ର କିପରି ଦଶପଲ୍ଲା ରାଜ୍ୟ ପର୍ଯ୍ୟନ୍ତ ମାଡି ଆସିଲା, ତାହା ବୁଝାଯାଏ ନାହିଁ । କାରଣ ଏହା ସମ୍ଭବପର ନୁହେଁ ।

ଅପରପକ୍ଷେ ଓଡ଼ିଶାର ଇତିହାସକୁ ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ ଯେ ଓଡ଼ିଶାର ଯେତେ ସବୁ ରାଜବଂଶ ରାଜତ୍ୱ କରିଯାଇଛନ୍ତି, ସେମାନଙ୍କ ମଧ୍ୟରୁ କାହାର ରାଜଧାନୀ ପୁରୀ ନଥିଲା ବା ପୁରୀର ପ୍ରାଚୀନ ନାମ କୌଣସି ସମୟରେ କନକ ନଥିଲା । ଏ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ ଉଲ୍ଲେଖ କରିଛନ୍ତି, 'ପୁରୀ ଓଡ଼ିଶାର ଏକ ପୁରାତନ ନଗର ଅଟଇ । ବୌଦ୍ଧମାନଙ୍କ ସମୟରୁ ଏଥିର ଅସ୍ତିତ୍ୱ ଲକ୍ଷିତ ହୁଅଇ । କିନ୍ତୁ ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ଏଥିର ପ୍ରକୃତ ନଗରତ୍ୱ ସଞ୍ଜାତ ଓ ଗୌରବ ବର୍ଦ୍ଧିତ ହୋଇଛି ।' ସେଥିପୂର୍ବେ ପୁରୀ କଦାପି ରାଜଧାନୀ କି ରାଜ ବାସୋପଯୋଗୀ ସ୍ଥାନ ରୂପେ ବ୍ୟବହୃତ ହୋଇନଥିଲା । ଡକ୍ଟର ହରେକୃଷ୍ଣ ମହତାବ ଏ ସମ୍ପର୍କରେ ଆଲୋଚନା କରିବାକୁ ଯାଇ କହିଛନ୍ତି, 'ଖ୍ରୀଷ୍ଟୀୟ ୧୮୧୬ ସାଲ ପର୍ଯ୍ୟନ୍ତ ଓଡ଼ିଶାର ରାଜଧାନୀ ପୁରୀ ଥିଲା । ତା'ପରେ ଏହା କଟକକୁ ଆସିଲା ।' ମାତ୍ର ଡକ୍ଟର ମହତାବ ସେହି ଗ୍ରନ୍ଥରେ ଅନ୍ୟତ୍ର ଉଲ୍ଲେଖ କରିଛନ୍ତି, '୧୮୧୪ ଜାନୁଆରୀ ୩ତାରିଖରେ ରିଚାର୍ଡସନ କିଲା ଖୋର୍ଦ୍ଧା ସମ୍ବନ୍ଧରେ ଲେଖିଥିଲେ ଯେ ରାଜା ନିଜ ଇଲାକାରେ ରହୁନାହାଁନ୍ତି । ସେ ଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାରକ ରୂପେ ସୁବିଧା ଉପଭୋଗ କରିବା ପାଇଁ ପୁରୀରେ ରହୁଛନ୍ତି ।' ଏହିସବୁ ଆଲୋଚନାରୁ ଜଣାପଡେ ଯେ ପୁରୀ କେବେ ରାଜଧାନୀ ନଥିଲା । ଅତଏବ ଏହିସବୁ ପରସ୍ପର ବିରୋଧୀ ତଥ୍ୟଗୁଡ଼ିକର ବିଚାର ବିଶ୍ଳେଷଣ କଲେ ଦେଖାଯିବ ଯେ ସୁବର୍ଣ୍ଣପୁର ବା ସୋନପୁରରେ ପାତାଳି ହେବା ପୂର୍ବରୁ ଜଗନ୍ନାଥ ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ଅବସ୍ଥାନ କରୁଥିଲେ ବୋଲି ଯାହା କୁହାଯାଉଛି, ତାହା ଠିକ୍ ନୁହେଁ । କାରଣ ଯଯାତିଙ୍କ ପୂର୍ବରୁ ପୁରୀକୁ ପୁରୁଷୋତ୍ତମ କ୍ଷେତ୍ର ରୂପେ ନିର୍ବିଚାରରେ ଗ୍ରହଣ କରାଯିବା ଆଦୌ ଯୁକ୍ତିସଙ୍ଗତ ନୁହେଁ । ଏ ସମ୍ପର୍କରେ ବର୍ଣ୍ଣନା କରିବାକୁ ଯାଇ ଜଗବନ୍ଧୁ ସିଂହ ଉଲ୍ଲେଖ କରିଛନ୍ତି 'ଶୋଭନ ଦେବଙ୍କ ୨ୟ ଅଙ୍କରେ ରକ୍ତବାହୁ ଜାହାଜରେ ସମୁଦ୍ର ପଥରେ ଆସି କନିକାଠାରେ ବୋଇତରୁ ଓହ୍ଲାଇ ପୁରୁଷୋତ୍ତମରେ ପ୍ରବେଶ ହେଲା ।' ଏଥିରୁ ସ୍ପଷ୍ଟ ମନେହୁଏ ଯେ ଜଗବନ୍ଧୁ ସିଂହ ଯେଉଁ ପୁରୁଷୋତ୍ତମ କ୍ଷେତ୍ର କଥା କହିଛନ୍ତି, ତାହା କନିକା ରାଜ୍ୟରେ ଅବସ୍ଥିତ, ମାତ୍ର ପରେ ପରେ ଜଗବନ୍ଧୁ ସିଂହ ପୁନର୍ବାର କହିଛନ୍ତି



'ରକ୍ତବାହୁ ପୁରୀରେ ଠାକୁରଙ୍କୁ ନଦେଖି ସହର ମଧ୍ୟରେ ଅତ୍ୟାଚାର କଲା ।' ଏହି ଦୁଇଟି ବିବରଣୀ ପରସ୍ପର ବିରୋଧୀ ଅଟେ । ଏପରି ମନେହୁଏ ଜଗବନ୍ଧୁ ସିଂହ ଯେଉଁ ସମୟର କଥା ଲେଖିଛନ୍ତି, ସେ ସମୟରେ ପୁରୀ ଓ ପୁରୁଷୋତ୍ତମ କ୍ଷେତ୍ର ଅଲଗା ଅଲଗା ଥିଲା । ସୁତରାଂ ମାଦଳାପାଞ୍ଜିରେ ପାତିସାଙ୍କ ଅମୁରା ରକ୍ତବାହୁ ଶ୍ରୀପୁରୁଷୋତ୍ତମ ବୁଲି ଅଇଲା ବୋଲି ଯେଉଁ ଉଲ୍ଲେଖ ଅଛି, ସେହି ପୁରୁଷୋତ୍ତମ ବର୍ତ୍ତମାନର ପୁରୀକୁ ବୁଝାଏ ନାହିଁ, ବରଂ ସେହି ପୁରୁଷୋତ୍ତମ ଅନ୍ୟ ଏକ ସ୍ଥାନକୁ ବୁଝାଉଛି । ଏଠାରେ ଉଲ୍ଲେଖନୀୟ ଯେ ସମଗ୍ର ମାଦଳାପାଞ୍ଜିରେ ପୁରୀ ଶବ୍ଦର ବ୍ୟବହାର କୌଣସି ଠାରେ ହୋଇନାହିଁ । ତା' ପରିବର୍ତ୍ତେ ପୁରୁଷୋତ୍ତମ ଶବ୍ଦର ବହୁଳ ବ୍ୟବହାର ହୋଇଅଛି । ଏଥିରୁ ନିଃସନ୍ଦେହରେ କୁହାଯାଇପାରେ ଯେ ଷୋଡଶ ଶତାବ୍ଦୀରେ ମାଦଳାପାଞ୍ଜି ଲେଖାହେବା ବେଳକୁ ପୁରୀ ତାହାର ବର୍ତ୍ତମାନର ନାମ ବହନ କରିନଥିଲା । ଅବଶ୍ୟ ଚକ୍ରଧର ମହାପାତ୍ରଙ୍କ ପରି ଗବେଷକମାନେ ମତ ଦେଇଥାନ୍ତି ଯେ ପୁରୀର ପୂର୍ବନାମ ବା ପ୍ରାଚୀନ ନାମ କନକପୁରୀ, ମାତ୍ର ଏହା ଭ୍ରମାତ୍ମକ । କଥାସରିତ ସାଗରରେ ଯେଉଁ କନକପୁରୀ କଥାର ଉଲ୍ଲେଖ ଅଛି, ତାହା ବର୍ତ୍ତମାନର ପୁରୀକୁ ବୁଝାଉ ନାହିଁ, ବରଂ ଏହି କନକ ପୁରୀ ଶବ୍ଦଟି ସୁବର୍ଣ୍ଣପୁରୀକୁ ହିଁ ବୁଝାଉଅଛି । ଇତିହାସରୁ ଜଣାଯାଏ ଯେ ପୁରୁଷୋତ୍ତମ ନୃସିଂହ ତାଙ୍କ ମୂଳ ଆସ୍ଥାନ ଶ୍ରୀପୁରରୁ ସ୍ଥାନାନ୍ତରିତ ହୋଇଛନ୍ତି । ଆମର ମନେହୁଏ ଯେତେବେଳେ ନୃସିଂହ ଯେଉଁ ଯେଉଁ ସ୍ଥାନମାନଙ୍କରେ ଅବସ୍ଥାନ କରିଛନ୍ତି, ତାହାକୁ ପୁରୁଷୋତ୍ତମ ବୋଲି କୁହାଯାଇଅଛି । ସମ୍ଭବତଃ ଏଇଥିପାଇଁ କେତେକ ଗବେଷକ ମତ ପ୍ରଦାନ କରିଛନ୍ତି ଯେ ଋଷିକୁଲ୍ୟା ନଦୀଠାରୁ ବୈତରଣୀ ପର୍ଯ୍ୟନ୍ତ ତଥା ସମୁଦ୍ରଠାରୁ ମହାନଦୀ ପର୍ଯ୍ୟନ୍ତ କ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ର ନାମରେ ପ୍ରସିଦ୍ଧ ।''

ରକ୍ତବାହୁର ଆକ୍ରମଣ ଶୋଭନଦେବଙ୍କ ସମୟରେ ହୋଇଥିଲା ବୋଲି ମାଦଳାପାଞ୍ଜି, ଓଡ୍ରଦେଶ ରାଜବଂଶାବଳୀ ଓ କଟକ ରାଜବଂଶାବଳୀରେ ଉଲ୍ଲେଖ ଅଛି । ଇତିହାସକୁ ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ ଯେ ସୋମବଂଶୀମାନଙ୍କ ସମୟରେ ସମଗ୍ର ଓଡ଼ିଶା ଏକ ଶାସନାଧୀନରେ ରହିଥିଲା । ସୋମବଂଶୀମାନଙ୍କ ପୂର୍ବରୁ ଏହା କ୍ଷୁଦ୍ରକ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇ ଉତ୍କଳ, ତୋଷଳ, କଙ୍ଗୋଦ, କଳିଙ୍ଗ, ଓଡ୍ର ଓ କୋଶଳ ଆଦି ନାମରେ ଭିନ୍ନ ଭିନ୍ନ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ରକ୍ତବାହୁର ଆକ୍ରମଣ ସମୟରେ ଓଡ୍ରଦେଶକୁ ଭଞ୍ଜବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ସୁତରାଂ ଶୋଭନଦେବଙ୍କୁ ଭଞ୍ଜବଂଶୀୟ ରାଜା ଭାବରେ ଧରିନିଆଯିବା ଯୁକ୍ତିଯୁକ୍ତ ମନେହୁଏ । ଯଯାତିଙ୍କ ପୂର୍ବରୁ ଯେଉଁ ଅଠସ୍ତରି ବା ଅଶୀ ଜଣ ରାଜାଙ୍କର ବିବରଣୀ ମାଦଳାପାଞ୍ଜିରେ ଦିଆଯାଇଅଛି, ସେମାନଙ୍କର ନାମ ଓଡ୍ରଦେଶ ରାଜବଂଶାବଳୀରେ ମଧ୍ୟ ଉଲ୍ଲେଖ ଅଛି । ଡକ୍ଟର କାହ୍ନୁଚରଣ ମିଶ୍ର ଓଡ୍ରଦେଶ ରାଜବଂଶାବଳୀରେ ମଧ୍ୟ ଉଲ୍ଲେଖ ଅଛି । ଡକ୍ଟର କାହ୍ନୁଚରଣ ମିଶ୍ର ଓଡ୍ରଦେଶ ରାଜବଂଶାବଳୀ ପୁସ୍ତକଟିର ସଂକଳନ କଲାବେଳେ ଏହି ଅଠସ୍ତରି ଜଣ ରାଜାଙ୍କୁ ଓଡ୍ର ଦେଶର ରାଜା ଭାବରେ ଅଭିହିତ କରିଛନ୍ତି । ଇତିହାସରୁ ଜଣାଯାଏ ଯେ ଅତି ପ୍ରାଚୀନ କାଳରୁ ଭଞ୍ଜବଂଶୀୟ ରାଜାମାନେ ଉଭୟ ଖିଞ୍ଜିଳି ମଣ୍ଡଳରେ ରାଜତ୍ୱ କରୁଥିଲେ । ଏହି ଉଭୟ ଖିଞ୍ଜିଳି ମଣ୍ଡଳ ଓଡ୍ରଦେଶର ଅଂଶ ବିଶେଷ ଥିଲା ବୋଲି ଐତିହାସିକମାନେ ମତ ପ୍ରଦାନ କରିଅଛନ୍ତି । ସୁତରାଂ ଭଞ୍ଜବଂଶୀୟ ରାଜାମାନେ ଓଡ୍ରଦେଶରେ ଯେ ରାଜତ୍ୱ କରୁଥିଲେ, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପରବର୍ତ୍ତୀ ତନ୍ତ୍ର ସାହିତ୍ୟରେ ଆମେ ଜଗନ୍ନାଥଙ୍କର ନାମୋଚ୍ଚାରଣ ପ୍ରଥମ ଥର ପାଇଁ ପାଇଥାଉ । ସେହି ଗ୍ରନ୍ଥଗୁଡ଼ିକ ମଧ୍ୟରୁ କାଳିକା ପୁରାଣରେ ଉଲ୍ଲେଖ ଅଛି 'ଜଗନ୍ନାଥମୋଡ୍ରେଶଂ ତତ୍ର ପୂଜୟେତ ।' ଓଡ୍ରଦେଶର ପାରମ୍ପରିକ ସୀମା କେନ୍ଦୁଝର ସୀମାରୁ ଆରମ୍ଭ ହୋଇ ମହାନଦୀର ବାମତଟ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା ବୋଲି ଐତିହାସିକମାନେ ନିରୂପଣ କରିଛନ୍ତି । ଏହି ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ପ୍ରାଚୀନ ଓଡ୍ରଦେଶ ବୋଲି ଯାହାକୁ କୁହାଯାଏ, ପୁରୀ ତାହାର ଅନ୍ତର୍ଭୁକ୍ତ ନୁହେଁ ବା ନଥିଲା । ପୁରୀ ପ୍ରାଚୀନ ତୋଷାଳୀ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଯଯାତିଙ୍କ ପୂର୍ବରୁ ପୁରୀର କୌଣସି ପ୍ରାଧାନ୍ୟ ନଥିଲା । ତେଣୁ ଯଯାତିଙ୍କ ପୂର୍ବରୁ ଇତିହାସ, ସାହିତ୍ୟ, ଧର୍ମଗ୍ରନ୍ଥ ବା ପୁରାଣଶାସ୍ତ୍ରମାନଙ୍କରେ ପୁରୀର ନାମ ଖୋଜିଲେ ବି ମିଳେ ନାହିଁ । ଏପରିକି ଯଯାତିଙ୍କ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରର ନାମୋଲ୍ଲେଖ ମଧ୍ୟ ସେହି ଗ୍ରନ୍ଥମାନଙ୍କରୁ ମିଳେ ନାହିଁ । ଶ୍ରୀଜଗନ୍ନାଥଙ୍କ ଇତିହାସରେ ଏହା ଏକ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । କେଉଁ ପରିସ୍ଥିତିରେ ଯଯାତି ପୁରୀରେ ୩୮ ହାତର ଗୋଟିଏ ପଟୋଳ ନିର୍ମାଣ କରି ତହିଁରେ ଜଗନ୍ନାଥଙ୍କୁ ଅବସ୍ଥାନ କରାଇଥିଲେ, ତାହା ହିଁ ବିଚାରର ବିଷୟ ।

ରକ୍ତବାହୁ ସମ୍ପର୍କିତ ଘଟଣାଟିକୁ ଅନ୍ୟ ଏକ ଦିଗରୁ ମଧ୍ୟ ବିଚାର କରାଯାଇପାରେ । ବର୍ତ୍ତମାନ ସୁଦ୍ଧା ଏହି ଘଟଣାଟିର ଉଲ୍ଲେଖ ଆମେ ମାଦଳାପାଞ୍ଜି, ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ପ୍ରାଚୀନ ଉତ୍କଳ ଗ୍ରନ୍ଥଗୁଡ଼ିକରୁ ପାଇଥାଉ । ଏହି ଗ୍ରନ୍ଥଗୁଡ଼ିକୁ ଅନୁଧ୍ୟାନ କଲେ ଦେଖାଯିବ ଯେ ଏ ସମସ୍ତ ଘଟଣାଗୁଡ଼ିକର




ମୂଳାଧାର ତଡଉକରଣ ଓ ଦେଉଳ କରଣଙ୍କ ପାଖରେ ଗଚ୍ଛିତ କେତେକ ପୁରାତନ ପୋଥିରେ ରହିଛି । ଅର୍ଥାତ୍ ମନ୍ଦିରର ତଡଉକରଣ ଓ ଦେଉଳ କରଣମାନଙ୍କ ପାଖରେ ଗଚ୍ଛିତ କେତେକ ପୁରାତନ ପୋଥିରେ ରହିଛି । ଅର୍ଥାତ୍ ମନ୍ଦିରର ତଡଉକରଣ ଓ ଦେଉଳ କରଣମାନଙ୍କ ପାଖରେ ଗଚ୍ଛିତ କେତେକ ପୁରାତନ ପୋଥିକୁ ଆଧାର କରି ମାଦଳାପାଞ୍ଜି, ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ପ୍ରାଚୀନ ଉତ୍କଳ ଗ୍ରନ୍ଥରେ ଏହି ଘଟଣାଟିର ଉଲ୍ଲେଖ କରାଯାଇଅଛି । ଓଡ୍ରଦେଶ ଓ କଟକ ରାଜବଂଶାବଳୀ ଗ୍ରନ୍ଥରେ ଉଲ୍ଲେଖ ଅଛି, 'ଯାଜପୁର କ୍ଷେତ୍ରରେ ଯଯାତି କେଶରୀ ରାଜ୍ୟ ପାଇଥିଲେ । ଏହାଙ୍କ ପ୍ରଥମ ଅବସ୍ଥାରେ ରାଜକର୍ମ ଛାଡି ଯଜ୍ଞ କରିଥିଲେ, ରାଜାଙ୍କର ଏପରି ଭାବ ଦେଖି ସେଠାରେ ଉପସ୍ଥିତ ଥିବା ବ୍ରାହ୍ମଣମାନେ ରାଜାଙ୍କୁ କହିଥିଲେ, ଛାମୁ ! ବହୁ କାଳରେ ପୁରୁଷୋତ୍ତମ କ୍ଷେତ୍ରରେ ଦକ୍ଷିଣ ମହୋଦଧିରେ ଗୋବିନ୍ଦ ଦ୍ୱାଦଶୀ ନାମକ ସ୍ନାନଯୋଗ ଉପସ୍ଥିତ ହେଉଅଛି । ତାହା ଶୁଣି ରାଜା ବ୍ରାହ୍ମଣମାନଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ ଫାଲଗୁନ୍ ଶୁକଳ ଦ୍ୱାଦଶୀରେ ପଡିଥିବା ଗୋବିନ୍ଦ ଦ୍ୱାଦଶୀ ଯୋଗରେ ସମୁଦ୍ର ନିକଟରେ ବହୁ ଦାନପୁଣ୍ୟ କରିଥିଲେ । ତାହାପରେ କ୍ଷେତ୍ରର ଅବସ୍ଥା ଅତି ଖରାପ ହୋଇଥିବା ଓ ମନ୍ଦିର ଭାଙ୍ଗି ଯାଇଥିବା ଦେଖି ସନ୍ନ୍ୟାସୀ ଓ ବ୍ରାହ୍ମଣ ପ୍ରଭୃତିଙ୍କୁ ପଚାରି ଥିଲେ । ଦୁଃଖର କଥା ମନ୍ଦିରଟି ଭାଙ୍ଗିଲା ପରି ହୋଇପଡିଛି । ଭଗବାନଙ୍କର ଶ୍ରୀମୂର୍ତ୍ତି କେଉଁଠାରେ ଅଛି ? ତାହା ଶୁଣି ସେମାନେ କହିଲେ, ଯେତେବେଳେ ରକ୍ତବାହୁ ଆସିଥିଲା, ସେହିଦିନଠାରୁ ଏଠାରୁ ନେଇ ସୁବର୍ଣ୍ଣପୁର ରାଜ୍ୟ ମଧ୍ୟରେ କେଉଁଠି ରଖିଯାଇଛନ୍ତି ବୋଲି ପରମ୍ପରାକ୍ରମେ ଶୁଣାଯାଏ ।

ଏଠାରେ ଲକ୍ଷ୍ୟ କରିବାର କଥା, ଓଡ୍ରଦେଶ ଓ କଟକ ରାଜବଂଶାବଳୀରେ ଘଟଣାଟି ଯେଭଳି ବର୍ଣ୍ଣନା କରାଯାଇଅଛି, ସେଥିରୁ ଜଣାଯାଏ ଯେ ଯଯାତି ପୁରୀର ଭଗ୍ନ ପ୍ରାୟ ମନ୍ଦିରରେ ପୂର୍ବରୁ ଅବସ୍ଥାନ କରୁଥିବା ଶ୍ରୀମୂର୍ତ୍ତିଙ୍କ ସନ୍ଧାନ ନେବା ଆରମ୍ଭ କରିଥିଲେ । ରାଜତ୍ୱର ୧୧ଅଙ୍କେ ବା ଏଗାର ବର୍ଷକାଳ ଶାସନ କରିବା ଭିତରେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନେ ଭାଗବତପ୍ରେମୀ ଯଯାତିଙ୍କୁ ପ୍ରଭାବିତ କରିବାରେ ସକ୍ଷମ ହୋଇଥିଲେ । ଶାସନ ପ୍ରତିଷ୍ଠା କରିବାରେ ବ୍ୟସ୍ତ ଥିବା ଏହି ସୋମବଂଶୀ ଯଯାତିଙ୍କର ଧ୍ୟାନ ପୁରୀ ପ୍ରତି ଆକର୍ଷିତ ହୋଇଥିଲା । ସୋମବଂଶୀ ରାଜ୍ୟର ରାଜଧାନୀ ଯଯାତି ନଗର ଯାଜପୁରର ବ୍ରାହ୍ମଣମାନେ ପୁରୁଷୋତ୍ତମ ପୁରୀ ସମୁଦ୍ର ବେଳାଭୂମିରେ ଗୋବିନ୍ଦଦ୍ୱାଦଶୀ ବୁଡ ପକାଇବା ପାଇଁ ଯଯାତିଙ୍କୁ ପ୍ରଭାବିତ କରାଇଥିଲେ । ସେତେବେଳେ ପୁରୀ ସମୁଦ୍ର ବେଳାଭୂମିର ବିଶେଷ କିଛି ପ୍ରାଧାନ୍ୟ ନ ଥିଲେ ମଧ୍ୟ ଭାଗବତପ୍ରେମୀ ଯଯାତିଙ୍କୁ ଗୋବିନ୍ଦଦ୍ୱାଦଶୀ ଆଳରେ ଏହି ବେଳାଭୂମିରେ ବୁଡ ପକାଇବା ପାଇଁ ସେମାନେ ଅନାୟାସରେ ପ୍ରଭାବିତ କରିପାରିଥିଲେ । ବିରଜାପୁରୀ ବା ଯାଜପୁର ନିକଟବର୍ତ୍ତୀ ସ୍ଥାନରେ ସମୁଦ୍ରର ବେଳାଭୂମି ଥିଲେ ମଧ୍ୟ ପୁରୀରେ ଏହି ବୁଡ ପକାଇବା ପାଇଁ ପ୍ରଭାବିତ କରିବା ପଛରେ କି ଉଦ୍ଦେଶ୍ୟ ଥିଲା ? ତେଣୁ ଯଯାତିଙ୍କ ସମୟରୁ ହିଁ ରାଷ୍ଟ୍ରଶକ୍ତିର ସମର୍ଥନ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ ସପକ୍ଷରେ ଯାଇଥିଲା । ସେହି ପୁରୀଠାରେ ହିଁ ବୁଡ ପକାଇଲାବେଳେ ଯଯାତି ଭଗ୍ନପ୍ରାୟ ଶ୍ରୀମୂର୍ତ୍ତିଙ୍କ ମନ୍ଦିର ଦେଖିଥିଲେ । ଏହି ପ୍ରସଙ୍ଗରେ ବର୍ଣ୍ଣନା କରିବାକୁ ଯାଇ ମାଦଳାପାଞ୍ଜି ଉଲ୍ଲେଖ କରିଛି ଯେ ଓଡ଼ିଶା ରାଜ୍ୟର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି ? ଉପରୋକ୍ତ ଗ୍ରନ୍ଥମାନଙ୍କରେ ଦିଆଯାଇଥିବା ଏହିସବୁ ବର୍ଣ୍ଣନା ନିମ୍ନୋକ୍ତ କାରଣଗୁଡିକ ଦୃଷ୍ଟିରୁ ଗ୍ରହଣ କରିହୁଏ ନାହିଁ ।

ଇତିହାସରେ ପ୍ରଥମ ଯଯାତିଙ୍କର ସମୟକାଳ (ଖ୍ରୀଷ୍ଟାବ୍ଦ ୯୨୫-୯୫୫)ବୋଲି ଧରି ନିଆଯାଇଅଛି । ମାଦଳାପାଞ୍ଜିରେ ଉଲ୍ଲିଖିତ ବିବରଣୀ ଅନୁସାରେ ଯଯାତିଙ୍କର ୧୪୪ବର୍ଷ ପୂର୍ବରୁ ରକ୍ତବାହୁର ଆଗମନ ବାର୍ତ୍ତା ପାଇ ଶ୍ରୀ ପର୍ମେଶ୍ୱରଙ୍କୁ ସୋନପୁର ସ୍ଥାନାନ୍ତରିତ କରାଯାଇଥିଲା । ପ୍ରଥମ ଯଯାତିଙ୍କର ୧୪୪ ବର୍ଷ ପୂର୍ବରୁ ଅର୍ଥାତ୍ ଆନୁମାନିକ ଖ୍ରୀଷ୍ଟୀୟ ୭୮୧ରେ ରକ୍ତବାହୁର ଆଗମନ ଭୟରେ ଶ୍ରୀପର୍ମେଶ୍ୱରଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା । ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ମାଦଳାପାଞ୍ଜିର ରଚନାକାଳ ଯାହା ହେଉନା କାହିଁକି ଏହା ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀରେ ଘଟିଥିବା ଏକ ଘଟଣାର ବିବରଣୀ ଦେଇଅଛି, ମାତ୍ର ଏହାର ପରବର୍ତ୍ତୀ ଅର୍ଥାତ୍ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ରଚିତ ସ୍କନ୍ଦ ପୁରାଣରେ ଏପରି କୌଣସି ଘଟଣାର ଉଲ୍ଲେଖ ନାହିଁ । ଅର୍ଥାତ୍ ସ୍କନ୍ଦ ପୁରାଣ ପରବର୍ତ୍ତୀ କାଳରେ ରଚିତ ହୋଇଥିଲେ ମଧ୍ୟ ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ମାଦଳାପାଞ୍ଜିରେ ଦିଆଯାଇଥିବା ତଥ୍ୟଗୁଡ଼ିକୁ ସ୍ୱୀକାର କରେ ନାହିଁ। ଅପରପକ୍ଷେ ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ଯେ ପୁରୁଷୋତ୍ତମ କ୍ଷେତ୍ରର ଅଧିଷ୍ଠିତ ଦେବତା ଜଗନ୍ନାଥ ନୁହଁନ୍ତି, ବରଂ ନୀଳମାଧବ ରହିଆସିଥିଲେ । ନୀଳମାଧବ ଅନ୍ତର୍ଦ୍ଧାନ ହେବାରୁ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଜଗନ୍ନାଥ ତାହାଙ୍କ ସ୍ଥାନ ନେଇଥିଲେ । ଏଠାରେ ଲକ୍ଷ୍ୟ କରିବା କଥା ସ୍କନ୍ଦପୁରାଣ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଦଶାଶ୍ୱମେଧ ଯଜ୍ଞ କରି ଦାରୁରେ ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣ ପୂର୍ବକ ପୁରୁଷୋତ୍ତମ କ୍ଷେତ୍ରରେ ତାଙ୍କୁ ପ୍ରତିଷ୍ଠା କରିଥିଲେ । ଯଦି ଏ କଥାକୁ ଗ୍ରହଣ




କରାଯାଏ ତେବେ ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ମାଦଳାପାଞ୍ଜିରେ ଦିଆଯାଇଥିବା ତଥ୍ୟଗୁଡ଼ିକୁ କିପରି ବିଶ୍ୱାସ କରାଯାଇପାରିବ ? ଅପରପକ୍ଷେ ମାଦଳାପାଞ୍ଜିର ରଚନାକାଳ ଷୋଡଶ ଶତାବ୍ଦୀର ଶେଷ ଭାଗରେ ଆରମ୍ଭ ହୋଇଥିଲା ବୋଲି ଐତିହାସିକମାନେ ନିର୍ଣ୍ଣୟ କରିଥାଆନ୍ତି । ସେହିପରି ସ୍କନ୍ଦପୁରାଣର ରଚନାକାଳ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ ବୋଲି କୁହାଯାଇଛି, ମାତ୍ର ଆଶ୍ଚର୍ଯ୍ୟର କଥା ମାଦଳାପାଞ୍ଜି ଲେଖିଲାବେଳେ ପଞ୍ଜିକାର ସ୍କନ୍ଦପୁରାଣରେ ବର୍ଣ୍ଣିତ କୌଣସି ଘଟଣା ତାହାଙ୍କ ପାଞ୍ଜିରେ ଉଲ୍ଲେଖ କରିନାହାନ୍ତି । ଅନ୍ୟଭାଷାରେ କହିଲେ ମାଦଳାପାଞ୍ଜି ସ୍କନ୍ଦପୁରାଣ ବର୍ଣ୍ଣିତ ଘଟଣାଗୁଡ଼ିକୁ ଗୁରୁତ୍ୱ ଦେଇନାହିଁ ବା ସ୍ୱୀକାର କରିନାହିଁ । ଏହା କିପରି ସମ୍ଭବପର ହୋଇପାରେ ?

ରକ୍ତବାହୁ ସମ୍ପର୍କିତ ଘଟଣାଟି ଆଧୁନିକ ଐତିହାସିକମାନଙ୍କ ଦ୍ୱାରା ଇତିହାସରେ ସମ୍ପୂର୍ଣ୍ଣ ସ୍ୱୀକୃତି ଲାଭ କରିପାରିନାହିଁ । ଅନେକ ଐତିହାସିକ ଏହାକୁ ଆଦୌ ଗୁରୁତ୍ୱ ଦେଇନଥିଲା ବେଳେ ଷ୍ଟାର୍ଲିଙ୍ଗ୍ ଓ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପରି ଐତିହାସିକମାନେ ରକ୍ତବାହୁକୁ ରାଷ୍ଟ୍ରକୂଟ ରାଜା ତୃତୀୟ ଗୋବିନ୍ଦଙ୍କ ସହିତ ଚିହ୍ନିତ କରାଇବାକୁ ଉଦ୍ୟମ କରିଅଛନ୍ତି । ସେମାନଙ୍କ ମତରେ ଗୋବିନ୍ଦ ତୃତୀୟଙ୍କର ଆକ୍ରମଣ ଭୟରେ ଜଗନ୍ନାଥଙ୍କୁ ପୁରୀରୁ ସ୍ଥାନାନ୍ତରିତ କରାଯାଇ ସୋନପୁର ଗୋପାଳି ଗ୍ରାମରେ ପାତାଳି କରି ରଖାଯାଇଥିଲା । ଏହା ଅବାସ୍ତବ ମନେ ହୁଏ । ଖ୍ରୀଷ୍ଟାବ୍ଦ ୮୭୧ରେ ରାଷ୍ଟ୍ରକୂଟବଂଶୀୟ ରାଜା ପ୍ରଥମ ଅମୋଘବର୍ଷଙ୍କ ପ୍ରଦତ୍ତ ସାଞ୍ଜନ ତାମ୍ରଶାସନରେ ଗୋବିନ୍ଦ ତୃତୀୟଙ୍କ ଦିଗ୍‌ବିଜୟ ସମ୍ପର୍କରେ ପ୍ରଶସ୍ତି ଶ୍ଲୋକର ବର୍ଣ୍ଣନା ରହିଛି । ଏହି ତାମ୍ରଶାସନର ୨୧ଶ୍ଲୋକରେ ଗୋବିନ୍ଦଙ୍କର ଅଭିଯାନ ଯାତ୍ରା ବର୍ଣ୍ଣିତ ହୋଇଛି । ସେତେବେଳେ କୋଶଳର ପାଣ୍ଡୁବଂଶୀ ଚନ୍ଦ୍ରଗୁପ୍ତ (ତୀବରଦେବଙ୍କ ଭ୍ରାତା) ସ୍ୱାଧୀନ ରାଜା ରୂପେ ରହିଥିବାରୁ ତାଙ୍କୁ ଗୋବିନ୍ଦଙ୍କ ପ୍ରତିପକ୍ଷ ବୋଲି ଚିହ୍ନିତ କରାଯାଇଅଛି । ରାଷ୍ଟ୍ରକୂଟ ରାଜା ଗୋବିନ୍ଦ ତୃତୀୟ ତାଙ୍କର ପ୍ରଥମ ଦିଗ୍‌ବିଜୟ ଶେଷକରି ଦ୍ୱିତୀୟ ଅଭିଯାନରେ ମାଳବ, କୋଶଳ, କଳିଙ୍ଗ, ବେଙ୍ଗି, ଡାହାଳ ଏବଂ ଓଡ୍ରକ ଦେଶ ଜୟ କରିଥିଲେ । ଏଠାରେ ଉଲ୍ଲେଖନୀୟ ଯେ ଓଡ୍ରଦେଶର ଅଧିବାସୀମାନଙ୍କୁ ବୌଦ୍ଧମାନେ ବ୍ୟବହାର କରୁଥିବା ପାଲି ଭାଷାରେ ଓଡକ ବୋଲି କୁହାଯାଏ । ସୋନପୁର-କୋଶଳ ଏବଂ ଓଡ୍ରର ଅନ୍ତର୍ଭୁକ୍ତ ହୋଇଥିବା ବେଳେ ପୁରୀ ତୋଷାଳୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥାଇ ଭୌମକରମାନଙ୍କ ଶାସନାଧୀନରେ ଥିଲା । ଗୋବିନ୍ଦ ତୃଥୀୟଙ୍କୁ ଯଦି ରକ୍ତବାହୁ ବୋଲି ଧରାଯାଏ, ତେବେ ବିଚାର କରିବାର କଥା ଯେ ଗୋବିନ୍ଦ ତୃତୀୟ ପୁରୀ ସମେତ ତୋଷାଳୀ ସାମ୍ରାଜ୍ୟ ଆକ୍ରମଣ ବା ଜୟ କରିନଥିଲେ । ସେ ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ସମେତ କୋଶଳ ଏବଂ ଓଡ୍ରକ ବା ଓଡ୍ର ଜୟ କରିଥିଲେ । ତେଣୁ ସେ ଆକ୍ରମଣ ବା ଜୟ କରିନଥିବା ରାଜ୍ୟ ପୁରୀରୁ ଜଗନ୍ନାଥଙ୍କୁ ଆଣି ସୋନପୁରରେ ପାତାଳି କରାଇବାର ଯଥାର୍ଥତା ରହିଲା କେଉଁଠି ? ଅତଏବ ଗୋବିନ୍ଦ ତୃତୀୟଙ୍କୁ ରକ୍ତବାହୁ କହିବା ଠିକ୍ ନୁହେଁ ।

କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କରାଜଙ୍କଠାରୁ ସୋମବଂଶୀମାନଙ୍କ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶା ଓ କଳିଙ୍ଗରୁ ବୌଦ୍ଧ ଧର୍ମର ବିଲୋପ ସାଧନ କରିବା ପାଇଁ ଏକ ସଂଘବଦ୍ଧ ଉଦ୍ୟମ ଧାରାବାହିକ ଭାବେ ଚାଲିଥିବା ବେଳେ ଅନେକ ବୌଦ୍ଧ ଦେବଦେବୀଙ୍କୁ ହିନ୍ଦୁ ଦେବଦେବୀରେ ପରିଣତ କରାଯାଉଥିଲା ଏବଂ ଏହିପରି ଏକ ବାତାବରଣ ମଧ୍ୟରେ ଜଗନ୍ନାଥଙ୍କୁ ସୋନପୁରଠାରେ ପାତାଳି କରି ଲୁଚାଇ ରଖିବାର ଆବଶ୍ୟକତା ଉପୁଜିଥିଲା ବୋଲି ମନେହୁଏ । ଜଗନ୍ନାଥ ବୌଦ୍ଧଧର୍ମ ଅନ୍ତର୍ଗତ ବଜ୍ରଯାନର ପ୍ରବକ୍ତା ଇନ୍ଦ୍ରଭୂତିଙ୍କର ନମସ୍ୟ ଦେବତା ହୋଇଥିବାରୁ ତାହାଙ୍କୁ ବୌଦ୍ଧଧର୍ମ ପର୍ଯ୍ୟାୟଭୁକ୍ତ ଦେବତା ରୂପେ ବିଚାର କରାଯାଏ । ସମ୍ପୂର୍ଣ୍ଣ ଧ୍ୱଂସପ୍ରାପ୍ତି ବା ହିନ୍ଦୁ ଦେବଦେବୀରେ ପରିଣତ ହେବାର ଆଶଙ୍କାରୁ ରକ୍ଷା ପାଇବା ପାଇଁ ସମ୍ଭବତଃ ତାହାଙ୍କୁ ସୋନପୁରରେ ପାତାଳି କରି ଲୁଚାଇ ରଖାଯାଇଥିଲା । ଏହା ବ୍ୟତୀତ ଜଗନ୍ନାଥଙ୍କୁ ଲୁଚାଇ ରଖିବାର ଅନ୍ୟକୌଣସି ଆବଶ୍ୟକତା ଥିବାପରି ମନେହୁଏ ନାହିଁ। କର୍ଣ୍ଣସୁବର୍ଣ୍ଣର ଶଶାଙ୍କରାଜ ତଥା ସୋମବଂଶୀମାନଙ୍କ ସମୟରେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ ଦ୍ୱାରା ବୌଦ୍ଧଧର୍ମର ବିଲୋପ ସାଧନ ପାଇଁ ଯେଉଁ ସଂଘବଦ୍ଧ ଉଦ୍ୟମ ହୋଇଥିଲା, ତାହାକୁ ଲକ୍ଷ୍ୟକରି ସମ୍ଭବତଃ ମାଦଳାପାଞ୍ଜି, ଓଡ୍ରଦେଶ ରାଜବଂଶାବଳୀ ଓ କଟକ ରାଜବଂଶାବଳୀ ପ୍ରଭୃତି ଗ୍ରନ୍ଥମାନଙ୍କରେ ରକ୍ତବାହୁ ଚରିତ୍ରର ସୃଷ୍ଟି ହୋଇଥିଲା । ଶଶାଙ୍କରାଜଙ୍କଠାରୁ ସୋମବଂଶୀମାନଙ୍କ ଆବିର୍ଭାବ ସମୟର ମଧ୍ୟବର୍ତ୍ତୀ କୌଣସି ଏକ ସମୟରେ ଜଗନ୍ନାଥଙ୍କୁ ପାତାଳି କରାଯାଇଥିଲା । ଖ୍ରୀଷ୍ଟାବ୍ଦ ୬୩୯ରେ ଓଡ଼ିଶା ଭ୍ରମଣ କଲାବେଳେ ହୁଏନ୍‌ସାଂ କଙ୍ଗଦ, କଳିଙ୍ଗ, ଓଡ୍ର ଏବଂ କୋଶଳ ଆଦି ରାଜ୍ୟ ଭ୍ରମଣ କରିଥିଲେ । ସେହି ଭ୍ରମଣ ସମୟରେ ଯେଉଁ ବିବରଣୀ ସେ ଲିପିବଦ୍ଧ କରିଛନ୍ତି, ସେଥିରେ ଜଗନ୍ନାଥଙ୍କ ନାମୋଚ୍ଚାରିତ ହୋଇନାହିଁ କି ଜଗନ୍ନାଥ ଧର୍ମ ସମ୍ବନ୍ଧୀୟ କୌଣସି ଉଲ୍ଲେଖ ନାହିଁ । ଶଶାଙ୍କରାଜଙ୍କ ଦ୍ୱାରା ପୂର୍ବ ଭାରତରେ ବୌଦ୍ଧ ଅନୁଷ୍ଠାନଗୁଡ଼ିକ ନଷ୍ଟ ହୋଇଥିବାରୁ କଙ୍ଗୋଦ ପରି ଗୋଟିଏ ପଡୋଶୀ ରାଜ୍ୟରେ ଶୈବ ଧର୍ମାବଲମ୍ବୀ ମାଧବରାଜ ଓ ତାଙ୍କ ପୁତ୍ର ମଧ୍ୟମରାଜଙ୍କ ହସ୍ତରେ ଯେପରି କୌଣସି ଧର୍ମବିଦ୍ୱେଷ ନଘଟେ, ତାହା ଲକ୍ଷ୍ୟକରି





ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ସେଠାରୁ ସୁରକ୍ଷିତ କରିବା ବୋଧହୁଏ ହୁଏନ୍‌ସାଙ୍କର ମୂଳ ଲକ୍ଷ୍ୟ ଥିଲା । ଶୈଳୋଦ୍ଭବବଂଶୀୟ ଦ୍ୱିତୀୟ ମାଧବରାଜ (ଖ୍ରୀଷ୍ଟାବ୍ଦ ୬୨୦-୬୭୦) ଶଶାଙ୍କରାଜଙ୍କ ଅଧୀନରେ ଜଣେ ମହାସାମନ୍ତ ଥିଲେ । ଦ୍ୱିତୀୟ ମାଧବରାଜଙ୍କ ରାଜତ୍ୱ କାଳରେ ହୁଏନ୍‌ସାଂ କଙ୍ଗୋଦ ରାଜ୍ୟ ଭ୍ରମଣ କରିଥିଲେ । କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କରାଜ ପ୍ରଚଣ୍ଡ ବୌଦ୍ଧଧର୍ମ ବିଦ୍ୱେଷୀ ଥିଲେ । ତେଣୁ ବୌଦ୍ଧଧର୍ମ ପ୍ରତି ବିଦ୍ୱେଷ ଭାବ ରଖିଥିବା ଶଶାଙ୍କରାଜଙ୍କୁ ହିଁ ରକ୍ତବାହୁ ବୋଲି ଚିହ୍ନିତ କରାଯାଇପାରେ ।

ପୁରୀରେ ଜଗନ୍ନାଥଙ୍କର ଯେ ପୁରୁଣା ମନ୍ଦିର ଥିଲା, ତାହା କାଳକ୍ରମେ ଜୀର୍ଣ୍ଣ ହୋଇଯାଇଥିବାରୁ ଯଯାତିକେଶରୀ ଏକ ନୂତନ ମନ୍ଦିର ତୋଳାଇଥିଲେ ବୋଲି କଥିତ ଅଛି, ମାତ୍ର ଏହି ତଥାକଥିତ ମନ୍ଦିରଟି ଯେ ଜଗନ୍ନାଥଙ୍କ ପାଇଁ ଉଦ୍ଦିଷ୍ଟ ଥିଲା, ଏହାର କୌଣସି ପ୍ରମାଣ ଇତିହାସରେ ନାହିଁ । କେତେକ ପୁରାଣରୁ ଜଣାଯାଏ ଯେ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥ ଉପାସନା ପ୍ରଚଳନ କରାଯିବା ପୂର୍ବରୁ ନୀଳମାଧବଙ୍କ ଉପାସନା ପ୍ରଚଳିତ ଥିଲା । କୌଣସି ଏକ ରହସ୍ୟମୟ ପରିସ୍ଥିତିରେ ଏହି ନୀଳମାଧବ ବିଗ୍ରହଟି ଅପସାରିତ ବା ଅନ୍ତର୍ଦ୍ଧାନ ହେବାରୁ ଜଗନ୍ନାଥଙ୍କ ଉପାସନା ସେଠାରେ ସ୍ଥାନ ପାଇଲା । ଓଡ୍ରଦେଶ ଓ କଟକ ରାଜବଂଶାବଳୀର ବର୍ଣ୍ଣନାନୁସାରେ ପୁରୀରେ ଗୋବିନ୍ଦ ଦ୍ୱାଦଶୀ ବୁଡ ଦେବାପାଇଁ ଯାଇ ଯଯାତି ଯେଉଁ ଭଗ୍ନପ୍ରାୟ ଶୂନ୍ୟ ମନ୍ଦିରଟି ଦେଖିଥିଲେ, ତାହା ସମ୍ଭବତଃ ନୀଳମାଧବଙ୍କ ମନ୍ଦିର । ଡକ୍ଟର ମହତାବ ବୋଧହୁଏ ନୀଳମାଧବଙ୍କର ଏହି ଶୂନ୍ୟ ମନ୍ଦିର କଥାଟିର ଅବତାରଣା କରିଛନ୍ତି । ଅଧିକାଂଶ ଗବେଷକ ମତ ପ୍ରଦାନ କରିଛନ୍ତି ଯେ ଜଗନ୍ନାଥ ଉପାସନା ପୂର୍ବରୁ ପୁରୀ ତଥା ସମଗ୍ର କଙ୍ଗୋଦ ଓ ପ୍ରାଚୀ ଉପତ୍ୟକାରେ ନୀଳମାଧବଙ୍କର ଉପାସନା ପ୍ରଚଳିତ ଥିଲା । ନୀଳମାଧବ ଅନ୍ତର୍ଦ୍ଧାନ ହେବାରୁ ସେହି ସ୍ଥାନରେ ଜଗନ୍ନାଥଙ୍କର ଉପାସନା ପ୍ରଚଳିତ ହେଲା । ଏଥିପାଇଁ ଅନେକ ଜଗନ୍ନାଥଙ୍କର ମୂଳ ସ୍ୱରୂପ ନୀଳମାଧବ ଥିଲେ ବୋଲି କହିଥାନ୍ତି । ଏ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଦାସ ଉଲ୍ଲେଖ କରିଛନ୍ତି, 'ଆଦ୍ୟରେ ଏହି ନୀଳ ପ୍ରସ୍ତର ରୂପରେ ଜଗନ୍ନାଥ କେବଳ ନୀଳମାଧବ ନାମରେ ପରିଚିତ ହୋଇଥିଲେ ।' ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଏହି ମତକୁ ସମର୍ଥନ କରି ଉଲ୍ଲେଖ କରିଛନ୍ତି, 'ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ଆବିର୍ଭାବ ପୂର୍ବରୁ ନୀଳମାଧବ ହିଁ ପୀଠଦେବତା ବା ପ୍ରଧାନ ଦେବତା ରୂପେ ପୂଜା ପାଉଥିଲେ । ବଳଭଦ୍ରାଦି ମୂର୍ତ୍ତିମାନଙ୍କର ଆବିର୍ଭାବ ପୂର୍ବରୁ ସ୍ୱୟଂ ନାରାୟଣ ନୀଳମାଧବ ରୂପରେ ପୂଜା ପାଉଥିଲେ ଏବଂ ପ୍ରଳୟ କାଳରେ ମଧ୍ୟ ତାଙ୍କର ଅସ୍ତିତ୍ୱ ଥିଲା । ଏଥିରୁ ଜଣାଯାଉଛି ଯେ ସୃଷ୍ଟିର ଆଦ୍ୟରୁ ନାରାୟଣ ଆରାଧନାର ଧାରା ଏହି ନୀଳଗିରିରେ ପ୍ରବାହିତ ହୋଇଚାଲିଛି । ନୀଳମାଧବଙ୍କ ଅନ୍ତର୍ଦ୍ଧାନ ଓ ଜଗନ୍ନାଥଙ୍କ ଆବିର୍ଭାବ ଭିତରେ ଅବଶ୍ୟ କିଛି ସମୟ ଏହି ଧାରା ଖଣ୍ଡିତ ହୋଇଯାଇଥିଲା । ବର୍ତ୍ତମାନ ଜଗନ୍ନାଥ ଯେଉଁଠାରେ ଅଛନ୍ତି, ଠିକ୍ ସେହି ସ୍ଥାନରେ ନୀଳମାଧବଙ୍କ ଆସ୍ଥାନ ଥିଲା ବୋଲି ମନେହୁଏ । ପୁରୀରୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ଓ ଜଗନ୍ନାଥଙ୍କର ଆବିର୍ଭାବ ବିଷୟରେ କହିଲାବେଳେ ପୁରୀକୁ ଆସିବା ପୂର୍ବରୁ ଜଗନ୍ନାଥ କେଉଁଠାରେ ଥିଲେ ତା'ର କୌଣସି ସୂଚନା ସୂର୍ଯ୍ୟନାରାୟଣ ଦାସ ଦେଇନାହାଁନ୍ତି, ମାତ୍ର ପଣ୍ଡିତ ନୀଳକଣ୍ଠ ଦାସ ସେ ସମ୍ପର୍କରେ ଆଲୋଚନା କରି କହିଅଛନ୍ତି ଯେ ଖ୍ରୀଷ୍ଟୀୟ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀ ବେଳକୁ କେନ୍ଦୁଝର, ସମ୍ବଲପୁର, ସୋନପୁର, ପାଟଣା, ଘମୁସର, ମୟୂରଭଞ୍ଜ ଓ ଅନ୍ୟାନ୍ୟ ସୀମାନ୍ତ ଅଞ୍ଚଳକୁ 'ଉଡ୍ଡୀୟାନ' କୁହାଯାଉଥିଲା । ଏଠାରେ ଶବରମାନେ ହିଁ ବହୁ ସଂଖ୍ୟାରେ ବସତି ସ୍ଥାପନ କରିଥିଲେ । ସେମାନେ ଆବହମାନ କାଳରୁ ନିମ୍ବକାଠ ନିର୍ମିତ ଶବରୀ ନାରାୟଣ ମୂର୍ତ୍ତି ଉପାସନା କରିଆସୁଥିଲେ । ବୋଧହୁଏ ଏହିମାନେ ପୁରୀ ଜଗନ୍ନାଥଙ୍କୁ ନିମ୍ବକାଠରେ ଗଢି ନିଜର କରି ରଖିଥିଲେ । ଏହିସବୁ କଥାର ବିଚାର ବିଶ୍ଳେଷଣ କଲେ ଏପରି ମନେହୁଏ ଯେ ଯଯାତିଙ୍କର ଆବିର୍ଭାବ ପୂର୍ବରୁ ପୁରୀରେ ନୀଳମାଧବଙ୍କର ଉପାସନା ପ୍ରଚଳିତ ଥିଲା । କୌଣସି ଏକ ପରିସ୍ଥିତିରେ ନୀଳମାଧବ ଅନ୍ତର୍ହିତ ହେବାରୁ ଯଯାତି ଜଗନ୍ନାଥଙ୍କୁ ସୋନପୁରରୁ ଆଣି ପୁରୀରେ ଅବସ୍ଥାପିତ କରାଇଥିଲେ । ସ୍କନ୍ଦପୁରାଣ ଉତ୍କଳଖଣ୍ଡରେ ଆମେ ଏହି ଘଟଣାଟିର ପରୋକ୍ଷ ସମର୍ଥନ ପାଇଥାଉ । ସ୍କନ୍ଦପୁରାଣ ଉତ୍କଳଖଣ୍ଡର ବର୍ଣ୍ଣନାନୁଯାୟୀ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ପୂର୍ବରୁ ବା ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ବାର୍ତ୍ତା ପାଇ ପୁରୁଷୋତ୍ତମ କ୍ଷେତ୍ର ପୁରୀରୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ସମୁଦ୍ରରେ ଭାସି ଆସିଥିବା ଏକ ଦାରୁକୁ ଆଣି ତହିଁରେ ଜଗନ୍ନାଥଙ୍କ ମୂର୍ତ୍ତି ତିଆରି କରି ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କ ସ୍ଥାନରେ ପୁରୀରେ ଅବସ୍ଥାପିତ କରାଇଥିଲେ । ସ୍କନ୍ଦପୁରାଣରେ ବର୍ଣ୍ଣିତ ଏହି ଘଟଣାଟିର ଓଡ୍ରଦେଶ ଓ କଟକ ରାଜବଂଶାବଳୀର ବର୍ଣ୍ଣନା ସହିତ ଏକ ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ମାଦଳାପାଞ୍ଜିରେ ରକ୍ତବାହୁର ଆଗମନ ବାର୍ତ୍ତା ପାଇ ଜଗନ୍ନାଥଙ୍କୁ ପାତାଳି କରାଯାଇଥିଲା ବେଳେ ସ୍କନ୍ଦପୁରାଣ ବର୍ଣ୍ଣନାନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ବାର୍ତ୍ତା ପାଇ ନୀଳମାଧବଙ୍କୁ ପାତାଳି କରାଯାଇଥିଲା । ଉପରୋକ୍ତ ଦୁଇଟି ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ଯଯାତି ମଧ୍ୟ ଜଗନ୍ନାଥଙ୍କର ନବକଳେବର କରାଇ ପୁରୀରେ ପ୍ରତିଷ୍ଠା




କରିଥିଲେ । ଏହି ସମସ୍ତ ବିଷୟ ଦୃଷ୍ଟିକୁ ନେଲେ ନିଶ୍ଚିତଭାବେ ପ୍ରତୀୟମାନ ହୁଏ ଯେ ସ୍କନ୍ଦପୁରାଣ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଯଯାତିଙ୍କ ଭିନ୍ନ ଅନ୍ୟ କେହି ହୋଇନପାରନ୍ତି । ପୁରୀରେ ନୀଳମାଧବଙ୍କ ଉପାସନା ଓ ଜଗନ୍ନାଥଙ୍କ ଉପାସନାର ପ୍ରତିଷ୍ଠା ଓ ପ୍ରଚଳନ ସମ୍ପର୍କରେ ଯେଉଁ ବିବରଣୀମାନ ମାଦଳାପାଞ୍ଜି, ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ସ୍କନ୍ଦପୁରାଣ ଉତ୍କଳଖଣ୍ଡରୁ ମିଳିଥାଏ, ତାହାକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ତୋଷାଳୀ ଓ ଉତ୍କଳ ପରି ଉପକୂଳବର୍ତ୍ତୀ ଅଞ୍ଚଳଗୁଡିକରେ ମାଧବ ବା ନୀଳମାଧବ ପୂଜା ପାଉଥିଲା ବେଳେ ଜଗନ୍ନାଥ ଓଡ୍ରର ପାର୍ବତ୍ୟ ଅଞ୍ଚଳରେ ପୂଜା ପାଉଥିଲେ । ଅର୍ଥାତ୍ ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ମାଧବ ବା ନୀଳମାଧବ ମୁଖ୍ୟ ଆରାଧ୍ୟ ଦେବତା ହୋଇଥିବା ବେଳେ ଜଗନ୍ନାଥ ଓଡ୍ରଭୂମିର ପାର୍ବତ୍ୟ ଅଞ୍ଚଳରେ ମୁଖ୍ୟ ଆରାଧ୍ୟ ଦେବତା ଥିଲେ । ରାଜନୀତିକ ଆବଶ୍ୟକତା ଦୃଷ୍ଟିରୁ କୋଶଳ, ଓଡ୍ର, ତୋଷାଳୀ, ଉତ୍କଳ ଓ କଳିଙ୍ଗ ଆଦି ରାଜ୍ୟମାନଙ୍କ ମଧ୍ୟରେ ଧର୍ମଗତ ଐକ୍ୟ ପ୍ରତିଷ୍ଠା କରି ତାହାରି ମାଧ୍ୟମରେ ରାଜନୀତିକ ଐକ୍ୟ ପ୍ରତିଷ୍ଠା କରିବାର ଆବଶ୍ୟକତା ସୋମବଂଶୀ ରାଜାମାନଙ୍କର ଥିଲା । ସେଇଥିପାଇଁ ଉପକୂଳବର୍ତ୍ତୀ ମାଧବ ବା ନୀଳମାଧବଙ୍କର ଉପାସନା ଓ ପାର୍ବତ୍ୟ ଅଞ୍ଚଳରେ ପ୍ରାଧାନ୍ୟ ଲାଭ କରିଥିବା ଜଗନ୍ନାଥ ଉପାସନା ମଧ୍ୟରେ ଏକ ସାମ୍ୟ ଆଣିବା ପାଇଁ ସ୍କନ୍ଦପୁରାଣ ଉତ୍କଳଖଣ୍ଡ, ମାଦଳାପାଞ୍ଜି, ଓଡ୍ରଦେଶ ଓ କଟକ ରାଜବଂଶାବଳୀ ଆଦି ଗ୍ରନ୍ଥମାନଙ୍କରେ ବିଭିନ୍ନ କପୋଳକଳ୍ପିତ ଉପାଖ୍ୟାନର ଅବତାରଣା କରାଯାଇ ନୀଳମାଧବ ଓ ଜଗନ୍ନାଥଙ୍କ ଉପାସନା ଏକ ଓ ଅଭିନ୍ନ ବୋଲି ପ୍ରତିପାଦନ କରାଯାଇଛି, ମାତ୍ର ବାସ୍ତବରେ ତାହା ନୁହେଁ । ବାସ୍ତବ କଥା ହେଉଛି ଯଯାତିଙ୍କ ଆଗମନ ପୂର୍ବରୁ ପୁରୀରେ ନୀଳମାଧବଙ୍କ ଉପାସନା ଚାଲିଥିଲା ଓ ସମ୍ଭବତଃ ନୀଳମାଧବଙ୍କର ଏକ ମନ୍ଦିର ସେଠି ରହିଥିଲା । ଯଯାତି ସେହିଠାରେ ହିଁ ଜଗନ୍ନାଥଙ୍କ ପ୍ରତିଷ୍ଠା ଓ ପୂଜା ଉପାସନାର ପ୍ରଚଳନ କରାଇଥିଲେ । ସେଇଥିପାଇଁ ଅଦ୍ୟାବଧି ପୁରୀ ଶ୍ରୀମନ୍ଦିର ରତ୍ନବେଦୀ ଉପରେ ଉଭୟ ନୀଳମାଧବ ଓ ଜଗନ୍ନାଥଙ୍କ ପୂଜା ଉପାସନା ହେବା ସଙ୍ଗେ ସଙ୍ଗେ ନୀଳମାଧବ ଥାନପତି ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି ।

ଆଗରୁ କୁହାଯାଇଅଛି ଯେ ଯଯାତିଙ୍କ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ବା ଜଗନ୍ନାଥ କ୍ଷେତ୍ର ଭାବରେ ପୁରୀର କୌଣସି ପରିଚୟ ପ୍ରସିଦ୍ଧି ବା ପ୍ରାଧାନ୍ୟ ନଥିଲା । ଏ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ପ୍ରଫେସର ପଠାଣି ପଟ୍ଟନାୟକ ଉଲ୍ଲେଖ କରିଅଛନ୍ତି, 'ଶହ ଶହ ବର୍ଷ ବ୍ୟାପୀ ଓଡ଼ିଶାରେ ଉଲ୍ଲିଖିତ ତମ୍ବାପଟାଲେଖ ଏବଂ ଶିଳାଲେଖଗୁଡିକ ଯାହା ଆଜି ଆବିଷ୍କୃତ ହୋଇ ପାଠ କରାଯାଇଛି, ସେଥିରେ ଜଗନ୍ନାଥ କିମ୍ବା ପୁରୀ ପୀଠର ନାମ ପର୍ଯ୍ୟନ୍ତ ସ୍ଥାନ ପାଇନାହିଁ । ଅବଶ୍ୟ ନାମ ନାହିଁ ବୋଲି ପୁରୀ ପୀଠ ନଥିଲା ବା ଜଗନ୍ନାଥଙ୍କ ଐତିହାସିକ ସ୍ଥିତି ନଥିଲା, ଏପରି ଭାବିବାର କୌଣସି କାରଣ ନାହିଁ । ଏପରି ହୁଏତ ସମ୍ଭବ ଯେ ବହୁକାଳ ପର୍ଯ୍ୟନ୍ତ ପୁରୀ କ୍ଷେତ୍ର ଓ ଶ୍ରୀଜଗନ୍ନାଥ ହିନ୍ଦୁମାନଙ୍କର ଧର୍ମ ଜଗତରେ ବିଖ୍ୟାତ ହୋଇନଥିଲେ । ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ମତର ପରିପୋଷଣ କରନ୍ତି । ପୁରୁଷୋତ୍ତମ ନୃସିଂହ ତାହାଙ୍କ ଇତିହାସରେ ତାଙ୍କର ଆସ୍ଥାନ ପରିବର୍ତ୍ତନ କରିଅଛନ୍ତି । ଯେତେବେଳେ ଯେଉଁ ସ୍ଥାନରେ ନୃସିଂହ ଅବସ୍ଥାନ କରିଥାନ୍ତି, ସେହିସ୍ଥାନଗୁଡ଼ିକୁ ପୁରୁଷୋତ୍ତମ ବୋଲି କୁହାଯାଏ । ଯଯାତିଙ୍କ ପୂର୍ବରୁ ଜଗନ୍ନାଥଙ୍କର ଆସ୍ଥାନ କେବେ କୌଣସି ସମୟରେ ପୁରୀରେ ନଥିଲା ବା ପୁରୀ ପୁରୁଷୋତ୍ତମ କ୍ଷେତ୍ର ଭାବରେ ପରିଚିତ ନଥିଲା । ସେଇଥିପାଇଁ ମାଦଳାପାଞ୍ଜି, ଓଡ୍ରଦେଶ ଓ କଟକ ରାଜବଂଶାବଳୀଗୁଡିକରେ ଆମେ ପୁରୀ ଶବ୍ଦର ଉଲ୍ଲେଖ ପାଇନଥାଉ । ତା' ପରିବର୍ତ୍ତେ ସେହିସବୁ ଗ୍ରନ୍ଥଗୁଡ଼ିକରେ ବରଂ 'ପୁରୁଷୋତ୍ତମ' ଶବ୍ଦର ବ୍ୟବହାର ବହୁଳ ଭାବରେ ହୋଇଛି । ଏପରିକି ଐତିହାସିକ ଜଗବନ୍ଧୁ ସିଂହ ତାହାଙ୍କ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ଏ ସମ୍ପର୍କରେ ଆଲୋଚନା କଲାବେଳେ ଉଲ୍ଲେଖ କରିଅଛନ୍ତି ଯେ ରକ୍ତବାହୁ ଜାହାଜରେ ସମୁଦ୍ର ପଥରେ ଆସି କନିକାଠାରେ ବୋଇତରୁ ଓହ୍ଲାଇ ପୁରୁଷୋତ୍ତମରେ ପ୍ରବେଶ ହେଲା । ଏହାର ଅର୍ଥ ଏପରି ହୁଏ ଯେ ପୁରୁଷୋତ୍ତମ କ୍ଷେତ୍ରଟି କନିକା ରାଜ୍ୟର ଅନ୍ତର୍ଗତ ଥିଲା, ମାତ୍ର ଇତିହାସର କୌଣସି ସମୟରେ କନିକା ପୁରୁଷୋତ୍ତମ କ୍ଷେତ୍ର ରୂପେ ପରିଚିତ ହେଉନଥିଲା । କଟକ ରାଜବଂଶାବଳୀରେ ଯେଉଁ ବିବରଣୀ ଦିଆଯାଇଅଛି, ସେଥିରୁ ଜଣାଯାଏ ଯେ ରକ୍ତବାହୁ ସମୁଦ୍ର ପଥରେ ଆସି କନକ ରାଜ୍ୟର ତଟରେ ଅବତରଣ କରିଥିଲା । ସେହିପରି ଓଡ୍ରଦେଶ ରାଜବଂଶାବଳୀର ମୂଳ ସଂସ୍କୃତ ଲେଖାରେ ବର୍ଣ୍ଣିତ ହୋଇଛି ଯେ ରକ୍ତବାହୁ ସମୁଦ୍ର ବାଟରେ ଯାଇ କନକାକ୍ଷ ରାଜ୍ୟର ପ୍ରାନ୍ତ ସମୁଦ୍ରରେ ପହଁଞ୍ଚି ଥିଲା । ଏ ସମ୍ପର୍କରେ କଟକ ଏବଂ ଓଡ୍ରଦେଶ ରାଜବଂଶାବଳୀ ଉଭୟ ଗ୍ରନ୍ଥରେ ଦିଆଯାଇଥିବା ବିବରଣ ସମାନ । ଓଡ୍ରଦେଶ ରାଜବଂଶାବଳୀରେ ଯେଉଁ ରାଜବଂଶର ବିବରଣୀ ଦିଆଯାଇଅଛି ସେମାନେ ସମସ୍ତେ ଓଡ୍ରଦେଶରେ ରାଜତ୍ୱ କରୁଥିଲେ ବୋଲି ଡକ୍ଟର କାହ୍ନୁଚରଣ ମିଶ୍ର 'The Cult of Jagannath' ଗ୍ରନ୍ଥର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି । ଏଠାରେ ଉଲ୍ଲେଖନୀୟ ଯେ ଓଡ୍ରଦେଶର ପ୍ରାଚୀନ ତଥା ପାରମ୍ପରିକ ସୀମାରେ କୌଣସି





ସମୟରେ ସମୁଦ୍ର ନଥିଲା ବା ନାହିଁ । ଅପରପକ୍ଷେ ପ୍ରାଚୀନ ଓଡ଼ିଶାର ମାନଚିତ୍ର ଦେଖିଲେ ତହିଁରେ କନକ ନାମରେ କୌଣସି ରାଜ୍ୟ ନାହିଁ ବୋଲି ଜଣାଯାଏ । ଏସବୁ ଦୃଷ୍ଟିରୁ ବିଚାର କଲେ ମନେହୁଏ ଯେ କଟକ ଏବଂ ଓଡ୍ରଦେଶ ରାଜବଂଶାବଳୀ ତଥା ପ୍ରାଚୀନ ଉତ୍କଳ ଗ୍ରନ୍ଥରେ ଦିଆଯାଇଥିବା ବିବରଣୀମାନ ଯଦି ସତ୍ୟାଶ୍ରିତ ହୋଇଥାଏ, ତେବେ ଧରି ନେବାକୁ ହେବ ଯେ କନକ ରାଜ୍ୟଟି ଅନ୍ୟକୌଣସି ରାଜ୍ୟର ନାମ ବିଶେଷ ଅଟେ । ଏ ଦୃଷ୍ଟିରୁ ସୋନପୁର ବା ସୁବର୍ଣ୍ଣପୁର ରାଜ୍ୟ ସର୍ବପ୍ରଥମେ ଆମ ଦୃଷ୍ଟିକୁ ଆସେ । ମହାନଦୀ ଓ ତେଲ ନଦୀର ସଙ୍ଗମ ସ୍ଥଳ ନିକଟରେ ଅବସ୍ଥିତ ଏହି ସୋନପୁର ବା ସୁବର୍ଣ୍ଣପୁର ରାଜ୍ୟ କନକ ଶବ୍ଦ ସହିତ ସାମଞ୍ଜସ୍ୟ ରକ୍ଷା କରୁଅଛି । ଏକ ଭିନ୍ନ ପରିପ୍ରେକ୍ଷୀରେ ମହାନଦୀ ଓ ତେଲ ନଦୀର ଏହି ସଙ୍ଗମସ୍ଥଳଟିକୁ 'ନଦନଦୀ ପତି' ବା ସାଗରଭାବେ ଗ୍ରହଣ କରିବାକୁ ଡକ୍ଟର ନବୀନ କୁମାର ସାହୁ କୁଣ୍ଠା ପ୍ରକାଶ କରିନାହାଁନ୍ତି । ଏହି ଦୃଷ୍ଟିରୁ କଟକ ଏବଂ ଓଡ୍ରଦେଶ ରାଜବଂଶାବଳୀରେ ବର୍ଣ୍ଣିତ କନକ ବା କନକାକ୍ଷର ରାଜ୍ୟଟିକୁ ସୋନପୁର ବା ସୁବର୍ଣ୍ଣପୁର ବୋଲି ଗ୍ରହଣ କରିନିଆଯାଇପାରେ ।

ସୋନପୁରରେ ଜଗନ୍ନାଥଙ୍କୁ ପାତାଳି କରିବା ଓ ଯଯାତିଙ୍କ କର୍ତ୍ତୃକ ପୁରୀରେ ସ୍ଥାପନ କରିବା ଘଟଣାଗୁଡିକର ଅବତାରଣା କାହିଁକି ଓ କେଉଁ ଉଦ୍ଦେଶ୍ୟରେ କରାଗଲା ? ଏଠାରେ ଉଲ୍ଲେଖନୀୟ ଯେ ଜଗନ୍ନାଥଙ୍କ ନାମୋଚ୍ଚାରଣ ପ୍ରଥମଥର ପାଇଁ ଖ୍ରୀଷ୍ଟୀୟ ୭୧୭ରେ ଇନ୍ଦ୍ରଭୂତିଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରେ କରାଯାଇଛି । ଇନ୍ଦ୍ରଭୂତି ଉଡୀୟାନର ରାଜା ଥିଲେ ବୋଲି ଜଣାଯାଏ । ଏହିପରି ଏକ ଜନଶ୍ରୁତିକୁ ଆଧାରକରି ସମ୍ଭବତଃ ସୋନପୁରର ଇତିହାସ ଲେଖକ ଶ୍ରୀସଦାନନ୍ଦ ଅଗ୍ରୱାଲା ଦର୍ଶାଇଛନ୍ତି ଯେ ସୋନପୁର ନିକଟସ୍ଥ କୋଟ ସମଲାଇ ପାହାଡର ଏକ ଗୁମ୍ଫାରେ ଜଗନ୍ନାଥଙ୍କର ପ୍ରାଚୀନ ପୂଜା ସମ୍ପର୍କୀୟ ପ୍ରନ୍ତତାତ୍ତ୍ୱିକ ଅବଶେଷ ରହିଛି । ସମ୍ଭବତଃ ଏହାଥିଲା ଇନ୍ଦ୍ରଭୂତିଙ୍କ ସାଧନା ପୀଠ ଏବଂ ପରବର୍ତ୍ତୀ କାଳରେ ଏହି ଜଗନ୍ନାଥ ପୁରୀଠାରେ ଅଧିଷ୍ଠିତ ହେଲେ । ପଣ୍ଡିତ ନୀଳକଣ୍ଠ ଦାସ ଏଭଳି ମନ୍ତବ୍ୟ ଦେଲାବେଳେ ସମ୍ଭବତଃ ଉପରୋକ୍ତ ଜନଶ୍ରୁତି ସମ୍ପର୍କରେ ସଚେତନ ଥିଲେ । ସେହିପରି ପାଞ୍ଜିକାର ମାଦଳାପାଞ୍ଜି ଲେଖିଲାବେଳେ ଜନଶ୍ରୁତିରୁ ତଥ୍ୟ ଆହରଣ କରି ଏଭଳି ଉକ୍ତିର ଅବତାରଣା କରିଥିବା ସମ୍ଭବପର ।

ଏଠାରେ ଉଲ୍ଲେଖନୀୟ ଏହି ଯେ ଦକ୍ଷିଣ କୋଶଳ ତଥା ପଶ୍ଚିମ ଓଡ଼ିଶାର ବହୁ ଅଞ୍ଚଳରେ ପୁରୀ ଜଗନ୍ନାଥଙ୍କୁ ନିଜର କରି ଜନଶ୍ରୁତିମାନ ଗଢି ଉଠିଛି । ଏହି ପ୍ରସଙ୍ଗରେ କାଶୀନାଥ ମିଶ୍ର ମତ ପ୍ରଦାନ କରି କହିଛନ୍ତି ଯେ ଶୌରୀ ନାରାୟଣ ବା ସେଓ ନାରାୟଣ ମହାନଦୀ କୂଳରେ ବର୍ତ୍ତମାନର ମଧ୍ୟପ୍ରଦେଶରେ ଅବସ୍ଥିତ । ଏହିଠାରେ ମହାନଦୀ, ସେରନଦୀ, ଜଙ୍କନଦୀ ଓ ହସଦୁ ନଦୀ ସାଥୀରେ ମିଳିତ ହୁଏ । ସେଓ ନାରାୟଣ ପୁରାତନ ରତ୍ନପୁରର ରାଜଧାନୀ ଥିଲା ଏବଂ ହଇହୟବଂଶୀ ରାଜାମାନେ ଏଠାରେ ରାଜୁତି କରୁଥିଲେ । ଏଠାରେ ଶବରମାନେ ପୁରୀର ଜଗନ୍ନାଥଙ୍କ ପହିଲା ପୂଜକ ହିସାବରେ ନିଜକୁ କହିଥାନ୍ତି । ସେମାନଙ୍କର ଅଧିକାଂଶ ଲୋକକଥା ପୁରୀର ଜଗନ୍ନାଥଙ୍କୁ ନେଇ ପ୍ରଚଳିତ । ଏହି ଶବରମାନେ ଶ୍ରୀଜଗନ୍ନାଥଙ୍କର ବିଗ୍ରହ ପ୍ରଥମେ ପାଇଥିଲେ ବୋଲି କହନ୍ତି । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ମହାକବି ସାରଳାଦାସ ମଧ୍ୟ ଉପରୋକ୍ତ ଘଟଣାଟିକୁ ସମର୍ଥନ କରି ଏକ ଭିନ୍ନ ରୂପରେ ତାହାଙ୍କ ମହାଭାରତ କାବ୍ୟରେ ଉଲ୍ଲେଖ କରିଛନ୍ତି ଯେ ଜଗନ୍ନାଥ ଶବରୀ ନାରାୟଣଠାରୁ ଆସି ପୁରୀରେ ପୂଜା ପାଉଛନ୍ତି । ଉପରୋକ୍ତ ସମସ୍ତ ଘଟଣାରୁ ଏପରି ମନେହୁଏ ଯେ ଜଗନ୍ନାଥ ଆଦ୍ୟରୁ ପଶ୍ଚିମ ଓଡ଼ିଶାର କୌଣସି ଏକ ସ୍ଥାନରେ ପୂଜା ପାଉଥିଲେ । ତାହାଙ୍କୁ ସେଠାରୁ ଅଣାଯାଇ ପୁରୀରେ ସ୍ଥାପନ କରାଯାଇଅଛି । ତଡଉକରଣ, ଦେଉଳକରଣ ଓ ପାଞ୍ଜିଆକରଣ ମାନେ ପୁରୁଷାନୁକ୍ରମେ ତାଳପତ୍ର ପୋଥିରେ ଲେଖି ଯାହା ସଞ୍ଚୟ କରିଥିଲେ, ତାହାକୁ ଭିତ୍ତିକରି ଓଡ୍ରଦେଶ ଓ କଟକ ରାଜବଂଶାବଳୀ ତଥା ମାଦଳା ପାଞ୍ଜି ପ୍ରଭୃତି ଲେଖା ହୋଇଥିବା କଥା ଜଣାପଡେ । ଏଥିରେ ବର୍ଣ୍ଣିତ ତଥ୍ୟମାନ ଲେଖାଗଲାବେଳେ ତଡଉ, ଦେଉଳ ଓ ପାଞ୍ଜିଆକରଣମାନେ ବୋଧହୁଏ ଉପରୋକ୍ତ ଜନଶ୍ରୁତିଗୁଡିକ ସମ୍ପର୍କରେ ସଚେତନ ଥିଲେ ଓ ପାଞ୍ଜି ଲେଖିଲାବେଳେ ଏକ ଭିନ୍ନ ରୂପ ଦେଇ ତାହାର ଅବତାରଣା କରିଛନ୍ତି । ଏଥିରୁ ଏପରି ମନେହୁଏ ଯେ ମାଦଳାପାଞ୍ଜିରେ ଦିଆଯାଇଥିବା ସମସ୍ତ ତଥ୍ୟକୁ ବିଶ୍ୱାସ କରାନଗଲେ ମଧ୍ୟ ଜଗନ୍ନାଥ ଯେ ପଶ୍ଚିମ ଓଡ଼ିଶାର କୌଣସି ଅଞ୍ଚଳରୁ ଆସି ପୁରୀରେ ପ୍ରତିଷ୍ଠିତ ହୋଇ ପୂଜା ପାଇଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଶ୍ରୀଜଗନ୍ନାଥଙ୍କ ଉତ୍ପତ୍ତି ଓ ଉପାସନା କଥା ଆଲୋଚନା କଲାବେଳେ ଡକ୍ଟର ମହତାବ ଉଲ୍ଲେଖ କରିଅଛନ୍ତି ଯେ ଅଶୋକଙ୍କ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ । ପୁରୀରେ ବୌଦ୍ଧସ୍ତୂପ ନିର୍ମିତ ହୋଇଥିଲା ଓ ସେଥିରେ ବୌଦ୍ଧ ତ୍ରିରତ୍ନ ଚିହ୍ନ ସ୍ୱାଭାବିକ କ୍ରମରେ ଅଙ୍କିତ ହୋଇଥିଲା । ଏ ସ୍ତୂପ ଶବରମାନଙ୍କ ଶ୍ରେଷ୍ଠ ପୂଜା ପୀଠ ଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଯେତେବେଳେ ମହାଯାନ ପନ୍ଥା ପ୍ରବର୍ତ୍ତିତ ହୋଇ ବୁଦ୍ଧ ଓ

ବୋଧିସତ୍ତ୍ୱମାନଙ୍କ ପୂଜା ଆରମ୍ଭ ହେଲା, ସେତେବେଳେ ସରଳପ୍ରାଣ ଶବରମାନେ ସ୍ତୂପର ତ୍ରିରତ୍ନ ଚିହ୍ନଟିକୁ ପୂଜା କଲେ । ଏହି ସମୁଦାୟ ଚିହ୍ନ ଅର୍ଥାତ୍ ଚିହ୍ନ ତ୍ରୟକୁ 'ଜଗନ୍ନାଥ' ବୋଲି କୁହାଯାଉଥିଲା । ବୁଦ୍ଧଙ୍କର ଅପରନାମ ଜଗନ୍ନାଥ । ଏହା ପୁରାତନ ପାଲି ସାହିତ୍ୟ ଓ ନେପାଳରୁ ମିଳିଥିବା ତନ୍ତ୍ର ସାହିତ୍ୟରୁ ମଧ୍ୟ ମିଳେ । ଜଗନ୍ନାଥ ନାମର ମୂଳ ହେଉଛି ବୌଦ୍ଧ ।

ଡକ୍ଟର ମହତାବଙ୍କ ଉକ୍ତି ଅନୁସାରେ ଏହି ତଥାକଥିତ ବୌଦ୍ଧପୀଠଟି ଓଡ଼ିଶାର ପୂର୍ବ ଉପକୂଳରେ ନିଶ୍ଚିତଭାବେ ତତ୍କାଳୀନ ସମାଜରେ ପ୍ରସିଦ୍ଧ ଲାଭ କରିଥିବ, ମାତ୍ର ତାହା ହୁଏନ୍‌ସାଂଙ୍କ ଦୃଷ୍ଟି ଆକର୍ଷଣ କରିପାରିନାହିଁ । ଅପରପକ୍ଷେ ନିଶ୍ଚିତ ରୂପେ ଜଣାଯାଏ ଯେ ଓଡ଼ିଶାରେ ଜଗନ୍ନାଥ ନାମକରଣଟି ଖ୍ରୀଷ୍ଟୀୟ ୭୧୭ରେ ପ୍ରଥମଥର ପାଇଁ ଇନ୍ଦ୍ରଭୂତିଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥରେ ପ୍ରକାଶ ପାଇଥିଲା । ଡକ୍ଟର ମହତାବ ଦର୍ଶାଇଅଛନ୍ତି ଯେ ଇନ୍ଦ୍ରଭୂତିଙ୍କ ପୂର୍ବରୁ ବୌଦ୍ଧଧର୍ମର ପାଲି ସାହିତ୍ୟରେ ଜଗନ୍ନାଥଙ୍କର ନାମକରଣର ଆଭାସ ମିଳିଥାଏ । ସେ ଦୃଷ୍ଟିରୁ ଓଡ଼ିଶାର ପୂର୍ବ ଉପକୂଳ ସମୁଦ୍ର ତଟରେ ଜଗନ୍ନାଥ ନାମଧାରୀ ଏହି ମୂର୍ତ୍ତି ତ୍ରୟ ନିଶ୍ଚିତ ଭାବେ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିଥିବ, ମାତ୍ର ତାହାର କୌଣସି ଉଲ୍ଲେଖ ଅଶୋକଙ୍କର ଜୀବନୀ, ଇତିହାସ, ଖାରବେଳଙ୍କ ଜୀବନୀ ଇତିହାସ କିମ୍ବା ଇତିହାସର ଅନ୍ୟତ୍ର କେଉଁଠାରୁ ହେଲେ ମିଳେ ନାହିଁ । ଏହିସବୁ କଥାର ସନ୍ତୋଷଜନକ ଉତ୍ତର ନମିଳିବା ପର୍ଯ୍ୟନ୍ତ ଓଡ଼ିଶାର ପୂର୍ବଉପକୂଳବର୍ତ୍ତୀ ସମୁଦ୍ର ତଟରେ ବା ପୁରୀରେ ଏପରି ଏକ ବୌଦ୍ଧ ଉପାସନା କେନ୍ଦ୍ର ଥିବା ଓ ପରବର୍ତ୍ତୀ ଅବସ୍ଥାରେ ତାହା 'ଜଗନ୍ନାଥ' ଉପାସନା କେନ୍ଦ୍ର ରୂପେ ପରିଣତ ହୋଇଥିବା କଥା ସହଜରେ ଗ୍ରହଣ କରିହୁଏନାହିଁ । ଜଗନ୍ନାଥ ନାମକରଣଟି ବୌଦ୍ଧମୂଳ ଓ ଜଗନ୍ନାଥ ବୁଦ୍ଧଙ୍କର ଅନ୍ୟନାମ ଏ କଥା ପୁରାତନ ପାଲି ଗ୍ରନ୍ଥମାନଙ୍କରୁ ମିଳେ ।

ପ୍ରଥମେ ବୌଦ୍ଧ ସଭ୍ୟତା ଓଡ଼ିଶାକୁ ଦକ୍ଷିଣ କୋଶଳବାଟେ ଆସିଅଛି । ସମ୍ବଲପୁର, ବଲାଙ୍ଗିର ପାଟଣା, ସୋନପୁର, ବୌଦ୍ଧ ପ୍ରଭୃତି ଗଡଜାତ ବାଟେ ମହାନଦୀ କୂଳେକୂଳେ ଅନେକ ବୌଦ୍ଧ ଭିକ୍ଷୁ ଓଡ଼ିଶାକୁ ଆସିଛନ୍ତି । ସେମାନେ ଯେଉଁସବୁ ବିହାର ନିର୍ମାଣ କରିଯାଇଛନ୍ତି ସେସବୁ ପ୍ରାୟ ମହାନଦୀ କୂଳ ଓ ତା'ର ଅତି ନିକଟବର୍ତ୍ତୀ ଅଞ୍ଚଳରେ ଦେଖାଯାଏ । ପୂର୍ବରୁ କୁହାଯାଇଅଛି ଯେ ଦକ୍ଷିଣ କୋଶଳ ବ୍ୟତୀତ ଉତ୍ତର ଓଡ଼ିଶାର ବାଲେଶ୍ୱର, ମୟୂରଭଞ୍ଜ ଓ କେନ୍ଦୁଝର ମଧ୍ୟ ଦେଇ ବୌଦ୍ଧଧର୍ମ ଓଡ଼ିଶାରେ ପ୍ରବେଶ କରି ପ୍ରଚାର ଓ ପ୍ରସାର ଲାଭ କରିଥିଲା । ଏଠାରେ ଉଲ୍ଲେଖନୀୟ ଯେ ଇନ୍ଦ୍ରଭୂତି ଏହି ଉଡ୍‌ଡୀୟାନର ରାଜା ଥିଲେ ଓ ଜଗନ୍ନାଥଙ୍କ ନାମୋଚ୍ଚାରଣ ଓଡ଼ିଶାରେ ପ୍ରଥମେ ତାହାଙ୍କର ଜ୍ଞାନସିଦ୍ଧି ଗ୍ରନ୍ଥରେ ସ୍ଥାନ ପାଇଥିଲା । ଓଡ଼ିଶାରେ ଯେତେବେଳେ ବୌଦ୍ଧ ସ୍ଥାପତ୍ୟର ଅବଶେଷ ବର୍ତ୍ତମାନ ସୁଦ୍ଧା ଆବିଷ୍କୃତ ହୋଇଛି, ତନ୍ମଧ୍ୟରୁ ଅଧିକାଂଶ ଯାଜପୁର, ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର, ସମ୍ବଲପୁର, ସୋନପୁର, ବଲାଙ୍ଗିରପାଟଣା, ବୌଦ୍ଧ, ଫୁଲବାଣୀ ଓ ମହାନଦୀର ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ହିଁ ମିଳିଥାଏ । ଡକ୍ଟର ମହତାବଙ୍କର ମନ୍ତବ୍ୟକୁ ଯଦି ସତ୍ୟ ବୋଲି ଗ୍ରହଣ କରିନିଆଯାଏ, ତେବେ ଧରିନେବାକୁ ହେବ ଯେ ଜଗନ୍ନାଥରୂପୀ ବୁଦ୍ଧଙ୍କର ଉପାସନାର ଅୟମାରମ୍ଭ ଉପରୋକ୍ତ ଅଞ୍ଚଳଗୁଡିକରେ ହିଁ ସଂଗଠିତ ହୋଇଥିଲା, କିନ୍ତୁ ପୁରୀରେ ନୁହେଁ । ଡକ୍ଟର ମହତାବ ତାଙ୍କର ଉପରୋକ୍ତ ମନ୍ତବ୍ୟରେ ଦର୍ଶାଇଅଛନ୍ତି ଯେ ଅଶୋକଙ୍କ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ଡକ୍ଟର ମହତାବଙ୍କର ମନ୍ତବ୍ୟରୁ ଜଣାଯାଏ ଯେ ଅଶୋକଙ୍କ ସମୟରେ ନିର୍ମିତ କେତେକ ବୌଦ୍ଧ ସ୍ତୂପକୁ ଶବରମାନେ ପୂଜା କରି କ୍ରମେ ଜଗନ୍ନାଥ ଉପାସନାରେ ପରିଣତ କରିଥିଲେ । ଅଶୋକ ପୁରୀଠାରେ କୌଣି ସ୍ତୂପ ନିର୍ମାଣ କରିଥିବା କଥା ନିର୍ଦ୍ଦିଷ୍ଟ ଭାବେ ଇତିହାସରୁ ଜଣାନଗଲେ ମଧ୍ୟ ଓଡ୍ରରେ ଅନେକ ସ୍ତୂପ ନିର୍ମାଣ କରିଥିବା କଥା ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ । ଏହିସବୁ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ଓଡ୍ର ଦେଶରେ ନିର୍ମିତ ହୋଇଥିବା ଏହି ସ୍ତୂପମାନଙ୍କ ମଧ୍ୟରୁ କୌଣସି ସ୍ତୂପ ଡକ୍ଟର ମହତାବଙ୍କ କହିବାନୁଯାୟୀ ଜଗନ୍ନାଥ ଉପାସନାରେ ପରିଣତ ହୋଇଥିବା ସମ୍ଭବପର ।

ଅନେକ ଗବେଷକ ଜଗନ୍ନାଥଙ୍କ ଉତ୍ପତ୍ତି ବିଷୟରେ ଚିନ୍ତା କଲାବେଳେ ନୀଳମାଧବଙ୍କୁ ତାହାଙ୍କର ପୂର୍ବରୂପ ବୋଲି ମତ ପ୍ରକାଶ କରିଥାନ୍ତି । ଏହା ଏକ ସମ୍ପୂର୍ଣ୍ଣ ଭ୍ରାନ୍ତ ଧାରଣା ଓ ଜଗନ୍ନାଥଙ୍କ ଉତ୍ପତ୍ତି ସମ୍ପର୍କରେ ଆଲୋଚନା କଲାବେଳେ ଏକ ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରିଥାଏ । ଓଡ଼ିଶାରେ ମାଧବ ଉପାସନାର ଅବଶେଷାଂଶ ରୂପେ ନୀଳମାଧବଙ୍କର ଉପାସନା ହେଉଥିବା କଥା ଜାଣି ହୁଏ, ମାତ୍ର ସମ୍ପୂର୍ଣ୍ଣ ଏକ ଭିନ୍ନ ପରିସ୍ଥିତିରେ ଗଢି ଉଠିଥିବା ଜଗନ୍ନାଥ ଉପାସନା ସହିତ ତାହାଙ୍କୁ ଯୋଡିଦେଇ ଯେଉଁ କାହାଣୀମାନ ଗଢି ଉଠିଛି, ତାହାକୁ ସାଧାରଣ ବୁଦ୍ଧିରେ ଗ୍ରହଣ କରିହୁଏ ନାହିଁ । ଏହିପରି କାହାଣୀ ସବୁ ନେଇ ସ୍କନ୍ଦପୁରାଣ, ଉତ୍କଳଖଣ୍ଡ ପରି ଗ୍ରନ୍ଥମାନ ରଚନା କରାଯାଇଛି ।





ଯଯାତିଙ୍କ ପୂର୍ବରୁ ଓଡ଼ିଶାରେ ମାଧବ ଉପାସନା ରହିଥିବାର କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ଇତିହାସରୁ ମିଳେନାହିଁ। ଖ୍ରୀଷ୍ଟୀୟ ସପ୍ତମ ଅଷ୍ଟମ ଶତାବ୍ଦୀରେ ଶୈଳୋଦ୍‌ଭବବଂଶୀୟ ପ୍ରଥମ ରାଜା ମାଧବରାଜଙ୍କ ଦ୍ୱାରା ଉତ୍କୀର୍ଣ୍ଣ ଗୋଟିଏ ତାମ୍ରଶାସନକୁ ବ୍ୟାଖ୍ୟା କରି କେତେକ ଗବେଷକ ଖ୍ରୀଷ୍ଟୀୟ ସପ୍ତମ ଅଷ୍ଟମ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ମାଧବ ଉପାସନା ରହିଥିଲା ବୋଲି ଅନୁମାନ କରିଥାନ୍ତି, ମାତ୍ର ଏହି ଅନୁମାନ ଭ୍ରମାତ୍ମକ ବୋଲି ମନେହୁଏ । ସଂଶ୍ଳିଷ୍ଟ ତାମ୍ରଶାସନରେ ଯେଉଁ ପଦଟିକୁ ନେଇ ଏଭଳି ଅନୁମାନ କରାଯାଇଛି, ତାହା ହେଉଛି 'ପ୍ରବୃତ୍ତ-ଚକ୍ର ଚକ୍ରଧର ଇବ ଭଗବାନ ମାଧବଃ ଶ୍ରୀମାଧବ ରାଜ କୁଶଳୀ' । ଏଠାରେ ମାଧବ ରାଜ ନିଜକୁ ଚକ୍ରଧର ମାଧବଙ୍କ ସହିତ ତୁଳନା କରିଅଛନ୍ତି । କେବଳ ଏତିକିରୁ ଏହା ପୂର୍ବରୁ ଓଡ଼ିଶାରେ ମାଧବ ଉପାସନା ଥିଲା ବୋଲି ଅନୁମାନ କରିବା ସମ୍ପୂର୍ଣ୍ଣ ଭ୍ରମାତ୍ମକ ଓ ବିଭ୍ରାନ୍ତିକର ।

ସେହିପରି ଅନେକ ଗବେଷକ ବୌଦ ଗନ୍ଧରାଡିଠାରେ ଥିବା ଯମଜ ନୀଳମାଧବ ଓ ସିଦ୍ଧେଶ୍ୱରଙ୍କ ମନ୍ଦିର ଭଞ୍ଜବଂଶୀ ରାଜାଙ୍କ କୀର୍ତ୍ତି ବୋଲି ଦର୍ଶାଇ ସୋମବଂଶୀମାନଙ୍କ ପୂର୍ବରୁ ଭଞ୍ଜ ରାଜବଂଶୀ ସମୟରେ ମାଧବ ଉପାସନା ଥିଲା ବୋଲି ଅନୁମାନ କରିଛନ୍ତି । ଏହି ଗବେଷକମାନଙ୍କ ମଧ୍ୟରୁ କେତେ ଜଣ ଗନ୍ଧରାଡିର ନୀଳମାଧବ ମନ୍ଦିରଟି ଭଞ୍ଜବଂଶୀୟ ଶତ୍ରୁଭଞ୍ଜ (ଖ୍ରୀଷ୍ଟାବ୍ଦ ୭୮୦-୮୦୦)ଙ୍କ ଦ୍ୱାରା ନିର୍ମିତ ହୋଇଥିଲା ବୋଲି ଅନୁମାନ କରିଥିବା ବେଳେ ଅନ୍ୟ କେତେକ ଏହା ରଣଭଞ୍ଜଙ୍କ ଦ୍ୱାରା ହୋଇଥିଲା ବୋଲି ଅନୁମାନ କରିଅଛନ୍ତି । କେତେକ ଏହା ଭଞ୍ଜବଂଶୀୟ ରାଜାମାନଙ୍କ ପୃଷ୍ଠପୋଷକତାରେ ହୋଇଥିଲା ବୋଲି ଅନୁମାନ କରିଅଛନ୍ତି । ଏହି ଗବେଷକମାନେ ଏପରି ଯେଉଁ ଅନୁମାନ ସବୁ କରିଅଛନ୍ତି, ତାହାର କୌଣସି ନିର୍ଦ୍ଦିଷ୍ଟ ଅଭିଲେଖଗତ ବା ଅନ୍ୟକୌଣସି ପ୍ରକାରର ଐତିହାସିକ ପ୍ରମାଣ ମିଳେନାହିଁ । ତେଣୁ ତାହା ନିର୍ଭରଯୋଗ୍ୟ ପ୍ରମାଣ ବୋଲି ମନେହୁଏ ନାହିଁ ।

ବୌଦ ଗନ୍ଧରାଡିସ୍ଥିତ ନୀଳମାଧବ ମନ୍ଦିରକୁ ଛାଡିଦେଲେ ଅଧିକାଂଶ ମାଧବ ଉପାସନା ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ହିଁ ପ୍ରଚାର ଓ ପ୍ରସାର ଲାଭ କରିଥିଲା । କୌଣସି ଏକ ପରିସ୍ଥିତିରେ ବ୍ୟାପକ ଭାବେ ଗଢି ଉଠିଥିବା ଏହି ମାଧବ ଉପାସନାର ପ୍ରାୟ କରି ଅବକ୍ଷୟ ଘଟି ଜଗନ୍ନାଥଙ୍କର ଉପାସନା ସେହି ସ୍ଥାନ ପୂରଣ କରି ପ୍ରାଧାନ୍ୟ ଲାଭ କଲା । ଶ୍ରୀକୃଷ୍ଣଙ୍କର ଅନ୍ୟ ନାମ ହେଉଛି ମାଧବ ଓ ମାଧବ ଉପାସନାରେ ଆମେ ଯେଉଁ ମୂର୍ତ୍ତି ପୂଜା ଦେଖୁ, ତାହା ଶ୍ରୀକୃଷ୍ଣଙ୍କର କମନୀୟ ପାଷାଣ ବିଗ୍ରହ ।

ଏହି ଦୃଷ୍ଟିରୁ ଦେଖିଲେ ଓଡ଼ିଶାରେ ପୂଜିତ ମାଧବ 'ପୁରୁଷୋତ୍ତମ' ନାମରେ ଖ୍ୟାତି ଲାଭ କରିଛନ୍ତି । ଅନ୍ୟ ଏକ ଦିଗରୁ ବିଚାର କଲେ ଦେଖାଯିବ ଯେ ପୁରୀରେ ଜଗନ୍ନାଥଙ୍କର ପ୍ରତିଷ୍ଠା ହେବା ପୂର୍ବରୁ ପୁରୀରୁ ନୃସିଂହ କ୍ଷେତ୍ର ବୋଲି କୁହାଯାଉଥିଲା । ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ରଚିତ ସ୍କନ୍ଦ ପୁରାଣ, ଉତ୍କଳ ଖଣ୍ଡ (ପୁରୁଷୋତ୍ତମ ମାହାତ୍ମ୍ୟ) ଷୋଡଶ ଅଧ୍ୟାୟରୁ ଜଣାଯାଏ ଯେ ପୁରୀରୁ ପ୍ରଥମେ ନୃସିଂହ କ୍ଷେତ୍ର ବୋଲି କୁହାଯାଉଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପାଣ୍ଡୁବଂଶୀ ଭାବେ ଚିହ୍ନିତ ସୋମବଂଶୀ ଯଯାତି କେଶରୀଙ୍କର ଗୃହଦେବତା ଥିଲେ ପୁରୁଷୋତ୍ତମ ନୃସିଂହ । ତାହାଙ୍କର ପ୍ରାଚୀନ ରାଜଧାନୀ ଥିଲା ଦକ୍ଷିଣ କୋଶଳ ଅନ୍ତର୍ଗତ ଶିରିପୁର ବା ଶ୍ରୀପୁର ।

ପୁରୀରେ ଯେଉଁ ନୃସିଂହ ଉପାସନାର ପ୍ରଚଳନ ଆମେ ଦେଖିବାକୁ ପାଉ, ତାହା ଏହି ସୋମବଂଶୀମାନଙ୍କ ଦ୍ୱାରା ହୋଇଥିବା ସମ୍ଭବପର । ଉଭୟ ମାଧବ ଓ ନୃସିଂହ ପୁରୁଷୋତ୍ତମ ପଦବାଚ୍ୟ ହୋଇଥିବାରୁ ତଦନୁଯାୟୀ ପୁରୀକୁ ପୁରୁଷୋତ୍ତମ କ୍ଷେତ୍ର ବୋଲି କୁହାଯିବା ସମ୍ଭବପର । ସୋମବଂଶୀ ପ୍ରଥମ ଯଯାତିଙ୍କ ଆବିର୍ଭାବ ସମୟକୁ ବା ପରବର୍ତ୍ତୀ କାଳରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ମାଧବଙ୍କ ଉପାସନା ପ୍ରଚଳିତ ଥିଲା, ମାତ୍ର ପୁରୁଷୋତ୍ତମ ନାମକ କ୍ଷେତ୍ର ପ୍ରତିଷ୍ଠା ଲାଭ କରିପାରିନଥିଲା । ସେହି ହେତୁ ପୁରୀର କୌଣସି ପ୍ରାଧାନ୍ୟ ନଥିଲା । ଯଯାତିଙ୍କର ପୂର୍ବଜ ପାଣ୍ଡୁବଂଶୀମାନଙ୍କର ଗୃହଦେବତା ପୁରୁଷୋତ୍ତମ ନାମଧାରୀ ନୃସିଂହ ଥିଲେ । ଯଯାତି କଙ୍ଗୋଦ ବା ଦକ୍ଷିଣ ତୋଷାଳୀରେ ନିଜର ଅଧିକାର ସାବ୍ୟସ୍ତ କଲାବେଳେ ନିଜର ଗୃହଦେବତା ପୁରୁଷୋତ୍ତମ ନୃସିଂହଙ୍କୁ ଆଣି ପୁରୀରେ ଅଧିଷ୍ଠିତ କରାଇଥିଲେ । ତା'ର ପରବର୍ତ୍ତୀ ସମୟରେ କ୍ରମେ ପୁରୀ-ପୁରୁଷୋତ୍ତମ କ୍ଷେତ୍ର ଭାବରେ ପ୍ରସିଦ୍ଧି ଲାଭ କଲା । ପୁରୀରେ ନୃସିଂହ ଅଧିଷ୍ଠିତ ହେବା ସମୟରେ ସେଠାରେ ଜଗନ୍ନାଥଙ୍କ ଉପାସନାର ଆରମ୍ଭ ହୋଇନଥିଲା । ଏ ସମ୍ପର୍କରେ ମତ ଦେବାକୁ ଯାଇ ଡକ୍ଟର ଗୋପୀନାଥ ମହାପାତ୍ର ଦର୍ଶାଇଅଛନ୍ତି ଯେ ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁ ଜଗନ୍ନାଥ ପୂଜିତ ହେଉଥିଲେ ଯଦି ସତ୍ୟ ହୁଅନ୍ତା, ତେବେ ଶବରମାନଙ୍କ ଦେବତା ବୋଲି ତାକୁ ବିଚାରିବା ସମ୍ଭବ ହୋଇପାରନ୍ତା, ମାତ୍ର ଜଗନ୍ନାଥ ଏତେ ପୁରୁଣା ନୁହଁନ୍ତି । ଯଦିଓ ଟାଣି ଓଟାରି କେତେକ ଉକ୍ତିକୁ ନେଇ ତା'ର ଅସ୍ତିତ୍ୱ ବୈଦିକ ଯୁଗରେ ଥିଲା, ରାମାୟଣ ଯୁଗରେ ଥିଲା ଓ ମହାଭାରତ ଯୁଗରେ ଥିଲା ବୋଲି ଅନେକ ମତବ୍ୟକ୍ତ କରନ୍ତି, ତାହା ମଧ୍ୟ ପ୍ରକୃଷ୍ଟ ପ୍ରମାଣ ଅଭାବରୁ ହଠାତ୍





ଗ୍ରହଣୀୟ ନୁହେଁ । ଏପରିକି ପଞ୍ଚମ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଶିଳାଲେଖ ପ୍ରମାଣ ଦୃଷ୍ଟିରୁ ଆମ ନିକଟରେ ପୁରୀରେ ଜଗନ୍ନାଥ ପୂଜା ପାଉଥିବାର କୌଣସି ପ୍ରମାଣ ନାହିଁ । ହୁଏତ ଗ୍ରନ୍ଥ ପ୍ରମାଣରେ ଜଗନ୍ନାଥଙ୍କ ପ୍ରାଚୀନତା ପୁରାଣ ସମୟକୁ ଯାଇପାରେ । ଡକ୍ଟର ମହାପାତ୍ର ଏଠାରେ ଯେଉଁ ଗ୍ରନ୍ଥ ପ୍ରମାଣ କଥା କହିଛନ୍ତି, ତାହା ବ୍ରହ୍ମପୁରାଣ, ବିଷ୍ଣୁ ପୁରାଣ, ମତ୍ସ୍ୟ ପୁରାଣ, ପଦ୍ମ ପୁରାଣ, ଭାଗବତ ମହାପୁରାଣ, ସ୍କନ୍ଦ ପୁରାଣ ଆଦି ଗ୍ରନ୍ଥକୁ ବିଚାରକୁ ନେଇ କରିଛନ୍ତି । ଏହିସବୁ ଗ୍ରନ୍ଥମାନ ଖ୍ରୀଷ୍ଟୀୟ ଦଶମ ଏକାଦଶ ଶତାବ୍ଦୀରୁ ତ୍ରୟୋଦଶ-ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ କାହାଣୀ ଆକାରରେ ରଚିତ ହୋଇଅଛି । ଏ ଦୃଷ୍ଟିରୁ ଦଶମ ଏକାଦଶ ଶତାବ୍ଦୀ ପୂର୍ବରୁ ପୁରୀରେ ପୁରୁଷୋତ୍ତମ ନୃସିଂହଙ୍କ ଉପାସନା ଓ ଜଗନ୍ନାଥ ଉପାସନା ସମ୍ପର୍କରେ କୌଣସି ଅଭିଲେଖଗତ ପ୍ରମାଣ ବା ଗ୍ରନ୍ଥ ପ୍ରମାଣ ନାହିଁ ବୋଲି ଧରିନେବାକୁ ପଡିବ । ଏଥିରୁ ଏପରି ମନେହୁଏ ଯେ ଯଯାତିଙ୍କ ଆବିର୍ଭାବର ପରବର୍ତ୍ତୀ ଅବସ୍ଥାରେ ପୁରୀରେ ପୁରୁଷୋତ୍ତମ ନୃସିଂହ, ଜଗନ୍ନାଥ ଓ ନୀଳମାଧବଙ୍କର ଉପାସନା ସେହି କ୍ରମରେ ପ୍ରବର୍ତ୍ତିତ ହୋଇଛି ।

ମାଧବ ଉପାସନା ଓ ପୁରୁଷୋତ୍ତମ ନୃସିଂହଙ୍କର ଉପାସନାଠାରୁ ଜଗନ୍ନାଥଙ୍କର ଉପାସନା ସମ୍ପୂର୍ଣ୍ଣ ଭିନ୍ନ । ଜଗନ୍ନାଥଙ୍କର ଉତ୍ପତ୍ତି ସମ୍ପର୍କରେ ଚିନ୍ତା କଲାବେଳେ ଆମ ଦୃଷ୍ଟି ସର୍ବ ପ୍ରଥମେ ଇନ୍ଦ୍ରଭୂତିଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥକୁ ଯାଏ । ଯେଉଁଠାରେ ଜଗନ୍ନାଥଙ୍କର ନାମ ପ୍ରଥମଥର ପାଇଁ ଉଚ୍ଚାରିତ ହୋଇଛି । ଇନ୍ଦ୍ରଭୂତି ଥିଲେ ବୌଦ୍ଧ ଧର୍ମ ଅନ୍ତର୍ଗତ ବଜ୍ରଯାନର ପ୍ରବକ୍ତା । ସେ ତାହାଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥରେ ବୁଦ୍ଧ ରୂପୀ ଜଗନ୍ନାଥଙ୍କୁ ପ୍ରଣିପାତ କରି ଗ୍ରନ୍ଥଲେଖା ଆରମ୍ଭ କରିଛନ୍ତି । ସେ ଦୃଷ୍ଟିରୁ ଜଗନ୍ନାଥଙ୍କୁ ବୁଦ୍ଧ ବୋଲି କୁହାଯାଇପାରେ । ଡକ୍ଟର ମହାପାତ୍ର ଏହି ମତ ସହିତ ଏକମତ ନହୋଇ ସେ ଇନ୍ଦ୍ରଭୂତିଙ୍କ ପୂର୍ବରୁ ମହାଭାରତ ଅନ୍ତର୍ଗତ ବିଷ୍ଣୁ ସହସ୍ର ନାମରୁ ଉଦ୍ଧାର କରି ଦର୍ଶାଇ ଅଛନ୍ତି ଯେ ମହାଭାରତରେ ମଧ୍ୟ ଜଗନ୍ନାଥଙ୍କ ନାମୋଚ୍ଚାରଣ ହୋଇଛି । ଏ ସମ୍ପର୍କରେ ସ୍ୱୟଂ ଡକ୍ଟର ମହାପାତ୍ର ତାହାଙ୍କ ଉକ୍ତିକୁ ଖଣ୍ଡନ କରି ଦର୍ଶାଇଛନ୍ତି ଯେ ମହାଭାରତ ଯୁଗରେ ଜଗନ୍ନାଥ ପୂଜା ପୁରୀରେ ହେଉଥିଲା କି ନା କହିବା ବଡ କଠିନ କଥା, କିନ୍ତୁ ଏତିକି ମାତ୍ର କୁହାଯାଇପାରେ ଯେ ଦାରୁ ନିର୍ମିତ ଜଗନ୍ନାଥ ସେତେବେଳେ ନଥିଲେ । ଅର୍ଥାତ୍ ମହାଭାରତର ବିଷ୍ଣୁ ସହସ୍ର ନାମରେ ଉଲ୍ଲିଖିତ ଜଗନ୍ନାଥ ପୁରୀରେ ପୂଜା ପାଉଥିବା ଦାରୁ ନିର୍ମିତ ଜଗନ୍ନାଥ ନୁହଁନ୍ତି । ସେହିପରି ଅନ୍ୟତ୍ର ଡକ୍ଟର ମହାପାତ୍ର ବିଷ୍ଣୁ ପୁରାଣରୁ ଉଦ୍ଧାର କରି ଦର୍ଶାଇଛନ୍ତି ଯେ ଏହି ପୁରାଣରେ ବିଷ୍ଣୁ ଓ ଜଗନ୍ନାଥଙ୍କର ଅପର ନାମ ରୂପେ 'ଜଗନ୍ନାଥ' ଶବ୍ଦର ବହୁଳ ବ୍ୟବହାର ହୋଇଅଛି । ଜଗନ୍ନାଥଙ୍କର ବିଷ୍ଣୁ ମୂଳତ୍ୱ ପ୍ରମାଣ କରିବାକୁ ଯାଇ ଡକ୍ଟର ମହାପାତ୍ର ଏହା କହିଛନ୍ତି । ମାଦଳାପାଞ୍ଜିରେ ଦିଆଯାଇଥିବା ତଥ୍ୟଗୁଡିକୁ ଯଦି ସତ୍ୟାଶ୍ରିତ ବୋଲି ଧରାଯାଏ, ତେବେ ଦେଖିବାକୁ ହେବ ଯେ ପ୍ରଥମ ଯଯାତି (ଖ୍ରୀଷ୍ଟାବ୍ଦ ୯୨୨-୯୫୫) ଜଗନ୍ନାଥଙ୍କୁ ସୋନପୁରରୁ ଆଣି ନବମ ଶତାବ୍ଦୀରେ ପୁରୀରେ ସ୍ଥାପନ କରିଥିଲେ । ବଙ୍ଗଳା ବିଶ୍ୱକୋଷରେ ବିଷ୍ଣୁ ପୁରାଣର ରଚନା କାଳ ଦଶମ ଏକାଦଶ ଶତାବ୍ଦୀର ବୋଲି ସ୍ଥିରୀକୃତ ହୋଇଛି । ଏଥିରୁ ମନେହୁଏ ବୌଦ୍ଧ ଧର୍ମର ଦେବତା ଜଗନ୍ନାଥଙ୍କୁ ବୈଷ୍ଣବୀୟ ଦେବତା ରୂପେ ପ୍ରମାଣ କରିବା ପାଇଁ ଖ୍ରୀଷ୍ଟୀୟ ଦଶମ ଏକାଦଶ ଶତାବ୍ଦୀରେ ରଚିତ ବିଷ୍ଣୁ ପୁରାଣରେ ଜଗନ୍ନାଥଙ୍କୁ ବିଷ୍ଣୁ ପର୍ଯ୍ୟାୟବାଚୀ ଭାବେ ଦର୍ଶାଇବାକୁ ଉଦ୍ୟମ କରାଯାଇଅଛି ।

ସ୍କନ୍ଦ ପୁରାଣ, ଉତ୍କଳ ଖଣ୍ଡ (ପୁରୁଷୋତ୍ତମ ମାହାତ୍ମ୍ୟ) ଷୋଡଶ ଅଧ୍ୟାୟରେ କୁହାଯାଇଛି ଯେ ପ୍ରଥମେ ପୁରୀ ପୁରୁଷୋତ୍ତମ ନୃସିଂହଙ୍କ କ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା ଓ ତାଙ୍କରି ନାମାନୁସାରେ ପୁରୁଷୋତ୍ତମ କ୍ଷେତ୍ର ହୋଇଛି । ଜଗନ୍ନାଥ ଉପାସନାର ଆରମ୍ଭ ପୁରୀ ପୁରୁଷୋତ୍ତମ ନୃସିଂହଙ୍କ ଉପାସନାର ପରବର୍ତ୍ତୀ ଏବଂ ଉଭୟଙ୍କ ମଧ୍ୟରେ କୌଣସି ସମ୍ପର୍କ ନାହିଁ । ପୁରୀରେ ପୁରୁଷୋତ୍ତମ ନୃସିଂହଙ୍କର ଉପାସନା ପ୍ରତିଷ୍ଠା ଲାଭ କଲାପରେ ପରବର୍ତ୍ତୀ ଅବସ୍ଥାରେ ଜଗନ୍ନାଥ ସେଠାରେ ପ୍ରତିଷ୍ଠିତ ହୋଇଛନ୍ତି । ଏପରିକି ଦେଖିବାକୁ ଗଲେ ଜଣାଯାଏ ଯେ ପୁରୀରେ ନୃସିଂହ ଉପାସନାର ଆରମ୍ଭ ପୂର୍ବରୁ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ମାଧବ ଉପାସନା ପ୍ରଚାର ଓ ପ୍ରସାର ଲାଭ କରିଥିଲା । କୃଷ୍ଣଙ୍କର ଅନ୍ୟନାମ ମାଧବ ଓ ସେହି ଦୃଷ୍ଟିରୁ ମାଧବ ମଧ୍ୟ ପୁରୁଷୋତ୍ତମ ଅଟନ୍ତି । ଏସବୁ ଦୃଷ୍ଟିରୁ ଦେଖିଲେ ଗୀତାର ଉପରୋକ୍ତ ପଙ୍‌କ୍ତିଟିକୁ ଆଧାରକରି କିପରି ଜଗନ୍ନାଥଙ୍କର ବିଷ୍ଣୁ ମୂଳତ୍ୱ ପ୍ରମାଣ କରାଯାଇପାରିବ । ସୁତରାଂ ଇନ୍ଦ୍ରଭୂତିଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥକୁ ଆଧାରକରି ନିଃସନ୍ଦେହରେ କୁହାଯାଇପାରେ ଯେ ଜଗନ୍ନାଥ ବୌଦ୍ଧ ମୂଳ, କିନ୍ତୁ ବିଷ୍ଣୁ ମୂଳ ନୁହନ୍ତି । ଏଇଥିପାଇଁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ଓଡ଼ିଆ କବି ଜୟଦେବ ତାଙ୍କ ଅନୁଭୂତିକୁ ପାଥେୟ କରି ଗୀତଗୋବିନ୍ଦ ଲେଖିଥିଲେ ।

ଏଠାରେ ଉଲ୍ଲେଖନୀୟ ଯେ ଓଡ଼ିଶାର କବି ଜୟଦେବ ତାହାଙ୍କର ଗ୍ରାମ କେନ୍ଦୁବିଲ୍ୱରେ ମାଧବଙ୍କର ଉପାସକ ଥିଲେ, ମାତ୍ର ନିଜର ଅନୁଭବରୁ ଦଶାବତାର ସ୍ତୋତ୍ର ରଚନା କଲାବେଳେ ସେ ନବମ ଅବତାର ଭାବରେ ବୁଦ୍ଧ ରୂପୀ ଜଗନ୍ନାଥଙ୍କର ଜୟଗାନ





କରିଛନ୍ତି । ଏ ସମ୍ପର୍କରେ ମତ ଦେବାକୁ ଯାଇ ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ ଉଲ୍ଲେଖ କରିଅଛନ୍ତି ଯେ ଓଡ଼ିଶାରେ ଜଗନ୍ନାଥ ଦେବଙ୍କର ମୂଳ ସ୍ଥାପନା ବିଷୟରେ ଅନୁସନ୍ଧାନ କଲେ ଜଣାଯାଏ ଯେ ବୌଦ୍ଧ ଧର୍ମର ଲୋପ ସାଧନ କରିବା ସକାଶେ ଯେତେବେଳେ ବ୍ରାହ୍ମଣମାନେ ବଦ୍ଧପରିକର ହୋଇଥିଲେ, ସେତେବେଳେ ସେମାନେ ବୌଦ୍ଧଙ୍କର ମତାମତକୁ ନିଜ ମତାମତରେ ପ୍ରବର୍ତ୍ତିତ କରିଥିଲେ । ସେହି ପୁରୀଠାରେ ବ୍ରାହ୍ମଣମାନେ ଏକ ହସ୍ତପଦ ଶୂନ୍ୟ ଦେବତା ଗଠନ କରାଇ ପୁଣି ସେହି ଦେବତାଙ୍କୁ ବୁଦ୍ଧାବତାର ରୂପେ ଗ୍ରହଣ କରି (ଗୀତଗୋବିନ୍ଦରେ ବୁଦ୍ଧାବତାରର ଯେଉଁ ବର୍ଣ୍ଣନା ଅଛି ସେଥିରୁ ସ୍ପଷ୍ଟ ଜଣାଯାଏ ଯେ ବୁଦ୍ଧଦେବ ଶାକ୍ୟସିଂହଙ୍କୁ ଅବଲମ୍ବନ କରି ବୁଦ୍ଧାବତାର କଳ୍ପିତ ହୋଇଛି) ଅହିଂସାମୟ ବିଷ୍ଣୁ ମନ୍ତ୍ରରେ (ଅହିଂସା ପରମୋଧର୍ମ–ବୌଦ୍ଧଙ୍କର ମତ ଥିଲା) ତାଙ୍କର ପୂଜା ଚଳାଇ ଓ ତାଙ୍କ ଭୋଗରେ କୌଣସି ପ୍ରକାର ଜାତି ବିଚାର ନରଖି ଏବଂ ଏହିସବୁ ଦ୍ୱାରା ବୌଦ୍ଧ ଧର୍ମ ଓ ହିନ୍ଦୁଧର୍ମର ସାମଞ୍ଜସ୍ୟ ରକ୍ଷା କରି ଓଡ଼ିଶା ବୌଦ୍ଧଙ୍କ ମତି ହିନ୍ଦୁଧର୍ମ ଆଡକୁ ଫେରାଇଥିଲେ । ବୌଦ୍ଧଧର୍ମର ପରାଭବ ଓ ହିନ୍ଦୁଧର୍ମର ପୁନଃ ସଂସ୍କାର ଓ ଟେକ ବଢାଇବା ସକାଶେ ବୌଦ୍ଧଙ୍କ ମାଲ ମସଲାରୁ ଯେ ଜଗନ୍ନାଥ ଦେବଙ୍କର ସୃଷ୍ଟି ହୋଇଛି ଏଥିରେ କୌଣସି ସନ୍ଦେହ ନାହିଁ । କବି ଜୟଦେବଙ୍କ ୩୦୦ବର୍ଷ ପରେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ମହାକବି ସାରଳା ଦାସ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ହିଁ ବର୍ଣ୍ଣନା କରିଛନ୍ତି ।

ବୌଦ୍ଧ ଧର୍ମର ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥ ଓଡ୍ର ଅନ୍ତର୍ଗତ ମହାନଦୀ ଉପତ୍ୟକା କିମ୍ବା ଓଡ୍ର କୋଶଳର ସୀମାରେ ଅବସ୍ଥିତ ବୌଦ୍ଧ, ସୋନପୁର ଅଞ୍ଚଳରେ ପୂଜା ପାଉଥିଲେ । ରକ୍ତବାହୁର ଆକ୍ରମଣ ଭୟରେ ଅର୍ଥାତ୍ ବୌଦ୍ଧଧର୍ମ ବିଦ୍ୱେଷୀ ରାଜାଙ୍କ ଆକ୍ରମଣ ଭୟରେ ସୋନପୁରର ଗୋପାଳି ଗ୍ରାମରେ ୧୪୬ବର୍ଷ କାଳ ମହାପ୍ରଭୁଙ୍କୁ ପାତାଳି କରି ରଖାଯାଇଥିଲା । ଖ୍ରୀଷ୍ଟୀୟ ଅଷ୍ଟମ–ନବମ ଶତାବ୍ଦୀରେ ସୋମବଂଶୀ ଯଯାତିକେଶରୀ ଓଡ଼ିଶା ରାଜ୍ୟର ରାଜା ହେବା ପରେ ମହାପ୍ରଭୁ ଜଗନ୍ନାଥଙ୍କ ଅନୁସନ୍ଧାନ କରିଥିଲେ ଓ ସେଠାରୁ ଉଦ୍ଧାର କରି ନବକଳେବର କରାଇ ପୁରୀରେ ପ୍ରଥମକରି ୩୮ହାତର ଦେଉଳ ତୋଳାଇ ତହିଁରେ ନୂତନ ବିଗ୍ରହ ପ୍ରତିଷ୍ଠା କରାଇଥିଲେ । ତା' ପୂର୍ବରୁ କଙ୍ଗୋଦ ଅନ୍ତର୍ଗତ ପୁରୀରେ ମାଧବ ଉପାସନା ବଳବତ୍ତର ଥିଲା । ସେଇଥିପାଇଁ ମହାନଦୀ, ବୈତରଣୀ ଓ ପ୍ରାଚୀ ନଦୀ ଅବବାହିକାରେ ମାଧବ ନାମଧାରୀ ଅନେକ ବିଗ୍ରହ ପୂଜା ପାଉଛନ୍ତି । ମହାନଦୀର ଅବବାହିକାରେ ବୌଦ୍ଧ ଗନ୍ଧରାଡ଼ିର ନୀଳମାଧବଙ୍କ ଅନ୍ତର୍ଦ୍ଧାନ ଓ ସେଠାରେ ଓଡ୍ରରୁ ଆନୀତ ରାଷ୍ଟ୍ର ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପୁନଃ ପ୍ରତିଷ୍ଠା ହିଁ ଏହାର କାରଣ ହୋଇପାରେ । ଅତଏବ ଖ୍ରୀଷ୍ଟୀୟ ଅଷ୍ଟମ–ନବମ ଶତାବ୍ଦୀରେ ହିଁ ପ୍ରଥମକରି ପୁରୀରେ ସୋମବଂଶୀ ଯଯାତିକେଶରୀଙ୍କ ଦ୍ୱାରା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରତିଷ୍ଠା କରାଯାଇଥିଲା ।

ନିର୍ଦ୍ଦେଶକ, ଓଡ଼ିଆ ଭାଷା ପ୍ରତିଷ୍ଠାନ
ଭୁବନେଶ୍ୱର–୭୫୧୦୦୧

# ଏତିକି କରୁଣା କର

ମୀନାକ୍ଷୀ ଦେବୀ

ଅଞ୍ଜଳି ମୋର ଭରିଦିଅ ପ୍ରଭୁ
ଭକତି ରତନ ଦେଇ
ହେ ଜଗତପତି ଘେନ ମୋ' ପ୍ରଣତି
ଆନ ଧନ ଲୋଡା ନାହିଁ ।

ତୁମେ କରୁଣାର ପାରାବାର ପ୍ରଭୁ
ମୁଁ ତୁମ କରୁଣା ବିନ୍ଦୁ
ଏ ସାରା ସଂସାର ତୁମ ସରଜନା
ଆହେ ପ୍ରଭୁ ଜଗବନ୍ଧୁ ।



ହେ ଜଗତନାଥ ଅନାଦି ଅନନ୍ତ
କଣ୍ଠରେ ଦିଅ ସୁର
ଗାଉଥିବି ନିତି ତୁମ ଯଶଗୀତି
ଏତିକି ସୁଦୟା କର
ଜୀବନର ଗତି ହେଉ ପ୍ରଭୁ ଇତି
ନୀଳଚକ୍ରେ ଚାହିଁ ଚାହିଁ ।

ନିଉ କଲୋନୀ
ସାଆନ୍ତସାହି, କଟକ–୧







# ଗୋପବନ୍ଧୁଙ୍କ ସାହିତ୍ୟରେ ଶ୍ରୀଜଗନ୍ନାଥ

ଡକ୍ଟର ହେମନ୍ତ କୁମାର ଛୋଟରାୟ

ସତ୍ୟବାଦୀ-ସାହିତ୍ୟ-ବିନ୍ଧାଣୀ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସ ଥିଲେ ଉଗ୍ରଜାତୀୟବାଦୀ, ସମାଜ ସଂସ୍କାରକ ତଥା ଦେଶ ସେବକ । ପ୍ରାକୃତିକ ବିପର୍ଯ୍ୟୟ ପ୍ରପୀଡିତ ଜନସାଧାରଣଙ୍କ ଦୁଃଖ-ଦୁର୍ଦ୍ଦଶା ପ୍ରତି ସମ୍ବେଦନଶୀଳ ହେବା ସହ ସଂସ୍କୃତିର ସୁରକ୍ଷା କ୍ଷେତ୍ରରେ ତାଙ୍କର ଜୀବନ ବ୍ୟାପି ସଂଗ୍ରାମ ଉତ୍କଳୀୟମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଆସିଛି । ଦେଶର ସ୍ୱରାଜ୍ୟ ପାଇଁ ଲଢେଇ କରିବା, ମୂଲ୍ୟବୋଧ ଭିତ୍ତିକ ଶିକ୍ଷାର ବିକାଶ ପାଇଁ ଉଦ୍ଦିଷ୍ଟ ବନବିଦ୍ୟାଳୟର ପରିଚାଳନା ଦାୟିତ୍ୱ ତୁଲାଇବା ଓ ଲୁପ୍ତ ଉତ୍କଳୀୟ ପରମ୍ପରା-କିମ୍ବଦନ୍ତୀର ଉଦ୍ଧାର ନିମନ୍ତେ ଗୋପବନ୍ଧୁ ନିଜକୁ ଅହରହ ନିୟୋଜିତ କରିଥିଲେ । ଆଧ୍ୟାତ୍ମିକ ବା ଧର୍ମ ଦର୍ଶନ ପ୍ରତି ତାଙ୍କର ଯଥେଷ୍ଟ ଅନୁରକ୍ତି ଥିବା ପରିଲକ୍ଷିତ ହୋଇଛି । ବିଶେଷ କରି ଉତ୍କଳର ପ୍ରାଣ-ଆରାଧ୍ୟ ଦେବତା ନୀଳାଚଳନାଥ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କର ଅଖଣ୍ଡ ବିଶ୍ୱାସ, ଭରସା ଓ ଭକ୍ତି ରହିଥିବା ନିଜର ବିଭିନ୍ନ ରଚନାରେ ସେ ସ୍ପଷ୍ଟ କରିଛନ୍ତି ।

ଓଡ଼ିଆ ଜାତି ଯେତେବେଳେ ଭୀଷଣ ସଙ୍କଟର ସମ୍ମୁଖୀନ ହୋଇଛି, ସେତେବେଳେ ତହିଁରୁ ଉଦ୍ଧାର ପାଇବା ପାଇଁ ପ୍ରଭୁ ଜଗନ୍ନାଥଙ୍କୁ ହିଁ ଭରସା କରିଛି । ପ୍ରଭୁ ଜଗନ୍ନାଥଙ୍କୁ ହିଁ ସ୍ମରଣ କରିଛି । କହିବା ବାହୁଲ୍ୟ, ବଡ ବଡ ବିପଦ-ଗୁରୁତର ଅନେକ ସଙ୍କଟ ଯେ, ପ୍ରଭୁ ଜଗନ୍ନାଥଙ୍କ ନାମ ଉଚ୍ଚାର ମାତ୍ରେ ନିମିଷେକ ମଧ୍ୟରେ ଉଭେଇ ଯାଇଛି, ତାହା ସମଗ୍ର ଉତ୍କଳବାସୀ ଅନୁଭବ କରିଆସିଛନ୍ତି । ଥରେ ଓଡ଼ିଶାର ବାରଶତ ଶିଳ୍ପୀଙ୍କ ସାମ୍ନାରେ ଏକ ସଙ୍କଟ ଉଦ୍‌ଭାସିତ ହୋଇଥିଲା । ସେମାନେ ନୈରାଶ୍ୟର ଅଥଳ ଜଳରେ ଉବୁଟୁବୁ ହେଉଥାଆନ୍ତି । ଶତଚେଷ୍ଟା କରି କୋଣାର୍କ ମନ୍ଦିରର ଅଗ୍ରଭାଗ ସମ୍ପୂର୍ଣ୍ଣ କରିବା ସେମାନଙ୍କ ପକ୍ଷେ ସମ୍ଭବ ହେଉନଥାଏ । ଶିଳ୍ପୀଶାସ୍ତ୍ରର ଆଲୋଚନା-ପର୍ଯ୍ୟାଲୋଚନାରେ ସେମାନଙ୍କର ବିନିଦ୍ର ରଜନୀ ବିତିଯାଉଥାଏ । ନିର୍ଦ୍ଧାରିତ ଦିବସର ପ୍ରଭାତ ପୂର୍ବରୁ ଅଗ୍ରକୁମ୍ଭ ପ୍ରତିଷ୍ଠା ନହେଲେ ବାରଶତ ଶିଳ୍ପୀଙ୍କର ମସ୍ତକ ଛେଦନ ହେବାର ନିର୍ଦ୍ଦେଶ ମିଳି ସାରିଥାଏ । ଶେଷ ରଜନୀରେ ଆତଙ୍କିତ ବାରଶହ ବଢେଇ ଗୋଟିଏ ସଭାରେ ମିଳିତ ହୋଇ ବିଚାର ବିମର୍ଷ କରୁଥା'ନ୍ତି । ସଂଯୋଗକ୍ରମେ ବିଶୁ ମହାରଣାଙ୍କ ବାରବର୍ଷର ପୁତ୍ର ଧର୍ମପଦ ପିତାଙ୍କ ସହ ସାକ୍ଷାତ ଉଦ୍ଦେଶ୍ୟରେ ଆସି ଉପସ୍ଥିତ ଥାଏ ସେହି ସଭାରେ । ହତୋତ୍ସାହିତ ଶିଳ୍ପୀମାନଙ୍କୁ ଆଶ୍ୱାସନା ଦେବାପାଇଁ ଧର୍ମପଦ ମୁହଁରେ କବି ଗୋପବନ୍ଧୁ ଯେଉଁ ଭାଷା ଦେଇଥିଲେ, ତାହା ଥିଲା ଜଣେ ଓଡ଼ିଆ ଶିଶୁର ପ୍ରଭୁ ଶ୍ରୀଜଗନ୍ନାଥ ଓ ଅନ୍ୟ ଦେବା-ଦେବୀଙ୍କ ପ୍ରତି ପ୍ରଚୁର ଭକ୍ତି ଓ ଭରସାର ନିଦର୍ଶନ ।

ଯୋଡିକର ବେନି ସବିନୟ ବାଣୀ<br>
କହେ ଶେଷେ ଧର୍ମପଦ-<br>
''ନୀଳାଚଳେ ଯେବେ ସତ୍ୟ ଜଗନ୍ନାଥ<br>
ନ ହେବ କିଛି ଆପଦ ।''

ଜଣେ ଓଡ଼ିଆ ନାରୀର ତା'ପୁତ୍ରର ମଙ୍ଗଳ ପାଇଁ ପ୍ରଭୁ ଜଗନ୍ନାଥଙ୍କ କରୁଣା ଉପରେ ଥିବା ଭରସାର ଚିତ୍ର ପରିଲକ୍ଷିତ ହୁଏ ଗୋପବନ୍ଧୁଙ୍କ କାବ୍ୟକୃତି 'ଧର୍ମପଦ'ରେ । ବାରଣ ସତ୍ତ୍ୱେ ଚନ୍ଦ୍ରଭାଗା ଯାଇ ପିତାଙ୍କ ଦର୍ଶନ ଓ ଶତଶତ ଜାତି ପୁଅଙ୍କ ଦ୍ୱାରା ଧର୍ମ ଦେବତାଙ୍କ ରଥ ନିର୍ମାଣ କୌଶଳ ପ୍ରତ୍ୟକ୍ଷ ଦର୍ଶନ ନିମନ୍ତେ ଧର୍ମପଦର ଆଗ୍ରହ ଓ ଯୁକ୍ତି ନିକଟରେ ପରାଜିତ ମାଆ ଶେଷରେ ଅନୁମତି ଦେବାକୁ ବାଧ୍ୟ ହୁଅନ୍ତି ସେଠାକୁ ଯିବା ପାଇଁ । ପୁତ୍ରର ବୁଦ୍ଧି, ଜ୍ଞାନ ଓ ସାହସ ଦେଖି ଆତ୍ମହରା ମାଆ ଆଶା କରେ, ପ୍ରଭୁ ଜଗନ୍ନାଥଙ୍କ କୃପା ହେଲେ, ତା'ର ପୁତ୍ର ନିଶ୍ଚୟ ବଂଶର ଗୌରବ ଓ ଯଶ ରକ୍ଷା କରିବ ।





''ମରିଯାଏ ଆହା ମୋ ଧନମାଳିରେ
କେଡେ ବୁଦ୍ଧି କି ସାହସ ?
ଜଗନ୍ନାଥେ କୃପା କଲେ ତୁ ରଖିବୁ
କୁଳ-ଗଉରବ ଯଶ ।''

ଶ୍ରୀଜଗନ୍ନାଥଙ୍କ ଉପରେ ଉତ୍କଳର ନର-ନାରୀ ଭରସା କରି ଆସୁଛନ୍ତି- ଏହା ଉଲ୍ଲେଖ କରିବା ସହ ନିଜେ ଜଗନ୍ନାଥଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖିଥିବା ଦର୍ଶାଇବାକୁ ମଧ୍ୟ ଗୋପବନ୍ଧୁ ଭୁଲି ନାହାନ୍ତି । ହଜାରୀବାଗ କାରାଗାରକୁ ବନ୍ଦୀ ଭାବରେ ସ୍ଥାନାନ୍ତରିତ ହେଲାବେଳେ ତାଙ୍କର ହୃଦ୍‌ବୋଧ ହୋଇଛି, ଭାରତବର୍ଷର ଯେଉଁ ସ୍ଥାନରେ ରହିଲେ ମଧ୍ୟ ତାଙ୍କ ପାଇଁ ତାହା ଆପଣା କକ୍ଷ । ଭାରତର ପ୍ରତିଷ୍ଠାନ ତାଙ୍କ ପାଇଁ ପୁଣ୍ୟ ନୀଳାଚଳ । ''ବନ୍ଦୀର ଆତ୍ମକଥା'' ମାଧ୍ୟମରେ ସେ ଜଣାଇଛନ୍ତି- ପ୍ରଭୁ ଜଗନ୍ନାଥ ହିଁ ଏକମାତ୍ର ଆଶ୍ରା । ସେ ଚାହିଁଲେ ଦେଶର ସମସ୍ତ ଦୁର୍ଗତି ଦୂର ହୋଇପାରିବ ।

ଭାରତର ପ୍ରତି ବୃକ୍ଷ କଳ୍ପବଟ,
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।

XXXXXX

ଥିଲେ ଯହିଁ ତହିଁ ଭାରତ ଶୟନେ,
ମଣିବି ମୁଁ ଅଛି ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ,
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।

ସ୍ୱାଧୀନତା ସଂଗ୍ରାମ ଅବ୍ୟାହତ ରଖିବାକୁ ଯେଉଁ ପ୍ରେରଣା ଦାୟକ ବାଣୀ ପ୍ରଦାନ କରିଥିଲେ ଗୋପବନ୍ଧୁ, ତାହା ଲକ୍ଷ ଲକ୍ଷ ଲୋକଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଆତ୍ମୀୟ ଦେଶବାସୀଙ୍କୁ ତାଙ୍କ କାରାଦଣ୍ଡରେ କାତର ନହେବା ପାଇଁ ସେ ପରାମର୍ଶ ଦେଇଥିଲେ । ତାଙ୍କର ଅନୁପସ୍ଥିତିରେ ନିରାଶ ନହୋଇ ବିଦେଶୀ ବିରୋଧରେ ଆନ୍ଦୋଳନ ପୂର୍ବବତ୍ ଅଗ୍ରସର କରିବା ପାଇଁ ସେ ଅନୁରୋଧ କରିଥିଲେ । ନାବିକ ବିନା ସ୍ୱରାଜ୍ୟ ନୌକା ଯେ ଚାଲିପାରିବ ନାହିଁ, ଏ ଭାବନା ନ ରଖି ସଂଗ୍ରାମ ଚାଲୁ ରଖିବା ପାଇଁ ସେ ଆହ୍ୱାନ ଦେଇଥିଲେ ।

ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।

ଆନ୍ଦୋଳନ ଓ ସଙ୍ଗଠନ କ୍ଷେତ୍ରରେ ନେତୃତ୍ୱର ଅଭାବ ସମ୍ପର୍କରେ ପ୍ରଶ୍ନବାଚୀ ସୃଷ୍ଟି ହେଲେ କାଳଜୟୀ ଉକ୍ତ ପଂକ୍ତିଟି ସର୍ବତ୍ର ଏବେ ମଧ୍ୟ ଉଚ୍ଚାରଣ ହେଉଥିବା ପରିଲକ୍ଷିତ । ନିଜ ହାତରେ ତରବାରୀ ଧରି ପ୍ରଭୁ ଜଗନ୍ନାଥ ସେନାପତି ସାଜି ଉତ୍କଳର ମାନ-ସମ୍ମାନ ରକ୍ଷା ପାଇଁ କାଞ୍ଚି ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ଯେଉଁ ବିଜୟର ବୈଜୟନ୍ତୀ ଉଡାଇଥିଲେ, ତାହା ଉଲ୍ଲେଖଯୋଗ୍ୟ । ଗୋପବନ୍ଧୁ ଜନଶ୍ରୁତିକୁ ସତ୍ୟରୂପେ ପ୍ରତିପାଦିତ କରିବାକୁ ଯାଇ 'ମାଣିକ ପାଟଣା' ତାହାର ସାକ୍ଷୀ ବୋଲି ଦର୍ଶାଇଛନ୍ତି । ପ୍ରଭୁ ଜଗନ୍ନାଥ ଥାଉ ଥାଉ ଉତ୍କଳର ଦୁର୍ଦ୍ଦଶା ତାଙ୍କୁ ବ୍ୟଥିତ କରିଛି ।

ଏବେ ନୀଳାଚଳେ ବିଜେ ଜଗନ୍ନାଥ
ତେବେ କହ କିମ୍ପା ଉତ୍କଳ ଅନାଥ ?

ଉତ୍କଳୀୟମାନେ ପୂର୍ବବଳ, ବୀର୍ଯ୍ୟ ଓ ସାହସ ହରାଇ ବସିଛନ୍ତି । ସେଥିରେ ମର୍ମାହତ କବି ଗୋପବନ୍ଧୁ ଗାଇଛନ୍ତି-

ଉତ୍କଳବାସୀଙ୍କ ଦେଖି ଏ ଦୁର୍ଗତି
ଦାରୁଭୂତ ଏବେ ନୀଳାଚଳ ପତି ।

''କାରା କବିତା'' ଗ୍ରନ୍ଥର ''ବନ୍ଦୀର ସ୍ୱଦେଶ-ଚିନ୍ତା' କବିତାରେ କବି ଗୋପବନ୍ଧୁଙ୍କ ହୃଦୟରେ ମଧୁର ମଳୟ ଅନେକ ସ୍ମୃତିକୁ ଜାଗ୍ରତ କରିଛି । ଭାର୍ଗବୀ କୂଳରେ ତରୁଣ ଜୀବନ ଓ ଗ୍ରାମ୍ୟ ଜୀବନର ଚିତ୍ରପଟ ତାଙ୍କ ହୃଦୟକୁ ଆନ୍ଦୋଳିତ କରିଛି । ସିନ୍ଧୁ ଉପକଣ୍ଠ ଶ୍ରୀକ୍ଷେତ୍ର ଧାମର ଆଧ୍ୟାତ୍ମିକ ସ୍ପର୍ଶ ଓ ଗନ୍ଧ ବହନ କରି ମଧୁର ମଳୟ ବନ୍ଦୀଶାଳାକୁ ଆସିଥିବା ସେ ଅନୁଭବ କରି ତାକୁ ପ୍ରଶ୍ନ କରିଥିଲେ -

ପୁଣ୍ୟ ଗନ୍ଧବହ କର ଅନୁଗ୍ରହ
କହ ପ୍ରିୟ ପୁରୀ ସୁସମାଚାର
କନ୍ଦର-ନିବାସୀ ପ୍ରଭୁ ବ୍ରହ୍ମରାଶି
କରୁଛନ୍ତି ଏବେ କେଉଁ ବିଚାର ?

ଗୋପବନ୍ଧୁ ଆଶା ପ୍ରକଟ କରିଛନ୍ତି, ନୀଳାଚଳବାସୀ ସମୀରଣ ହସ୍ତରେ ତାଙ୍କ ପାଇଁ ଆଶ୍ୱାସନା ଦେଇ କିଛି ଶୁଭବାର୍ତ୍ତା ପଠାଇଛନ୍ତି କି ? ସାଧୁ-ସନ୍ଥ, ସେବକ ଓ ମହନ୍ତମାନେ ଦେଶର ସ୍ୱରାଜ୍ୟ ସମ୍ପର୍କରେ କିଛି ଆଲୋଚନା କରନ୍ତି କି ? ଜାତୀୟ ସମସ୍ୟା ପ୍ରତି ସେମାନଙ୍କର କି ବିଚାର ? ନୀଳାଚଳ ଧାମର ଗୋଡି ମାଟି ଗୋପବନ୍ଧୁଙ୍କର ଅତି ପ୍ରିୟ । ପ୍ରଭୁ ଜଗନ୍ନାଥ ହେଉଛନ୍ତି ତାଙ୍କ ଜୀବନ ଯାତ୍ରାର ମୁଖ୍ୟ ନିୟନ୍ତ୍ରକ । ବନ୍ଦୀଶାଳାରେ ରହି ତାଙ୍କ ହୃଦୟର ଅବସାଦକୁ ଅପସାରଣ କରିବା ପାଇଁ ସେ ପୁନଶ୍ଚ ପ୍ରଶ୍ନ କରିଛନ୍ତି ।




''ଗମ୍ଭୀରାକୁ କିବା ଶ୍ରୀମୁଖ ଆଦେଶ
ପଠାଇଛନ୍ତି ଦେବ ମୋ ପାଇଁ
କହ କେବେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ?''

'ବନ୍ଦୀର ସନ୍ଧ୍ୟା ଭାବନା' କବିତାରେ ଗୋପବନ୍ଧୁ ସଂଧ୍ୟା ସମୟର ବାସ୍ତବ ଚିତ୍ରପଟ ପ୍ରଦାନ କରିଛନ୍ତି । ନୀଳାଚଳ ଧାମର ସାନ୍ଧ୍ୟ ଆଧାତ୍ମିକ ପରିବେଶ ତାଙ୍କୁ ଭାବ ବିହ୍ୱଳ କରିଛି ।

ବାଜିବଣି ନୀଳାଚଳେ କେତେ ଘଣ୍ଟା ଭେରି ତୂରି
ଏ ସନ୍ଧ୍ୟା ଆରତି ବେଳେ ବେଢା ଉଠୁଥିବ ପୂରି ।

ସନ୍ଧ୍ୟା ଆରତି ବେଳେ ଶ୍ରୀମନ୍ଦିର ବେଢାର ନିଆରା ଅନୁଭବ ଭକ୍ତ ମନରେ ଗଭୀର ରେଖାପାତ କରିଥାଏ । ବେଢା ଭିତରେ ଘଣ୍ଟା ଘଣ୍ଟା ଅତିବାହିତ କରିବାକୁ ଇଚ୍ଛା ପ୍ରକଟ କରେ ଭକ୍ତ । ସେ ଅନୁଭବ କରେ ସତେ ଯେମିତି, ସାରା ଜୀବନର ଶାନ୍ତି ଏଇ ବେଢା ଭିତରେ ମିଳିଯାଉଛି । ଗୋପବନ୍ଧୁଙ୍କୁ କାରାଗାର ମଧ୍ୟରେ ଏହି ଅମୃତ ଅନୁଭବ ବାରମ୍ବାର ଆକର୍ଷିତ କରିଛି ।

'ଅବକାଶ ଚିନ୍ତା' କବିତା ଗ୍ରନ୍ଥର 'ରେଳ ଉପରେ ଚିଲିକା ଦର୍ଶନ' ଏକ ଲୋକପ୍ରିୟ କବିତା । ରେଳରେ ଯାତ୍ରା କରୁଥିବା ସମୟରେ ଗୋପବନ୍ଧୁ ଚିଲିକାର ଅପୂର୍ବ ଦୃଶ୍ୟରାଜି ଦେଖି ବିମୋହିତ ହୋଇଥିଲେ । ସେତେବେଳେ ଉତ୍କଳର ଗୌରବ ଅତୀତ ତାଙ୍କର ସ୍ମରଣ ହୋଇଛି । ଅତୀତର ସେହି ଗୌରବ ଆଉ ନାହିଁ । ସେଥିପାଇଁ ସେ କ୍ଷୋଭ ପ୍ରକାଶ କରିଛନ୍ତି ।

କାହିଁ ଉତ୍କଳର ସେ ସୁକୃତ ରାଶି ?
ଯାହାର ପ୍ରଭାବେ ପ୍ରଭୁ ବ୍ରହ୍ମରାଶି
ନିଜେ ନିରଞ୍ଜନ ଜଗତ-ଈଶ୍ୱର
ଧରିଣ ସୈନିକ ନର-କଳେବର
ଉତ୍କଳର ଯଶଃ ପ୍ରତିଷ୍ଠା ରକ୍ଷଣେ
ବିଜେ କଲେ ଘୋର ସମର ପ୍ରାଙ୍ଗଣେ ।

'କାଞ୍ଚି ବିଜୟ' ଜନଶ୍ରୁତିଟି କବି ଗୋପବନ୍ଧୁଙ୍କ ମନରେ ବାରମ୍ବାର ଆଲୋଡନ ସୃଷ୍ଟି କରିଛି । ଉତ୍କଳର ଯଶ ପ୍ରତିଷ୍ଠା ପାଇଁ ପ୍ରଭୁ ଜଗନ୍ନାଥଙ୍କ ଅବଦାନ ଅତୁଳନୀୟ । ସେ ହେଉଛନ୍ତି ଭକ୍ତର ବନ୍ଧୁ । ସେ ସଦାସର୍ବଦା ଉତ୍କଳର କଲ୍ୟାଣ ଚାହାଁନ୍ତି । 'ବଳରାମ ଦାସ' କବିତାରେ ପୁନଶ୍ଚ ସେ ଗାଇ ଉଠିଛନ୍ତି-

ହୁଏ ମୋ ପ୍ରତୀତି ନୀଳାଚଳ ପତି
ଭକତ-ବନ୍ଧୁ ଠାକୁର
ଉତ୍କଳ କଲ୍ୟାଣେ ଯୁଦ୍ଧ ଅଭିଯାନେ
ଜିଣିଲେ ଯେ କାଞ୍ଚିପୁର ।

ଆଶାବାଦୀ ଗୋପବନ୍ଧୁ ଦୁର୍ଗତିର ନିରାକରଣ ପାଇଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିଲେ । ତାଙ୍କ ଗଦ୍ୟ ରଚନାରେ ମଧ୍ୟ ଏହା ଦେଖିବାକୁ ମିଳିଛି । ୪.୧୦.୧୯୧୯ ତାରିଖ 'ସମାଜ'ରେ 'ଭାରତୀୟ ରାଜନୀତିରେ ସମାଜର ଆବିର୍ଭାବ' ଶୀର୍ଷକ ଲେଖା ଲେଖିବାକୁ ଯାଇ ସେ ଦର୍ଶାଇଛନ୍ତି- ''ଅନାଥର ନାଥ ପ୍ରଭୁ ଜଗନ୍ନାଥଙ୍କ କରୁଣା ଆମ୍ଭମାନଙ୍କର ପ୍ରଧାନ ସମ୍ବଳ । ଆମ୍ଭମାନଙ୍କର ସବୁପ୍ରକାରେ ବର୍ତ୍ତମାନ ଘୋର ଆର୍ତ୍ତର ସମୟ । ଆର୍ତ୍ତତ୍ରାଣଙ୍କ ଆଶ୍ରା ବିନା ପରିତ୍ରାଣ ନାହିଁ । ଆମ୍ଭମାନଙ୍କ ପ୍ରାଣରେ ଉତ୍ସାହ ନାହିଁ, ଅଛି କେବଳ ବିଶ୍ୱାସ ।''

'ବନ୍ଦୀର ଆତ୍ମକଥା'ରେ ଗୋପବନ୍ଧୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ ଯେଉଁ ଭରସା ବ୍ୟକ୍ତ କରିଛନ୍ତି-

''କ୍ଷୀଣ ହେଲେ କେବେ ଧାର୍ମିକ ଶକତି
ଆସନ୍ତି ଓହ୍ଲାଇ ପ୍ରଭୁ ବିଶ୍ୱପତି,
ନିତ୍ୟ ଧାମୁ ଛାଡି ରତ୍ନ ସିଂହାସନ
କରିବାକୁ ଧର୍ମ ପକ୍ଷ ସମର୍ଥନ ।''

ତାହା ସବୁ ସମୟରେ ସମଗ୍ର ମାନବ ଜାତି ପାଇଁ ଆଶାର ଆଲୋକବର୍ତ୍ତିକା ସଦୃଶ । ବର୍ତ୍ତମାନ ସମୟରେ ମଧ୍ୟ ଜଗତ ଚାହୁଁଛି, ପ୍ରଭୁ ଶ୍ରୀଜଗନ୍ନାଥ ରତ୍ନ ସିଂହାସନ ଛାଡି ଧର୍ମର ପକ୍ଷ ସମର୍ଥନ କରନ୍ତୁ । ଜଗତକୁ ଦୁର୍ଗତିମୁକ୍ତ କରନ୍ତୁ ।

ଗୋପବନ୍ଧୁ ନିଜର ସାହିତ୍ୟ ସୃଷ୍ଟିରେ ଜଗନ୍ନାଥଙ୍କୁ ଯେଉଁ ମର୍ଯ୍ୟାଦା ପ୍ରଦାନ କରିଛନ୍ତି, ତାହା ଏକ ଚିରନ୍ତନ ଚେତନାର ଉତ୍ସ ରୂପେ ଉଦ୍‌ଭାସିତ । ତାଙ୍କ ଦୃଷ୍ଟିରେ ଗଣ ଦେବତା ଉତ୍କଳର ପ୍ରାଣ ନୀଳାଚଳ ବିହାରୀ ପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି, ଅନାଥର ନାଥ । ଦୁର୍ଗତି କାଳରେ ଉତ୍କଳର ସାହା ଭରସା । ପୁତ୍ରର ମଙ୍ଗଳକାମୀ ଜଣେ ଉତ୍କଳୀୟ ନାରୀ ପାଇଁ ସେ କୃପାସିନ୍ଧୁ । ସେ ହେଉଛନ୍ତି ଉତ୍କଳର ଅଦୃଷ୍ଟ ନେତା । ତାଙ୍କରି ଇଙ୍ଗିତରେ ଜାତୀୟ ବିକାଶ ପାଇଁ ସଂଗ୍ରାମର ସ୍ରୋତ ପ୍ରବାହିତ ହୁଏ । ମହାଭାରତୀୟ ଭାବନାର ସେ କେନ୍ଦ୍ରବିନ୍ଦୁ । ଉତ୍କଳର ସମ୍ମାନ ରକ୍ଷା ପାଇଁ ସେନାପତି ସାଜି ସେ କୃପାଣ ଧରି ଯୁଦ୍ଧ କରିପାରନ୍ତି । ପ୍ରଭୁ ଜଗନ୍ନାଥଙ୍କୁ ସ୍ମରଣ କଲେ ସବୁ ସଙ୍କଟରୁ ଉଦ୍ଧାର ପାଏ ମାନବ ଜାତି । ସେ ଜଗତର ତ୍ରାଣକର୍ତ୍ତା ।

ନାଗାବଗିଚା, ପ୍ରଥମ ଗଳି,
ମଧୁବନ, ପୁରୀ-୨

# ବିଶ୍ୱ ମାନଚିତ୍ରରେ ଶ୍ରୀଜଗନ୍ନାଥ ସଂସ୍କୃତି

ଡକ୍ଟର ବଳରାମ ଦାସ

ବିଶ୍ୱ ବିସ୍ମୟର ଅନୁପମ ପ୍ରତୀକ, ମହାପ୍ରଭୁ ଶ୍ରୀଜଗନ୍ନାଥ ସଂସ୍କୃତି କେବଳ ଓଡ଼ିଶା କିମ୍ବା ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ମଧ୍ୟ ସୁପ୍ରସାରିତ । ପ୍ରସାରଣର ଏହି ବିଶ୍ୱରୂପ ଦେଖିଲେ ମନେହୁଏ, ବିଶ୍ୱମାନବର ଚେତନାରେ ଶ୍ରୀଜଗନ୍ନାଥ ଆଜି ଏକ ଆଧ୍ୟାତ୍ମିକ ଶିହରଣରେ ପରିଣତ ହୋଇଛନ୍ତି । ବିଭିନ୍ନ ସ୍ଥାନରୁ ଅଗଣିତ ଦର୍ଶନାର୍ଥୀ ସାରା ବର୍ଷ ଧରି ପୁରୀକୁ ଆସୁଥିବାର ଦୃଶ୍ୟ ଦେଖିଲେ ଏହି କଥାର ଯଥାର୍ଥତା ଅନୁଭବ କରିହେବ ।



ଶ୍ରୀଜଗନ୍ନାଥ ସଂସ୍କୃତିର ଏହି ବିଶ୍ୱ ବ୍ୟାପକତା ମୂଳରେ ରହିଛି ଏହାର ଧର୍ମୀୟ ଉଦାରତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପ୍ରେରଣା, ମଣିଷ-ମଣିଷ ମଧ୍ୟରେ ମୈତ୍ରୀ ଚେତନାର ବିସ୍ତାର, ଜାତି-ଜାତି ମଧ୍ୟରେ ସଂହତି ରକ୍ଷାର ସଂଦେଶ ଆଉ ସର୍ବୋପରି ଅଲୌକିକ ମାନବିକତାର ଗଭୀର ସ୍ପନ୍ଦନ । ସବୁ ଧର୍ମ, ସବୁ ବର୍ଣ୍ଣ, ସବୁ ସଂପ୍ରଦାୟ, ସବୁ ଭାଷାର ଊର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ ସଂସ୍କୃତି ସମଗ୍ର ବିଶ୍ୱକୁ ଏକ ଓ ଅଭିନ୍ନ ହେବାର ପ୍ରେରଣାରେ ଅନୁପ୍ରାଣିତ କରିଆସିଛି । ସେଥିପାଇଁ ଭାରତର ବିଭିନ୍ନ ସ୍ଥାନ ବ୍ୟତୀତ ବିଶ୍ୱର ଅନେକ ଦେଶରେ ଦେଖିବାକୁ ମିଳିଥାଏ ଶ୍ରୀଜଗନ୍ନାଥ ସଂସ୍କୃତିର ବର୍ଣ୍ଣାଢ୍ୟ ପ୍ରକାଶ ।

ଜାଗତିକ ବିଶ୍ୱର ଚରମାନନ୍ଦ ଉପଭୋଗ କରିସାରିବା ପରେ ସୁଦ୍ଧା ଆଧୁନିକ ମଣିଷ ଏବେ ଯେମିତି ଅଣନିଃଶ୍ୱାସୀ ହୋଇଉଠିଛି, ସଭ୍ୟତାର ଇତିହାସରେ ସେପରି ଅବସ୍ଥା କେବେ ମଧ୍ୟ ସୃଷ୍ଟି ହୋଇନାହିଁ । ବ୍ୟାକୁଳ ଭାବରେ ସେ ଆଜି ଖୋଜୁଛି ପରିତ୍ରାଣର ପଥ । ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ଏପରି ପରିସ୍ଥିତିରେ ତା' ପାଇଁ ହୋଇପାରିବ ଜୀବନ ରକ୍ଷାକାରୀ ବିଶୁଦ୍ଧ ଅମ୍ଳଜାନ- ଆଜି ଏମିତି ଏକ ପ୍ରତ୍ୟୟ ଧୀରେ ଧୀରେ ତା'ମନରେ ଦାନା ବାନ୍ଧୁଛି । ସେ ଭାବୁଛି ଓ କ୍ରମଶଃ ଦୃଢ ନିଶ୍ଚିତ ହେଉଛି ଯେ, ପରିତ୍ରାଣ ପାଇଁ ତା'ର ଅନ୍ୱେଷାର ସକଳ ଦୃଷ୍ଟି ଓ ଦିଗନ୍ତ ହେଉଛନ୍ତି ଶ୍ରୀଜଗନ୍ନାଥ । ସେଥିପାଇଁ ଆଜି ସମଗ୍ର ବିଶ୍ୱରେ ଶ୍ରୀଜଗନ୍ନାଥଙ୍କୁ ନେଇ ସୃଷ୍ଟି ହୋଇଛି ସ୍ୱତଃସ୍ଫୂର୍ତ୍ତ ଉଦ୍‌ବେଳନ । ଭାରତ ବାହାରେ ବିଭିନ୍ନ ଦେଶରେ ଜଗନ୍ନାଥ ସଂସ୍କୃତି ପ୍ରତି ଯେଉଁ ଆଗ୍ରହ ତଥା ଆକର୍ଷଣ ସୃଷ୍ଟି ହୋଇଛି, ସେ ସମ୍ପର୍କରେ କିଞ୍ଚିତ ପରିଚୟ ପ୍ରଦାନ ହିଁ ଏହି ଆଲୋଚନାର ମୁଖ୍ୟ ସ୍ୱର । ବିଷୟର ବ୍ୟାପକତା ଦୃଷ୍ଟିରୁ ଏହାକୁ ଦୁଇଟି ପର୍ଯ୍ୟାୟରେ ଆଲୋଚନା କରାଯାଇଛି, ଯଥା- ବିଶ୍ୱର ବିଭିନ୍ନ ଦେଶରେ ଶ୍ରୀଜଗନ୍ନାଥ ସଂସ୍କୃତି ଓ ବିଦେଶୀ ପର୍ଯ୍ୟଟକଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ସଂସ୍କୃତି ।

### ବିଶ୍ୱର ବିଭିନ୍ନ ଦେଶରେ ଶ୍ରୀଜଗନ୍ନାଥ ସଂସ୍କୃତି

ଏକଦା ବ୍ରହ୍ମଦେଶ (ମିଆଁମାର) ସହିତ ଉତ୍କଳର ଥିଲା ଘନିଷ୍ଠ ବାଣିଜ୍ୟିକ ସମ୍ପର୍କ । କାରଣ ବହିର୍ବାଣିଜ୍ୟରେ ଉତ୍କଳୀୟମାନେ ଥିଲେ ଅତ୍ୟନ୍ତ ଦକ୍ଷ । ବାଣିଜ୍ୟ ଉଦ୍ଦେଶ୍ୟରେ ବହୁ ଉତ୍କଳୀୟ ବ୍ରହ୍ମଦେଶକୁ ଯାଉଥିବାରୁ ସେଠାରେ କ୍ରମଶଃ ଓଡ଼ିଆମାନଙ୍କର ଏକ ଉପନିବେଶ ଗଢି ଉଠିଥିଲା । ବ୍ରହ୍ମଦେଶର ପ୍ରାଚୀନ ଇତିହାସରୁ ଜଣାଯାଏ ଯେ, ଏକ ସମୟରେ ଏହି





ଦେଶରେ ଅବସ୍ଥିତ 'ପ୍ରୋମ' ସହରର ନାମ ଥିଲା ଶ୍ରୀକ୍ଷେତ୍ର ଏବଂ ସାମଗ୍ରିକ ଭାବରେ ଏହି ଅଞ୍ଚଳକୁ କୁହାଯାଉଥିଲା 'ଉତ୍କଳ' । ଉତ୍କଳୀୟମାନଙ୍କର ଆତ୍ମ ପରିଚିତିର ମୂଳ ଆଧାର ହେଉଛନ୍ତି ଶ୍ରୀଜଗନ୍ନାଥ । ସେଥିପାଇଁ ଉତ୍କଳୀୟମାନେ ସ୍ଥାପନ କରିଥିବା ଉପନିବେଶକୁ ଉତ୍କଳ ନାମରେ ଓ ପ୍ରୋମ ସହରକୁ ଶ୍ରୀକ୍ଷେତ୍ର ନାମରେ ନାମିତ କରିଥିଲେ । ଫଳରେ ବ୍ରହ୍ମଦେଶରେ ଶ୍ରୀଜଗନ୍ନାଥ ସଂସ୍କୃତି ବେଶ୍ ପ୍ରସାରିତ ହୋଇପାରିଥିଲା ।

ଭାରତର ପଡୋଶୀ ଦେଶ ବାଲାଂଦେଶ, ନେପାଳ ତଥା ଶ୍ରୀଲଙ୍କାରେ ମଧ୍ୟ ଶ୍ରୀଜଗନ୍ନାଥ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଛି । କିମ୍ବଦନ୍ତୀରୁ ଜଣାଯାଏ ଯେ, ବାଲାଂଦେଶର ଢାକା ନଗରୀରେ ପାଳ ବଂଶର ରାଜା ଯଶପାଳଙ୍କ ଦ୍ୱାରା ଜଗନ୍ନାଥଙ୍କର ଏକ ମନ୍ଦିର ନିର୍ମାଣ କରାଯାଇଥିଲା । ଦ୍ୱାଦଶ ଶତାବ୍ଦୀଠାରୁ ସେଠାରେ ପଚାଶ ଫୁଟ ଉଚ୍ଚତା ବିଶିଷ୍ଟ ଏକ ବିଶାଳ ରଥ ନିର୍ମାଣ କରାଯାଇ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଛି ।

ଶ୍ରୀଜଗନ୍ନାଥ ସଂସ୍କୃତିରେ ନେପାଳ ରାଜାଙ୍କର ଭୂମିକା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ସେ ରତ୍ନସିଂହାସନ ଉପରେ ଉପବେଶନ କରି ଜଗନ୍ନାଥଙ୍କୁ ସ୍ୱତନ୍ତ୍ର ଭାବରେ ପୂଜା କରିବା ପାଇଁ ଅଧିକାର ପ୍ରାପ୍ତ । ମନ୍ଦିର ନିର୍ମାଣ ପରେ ତ୍ରିମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିବା ସମୟରେ ଦୁଇଟି ବିଷ୍ଣୁଶିଳା (ଶାଳଗ୍ରାମ)ର ଆବଶ୍ୟକତା ପଡିବାରୁ ଶଙ୍କରାଚାର୍ଯ୍ୟଙ୍କ ନିର୍ଦ୍ଦେଶରେ ଜଣେ ସନ୍ନ୍ୟାସୀ ନେପାଳ ଯାଇ ରାଜାଙ୍କଠାରୁ ତାହା ଆଣିବା ପରେ ମୂର୍ତ୍ତି ପ୍ରତିଷ୍ଠା ସମାପନ ହୋଇଥିଲା । ଦିଅଁମାନେ ଅଣସରରେ ଥିଲାବେଳେ ସେମାନଙ୍କର ଯେଉଁ କସ୍ତୁରୀ ଉପଚାର ହୋଇଥାଏ, ତାହାକୁ ନେପାଳର ରାଜାହିଁ ଶ୍ରୀମନ୍ଦିରକୁ ଯୋଗାଉଥିଲେ । ରାଜା ବୀରେନ୍ଦ୍ର ବଞ୍ଚିଥିବା ଯାଏ ଏହି ଧାରା ଅବ୍ୟାହତ ଥିଲା । ଏପରିକି ୧୯୯୩ ମସିହାରେ ରାଜା ବୀରେନ୍ଦ୍ର ପୁରୀ ଆସିଥିବା ବେଳେ ଶ୍ରୀମନ୍ଦିରକୁ ଆବଶ୍ୟକୀୟ କସ୍ତୁରୀ ଯୋଗାଇ ଦେଇଥିଲେ । ଏହି ସବୁଥିରୁ ନେପାଳରେ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରତି କିପରି ପ୍ରତିବଦ୍ଧତା ରହିଛି ତା'ର ସୂଚନା ମିଳିଥାଏ ।

ସିଂହଳ(ଶ୍ରୀଲଙ୍କା)ରେ ଆଷାଢ ମାସରେ ଯେଉଁ ରଥଯାତ୍ରା ଅନୁଷ୍ଠିତ ହୁଏ, ତାହାକୁ 'ପେରହେରା' ବୋଲି କୁହାଯାଇଥାଏ । ଏହି ଯାତ୍ରା ଉପଲକ୍ଷେ ତିନି ଦିଅଁ ବିଷ୍ଣୁ, ନାଥ ଓ ପତ୍ତିନୀ ଦେବୀଙ୍କୁ ଦେଉଳରୁ ଅଣାଯାଇ ରଥାରୂଢ କରାଯାଏ ଏବଂ ମହାସମାରୋହରେ ରଥ ଟଣା ଅନୁଷ୍ଠିତ ହୁଏ । ଶ୍ରୀଲଙ୍କାର ନାଥଦେବ ହେଉଛନ୍ତି ବୁଦ୍ଧ ଏବଂ ଜଗନ୍ନାଥଙ୍କ ପରି । ଜଗନ୍ନାଥଙ୍କ ନବକଳେବର ପାଇଁ ପବିତ୍ର ଦାରୁର ଅନ୍ୱେଷଣ କରାଯିବା ପରି ଶ୍ରୀଲଙ୍କାର ନାଥଦେବଙ୍କ ପାଇଁ ପଣସ ଗଛର ଅନ୍ୱେଷଣ କରାଯାଏ । ବୃକ୍ଷର ସନ୍ଧାନ ମିଳିଲା ପରେ ଯଥାବିଧି ପୂଜା ସମ୍ପନ୍ନ ହୁଏ, ଯାହା ଶ୍ରୀଜଗନ୍ନାଥଙ୍କ ପବିତ୍ର ଦାରୁ କ୍ଷେତ୍ରରେ କରାଯାଇଥାଏ । ରଥଯାତ୍ରାରେ ଗଜପତି ରାଜାଙ୍କର ପ୍ରତ୍ୟକ୍ଷ ଅଂଶଗ୍ରହଣ ପରି ଶ୍ରୀଲଙ୍କାର ଏହି ରଥଯାତ୍ରା ଉତ୍ସବରେ ସେଠାକାର ରାଜା ମଧ୍ୟ ପ୍ରତ୍ୟକ୍ଷ ଭାବରେ ଯୋଗଦାନ କରନ୍ତି । ତେଣୁ ମହାପ୍ରଭୁଙ୍କର ନବକଳେବର ଉତ୍ସବ ସହିତ ଶ୍ରୀଲଙ୍କାର ଏହି ଉତ୍ସବର ଯେ ଘନିଷ୍ଠ ସାମଞ୍ଜସ୍ୟ ରହିଛି, ଏଥିରେ ସନ୍ଦେହ ନାହିଁ ।

ବାଲିଦ୍ୱୀପରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ପୂଜା ଉପାସନା ପ୍ରଚଳିତ ଅଛି । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ସ୍ୱରୂପରେ ପୂଜା କରାଯାଉଥିବା ବେଳେ ବାଲିଦ୍ୱୀପରେ ତାଙ୍କୁ ଶିବ ସ୍ୱରୂପରେ ପୂଜା କରାଯାଏ । ସେଠାରେ ଶ୍ରୀଜଗନ୍ନାଥ ସଂସ୍କୃତିର ବିପୁଳ ଲୋକପ୍ରିୟତା ରହିଛି ।

ଏହିସବୁ ଦେଶ ବ୍ୟତୀତ ବିଶ୍ୱର ଅନ୍ୟାନ୍ୟ ଦେଶରେ ମଧ୍ୟ ଶ୍ରୀଜଗନ୍ନାଥ ସଂସ୍କୃତି ସୁପ୍ରସାରିତ । ବିଶେଷ କରି ଇସ୍କନ ସଂସ୍ଥା ତରଫରୁ ଲଣ୍ଡନ ସହରରେ ବିପୁଳ ଜନସମାଗମ ମଧ୍ୟରେ ରଥଯାତ୍ରା ଅନୁଷ୍ଠିତ ହେବା ଶ୍ରୀଜଗନ୍ନାଥ ସଂସ୍କୃତିର ଲୋକପ୍ରିୟତା ପ୍ରମାଣିତ କରିଥାଏ । ପୁଣି ମାଲେସିଆ, ସ୍ପେନ୍, ଇଟାଲୀ, ସ୍ୱିଜରଲ୍ୟାଣ୍ଡ, ଅଷ୍ଟ୍ରେଲିଆ, ଦକ୍ଷିଣଆଫ୍ରିକା ଓ ଋଷିଆ ପ୍ରଭୃତି ଦେଶରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ମନ୍ଦିର ନିର୍ମିତ ହୋଇଛି ଓ ସେଠାରେ ମହାପ୍ରଭୁଙ୍କର ଯଥାବିଧି ପୂଜାର୍ଚ୍ଚନା କରାଯାଉଛି । ବିଦେଶରେ ଶ୍ରୀଜଗନ୍ନାଥ ସଂସ୍କୃତି ସବୁଠାରୁ ବେଶୀ ପ୍ରସାରିତ ହୋଇଛି ଉତ୍ତର ଆମେରିକାରେ । ଏହାର ପାଖାପାଖି କୋଡିଏଟି ସହରରେ ଶ୍ରୀଜଗନ୍ନାଥ ସଂସ୍କୃତିର ବିପୁଳ ପ୍ରଭାବ ବେଶ୍ ଅନୁଭବ କରାଯାଇଥାଏ । ବିଶ୍ୱର ସବୁଠାରୁ ବିତ୍ତଶାଳୀ ଏକ ରାଷ୍ଟ୍ରରେ ସବୁଠାରୁ ଅଧିକ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହେବା ଭୋଗ କ୍ଳାନ୍ତ ମଣିଷର ମୁକ୍ତି ପିପାସାର ହିଁ ପରିଚୟ ଦେଇଥାଏ । ମୈତ୍ରୀଦେବ ଶ୍ରୀଜଗନ୍ନାଥ ପ୍ରକୃତରେ ଗଣଦେବତା । ସେ ଧନୀ ହୁଅନ୍ତୁ ଅଥବା ନିର୍ଧନ ହୁଅନ୍ତୁ, ମହାପ୍ରଭୁଙ୍କ ନିକଟରେ ସମସ୍ତେ ସମାନ । ସେଥିପାଇଁ ବିଶ୍ୱର ଦରିଦ୍ରତମ ରାଷ୍ଟ୍ରଠାରୁ ଆରମ୍ଭ କରି ଅତ୍ୟନ୍ତ ବିତ୍ତଶାଳୀ ରାଷ୍ଟ୍ର ପର୍ଯ୍ୟନ୍ତ ସବୁଠାରେ ପରିଲକ୍ଷିତ ହୋଇଥାଏ ଶ୍ରୀଜଗନ୍ନାଥ ସଂସ୍କୃତିର ଜୈତ୍ର-ଯାତ୍ରା ।

### ବିଦେଶୀ ପର୍ଯ୍ୟଟକଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ସଂସ୍କୃତି

କେବଳ ବିଦେଶରେ ନୁହେଁ, କିଛି ବିଦେଶୀଙ୍କ ପ୍ରାଣରେ ମଧ୍ୟ ଶ୍ରୀଜଗନ୍ନାଥ ସଂସ୍କୃତି ସୃଷ୍ଟି କରିଛି ଅପୂର୍ବ ସ୍ପନ୍ଦନ । ଏହି

ଦୃଷ୍ଟିରୁ ଏକ ଫରାସୀ ଜାହାଜର ଅଧକ୍ଷ କ୍ୟାପ୍‌ଟେନ୍ ବିଟ୍ ଚିର ସ୍ମରଣୀୟ ହୋଇରହିବେ । ଥରେ ଦକ୍ଷିଣ ସମୁଦ୍ରଗାମୀ ଏକ ଫରାସୀ ଯାତ୍ରୀବାହୀ ଜାହାଜ ଭୟଙ୍କର ଝଡ ଓ ଏକ ପ୍ରକାଣ୍ଡକାୟ ତିମିର ସମ୍ମୁଖୀନ ହେଲା । ଏହି ଆକ୍ରମଣ ଏତେ ଭୟଙ୍କର ଥିଲା ଯେ, ତା' କବଳରୁ ଜାହାଜ ଓ ଯାତ୍ରୀଙ୍କୁ ରକ୍ଷା କରିବା କ୍ୟାପଟେନ୍ ବିଟ୍‌ଙ୍କ ପକ୍ଷରେ ପ୍ରାୟ ଅସମ୍ଭବ ହୋଇଉଠିଲା । ସେ ସମ୍ପୂର୍ଣ୍ଣ ଆଶା ହରାଇ ବସିଲେ । ଏହିପରି ସମୟରେ ହଠାତ୍ ସେ ଦେଖିଲେ ଜଣେ ଓଡ଼ିଆ ଯାତ୍ରୀ ସେଇ ଚରମ ବିପଦପୂର୍ଣ୍ଣ ମୁହୂର୍ତ୍ତରେ ସୁଦ୍ଧା ଅବିଚଳିତ ଭାବରେ ସମ୍ମୁଖରେ ଏକ ଫଟୋ ରଖି ନିଶ୍ଚଳ ହୋଇ ଆଖିବୁଜି ବସିଛନ୍ତି । ମୃତ୍ୟୁ ପ୍ରତୀକ୍ଷିତ ସେହି ବିଭୀଷିକାମୟ ପରିସ୍ଥିତିରେ ଜଣେ ବ୍ୟକ୍ତିର ଏପରି ଅସ୍ୱାଭାବିକ ଆଚରଣ କ୍ୟାପଟେନ ବିଟ୍‌ଙ୍କୁ କୌତୁହଳୀ କରିଦେଲା । ସେ ସେହି ଲୋକଟି ପାଖରେ ପହଞ୍ଚି କ'ଣ କରୁଛି ଜାଣିବାକୁ ଚାହିଁଲେ । ଓଡ଼ିଆ ଯାତ୍ରୀ ଜଣକ ପ୍ରଥମେ ଫଟୋ ଆଡକୁ ଓ ପରେ କ୍ୟାପ୍‌ଟେନ୍ ବିଟ୍‌ଙ୍କୁ ଅନାଇ କହିଲେ– 'ଏ ଫଟୋ ହେଉଛି ମହାପ୍ରଭୁ, ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କର । ସେ ହିଁ କେବଳ ଆମକୁ ଏ ବିପଦରେ ସମ୍ପୂର୍ଣ୍ଣ ସୁରକ୍ଷା ଦେଇପାରିବେ । ଦେଖିବେ, ତାଙ୍କ କରୁଣାରୁ ବିପଦ ଦୂର ହୋଇ ପୁଣି ପରିସ୍ଥିତି ସ୍ୱାଭାବିକ ହେବ ।' କ୍ୟାପଟେନ୍ ବିଟ୍ ଅଭିଭୂତଙ୍କ ପରି ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହେଲେ । ମୁହୂର୍ତ୍ତକ ମଧ୍ୟରେ ଦୃଶ୍ୟପଟ ବଦଳିଗଲା । ଝଡ ଫେରିଗଲା ଝଡ ବାଟରେ, ଅଦୃଶ୍ୟ ହୋଇଗଲା ବିରାଟକାୟ ତିମି । ଜାହାଜର ଯାତ୍ରୀଙ୍କ ପିଣ୍ଡରେ ପ୍ରାଣ ପଶିଲା ଆଉ କ୍ୟାପଟେନ୍ ବିଟ୍ ସେହି ପିଣ୍ଡ ମଧ୍ୟରେ ଉପଲବ୍ଧି କରିପାରିଲେ ବ୍ରହ୍ମାଣ୍ଡ ସ୍ୱରୂପ ଶ୍ରୀଜଗନ୍ନାଥଙ୍କୁ । ଭକ୍ତି ବିହ୍ୱଳିତ ବିଟ୍ ତା'ପରେ ସ୍ୱୟଂ ପୁରୀ ଆସି କୃତଜ୍ଞତାର ନିଦର୍ଶନ ସ୍ୱରୂପ ମହାପ୍ରଭୁଙ୍କୁ ଭେଟି ଦେଇଥିଲେ ଏକ ବିଶାଳକାୟ ଘଣ୍ଟି । ସେ ଘଣ୍ଟି ଆଜି ମଧ୍ୟ ଶ୍ରୀମନ୍ଦିରରେ ସୁରକ୍ଷିତ ହୋଇ ରହିଛି ଓ ନୀରବରେ ଜଣାଇ ଦେଇଛି ଶ୍ରୀଜଗନ୍ନାଥ ସଂସ୍କୃତିର ମହାନତା ତଥା ବିଶ୍ୱବ୍ୟାପକତା ।

କେତେକ ବିଦେଶୀ ପର୍ଯ୍ୟଟକଙ୍କ ବର୍ଣ୍ଣନାରେ ମଧ୍ୟ ଶ୍ରୀଜଗନ୍ନାଥ ସଂସ୍କୃତିର ମହନୀୟତା ପ୍ରକାଶିତ ହୋଇଛି । ସପ୍ତଦଶ ଶତାବ୍ଦୀର ଚତୁର୍ଥ ଦଶକଠାରୁ କେତେକ ୟୁରୋପୀୟ ପର୍ଯ୍ୟଟକ ଓଡ଼ିଶା ପରିଭ୍ରମଣ କରିଥିବା ଜଣାଯାଏ । ସେମାନଙ୍କ ମଧ୍ୟରୁ ଅନ୍ୟତମ ହେଉଛନ୍ତି ଉଇଲିୟମ ବ୍ରୁଟନ । ଅଜ୍ଞତାବଶତଃ ସେ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ କେତେକ ବିଦ୍ୱେଷପୂର୍ଣ୍ଣ କଥା କହିଥିଲେ ବି ଲୋକମାନଙ୍କ ହୃଦୟରେ ଶ୍ରୀଜଗନ୍ନାଥ କିପରି ଦୃଢ ଭାବରେ ଆସୀନ ତା'ରି ପରିଚୟ ଦେବାକୁ ଯାଇ କହିଛନ୍ତି । 'When he (Juggernant) is but named, then all the people in the town (puri) and country bow and bend their knees to ground' । ସେହିପରି ଊନବିଂଶ ଶତାବ୍ଦୀର ଆଉ ଜଣେ ପର୍ଯ୍ୟଟକ ଆଣ୍ଡ୍ରୁଷ୍ଟ୍ରାର୍ଲିଂ ଶ୍ରୀକ୍ଷେତ୍ରରେ ରଥଯାତ୍ରା ସମୟରେ ମହାପ୍ରଭୁଙ୍କର ପହଣ୍ଡି ବିଜୟ ଦୃଶ୍ୟର ବର୍ଣ୍ଣନା କରି କହିଛନ୍ତି– 'ତାଙ୍କର ଜୟ ଜୟକାର ଧ୍ୱନିରେ ଆକାଶର ବୁକୁ ବିଦୀର୍ଣ୍ଣ ହୋଇଯାଏ (The air is rent with accalamation.)'

ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଯେଉଁ କେତେକ ବିଦେଶୀ ପର୍ଯ୍ୟଟକ ଓଡ଼ିଶା ଭ୍ରମଣରେ ଆସିଥିଲେ, ସେମାନଙ୍କ ମଧ୍ୟରୁ ରେଭେରେଣ୍ଡ ବୁଚନାନ ଅନ୍ୟତମ । ତାଙ୍କ 'ଖ୍ରୀଷ୍ଟିୟାନ ରିସର୍ଚ୍ଚ' ନାମକ ଗ୍ରନ୍ଥରେ ସେ ଶ୍ରୀକ୍ଷେତ୍ରର ତତ୍କାଳୀନ ଅବସ୍ଥା ସମ୍ପର୍କରେ କେତେକ କଥାର ଅବତାରଣା କରିଛନ୍ତି । ବୁଚନାନ ନିଜ ଅଭିଜ୍ଞତାରୁ ରଥଯାତ୍ରା ସମୟର ଦୃଶ୍ୟ ଏହିପରି ଭାବରେ ଅଙ୍କନ କରିଛନ୍ତି– 'ଜଗନ୍ନାଥ ଯାତ୍ରୀ ଦୂରପଥ ଅତିକ୍ରମ କରି ପୁରୀର ନିକଟବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ଅନତି ଦୂରରୁ ଶ୍ରୀମନ୍ଦିରର ପ୍ରଥମ ଦର୍ଶନ ଲାଭ କରି ଆନନ୍ଦରେ ବିହ୍ୱଳ ହୋଇପଡନ୍ତି । ପ୍ରବଳ ଆନନ୍ଦ ଧ୍ୱନି ମଧ୍ୟରେ ଦିଗ ବିଦିଗ ପ୍ରକମ୍ପିତ ହୋଇଉଠିଥାଏ ।'

ଶ୍ରୀଜଗନ୍ନାଥଙ୍କ ଧର୍ମାଦର୍ଶ ଓ ସଂସ୍କୃତିର ଏପରି ବ୍ୟାପକତା ନେପଥ୍ୟରେ ରହିଛି ଯେଉଁ ଉଦାର ମାନବିକତାର ମୂର୍ଚ୍ଛନା ତା'ର ତୁଳନା ନାହିଁ । ସମ୍ଭବତଃ ସେହି କାରଣରୁ ଶ୍ରୀଜଗନ୍ନାଥଙ୍କ ଚିତ୍ର ଶ୍ରେଷ୍ଠ ଚିତ୍ର ଭାବରେ ଜାତିସଂଘରେ କେବଳ ଶୋଭା ପାଉନାହିଁ, ସାରା ବିଶ୍ୱକୁ ଗୋଟିଏ ପରିବାରଭୁକ୍ତ ହେବାପାଇଁ ଦେଉଛି ଶାଶ୍ୱତ ପ୍ରେରଣା । ଶ୍ରୀଜଗନ୍ନାଥ ସଂସ୍କୃତିର ଏହି ବିଶ୍ୱ ବିମୋହନ ରୂପ ପ୍ରକୃତରେ ଅନନ୍ୟ ଓ ଅତୁଳନୀୟ ।

ଶଙ୍ଖନାଭି
ସର୍ବୋଦୟ ନଗର, ପୁରୀ–୨



# ବ୍ରୁଟନଙ୍କ ପୁରୀ ଭ୍ରମଣ ଓ ରଥଯାତ୍ରା ଦର୍ଶନ

**ଅଭିମନ୍ୟୁ ଦାଶ**

ଇଂରେଜ ବଣିକ ଉଇଲିୟମ ବ୍ରୁଟନ 'ହୋପଓ୍ୱେଲ' ଜାହାଜରେ ଲଣ୍ଡନ ବନ୍ଦରରୁ ଭାରତ ଅଭିମୁଖେ ଜଳଯାତ୍ରା କରି ୧୬୩୩ ଖ୍ରୀଷ୍ଟାବ୍ଦରେ କରମଣ୍ଡଳ ଅଞ୍ଚଳର ମସୁଲିପଟମଠାରେ ପହଞ୍ଚିଥିଲେ । ସେ ବାଣିଜ୍ୟିକ ଉଦ୍ଦେଶ୍ୟ ନେଇ କଟକ ଏବଂ ପୁରୀ ଆସିଥିଲେ । ସେ ତାଙ୍କର ପୁରୀ ରହଣି ସମୟରେ ରଥଯାତ୍ରାର ଏକ ରୋମାଞ୍ଚକର କାହାଣୀ ତାଙ୍କ ବିବରଣୀରେ ଉଲ୍ଲେଖ କରିଛନ୍ତି ।



ବ୍ରୁଟନ ସାହେବ ୧୬୩୩ ଖ୍ରୀଷ୍ଟାବ୍ଦରେ ପୁରୀରେ ପହଞ୍ଚି କିଛି ମାସ ରହି ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀର ବାଣିଜ୍ୟ କାରବାର ବୁଝିବା ସହିତ ରଥଯାତ୍ରା ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲେ । ତାଙ୍କର ଲେଖା ୧୬୩୮ ଖ୍ରୀଷ୍ଟାବ୍ଦରେ ପ୍ରଥମେ ମୁଦ୍ରିତ ହୋଇଥିଲା । ସେଥିରେ "Bruton's Account of Cuttack & Puri' ପ୍ରବନ୍ଧଟି ସ୍ଥାନିତ ହୋଇଛି । ୧୭୪୫ ଖ୍ରୀଷ୍ଟାବ୍ଦରେ ତାହା ଆଉଥରେ ଛପା ଯାଇଥିଲା । ଏହାର ଶେଷ ମୁଦ୍ରଣ ସମ୍ଭବତଃ ୧୮୦୯-୧୨ ଖ୍ରୀଷ୍ଟାବ୍ଦ ମଧ୍ୟରେ କରାଯାଇଥିବାର ଅନୁମାନ କରାଯାଏ । ୧୮୯୫ ଖ୍ରୀଷ୍ଟାବ୍ଦରେ ବ୍ରୁଟନଙ୍କ ଲେଖାରୁ କେତେକ ସାରାଂଶ ବଙ୍ଗଳାର ପ୍ରାଚୀନ ବିବରଣୀ "The early annals of the English in Bengal Vol-I'ର ସମ୍ପାଦିତ କରାଯାଇଥିଲା । ଏପରିକି ବ୍ରୁଟନଙ୍କ ଲେଖା 'ଓଡ଼ିଶା ଇତିହାସ'ର ପ୍ରାରମ୍ଭିକ ଲେଖକ ଐତିହାସିକ ଷ୍ଟାର୍ଲିଂଙ୍କୁ ମଧ୍ୟ ଜଣାନଥିଲା । ଅନ୍ୟଜଣେ ଐତିହାସିକ ହଣ୍ଟର ବ୍ରୁଟନଙ୍କୁ ଠିକ୍‌ଭାବେ ଚିହ୍ନି ନଥିଲେ । ସେ ଜାଣିଥିଲେ ବ୍ରୁଟନ ହେଉଛନ୍ତି ଜଣେ ଇଂରେଜ ସର୍ଜନ । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ୧୯୫୯ରେ କଲିକତାର 'ଏସିଆଟିକ୍ ସୋସାଇଟ୍' ଲାଇବ୍ରେରୀରେ ୧୭୪୫ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ପୁସ୍ତକର ସନ୍ଧାନ ପାଇ ତହିଁରୁ ଫଟୋଷ୍ଟାଡ ନକଲ ଆଣି ତାହାର ପାଠୋଦ୍ଧାର କରି ଏକ ପ୍ରବନ୍ଧ ଲେଖିଥିଲେ । ଉକ୍ତ ପ୍ରବନ୍ଧଟି 'ଓଡ଼ିଶା ଐତିହାସିକ ଅନୁସନ୍ଧାନ' ପତ୍ରିକାରେ ୧୯୬୧ ମସିହା ୧୦ମ ଭାଗର ୩ୟ ଖଣ୍ଡରେ ମୁଦ୍ରିତ ହୋଇଛି ।

ବ୍ରୁଟନଙ୍କ ବର୍ଣ୍ଣନା ଅନୁସାରେ ନଭେମ୍ବର ମାସ ପାଞ୍ଚ ତାରିଖରେ (୧୬୩୩ ଖ୍ରୀଷ୍ଟାବ୍ଦ) କମ୍ପାନୀର ବ୍ୟବସାୟ ଉପଲକ୍ଷେ ମୋତେ ପ୍ରସିଦ୍ଧ ନଗରୀ ଜଗନ୍ନାଥକୁ (ପୁରୀକୁ) ଯିବାର ପଡିଥିଲା । ମୁଁ ଆଜି ଦିନରେ 'ମେଦ୍‌ଓ' (ମାଧବ) ସହର (ଅବିଭକ୍ତ କଟକ ଜିଲ୍ଲାର ଜଗତ୍‌ସିଂହପୁର ଥାନାରେ ଅବସ୍ଥିତ ପର୍ଯ୍ୟନ୍ତ ଯାଇଥିଲି ଓ ସେଠାରେ ଏକ ପେଗୋଡା ବା ମନ୍ଦିରରେ ରାତ୍ରିଯାପନ କରିଥିଲି । ସେତେବେଳେ ସନାତନ ଧର୍ମପୀଠକୁ ମାନବମାତ୍ରେ ନିୟମମାନି ପ୍ରବେଶ କରିପାରୁଥିଲେ । ୧୭୧୫ ପରେ ମାନବ ଧର୍ମର ଲୋପ ସାଧିତ ହେଲା ।

ଛଅ ତାରିଖରେ ମୁଁ ଉଇଲିୟମ୍ ବ୍ରୁଟନ ଆଠକୋଶ ବା ବତିଶ ଇଂରାଜୀ ମାଇଲ ଗତି କରିଥିଲି ଓ ଅମୃଦପୁର (ପୁରୀ





ଜିଲ୍ଲା ଡେଲାଙ୍ଗ ଥାନା ଅନ୍ତର୍ଗତ ଅମରୁତ୍‌ପୁର ହିଁ ଏହି ଅମୁଦପୁର ହେବା ସମ୍ଭବ, କାରଣ ସେ ମାଧବ ଗ୍ରାମଠୁ ୩୨ ମାଇଲ ଯାଇ ସେଠାରୁ ୪୦ ମାଇଲ ଆସି ପୁରୀରେ ପହଞ୍ଚିଛନ୍ତି) ନାମକ ସହରରେ ପହଞ୍ଚିଥିଲି । ମୁଁ ଏଠାରେ ପୁରୁଷ, ସ୍ତ୍ରୀ ଓ ବାଳକ ବାଳିକା ଏକତ୍ର ହେବାର ଦେଖିଲି, ଯେଉଁମାନଙ୍କର ସଂଖ୍ୟା ତିନି ହଜାରରୁ ଅଧିକ ଥିଲା । ସେମାନେ ସମସ୍ତେ ପର୍ଯ୍ୟଟକ ଓ ଭ୍ରମଣକାରୀ ଥିଲେ । ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ବାସଭୂମି ନଥିଲା । ସେମାନଙ୍କୁ ପାଉଁଶ ବୋଲା ଲୋକ (ଯେଉଁମାନେ କି ଦେହରେ ପାଉଁଶ ବୋଳି ହେଉଥିଲେ) କୁହାଯାଉଥିଲା । ସେମାନଙ୍କୁ ମଧ ଫକୀର କୁହାଯାଉଥିଲା । (ଖୋର୍ଦ୍ଧା ପାଞ୍ଚଗଡ ଅଞ୍ଚଳରେ ଏହି ନିର୍ଦ୍ଦୟ ଦୁଷ୍ଟ ଫକୀରମାନଙ୍କର ଆଡ୍‌ଡା ୧୯୨୫ ଯାଏ ରହିଥିଲା । ଗୋଟିଏ ନରହତ୍ୟା କେଶ୍‌ରେ ସେମାନେ ଏକାବେଳକେ ଲୁଚିଗଲେ । ସକୁଟୁମ୍ବରେ ଏମାନେ ରାଜ୍ୟ ରାଜ୍ୟ ବୁଲି ଇସ୍‌ଲାମ ଧର୍ମର ପାଉଣା ଆଦାୟ କରୁଥିଲେ । ଏମାନେ ପାଉଁଶ ମଧ ବୋଲି ହେଉଥିଲେ । ଚୋରି, ହତ୍ୟା ଓ ସେମାନଙ୍କ ସ୍ତ୍ରୀମାନଙ୍କର କପଟ ବ୍ୟବହାର ଓ ବ୍ୟଭିଚାର ଭୀଷଣ ରହିଥିଲା । ସରଳଲୋକେ ସହଜରେ ସେମାନଙ୍କର ଶିକାର ହେଉଥିଲେ । ସେମାନେ ଗ୍ରାମେ ଗ୍ରାମେ ଯଦୃଚ୍ଛା ଲୁଟି କରୁଥିଲେ । ଫକୀର ସେମାନଙ୍କର ଧର୍ମାଚରଣର ନାମ ଥିଲା । କାରଣ ସେମାନେ ପବିତ୍ର ଜୀବନ କଟାଉଥିଲେ, କିନ୍ତୁ ପ୍ରକୃତରେ ସେମାନେ ବଡ ଦୁର୍ଜନ ଥିଲେ, ଯେପରି ଇଂଲଣ୍ଡର ଯାଯାବର ଲୋକମାନେ ସମୟ ଓ ସୁଯୋଗ ପାଇଲେ ନିଜର ଦୁଷ୍ଟାମି ଓ ଦୁର୍ବୃତ୍ତତା ଦେଖାଇବାକୁ ଛାଡନ୍ତି ନାହିଁ । ଏହି ସହରରେ ମୋତେ ଅଧିକ ସମୟ ରହିବାର ସୁଯୋଗ ନଥିଲା, କାରଣ ମୁଁ କମ୍ପାନୀର ଏକ ବିଶେଷ କାର୍ଯ୍ୟରେ ଲିପ୍ତଥିଲି ।

ସାତ ତାରିଖ ନଭେମ୍ବର ସକାଳେ ପ୍ରାୟ ୨ଟା ବେଳେ ମୁଁ ଅମୁଦପୁର ଛାଡିଲି ଓ ଜଗନ୍ନାଥ ପର୍ଯ୍ୟନ୍ତ ଗୋଟିଏ ବାଟରେ ଯାଇଥିଲି । ଦୂରତ୍ୱ ଦଶକୋଶ ବା ଇଂଲିଶ ଚାଳିଶ ମାଇଲ । ମୁଁ ସେଦିନ ଉପରଓଳି ପ୍ରାୟ ଚାରିଟା ବେଳେ ଜଗନ୍ନାଥ ନଗରୀର ନିକଟବର୍ତ୍ତୀ ଏକ ସ୍ଥାନରେ ପହଞ୍ଚିଲି । ବାଟରେ ଏକ ବଡ ପଥର ପୋଲ (ସମ୍ଭବତଃ ଅଠରନଳା) ପାରି ହେଲି ଯାହାର ଦୁଇ ପାଖରେ ଗାଧୋଇବା ପାଇଁ ସୁନ୍ଦର ପୋଖରୀ ଥିଲା । ତତ୍ପରେ ମୁଁ ନଗରୀର ପଶ୍ଚିମ ପାଖରେ ପହଞ୍ଚି ଏକ ସୁନ୍ଦର ସ୍ଥାନରେ ଉପନୀତ ହେଲି । ଯେଉଁ ସ୍ଥାନଟି ଅତି ରମଣୀୟ ବୃକ୍ଷାଦିରେ ପରିପୂର୍ଣ୍ଣ ଥିଲା ଓ ରାସ୍ତାର ଦୁଇପାର୍ଶ୍ୱରେ ପୋଖରୀ ଥିଲା ଓ ପୋଖରୀ ମଝିରେ ଗୋଟିଏ ମନ୍ଦିର ଥିଲା । (ସମ୍ଭବତଃ ନରେନ୍ଦ୍ର ପୁଷ୍କରିଣୀ ହୋଇପାରେ) । ମୁଁ ସେଠାରୁ ବଡଦାଣ୍ଡକୁ ଯାଇଥିଲି, ଯେଉଁଠାରେ କି ଜଣେ ବ୍ରାହ୍ମଣ ମୋତେ ଅଭ୍ୟର୍ଥନା କରିଥିଲା । ତାହାର ଯେଉଁ ଧର୍ମ ହେଉନା ପଛକେ ତା ଘରକୁ ମୁଁ ଯାଇଥିଲି ଓ ସେଠାରେ ଯେତେଦିନ ରହିଲି ମୁଁ ସେଠାରେ ବସା କରିଥିଲି । ଗଦାଧର ମହାପାତ୍ର ୧୭୧୫ ଖ୍ରୀଷ୍ଟାବ୍ଦରେ ରାଜଗୁରୁ ହେବା ପର୍ଯ୍ୟନ୍ତ ଜାତି ବିଚାର ସନାତନ ଆର୍ଯ୍ୟ ଧର୍ମରେ ବିଶେଷ କରି ଉତ୍କଳରେ ପ୍ରବେଶ କରି ନଥିଲା । ଭାରତର ବହୁ ଅନୁନ୍ନତ ଅଞ୍ଚଳରୁ ଏହା ଧୀରେ ଧୀରେ ଆମଦାନୀ ହେଉଥିଲା । ପୌରୋହିତ୍ୟ ବୃତ୍ତି ଏବଂ ସାମରିକ ଅଧୋଗତିରୁ ଏହି ସାମାଜିକ ପତନ ହିଁ ସମ୍ଭବିତ ଥିଲା । ପ୍ରତ୍ନତତ୍ତ୍ୱବିତ୍ ଓ ଐତିହାସିକ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ପାଦଟୀକାରେ ଅଛି– Bruton writes that he stayed in a house of Brahmin or priest at puri & they were allowed to take shelter in the Hindu temples. it seems that in the 17th century the Hindus used to entertain non-Hindus in their temples. see p-46-the Orissa Historical Research journal, Vol.x, No-3, 1961)

ଆଠ ତାରିଖ ନଭେମ୍ବର ସକାଳେ ମୁଁ ଯେଉଁ କାର୍ଯ୍ୟ ପାଇଁ ପ୍ରେରିତ ହୋଇଥିଲି ସେ କାମ ଶେଷକରି, ନଗରୀର କେତେକାଂଶ ଦେଖିବା ପାଇଁ ବାହାରିଥିଲି । ମୋର ଲକ୍ଷ୍ୟ ଥିଲା ବିଶେଷତଃ ବଡ ଦେଉଳ (Might Paguda) ଦେଖିବା ଯାହା ସବୁ ପ୍ରକାର ପାପାଚାର ଓ ପ୍ରତିମା ପୂଜାର ଦର୍ପଣ ବୋଲି ପରିଗଣିତ ହୋଇଥିଲା । ସୟତାନର ଏହି ଗୃହରେ ନଅ ହଜାର ବ୍ରାହ୍ମଣ ସେମାନଙ୍କର ପ୍ରଧାନ ଦେବତା ଜଗନ୍ନାଥଙ୍କ ଦୈନିକ ଉପାସନା ଓ ହୋମାଦି ଉତ୍ସର୍ଗ କରୁଥିଲେ । (ଛତିଶା ନିଯୋଗର ମୂଳ ମୋଟ ସଂଖ୍ୟା ନଅ ହଜାର ଥିବାର କଥିତ ହୁଏ । ନଅ ହଜାର ଘର ସେବକ ଶ୍ରୀମନ୍ଦିରରେ ସେବା କରିଥାନ୍ତି । ଯେଉଁଦିନ ଯାହାର ପାଳି ପଡେ ସେ ସେବା କରିଥାଏ) । ସେହି ଦେବତାଙ୍କ ନାମ ଅନୁସାରେ ନଗରୀର ନାମ ଜଗନ୍ନାଥ ହୋଇଛି, ତାଙ୍କର ନାମ ଉଚ୍ଚାରିତ ହେଲାମାତ୍ରେ ନଗରୀର ଓ ଦେଶର ସମସ୍ତ ଲୋକ ଆଣ୍ଠୁମାଡି ପ୍ରଣିପାତ କରନ୍ତି । ଏକଥା ବ୍ରୁଟନ ତାଙ୍କ ରଚିତ 'ହାକ୍ଲିୟୁଟ' ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ଏଠାରେ ମଧ ଲୋକେ ସେମାନଙ୍କ ଶିଶୁକୁ ଭଗବାନଙ୍କୁ ଉତ୍ସର୍ଗ କରିଥାନ୍ତି ଓ ସେମାନଙ୍କୁ ଅଗ୍ନି ପରୀକ୍ଷା ମଧ ଦେଇ ଗତି କରେଇଥାନ୍ତି । (ଦେବଦାସୀ ନିଯୋଗରେ ଲୋକେ ଜଗନ୍ନାଥଙ୍କୁ ନିଜର ଉତ୍ତମ କନ୍ୟା ଦେଇଦେବା ପ୍ରଥା ବହୁକାଳ ଧରି ରହି ଆସିଥିଲା । ତା' ହୋଇପାରେ ଅଥବା




ସେ ତାଙ୍କ ରହଣି ବେଳେ ଝାମୁଯାତ୍ରା ଦେଖି କିଛି ଭାବିଥାଇ ପାରନ୍ତି) । ଏହାଛଡା ଆହୁରି ଖରାପ ପ୍ରଥା ଯେ ସେହି ଅଧାର୍ମିକ ଦେବତାଙ୍କ ଉଦ୍ଦେଶ୍ୟରେ ପିଲାମାନଙ୍କୁ ପାଣିରେ ଫିଙ୍ଗି ଦିଅନ୍ତି । (ତୀର୍ଥ ସ୍ନାନରେ ଶିଶୁକୁ ଜବରଦସ୍ତି ତାର ଅନିଚ୍ଛା ସତ୍ତ୍ୱେ ବୁଡାଇ ଦିଆ ହୁଏ । ଏହା ସେ ସମ୍ଭବତଃ ଲକ୍ଷ୍ୟ କରିଛନ୍ତି ।)

ଏହି ଦେବତାର ମୂର୍ତ୍ତିଟି ଦେଖିବାକୁ ସପ୍ତଫଣାଯୁକ୍ତ ଏକ ସର୍ପ ସଦୃଶ । (ପହଣ୍ଡି ବିଜେବେଳେ ବିରାଟ ଫୁଲ ଟାହିଆକୁ ସେ ସପ୍ତଫଣା ବିଶିଷ୍ଟ ସର୍ପ ମନେ କରିଛନ୍ତି । କିମ୍ବା ବଡଠାକୁର ଶେଷାବତାର ହେତୁ ସେତେବେଳେ ସପ୍ତଫଣା ବିଶିଷ୍ଟ କିଛି ଏକ ଭୂଷଣ ଭୂଷିତ ହେଇଥିବେ) । ପ୍ରତ୍ୟେକ ମସ୍ତକର ଗାଲରେ ଡେଣା ଲାଗିଛି, ଯାହା ଖୋଲିଯାଏ, ବନ୍ଦ ହୁଏ ଓ ପଟ୍‌ପଟ୍ ଶବ୍ଦ କରେ । ଏହାଦ୍ୱାରା ମୂର୍ତ୍ତିଟିକୁ ରଥ ଉପରକୁ ଉଠାଇ ନିଆଯାଏ ଏବଂ ମୂର୍ତ୍ତିକୁ ରଥ ମଧ୍ୟରେ ରଖାଯାଏ । (ପହଣ୍ଡିବେଳେ ଠାକୁରଙ୍କ ବାହୁ ଓ ପାଟ ଡୋରି ଇତ୍ୟାଦି ଦେଖି ସେ ଏପରି ପ୍ରମାଦରେ ପଡିଛନ୍ତି) । ଜଣେ ମୋଗଲ ସୁବିଧା ଜାଗା ଦେଖି ରଥରେ ବସେ । (ଚାନ୍ଦୁଆଧରା, ଛତିଧରା ସେବକମାନେ ଚୋଖା ଚପକନ ପିନ୍ଧି ମୁଣ୍ଡରେ ପଗଡି ଖଞ୍ଜିଥାନ୍ତି । ତେଣୁ ସେ ସେମାନଙ୍କୁ ମୋଗଲ ବୋଲି ମନେ କରିଛନ୍ତି) । ସେ ଚାନ୍ଦୁଆ ଟେକି ମୂର୍ତ୍ତିକୁ ଗ୍ରୀଷ୍ମତାପରୁ ରକ୍ଷାକରେ ।

ଘୃଣା ଓ ଭୟ ବିଜଡିତ ହୋଇ ମୁଁ (ବ୍ରୁଟନ) ଯେତେବେଳେ ଏସବୁ ଅଦ୍ଭୁତ କାର୍ଯ୍ୟ ଦେଖିଲି, ମୋ ମନରେ ନିଉ ଟେଷ୍ଟାମେଣ୍ଟର 'ରିଭିଲେସନ', ତ୍ରୟୋଦଶ ଅଧ୍ୟାୟ ଜାଗରୁକ ହେଲା, ତାହାର ପ୍ରଥମ, ଷୋଡଶ ଓ ସପ୍ତଦଶ ଶ୍ଲୋକରେ କଥିତ ଅଛି ଯେ ସେସବୁ ସ୍ଥାନର ଏକ ଜନ୍ତୁ ଅଛି ଓ ତଦ୍ରୂପ ଦେବତା ମୂର୍ତ୍ତି ପୂଜା ଚଳିବାର କଥା ଉକ୍ତି ଅଛି । ସେ ସବୁ ଶ୍ଲୋକରେ ବର୍ଣ୍ଣିତ କଥାଗୁଡିକ ଏଠାରେ ଯଥାଯଥ ଭାବରେ ସମ୍ପାଦିତ ହେଉଛି । କାରଣ ବ୍ରହ୍ମଣମାନଙ୍କର ମସ୍ତକରେ ଚିତା ଅଛି ଓ ଯେଉଁମାନେ ଦେବତା ଉପାସନା ପାଇଁ ଆସନ୍ତି ସେମାନଙ୍କର ମୁଣ୍ଡରେ ମଧ୍ୟ ଚିତା ଅଛି, କିନ୍ତୁ ଯେଉଁମାନେ ବିକାକିଣା କରନ୍ତି ସେମାନଙ୍କର ବାମ ବାହୁରେ ଚିତା ଅଛି, ଯେଉଁମାନେ ବିନା ଚିତାରେ ବିକାକିଣା କରନ୍ତି, ସେମାନଙ୍କୁ ଗୁରୁତର ଭାବରେ ଦଣ୍ଡ ଦିଆଯାଏ ।

ସେମାନେ ଏକ ପ୍ରକାଣ୍ଡ ରଥ ନିର୍ମାଣ କରିଅଛନ୍ତି । ସେ ରଥରେ ଷୋହଳଟି ଚକ ଅଛି । ପ୍ରତ୍ୟେକଟି ଚକର ଉଚ୍ଚତା ପାଞ୍ଚଫୁଟ । ରଥର ଉଚ୍ଚତା ପ୍ରାୟ ତିରିଶ ଫୁଟ୍ । ବ୍ରୁଟନ ନଭେମ୍ବର ପାଞ୍ଚ ତାରିଖରୁ ନିଶ୍ଚୟ ଜୁନ୍ ଜୁଲାଇ ଯାଏ ଛଅ କିମ୍ବା ସାତ ମାସ ପୁରୀରେ ରହିଥିବା କଥା ଏଥିରୁ ପ୍ରମାଣିତ ହେଉଛି । ଏହି ରଥରେ ସେମାନଙ୍କ ଉତ୍ସବ ଦିନଗୁଡିକର ରାତିରେ ସେମାନଙ୍କ ଦୁର୍ବୃତ୍ତ ଜଗନ୍ନାଥଙ୍କୁ ବସାନ୍ତି । ତତ୍ପରେ ସନ୍ନ୍ୟାସୀ ଓ ଫକୀର ବ୍ୟତୀତ ନଅ ହଜାର ବ୍ରାହ୍ମଣ ସେହି ବିଖ୍ୟାତ ଦେବତାଙ୍କର ସେବା କରନ୍ତି । ରଥଟି ଅତି ମୂଲ୍ୟବାନ ବସ୍ତ୍ର ଓ ଅଳଙ୍କାର ଦ୍ୱାରା ସୁଶୋଭିତ ହୋଇଥାଏ । ପ୍ରତ୍ୟେକ ଚକଗୁଡିକ ଏପରି ଭାବରେ ଖଞ୍ଜା ହୋଇଥାଏ ଯେ ସେଗୁଡିକ କୃତ୍ରିମ ଭାବରେ କାର୍ଯ୍ୟ କରେ । ସେଥିରେ ପ୍ରାୟ ଦୁଇହଜାର ଆଲୋକ ସଜ୍ଜିତ ଥାଏ । (ରଥ ଦିହୁଡିଆ ନାମରେ ଗୋଟିଏ ସେବା ଛତିଶା ନିଯୋଗ ମଧ୍ୟରେ ଦେଖାଯାଏ । ଏହା ରଥ ଓଝା ମହାରଣାର ଅଧସ୍ତନ ସେବା । ସେ ଆଲୋକମାଳା ରଥରେ ଖଞ୍ଜି ଥାଏ ।) ଏହି ରଥକୁ ଦେଶର ସମ୍ଭ୍ରାନ୍ତ ଓ ସମ୍ମାନିତ ଲୋକମାନେ ଟାଣନ୍ତି । ସମସ୍ତେ ଏପରି ଉତ୍ସୁକ ଭାବରେ ରଥ ଟାଣିବା ପାଇଁ ଆସନ୍ତି ଯେ ରଥ ଟାଣିବା ଦ୍ୱାରା ସେମାନେ ନିଜକୁ କୃତାର୍ଥ ମନେକରନ୍ତି । ନଗରୀ ଭିତରେ ରଥଟି ଗଡି ଯାଉଥିବା ବେଳେ ଅନେକ ନିଜ ନିଜର ଜୀବନ ଉତ୍ସର୍ଗ କରିଦିଅନ୍ତି ଓ ଉନ୍ମତ୍ତ ଭାବରେ ତଳେ ଶୋଇ ପଡନ୍ତି, ଯଦି ତାଙ୍କ ଉପରେ ରଥ ଚକ ଚାଲିଯିବ । ଯଦ୍ଦ୍ୱାରା କେହି କେହି ତତ୍‌କ୍ଷଣାତ୍ ସେଠାରେ ମରିଯାଆନ୍ତି ଓ ସେମାନଙ୍କର ସ୍ୱର୍ଗପ୍ରାପ୍ତି ହେଲା ବୋଲି ବିବେଚିତ ହୁଏ । ରଥଯାତ୍ରାର ସଠିକ୍ ବିବରଣୀ ସେ ଦେବା ଅବସ୍ଥାରେ ନଥିଲେ । କାରଣ ତାଙ୍କର ଧର୍ମାନ୍ଧତା ଓ ଖ୍ରୀଷ୍ଟିଆନ ଧର୍ମର କ୍ଷୀଣ ସୀମା ମଧ୍ୟରେ ସେ ବର୍ଦ୍ଧିତ ହୋଇଥିବା ହେତୁ ଯାହା କିଛି ଗୋଟେ ଲେଖିଛନ୍ତି । ଜଗନ୍ନାଥ ରଥ ଷୋଳ ଚକ, ତା ବିଷୟ ଲେଖିଛନ୍ତି ଏବଂ ବଡ ଠାକୁରଙ୍କ ପହଣ୍ଡି ଲେଖିଛନ୍ତି । ତାଙ୍କ ରଥ ବିବରଣୀ ଦେଇନାହାନ୍ତି ।

ଏହାଛଡା ଆଉ ଗୋଟିଏ ରଥ ଅଛି ଯହିଁରେ କି ବାରଟି ଚକ ଲାଗିଅଛି । ତାହା ନିମ୍ନସ୍ତରର ଦୁରାତ୍ମା ଏକ ପିଶାଚ ପାଇଁ ଉଦ୍ଦିଷ୍ଟ । ସେ ସର୍ବଦା ଗତିକରେ ନାହିଁ । ବ୍ରାହ୍ମଣ ଇଚ୍ଛା କଲେ ବୋହି ନେଇଥାନ୍ତି । ଏ ଭଦ୍ରଲୋକ ଜଣେ ଖ୍ରୀଷ୍ଟିଆନ ପୁଣି ବ୍ୟାପାରୀ ଥିବାରୁ, ପୁନଶ୍ଚ ମୂର୍ତ୍ତି ପୂଜାର ଅତି ଅଧିକ ଦ୍ୱେଷୀ ଥିବା ହେତୁ ସୁଭଦ୍ରା ଦେବୀଙ୍କୁ ଏପରି ଦୃଷ୍ଟିରେ ଦେଖିଛନ୍ତି । ସେ ନାରୀମୂର୍ତ୍ତି କି ପୁରୁଷ ତା ମଧ୍ୟ ଜାଣିନାହାଁନ୍ତି । ବିଶେଷରେ ସୁଭଦ୍ରାଙ୍କୁ ଦଇତାମାନେ ପହଣ୍ଡି ନକରି ବୋହି କରି ଆଣିଥାନ୍ତି । ବୋହିକରି ନେଇ ରଖିଥାନ୍ତି । ଏହି ମନ୍ଦିରଟି ସମୁଦ୍ର କୂଳରେ ଅବସ୍ଥିତ । ଏହା ସମୁଦ୍ରଠାରୁ ୧୦/୧୨ ଲିଗ୍ ଦୂରରୁ ଦେଖାଯାଏ । କାରଣ ଆକାଶ ନିର୍ମଳ ଥିବାରୁ ତା ସମ୍ଭବ ହୁଏ । (ଇଂଲଣ୍ଡରେ ନିର୍ମଳ ପାଗ ସେ ତ ପାଇ ନଥିଲେ, ତେଣୁ ଏଠା ସମୁଦ୍ର କୂଳରେ

ଏପରି ନିର୍ମଳ ପାଗ ଦେଖିପାରିଛନ୍ତି) । ଏହାର ଚତୁର୍ଦ୍ଦିଗରେ ପଥରର କାନ୍ଥ ଅଛି, ଯାହାର ଉଚ୍ଚତା ପ୍ରାୟ ୨୨ଫୁଟ । ପାଚେରୀଟିର ଚାରିପାଖ ଓ ଚାରିକୋଣ ସମାନ । ଏକ କୋଣଠାରୁ ଅପରକୋଣ ପର୍ଯ୍ୟନ୍ତ ୧୫୦ ପହୁଣ୍ଡ ବା ଗଜ । ଏଣୁ ଚାରିକୋଣଯାକ ପ୍ରାୟ ୬୦୦ପହୁଣ୍ଡ । ଏହି ପାଚେରୀ ଉତ୍ତର-ଦକ୍ଷିଣ, ପୂର୍ବ-ପଶ୍ଚିମ ଅବସ୍ଥିତ । ପାଚେରୀର ପ୍ରତ୍ୟେକ ଦିଗରେ ଗୋଟିଏ ଲେଖାଏଁ ପ୍ରବେଶ ଦ୍ୱାର ଅଛି । କିନ୍ତୁ ଦକ୍ଷିଣ ଓ ପଶ୍ଚିମଦ୍ୱାର ଯାତ୍ରା ସମୟ ବ୍ୟତୀତ ସବୁବେଳେ ବନ୍ଦଥାଏ ଓ ଏଗୁଡିକ ପ୍ରାୟ ସାଧାରଣତଃ ବ୍ୟବହୃତ ହୁଏନାହିଁ । ଉତ୍ତର ଓ ପୂର୍ବ ଦ୍ୱାର, ବିଶେଷତଃ ଉତ୍ତର ଦ୍ୱାର ସାଧାରଣତଃ ବେଶୀ ବ୍ୟବହୃତ ହୁଏ । ଉତ୍ତର ଦ୍ୱାରଟିର ବିଶେଷତ୍ୱ ଏହି ଯେ ଏହା ନଗରୀର ବଡଦାଣ୍ଡ ଉପରେ ଅବସ୍ଥିତ । (ତାଙ୍କ ଦେଖିବାଯାଏ ଉତ୍ତର ଦ୍ୱାର ବଡ ଦାଣ୍ଡରୁ ନିକଟ ରହିଥିଲା । କାରଣ ଦୋଳମଣ୍ଡପ ବ୍ୟତୀତ ସେ ଅଞ୍ଚଳରେ କୌଣସି ଘରବାଡି ନଥିଲା । ତେଣୁ ଯାତ୍ରୀ ମଧ୍ୟ ସେ ବାଟେ ଅଧିକ ଯିବା ଆସିବା କରୁଥିଲେ । ମହାରାଜା ବଳଭଦ୍ରଦେବ ୧୬୫୨ରେ ଲକ୍ଷ୍ମୀ ଭଦ୍ର ନାମକ ସନ୍ନ୍ୟାସୀଙ୍କୁ ମେଘନାଦ ପାଚେରୀ ନିକଟରେ ଏକ ମଠ କରିବାକୁ ଅନୁମତି ଦେବା ପରଠୁଁ ଚଉଦିଗରେ ଘରବାଡି ବଢି ବଢି ଏବେ ଏକାବେଳେ ସଙ୍କୁଚିତ ହୋଇଗଲା । ନଚେତ୍ ବିରାଟ ବିସ୍ତୃତ ଖୋଲା ସ୍ଥାନ ମନ୍ଦିର ଚାରିପାଖରେ ରହି ମନ୍ଦିରର ମୁକ୍ତ ସୌନ୍ଦର୍ଯ୍ୟ ଜ୍ଞାପନ କରୁଥିଲା । ବିଶେଷରେ ଏ ଭଦ୍ରଲୋକ ମନ୍ଦିରର ବିଶାଳତା ଓ ଉଚ୍ଚତାଦି ସମ୍ବନ୍ଧରେ ନୀରବ । ଏହି କାରଣରୁ ଯେ ବୋଧହୁଏ ସ୍ଥାପତ୍ୟ ଘେନି ସେ ଧର୍ମାନ୍ଧତା ଯୋଗୁଁ ଈର୍ଷା ଆଣିଥିବା ସମ୍ଭବ) ।

ଏହି ମନ୍ଦିର ମଧ୍ୟରେ ଯେଉଁ ଗଛସବୁ ଅଛି ଏବଂ ବଗିଚା ରହିଛି ସେଥିରେ ଏତେ ଜାତିର ଫୁଲ ଫୁଟେ ଯେ ତାର ରଙ୍ଗ ବହୁ କିସମର । (ଏହି ଭଦ୍ରଲୋକ ମନ୍ଦିର ମଧ୍ୟକୁ ଯାଇଥିବା ଏଥିରୁ ସୂଚିତ ହୁଏ) । ମୁଁ ଇଂଲଣ୍ଡରେ ବା କେଉଁଠି ହେଲେ ଏପରି ଏତେ ଜାତିର ସୁନ୍ଦର ଫୁଲ ଦେଖିନାହିଁ । (କାରଣ ସେତେବେଳେ ମାଳୀ ବହୁ ସଂଖ୍ୟାରେ ରହି ନାନା ଜାତିର ଫୁଲ, ତୁଳସୀ, ଦୟଣା ଆଦି ମନ୍ଦିର ବେଢା ମଧ୍ୟରେ କରୁଥିଲେ) । ଏହି ମୂର୍ତ୍ତି ଘେନି ମୁଁ ମନେ କରୁଛି ଏ ଦେଶର କେତେକ ଲୋକ ଜୁପିଟରଙ୍କ (ଜୁପିଟର ଗ୍ରୀସ୍ ଦେଶର ଦେବତା ବୃହସ୍ପତି । ତାଙ୍କୁ ଯେତିକି ଜଣାଥିଲା ତା (ସେ ଧାରଣା କରିଛନ୍ତି) ସହିତ ସାଦୃଶ୍ୟ ଥିବା ଏହି ମୂର୍ତ୍ତି ସ୍ଥାପିତ କରି ତାକୁ ଏକ ଜଞ୍ଜିରରେ ବାନ୍ଧି ଅଟକାଇ ରଖିଛନ୍ତି । (ଠାକୁର ପାଟ ଡୋରିରେ ବନ୍ଧ ପିନ୍ଧା ବେଶ ହେବା ଦେଖି ସେ ଏପରି ଚିନ୍ତା କରିଥାଇ ପାରନ୍ତି) । ଯେପରି ତାକୁ କେହି ନେଇ ନଯିବ, କେହି ଲାଞ୍ଚ ଦେଇ ନେଇଯିବ ବା ଶତ୍ରୁଦ୍ୱାରା ତାହା ଅପହୃତ ହେବାର ଆଶଙ୍କାକରି ସେମାନେ ପ୍ରହରୀ ଦ୍ୱାରା ଜଗିରଖନ୍ତି । ଫଳରେ ଏହା ଜାଣିପାରି ଶତ୍ରୁ ଆସିଛନ୍ତି ଏବଂ ସହରକୁ ମଧ୍ୟ ଧ୍ୱଂସ କରିଛନ୍ତି । ପୌତ୍ତଳିକତା ଲାଗି ଏପରି ନିଶ୍ଚୟ ଘଟିଛି । (ବାସ୍ତବିକ୍ ମୁସଲମାନମାନଙ୍କ ଧର୍ମାନ୍ଧତା ଯୋଗୁଁ ଯେଉଁସବୁ ବିପଦ ଏହି ମନ୍ଦିର ଉପରେ ଦେଖାଯାଉଥିଲା ସେ ନିଶ୍ଚୟ ତାହା ଶୁଣିଛନ୍ତି )।

ପୁରୀର ବର୍ଣ୍ଣନା ହଠାତ୍ ଶେଷ ହୋଇଛି । ସେ କେଉଁଦିନ ପୁରୀରୁ ହରିହରପୁର ଫେରିଲେ ତାହା ମୁଦ୍ରିତ ବିବରଣୀରେ ନାହିଁ । ଏହି ବର୍ଣ୍ଣନା ପରେ ସେ ବଙ୍ଗଳାକୁ ଯାଇଥିବାର କଥା ତାଙ୍କ ଲେଖାରୁ ଜଣାଯାଏ ନାହିଁ । ବୋଧହୁଏ ତାଙ୍କର ମୂଳ ଲେଖାରୁ ବାଛି ବାଛି ପାଠକମାନେ ଯାହା ଭଲ ଭାବିଥିଲେ ତାହା ମୁଦ୍ରିତ କରିଥିଲେ ।

ପୁସ୍ତକ ସହାୟକ

୧. ପରମାନନ୍ଦ ଆଚାର୍ଯ୍ୟ, 'ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ', ୨ୟ ଭାଗ, ଭୁବନେଶ୍ୱର ୧୯୬୯, ପୃ-୨୬୫-୨୯୬,

୨. ଚକ୍ରଧର ମହାପାତ୍ର, 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ', କଟକ, ୧୯୬୯, ପୃ-୯୬-୧୦୬

୩. ପ୍ରଭାତ ମୁଖାର୍ଜି, 'ହିଷ୍ଟ୍ରି ଅଫ୍ ଦି ଜଗନ୍ନାଥ ଟେମ୍ପୁଲ ଇନ୍ ଦି ନାଇଣ୍ଟିଥ୍ ସେଞ୍ଚୁରୀ', କାଲକଟା, ୧୯୭୭, ପୃ-୨୧୮-୧୯ ।

୪. ଲଲାଟେନ୍ଦୁ ଦାସମହାପାତ୍ର, 'କଲଚୁରାଲ ହେରିଟେଜ ଅଫ୍ ଓଡ଼ିଶା' ପୁରୀ ଜିଲ୍ଲା, ୩ୟଭାଗ, ଗୋପିନାଥ ମହାନ୍ତି (ସମ୍ପାଦନା), ଭୁବନେଶ୍ୱର, ୨୦୧୦, ପୃ- ୯୧୨-୯୧୭

ଅଧ୍ୟାପକ, ଇତିହାସ ବିଭାଗ
ସୂରଜମଲ ଶାହା ମହାବିଦ୍ୟାଳୟ, ପୁରୀ







# କାଳିଆ କେଳି କଦମ୍ବ ମୂଳିଆ

ଡକ୍ଟର ସର୍ବେଶ୍ୱର ସେଣ

କାଳିଆ ଦିଅଁ, ଶ୍ରୀଜଗନ୍ନାଥ, ବଡ ଠାକୁର, କୋଟି ବ୍ରହ୍ମାଣ୍ଡ କରତା, କମ୍ବୁକଟକର ରାଜା, ଓଡ଼ିଆର ପ୍ରାଣ ପୁରୁଷ, ସେହି ହିଁ ତା'ର ମାନ, ମହତ, ସଂସ୍କୃତି, ସଂସ୍କାର, ଧର୍ମ ସବୁକିଛି । କାଳିଆ ବିନା ଏ ଜାତିର ସ୍ଥିତି ଅକଳ୍ପନୀୟ, କାଳିଆର ଯୁଗେଯୁଗେ ବିଭିନ୍ନ ଅବତାର, ଦୁଷ୍ଟ ନିବାରଣ, ସନ୍ଥ ପାଳନ, ଧରଣୀ ଭାରର ଉସ୍ୱାସ ଲାଗି । କଳିଯୁଗରେ ନୀଳାଚଳରେ ଦାରୁବ୍ରହ୍ମ ରୂପେ ଉପାସିତ । କେଉଁ ନାରୀଟିଏ ତାକୁ ଦେଖି ଆରକୁ ପଚାରେ 'ସଖି ଏଇପରା ସେଇ କାଳିଆ ! କେଳିକଦମ୍ବ ମୂଳିଆ ?'' ଏକ ସଂଶୟାତ୍ମକ ସ୍ଥିତିରେ ଜଗାକାଳିଆ, ବୃନ୍ଦାବନ ଶେଖର ନାଟରାଜ ମୁରଲିଆ (କେଳିକଦମ୍ବ ମୂଳିଆ)ଙ୍କୁ ନେଇ ଉକ୍ତିଟି ଦ୍ୱିଧାଯୁକ୍ତ । ଏଇ ଦୁଇ ଦେବତାଙ୍କୁ ନେଇ ଓଡ଼ିଶା ବୈଷ୍ଣବ-ଭକ୍ତି ଜଗତ ଦ୍ୱିଧା ବିଭକ୍ତ, ଓଡ଼ିଶୀ, ଗୌଡୀ ଏଇ ଦୁଇ ପନ୍ଥୀଙ୍କ ଅବତାରୀ ଅବତାରକୁ ନେଇ ମତଭେଦ, ଯାହା ଆଲୋଡିତ କରିଛି ଓଡ଼ିଶାର ବୈଷ୍ଣବୀୟ ଧର୍ମ ମତବାଦକୁ । ମାତ୍ର ବୈଷ୍ଣବ ଧର୍ମ ହିଁ ଅତି ପ୍ରାଚୀନ, ସାରା ଭାରତବର୍ଷରେ ପ୍ରଚଳିତ ଧର୍ମ ଚେତନା ମଧ୍ୟରେ ଏହା ଅନ୍ୟତମ ।



ବିଷ୍ଣୁ ହିଁ ବୈଷ୍ଣବମାନଙ୍କର ଆରାଧ୍ୟ ଦେବତା । ତେଣୁ ବିଷ୍ଣୁ ଉପାସକମାନେ ବୈଷ୍ଣବ ନାମେ ନାମିତ । ବିଷ୍ଣୁଙ୍କୁ ନେଇ ସୃଷ୍ଟ ଧର୍ମ ବୈଷ୍ଣବ ଧର୍ମ, ଯାହାର ପ୍ରାଚୀନତା ସମ୍ବନ୍ଧୀୟ ବହୁ ରଚନା ପରିଲକ୍ଷିତ । ବିଶିଷ୍ଟ ଦାର୍ଶନିକ ଏସ୍. ରାଧାକ୍ରିଷ୍ଣନ୍ ତାଙ୍କ 'ଭାରତୀୟ ଦର୍ଶନ' ପୁସ୍ତକରେ ବହୁ ତାତ୍ତ୍ୱିକ ଆଲୋଚନା ପ୍ରଦାନ ସହିତ, ଋକ୍ ବେଦରେ କୃଷ୍ଣଙ୍କ ନାମୋଲ୍ଲେଖ ଥିବା ଦର୍ଶାଇଛନ୍ତି । ଭାଗବତରେ ବାସୁଦେବ ହେଉଛନ୍ତି ସର୍ବଶ୍ରେଷ୍ଠ ଦେବତା, ପରମ ଈଶ୍ୱର, ତାଙ୍କ ସମ୍ପର୍କରେ ଶ୍ରୀମଦ୍ ଭାଗବତ କହେ-

''ଏତେ ଚାଂଶକଳାଃ ପୁଂସଃ
କୃଷ୍ଣସ୍ତୁ ଭଗବାନମ୍ ସ୍ୱୟମ୍,
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ
ମୃଡୟନ୍ତି ଯୁଗେଯୁଗେ ।''

ତେଣୁ କୃଷ୍ଣ ହେଉଛନ୍ତି ସ୍ୱୟଂ ଭଗବାନ, ସତ୍, ଚିତ୍ ଆନନ୍ଦର ପରିପ୍ରକାଶ । ସେ ଅନାଦି, ସକଳ ଆଦିର କାରଣ, ତେଣୁ ''ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ, ଅନାଦିରାଦି-ଗୋବିନ୍ଦଃ ସର୍ବ କାରଣ କାରଣମ୍'' । (ବ୍ରହ୍ମ ସଂହିତା)

ବିଷ୍ଣୁ ପୁରାଣ ମତରେ ଐଶ୍ୱର୍ଯ୍ୟ, ଧର୍ମ, ଯଶଃ, ଜ୍ଞାନ, ସମର୍ଥ, ବୈରାଗ୍ୟକୁ 'ଭଗ' କୁହାଯାଏ । ଏହାକୁ ପରିପୂର୍ଣ୍ଣ ଭାବେ ଧାରଣକାରୀ ହିଁ ଭାଗବତ ଶ୍ରୀକୃଷ୍ଣ, ବାସୁଦେବ ନାରାୟଣ । ସେହିପରି ଚୈତନ୍ୟ ଚରିତାମୃତରେ କୃଷ୍ଣଙ୍କୁ ଅଦ୍ୱୟ, ଜ୍ଞାନ, ତତ୍ତ୍ୱ,





ବସ୍ତୁ, ବ୍ରହ୍ମ, ଆତ୍ମା ଭଗବାନ ଆଦି ଆଖ୍ୟା ଦିଆଯାଇଛି । ସଂସ୍କୃତର ବିଖ୍ୟାତ କବି କାଳିଦାସ ଆପଣାର 'ମେଘଦୂତ' କାବ୍ୟରେ ଇନ୍ଦ୍ରଧନୁ ପ୍ରତିଫଳିତ କାଳିଆ ମେଘଖଣ୍ଡକୁ ମୟୂର ଚୂଳିଆ, ବାସୁଦେବଙ୍କ ସହ ତୁଳନା କରିଛନ୍ତି । ସମୟକ୍ରମେ ସାରା ଭାରତବର୍ଷରେ ଭକ୍ତିଧର୍ମର ପ୍ରଚାର ପ୍ରସାର ଲାଭ କଲା, ରାମାନୁଜ, ରାମାନନ୍ଦ, ବଲ୍ଲଭାଚାର୍ଯ୍ୟ, ନିମ୍ବାର୍କ (ସମସ୍ତେ ଦକ୍ଷିଣ ଭାରତୀୟ), କବିର ତୁଳସୀ ଦାସ, ଚୈତନ୍ୟ, ବାମଦେବ, ତୁକାରାମ(ଉତ୍ତର ଭାରତୀୟ)ଙ୍କ ଭଳି ସନ୍ଥମାନେ ଭକ୍ତି ଆନ୍ଦୋଳନର ପ୍ରଧାନ ନିୟନ୍ତା । ଏଇ କୃଷ୍ଣ ରସ ପ୍ଲାବିତ ଭକ୍ତିଧାରା ଖ୍ରୀ.ପୂ ପଞ୍ଚମ ଶତାବ୍ଦୀରୁ ପ୍ରାୟତଃ ଖ୍ରୀ.ଅ ୧୭୦୦ ପର୍ଯ୍ୟନ୍ତ ପ୍ରଲମ୍ବିତ ।

ଓଡ଼ିଶା ଭୂଖଣ୍ଡରେ ଭକ୍ତିଧର୍ମ ସାଧନା ଅତି ପ୍ରାଚୀନ । ଏହାର ରାଷ୍ଟ୍ର ଦେବତା ହିଁ ପୁରୁଷୋତ୍ତମ ପୀଠେ ବିଜେ ଶ୍ରୀଜଗନ୍ନାଥ, ବହୁ ମତବାଦୀ, ଧର୍ମାବଲମ୍ବୀମାନେ ଜଗନ୍ନାଥଙ୍କୁ ଆପଣାର ଈଷ୍ଟ ଦେବତାଭାବେ ସ୍ୱୀକାର କରିଛନ୍ତି । ଉତ୍କଳ-ଧର୍ମ-ସଂସ୍କୃତି, ଜଗନ୍ନାଥ ସଂସ୍କୃତି, ବୌଦ୍ଧ, ଶୈବ, ଜୈନ, ଶାକ୍ତ, ଗାଣପତ୍ୟ- ଏ ସମସ୍ତ ଗୋଷ୍ଠୀ ଜଗନ୍ନାଥଙ୍କୁ ନିଜର ଦେବତା ବୋଲି ଦାବି କରନ୍ତି । ଜଗନ୍ନାଥ ହିଁ ସ୍ୱୟଂ ବିଷ୍ଣୁ, ବାସୁଦେବ । ଫଳରେ ଜଗାର ଲୀଳା ଖେଳାକୁ ଆଧାରକରି ବୈଷ୍ଣବ କବି କୁଳ ପ୍ରାଚୁର୍ଯ୍ୟମୟ ଭକ୍ତି ସାହିତ୍ୟ ସୃଷ୍ଟି କରିଛନ୍ତି । ଜଗନ୍ନାଥ ହିଁ ରାଧାକୃଷ୍ଣଙ୍କର ଏକୀଭୂତ ରୂପ, ଏହା ସତ୍ତ୍ୱେ ବୈଷ୍ଣବୀୟ ଭକ୍ତି ଭାବନାର ଦୁଇ ସମାନ୍ତରାଳ ଧାରା ପ୍ରଚଳିତ ।

ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ପୂର୍ବରୁ ବୈଷ୍ଣବ ଧର୍ମ ତାନ୍ତ୍ରିକ ବୈଷ୍ଣବ ଧର୍ମ ବା ଜ୍ଞାନ ମିଶ୍ରା ଭକ୍ତିଭାବେ ନାମିତ । ଅନ୍ୟପକ୍ଷରେ ଗୋସ୍ୱାମୀମାନଙ୍କ ପ୍ରବର୍ତ୍ତିତ ଭକ୍ତି ଭାବନାକୁ ନେଇ ଚୈତନ୍ୟଙ୍କ ଧର୍ମ ପ୍ରଚାର ଫଳରେ ଶୁଦ୍ଧା ଭକ୍ତି ବା ରାଗାନୁଗା ଭକ୍ତି ଓଡ଼ିଶାରେ ତ୍ୱରାନ୍ୱିତ ହେଲା । ଫଳରେ ଏହି ଧର୍ମ ଓଡ଼ିଶୀ, ଗୌଡୀ ଏମିତି ଦୁଇଭାଗ ହେଲା ।

ତନ୍ତ୍ର, ମନ୍ତ୍ର, ଯନ୍ତ୍ର, ଯୋଗ, ହଜ, ସମାଧି, ରସଗୁଣ, ଅବାଡ, ଜ୍ୟୋତି, ଛାୟା, ଅଦ୍ୱୈତ, ଦ୍ୱୈତ, ଜ୍ଞାନ, ଭକ୍ତିର ଅପୂର୍ବ ସମନ୍ୱୟ ଜ୍ଞାନମିଶ୍ରା ଭକ୍ତି, ଅପର ପକ୍ଷରେ ଭୋଗବିଳାସ, ଅଣିମାଦି ଅଷ୍ଟରତ୍ନ, ଐଶ୍ୱର୍ଯ୍ୟ, କେଉଁଟିକୁ ପ୍ରାପ୍ତି ନୁହେଁ, ପରନ୍ତୁ ଦେହଦାନ କରି କାଳିନ୍ଦୀ କୂଳିଆଙ୍କ ଅଙ୍ଗସଙ୍ଗ ଲାଭ ସହିତ ମୁକ୍ତି ପ୍ରାପ୍ତି ପ୍ରେମ ଭକ୍ତିର ଅସଲ କଥା । ସେଇ ପ୍ରେମରେ ଜୀବ ପରମର ମିଳନ, 'ତେଣୁ ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧା ହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।'' ଏହା ଗୌଡୀ ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତ ସିଂହାର 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ବର୍ଣ୍ଣିତ । ଶ୍ରୀକୃଷ୍ଣ ସହ ହସ-ରସ-ବିଳାସରେ ମୁକ୍ତିର ବାଟ ଖୋଲିଯାଏ । ରାଧା, କୃଷ୍ଣଙ୍କର ଶ୍ରେଷ୍ଠ ଲୀଳା, ଶ୍ରେଷ୍ଠ ଧାମ ବୃନ୍ଦାବନରେ ପ୍ରକଟିତ । ତେଣୁ ଶ୍ରୀକୃଷ୍ଣଙ୍କୁ ଅବତାରି ଆଖ୍ୟା ଦିଅନ୍ତି ଗୌଡୀ ବୈଷ୍ଣବମାନେ ।

ଉତ୍କଳୀୟ ବୈଷ୍ଣବ ଭକ୍ତି ଭାବାନୁଯାୟୀ ଶ୍ରୀଜଗନ୍ନାଥ ଅବତାରି । ତାଙ୍କ ଶ୍ରେଷ୍ଠ ଲୀଳା, ମର୍ତ୍ତ୍ୟ ବୈକୁଣ୍ଠ ନୀଳାଚଳ ଧାମରେ ପ୍ରକଟିତ । ଶ୍ରୀକୃଷ୍ଣ ତାଙ୍କର ଏକ ଅବତାର ମାତ୍ର । ଜଗନ୍ନାଥ ହିଁ କଚ୍ଛପ, ମତ୍ସ୍ୟାଦି ଅବତାରର ଜନକ, ଫଳରେ

''ଜଗନ୍ନାଥ ଯେ ଷୋଳ କଳା । ତହୁଁ କଳାଏ ନନ୍ଦବଳା
କଳାକ ଷୋଳକଳା କରି / ଗୋପେ ବିହରେ ନରହରି ।''

(ଜଗନ୍ନାଥ ଚରିତାମୃତ-ବିପ୍ର ଦିବାକର ଦାସ )

ସେଇ ନୀଳ ଗିରିବାସୀ ପୁରୁଷୋତ୍ତମ, ସକଳ ବେଦ ପୁରାଣରେ ଅଗ୍ର ବନ୍ଦ୍ୟ, ହସ୍ତ, ପଦ, କର୍ଣ୍ଣ, ନାଶା ଗୁପ୍ତକରି ପରଂବ୍ରହ୍ମଭାବେ ବିରାଜମାନ । ପରଂବ୍ରହ୍ମ ହିଁ ଏକମାତ୍ର ପୁରୁଷ, ସମସ୍ତ ଜୀବଜଗତ ନାରୀ ଭାବାପନ୍ନ ଅଥବା ପ୍ରକୃତି ଆତ୍ମିକା ।

ଯୋଗମାର୍ଗୀ, ଶୂନସାଧକ, ଓଡ଼ିଶୀ ବୈଷ୍ଣବ ପଞ୍ଚସଖାମାନେ ମଧ ରାଧାକୃଷ୍ଣଙ୍କୁ ସ୍ୱୀକାର ପୂର୍ବକ, ନିତ୍ୟରାଧା, ନିତ୍ୟ ବୃନ୍ଦାବଦ ପ୍ରସଙ୍ଗ ଆପଣାର ରଚନାରେ ସ୍ଥାନିତ କରିଛନ୍ତି, ଯଥା:

'ଆତ୍ମାକୁ ସିରୀବେଶକର/ଶ୍ରୀରାଧା ଅଙ୍ଗରେ ବିହାର
ଶ୍ରୀକୃଷ୍ଣ ଆସ୍ୱାଦରସ ଦେଇ/ ଏହାକୁ ପ୍ରେମ ଭକ୍ତି କହି
ତେବେ ପାଇବୁ ଭାବଗ୍ରାହୀ/ ନୋହିଲେ ପଶି ନପାରଇ
ପୁରୁଷ ଅଙ୍ଗ ନ ଲଭନ୍ତି/ ଏମନ୍ତ ବେଦ ତତ୍ତ୍ୱସ୍ଥିତି ।''

(ବେଦାନ୍ତ ସାର ଗୁପ୍ତଗୀତା-ବଳରାମ ଦାସ)

ଜଗନ୍ନାଥ ହିଁ ଧର୍ମ, ଅର୍ଥ, କାମ, ମୋକ୍ଷ, ଚଉବର୍ଗ ଫଳଦାତା, ଏକମାତ୍ର କୈବଲ୍ୟର ଅଧିକାରୀ, ଜୀବ ମୋକ୍ଷ, ମୁକ୍ତିର କାରଣ । ଜଗନ୍ନାଥ ତୀର୍ଥ ସ୍ମରଣେ ପାପୀ, ତପୀଙ୍କର ମୁକ୍ତି । କାଳିନ୍ଦୀ ଚୂଳିଆ, କଦମ୍ବମୂଳିଆ, କେକୀ ପଛ ଚାରୁ ଚୂଳିଆଙ୍କୁ ନେଇ ବୈଷ୍ଣବ ସାହିତ୍ୟ ରସସରସ । ଏ ପରିପ୍ରେକ୍ଷୀରେ ଭକ୍ତ କବି ବନମାଳୀ ଦାସଙ୍କ ଭାବ ବିହ୍ୱଳ ଗୀତିକାଟିଏ ''କାହିଁଗଲେ

ମୁରଲି ଫୁଙ୍କା/ ଯୁବତୀ ରସିଆ କାମିନୀ ରଙ୍କା/ତ୍ରିରଙ୍ଗ ଭଙ୍ଗୀରେ ମୁରଲି ବଜାଇ/ଡାକୁଥାନ୍ତି ଆସ ଆସ ରାଧିକା ।'' ଏକ ବିବଦମାନ ସ୍ଥିତିରେ ଜଗନ୍ନାଥ, ଶ୍ରୀକୃଷ୍ଣ ଯେ ଐଶୀ ଅଂଶୀ ଏହା ଅନସ୍ୱୀକାର୍ଯ୍ୟ ।

ଶୂନ୍ୟରୁ ଶୂନ୍ୟ ଗଲେ ଶୂନ୍ୟ, ହର, ଗୁଣ, ଫେଡ, ମିଶା। ଶୂନ୍ୟର ଶୂନ୍ୟ ଏଇ ଗାଣିତିକ ସମାଧାନ ହିଁ ଶୂନ୍ୟ, ପୂର୍ଣ୍ଣିମାର ପୂର୍ଣ୍ଣେନ୍ଦୁ, ଚତୁର୍ଦ୍ଦଶୀର କ୍ଷୟ ପ୍ରାପ୍ତ ଜହ୍ନ, ସେଇ ଚାନ୍ଦ ଭିନ୍ନ କ'ଣ ଆନ କିଛି ? ଅନୁରୂପ ଭାବେ ଅମ୍ବୁ, ଗାଡିଆ ଅବା ମହୋଦଧିର, ଏସବୁ ହିଁ ଜଳ, ସେଇ ନ୍ୟାୟରେ ଜଗନ୍ନାଥ ଅବତାରୀ ଅବା ଶ୍ରୀକୃଷ୍ଣ ହୁଅନ୍ତୁ । ନିର୍ବିବାଦରେ ଶୂନ୍ୟ, ପରଂବ୍ରହ୍ମର ଅଂଶବିଶେଷ, ଉପାସ୍ୟ, ବନ୍ଦନୀୟ । ଏଇ କଥା କିନ୍ତୁ ଜଗନ୍ନାଥ ଭକ୍ତି ପ୍ରାଣ ଉତ୍କଳୀୟ ବୈଷ୍ଣବ କବି ଦୀନକୃଷ୍ଣ ଦାସ ସାବ୍ୟସ୍ତ କରିଛନ୍ତି ଆପଣାର ରସକଲ୍ଲୋଳ କାବ୍ୟରେ । ଜଗାକାଳିଆ, କଦମ୍ବମୂଳିଆ ଶ୍ରୀକୃଷ୍ଣ ଏକ, ଅଭିନ୍ନ । ତେଣୁ ଉଲ୍ଲେଖ କରିଛନ୍ତି –

କୁଟିଳ ନୀଳ ଅଳକା ବଳୀୟା/ କମନୀୟ ବନ ଫୁଲର ମାଳିଆ
କଳଧଉତ କାନ୍ତି ଦୁକୂଳୀୟା/ କିଶୋର ବରଜ ସଙ୍ଗ ମେଳିଆ/

କୃଷ୍ଣଦାସ ମନ, କମଳ ଉନ୍ନିଦ୍ର କର ତପନ । ଶ୍ରୀକୃଷ୍ଣ ପୁଣି ନୀଳାଚଳିଆ, କୁମ୍ଭକଟକିଆ, ଚକ୍‌କଣ କାଳିଆ, ତା'ର ପାଦରେ ମନ ଅଳିର ବିକଳ ପ୍ରାର୍ଥନା, ''ଜଗନ୍ନାଥ ହୋ, କିଛି ମାଗୁନାହିଁ ତୋତେ, ଧନ ମାଗୁନାହିଁ, ଜନ ମାଗୁନାହିଁ, ମାଗୁଛି ଶରଧା ବାଲିରୁ ହାତେ ।'' ସେଇ କାଳିଆ ପାଦରେ ଭକ୍ତିର ସମ୍ପୂର୍ଣ୍ଣ ସମର୍ପଣ ।

''ଜଗନ୍ନାଥ ସ୍ୱାମୀ, ନୟନପଥ ଗାମୀ, ଭବତୁମେ ।''

ସା.ପୋ– ପୁରୁଷୋତ୍ତମପୁର
ଜି– କେନ୍ଦ୍ରାପଡ଼ା–୭୫୪୨୨୩

# ଦରଶନ ଦିଅ କାଳିଆ

ଗଣେଶ ଚନ୍ଦ୍ର ଦାଶ

ବହୁ ଆଶା କରି ଆସିଥିଲି ମୁହିଁ
ତୋର ଦରଶନ ପାଇଁ,
ଦେଖା ଦେଲୁ ନାହିଁ ରଥରେ ବସିଣ
ଦୁଃଖରେ ଫେରୁଛି ମୁହିଁ ।

ଦେବାକୁ ଦର୍ଶନ ପ୍ରାର୍ଥନା ମୋହର
ରହିଲା ଜଗାରେ ତୋତେ,
ବଡ ଦାଣ୍ଡେ ତୋତେ ଅନାଇ ଅନାଇ
କରୁଣା ନାହିଁ ତୋ ଚିତ୍ତେ ।

ନିତି ଦରଶନ ବଡ ପଣ୍ଡା କରେ
ତୋର ପୂଜାର୍ଚ୍ଚନା ପାଇଁ,
ବଡ ପଣ ତୋର ଯୁଗେ ଯୁଗେ ଅଛି
ମୋ ପାଇଁ କିଛି କି ନାହିଁ ?

ଏକୋଇଶ ବ୍ରହ୍ମାଣ୍ଡ ଅଟୁ ପରା ସ୍ୱାମୀ
ସକଳ ଆତ୍ମାରେ ତୁହି,
ସାଲବେଗ ପାଇଁ ରଥେ ଅଟକିଲୁ
ଦରଶନ ଦେବା ପାଇଁ ।



ସଖା ବୋଲି ପାର୍ଥେ ରଥେ ଦରଶନ
ଦିବ୍ୟ ଚକ୍ଷୁ କରି ଦାନ,
ଭାଇ ବନ୍ଧୁ ପ୍ରୀତି ତ୍ୟାଗ କରି ସେତ
କଲା ଶରର ବର୍ଷଣ ।

ହିନ୍ଦୁ, ମୁସିଲିମ୍, ଖ୍ରୀଷ୍ଟିଆନ୍ ସର୍ବେ
ଅଟନ୍ତି ତୋର ସନ୍ତାନ,
ଭେଦ ଭାବ ଭୁଲି ସମସ୍ତେ ଏକତ୍ର
ହୁଅନ୍ତି ଗୁଣ୍ଡିଚା ଦିନ ।

ଏ ମହୀ ମଣ୍ଡଳେ ତୋର ଯଶ ରହୁ
ଦିଅ ବାରେ ଦରଶନ,
ମାଗୁ ନାହିଁ ତୋତେ ଧନ ଜନ ପ୍ରଭୁ
ଶ୍ରୀପଦେ ତୋର ପ୍ରଣାମ ।

କ୍ୱାଟର ନଂ ଇ–୨୨
ୟୁନିଟ୍–୭, ଭୁବନେଶ୍ୱର–୭୫୧୦୦୩







# ପ୍ରାଚୀନ କବିଙ୍କ ଲେଖନୀରେ ଜଗନ୍ନାଥ ସ୍ତୁତି

ଡକ୍ଟର ଭାଗ୍ୟଲିପି ମଲ୍ଲ

ଶ୍ରୀଜଗନ୍ନାଥ ହେଉଛନ୍ତି ସମଗ୍ର ବିଶ୍ୱମାନବର ଏକ ବିସ୍ମୟ ଦେବତା । ତାଙ୍କର ଦାରୁପିଣ୍ଡ ମଧ୍ୟରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ପରିକଳ୍ପନା । ସେ ଅନନ୍ତ ଓ ଅସୀମ । ପୁଣି ସମଗ୍ର ମାନବ ଜାତିର ମୁକ୍ତିଦାତା, ତାଙ୍କର ଲୀଳାର ଅନ୍ତନାହିଁ । ଶ୍ରୀଜଗନ୍ନାଥ ହେଉଛନ୍ତି ପତିତପାବନ, ସର୍ବଧର୍ମ ସମନ୍ୱୟର ପ୍ରତୀକ । ପୃଥିବୀର ସବୁଧର୍ମ, ପ୍ରତ୍ୟେକବର୍ଣ୍ଣ ଓ ବିଭିନ୍ନ ଆଦର୍ଶ ତଥା ବହୁ ଦର୍ଶନ ଶ୍ରୀଜଗନ୍ନାଥଙ୍କଠାରେ ହିଁ କେନ୍ଦ୍ରୀଭୂତ । ସମଗ୍ର ହିନ୍ଦୁ ଜନତାର ଶ୍ରେଷ୍ଠ ଦେବତା ହେଉଛନ୍ତି ଶ୍ରୀଜଗନ୍ନାଥ । ସେଥିପାଇଁ ଗୀତାରେ କୁହାଯାଇଛି –

''ଯସ୍ମାତ୍ କ୍ଷରମତୀତୋଽହଂ ଅକ୍ଷରାଦପିଚୋତ୍ତମଃ

ଅତୋଽସ୍ମି ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ ।''

ଅର୍ଥାତ୍– 'ଯେହେତୁ ମୁଁ ଉଭୟ ଭ୍ରାନ୍ତ ଓ ଅଭ୍ରାନ୍ତ ବା କ୍ଷର ଓ ଅକ୍ଷରଠାରୁ ଊର୍ଦ୍ଧ୍ୱରେ ଅବସ୍ଥିତ ଏଣୁ ମହାନ୍ । ତେଣୁ ମୁଁ ଉଭୟତ୍ର ଅର୍ଥାତ୍ ପୃଥିବୀର ଏବଂ ବୈଦିକ ସାହିତ୍ୟରେ ପୁରୁଷୋତ୍ତମ ନାମରେ ଖ୍ୟାତ ଅଟେ ।

ଜଗନ୍ନାଥ ସଂସ୍କୃତି ସହିତ ସଂପୃକ୍ତ ଅଜସ୍ର ଉପାଦାନ ମଧ୍ୟରେ ପାଖୁଡ଼ା ପାଖୁଡ଼ା ହୋଇ ଉନ୍ମୋଚିତ ହୋଇଯାଇଛି ଜଗନ୍ନାଥ ଚେତନା । କେବଳ ଜଗନ୍ନାଥ ଚେତନାରେ ହିଁ ଜଣେ ଉଦ୍‌ବୁଦ୍ଧ ହେଲେ 'ଏକ' ସତ୍ତାରୁ 'ଅନେକ' ସତ୍ତାରେ ଓ ଶେଷରେ 'ଅନନ୍ୟ' ସତ୍ତାରେ ବ୍ୟାପିଯାଇ ଅତିମାନସ ସତ୍ତାରେ ଉପନୀତ ହୋଇପାରେ । କ୍ରମଶଃ ତା' ଭିତରୁ ଅପସରିଯାଏ ସଂକୀର୍ଣ୍ଣତା, ଉଦିତ ହୁଏ ବିଶ୍ୱଭାବ, ନିର୍ବେଦ ଭାବ, ନିର୍ବିକଳ୍ପ ଭାବ । ଏକରୁ ଅନେକରେ, ବ୍ୟଷ୍ଟିରୁ ସମଷ୍ଟିରେ, ଆଞ୍ଚଳିକତାରୁ ବୈଶ୍ୱ ଭାବରେ ସଂକୀର୍ଣ୍ଣତାରୁ ପରିବ୍ୟାପ୍ତିରେ ଆତ୍ମାକୁ ପ୍ରସାରିତ କରିପାରିଲେ ହିଁ ଜଗନ୍ନାଥ ସଂସ୍କୃତିକୁ ଅନୁଭବ କରିହୁଏ । ଏହି ମହାନ୍ ଜଗନ୍ନାଥ ସଂସ୍କୃତିରେ ଉଦ୍‌ବୁଦ୍ଧ ହୋଇ ଭାରତୀୟ ଭକ୍ତ ସମାଜ ଭକ୍ତିଭାବକୁ ନଅଟି ଭାଗରେ ବିଭକ୍ତ କରିଛନ୍ତି–

ନାମଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବା, ପୂଜା, ସ୍ତବ, ପରିଚର୍ଯ୍ୟା, ସଖାଭାବ ଓ ଆତ୍ମସମର୍ପଣ । ଆତ୍ମ ସମର୍ପଣ ପୂର୍ବକ, କୌଣସି ପ୍ରକାର କାମନା ହୃଦୟରେ ନ ରଖି ଯେଉଁ ନାମ କୀର୍ତ୍ତନ କରାଯାଏ ତାହାହିଁ ହେଉଛି – ଭଜନ । ଅର୍ଥାତ୍, ଯେଉଁମାନେ ମଦ୍‌ଗତପ୍ରାଣ ହୋଇ ପରସ୍ପର ମଧ୍ୟରେ ଆଳାପ ଆଲୋଚନା ପୂର୍ବକ ମୋ ପ୍ରତି ଅନୁରକ୍ତ ହୋଇପଡ଼ନ୍ତି, ମୁଁ ସେହିମାନଙ୍କୁ ତତ୍ତ୍ୱଜ୍ଞାନ ଫଳରେ ସେମାନେ ମୋର ସାନ୍ନିଧ ଲାଭ କରିଥାଆନ୍ତି । ଅର୍ଥାତ୍, ନିଜେ ପରମାତ୍ମା ସେହି ପ୍ରକାର ଭକ୍ତଙ୍କ ହୃଦୟରେ ଜ୍ଞାନାଲୋକ ଜାଳି ଅବିଦ୍ୟା ଧ୍ୱଂସପୂର୍ବକ ସେମାନଙ୍କୁ ମୁକ୍ତି ମାର୍ଗର ପଥିକ କରାଇ ଦିଅନ୍ତି ।

ଆହୁରି ମଧ୍ୟ ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି–

'ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍ ।

ଭବାମି ନଚିରାତ୍ ପାର୍ଥ ମୟ୍ୟାବେଶିତ ଚେତସାମ୍ ।'

(ଗୀତା, ୧୨ଶ ଅଧ୍ୟାୟ)

ଅର୍ଥାତ୍, ଯେଉଁମାନେ ମଦ୍‌ଗତପ୍ରାଣ ହୋଇ ନିବିଷ୍ଟ ଚିତ୍ତରେ ମୋର ଭଜନ କରିଥାଆନ୍ତି, ସେମାନଙ୍କୁ ଆବୃତ୍ତିର ଅପରନାମ ହେଉଛି– ଭଜନ । ସେଥିରେ କୌଣସି ପ୍ରକାର ବାସନା ସଂଶ୍ଳିଷ୍ଟ ହୋଇ ନ ଥାଏ ଏବଂ ତାହାହିଁ ହେଉଛି – ଉତ୍ତମା ଭକ୍ତି ବା ସାତ୍ତ୍ୱିକ ଭକ୍ତି । ଏ ସମ୍ବନ୍ଧରେ ଶାସ୍ତ୍ରରେ କୁହାଯାଇଛି–

'କର୍ମନିର୍ହାରମୁଦ୍ଦିଶ୍ୟ ପରିସ୍ମିନ୍ ବା ତଦର୍ପଣଂ ।

ଯଜେତ୍ ଯଷ୍ଟବ୍ୟମିତି ବା ପୃଥଗ୍‌ଭାବଃ ସ ସାତ୍ତ୍ୱିକଃ ।'

ଭକ୍ତ ଏହିପରି ଭାବରେ ନିଦିଧ୍ୟାସନର ସହିତ ଯେଉଁ ନାମ କୀର୍ତ୍ତନ କରେ ତାକୁ 'ଭଜନ' ଆଖ୍ୟା ଦିଆଯାଇଥାଏ ।




'ଜଣାଣ' ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, ଭକ୍ତ କେତେକ ଅଭିଯୋଗ ନେଇ ଈଶ୍ୱରଙ୍କ ନିକଟରେ ଉପସ୍ଥାପିତ କରେ । ଭକ୍ତ ସାଂସାରିକ ଜଞ୍ଜାଳର ସମ୍ମୁଖୀନ ହୋଇ ଉତ୍ଥାନ ପତନରେ ପଡ଼ିଥିବା ସମୟରେ, ସେ ଭଗବଦ୍ ଆରାଧନା କରିବାକୁ ମନ ବଳାଏ । ସେତିକିବେଳେ ସେ କାତର କଣ୍ଠରେ ଈଶ୍ୱରଙ୍କୁ ଡାକିଥାଏ । ଅନେକ ଆରାଧନା କରିବା ପରେ, ଯେତେବେଳେ ତାର ମନୋମତ ଫଳ ମିଳିବାରେ ଆଶା ନଥାଏ, ସେତେବେଳେ ସେ ପୌରାଣିକ ଆଖ୍ୟାୟିକାର ଉଦାହରଣ ଦର୍ଶାଇ ଭଗବାନ୍‌ଙ୍କ ନିକଟରେ ମନ ବଳାଏ । ସେହି ପ୍ରସଙ୍ଗରେ ଗଜ, ହରିଣୀ, ଦ୍ରୌପଦୀ, ଧ୍ରୁବ ଓ ପ୍ରହ୍ଲାଦ ଆଦି ଆଖ୍ୟାୟିକା ବର୍ଣ୍ଣନା କରି ବିଭୁ ପଦାରବିନ୍ଦରେ, ତା'ର ଦୁଃଖ କାହିଁକି ଦୂର ନ କରୁଛନ୍ତି, ତା'ର କୈଫିୟତ ଆଦାୟ କରିବାର ପ୍ରୟାସ କରିଥାଏ । ସେହି ଧରଣର ନାମ କୀର୍ତ୍ତନକୁ 'ଜଣାଣ' ଆଖ୍ୟା ଦିଆଯାଇଥାଏ ।

ଏହି ପ୍ରକାର 'ଜଣାଣ' ଗୁଡ଼ିକୁ ଶାସ୍ତ୍ରକାରମାନେ ଚାରି ଭାଗରେ ବିଭକ୍ତ କରିଥାନ୍ତି । ସେଗୁଡ଼ିକ ହେଉଛି– କାମଜା ଭକ୍ତି, ଦ୍ୱେଷଜା ଭକ୍ତି, ଭୟଜା ଭକ୍ତି ଓ ସ୍ନେହଜା ଭକ୍ତି । 'ଶାଣ୍ଡିଲ୍ୟ ଶତସୂତ୍ର ଭାଷ୍ୟ' ନାମକ ଗ୍ରନ୍ଥରେ ଏ ସମ୍ବନ୍ଧରେ କୁହାଯାଇଛି–

'କାମାଦ୍ ଦ୍ୱେଷାଦ୍ ଭୟାଦ୍ ସ୍ନେହାଦ୍ ଯଥା ଭକ୍ତ୍ୟେଶ୍ୱରେ ମନଃ ।
ଆବେଶ୍ୟ ତଦର୍ଥଂ ହିତ୍ୱା ବହବସ୍ତଦ୍‌ଗତିଂ ଗତାଃ ।'

(ଶାଣ୍ଡିଲ୍ୟ ଶତସୂତ୍ର ଭାଷ୍ୟ)

ସଂସାରର ଗୃହସ୍ଥମାନେ ଏହି ପ୍ରକାର ଭକ୍ତିକରି ଭଗବାନ୍‌ଙ୍କଠାରୁ ଅଭିଳାଷ ପୂରଣ କରିବାରେ ମନ ବଳାଇ ଥାଆନ୍ତି । ଏହି ପ୍ରକାର ଭକ୍ତିକୁ ଶାସ୍ତ୍ରକାରମାନେ 'ରାଜସୀ ଭକ୍ତି' ବୋଲି ନାମିତ କରିଛନ୍ତି ।

ଭଜନ ଓ ଜଣାଣର ସଂଜ୍ଞା ନିରୂପଣ ସମ୍ବନ୍ଧରେ ସାମାନ୍ୟ ଆଲୋଚନା କରିଯିବା ପରେ ପ୍ରାର୍ଥନା ବିଷୟରେ ସ୍ୱତଃ ଜିଜ୍ଞାସା ଜାତ ହୋଇଥାଏ ।

ପ୍ରାର୍ଥନା ହେଉଛି– ବିଭୁପାଦ ପଦ୍ମରେ ନିର୍ଦ୍ଦିଷ୍ଟ ବିଷୟର ଯାଚଞ୍ଚା । ସ୍ମରଣକାରୀ ଭକ୍ତ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ପରିପୂରଣ ନିମିତ୍ତ ପୂଜା ଅର୍ଚ୍ଚନାର ଆୟୋଜନ କରନ୍ତି । ସେହି ଅବସରରେ ସେମାନେ (ଭକ୍ତମାନେ) କାମନାର ବଶୀଭୂତ ହୋଇ ଲୌକିକ ଜଗତର ସୁଖସ୍ୱାଚ୍ଛନ୍ଦ୍ୟରେ ଜୀବନ କଟାଇବା କିମ୍ବା ନିର୍ଦ୍ଦିଷ୍ଟ ଅଭିଳାଷ ପୂରଣ ନିମିତ୍ତ ପୂଜା, ବଳି ଓ ହୋମାଦି ଦ୍ୱାରା ଦେବଦେବୀଙ୍କୁ ସନ୍ତୁଷ୍ଟ କରିବାରେ ଲାଗିପଡ଼ନ୍ତି । ସେ ପ୍ରକାର ଭକ୍ତିକୁ ଭକ୍ତିଶାସ୍ତ୍ରରେ ତାମସୀ ଭକ୍ତି ବା ଅଧମା ଭକ୍ତି ବୋଲି ନାମିତ କରାଯାଇଛି । ଏ ପ୍ରକାର ଭକ୍ତିରେ ଭକ୍ତର ମନ ମଧ୍ୟରେ ପ୍ରଚ୍ଛନ୍ନଭାବରେ ହିଂସା, ଲୋଭ, ଦ୍ୱେଷ ତଥା ଅଭିମାନ ଜାଗ୍ରତ ହୋଇଥାଏ ।

ଓଡ଼ିଆ ଜାତିର ଆରାଧ୍ୟ ଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଓଡ଼ିଶାର କବି କୋବିଦମାନେ ବହୁବିଧ ରଚନା କରିଥିଲେ ।

ଓଡ଼ିଆ ଜାତି ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମଧ୍ୟରେ କେଉଁ ଆଦିମ ଯୁଗରୁ ଏକ ଘନିଷ୍ଠ ସମ୍ପର୍କ ଚଳି ଆସୁଛି । ଅବଶ୍ୟ ସେ ସମ୍ବନ୍ଧରେ ସମୟ ନିର୍ଦ୍ଧାରଣ କରିବା ଆଦୌ ସହଜସାଧ୍ୟ ବ୍ୟାପାର ନୁହେଁ । ତଥାପି, ଏ ଜାତିର ଜାତୀୟ ଜୀବନ ଆରମ୍ଭ ହେବା ଦିନରୁ, ଶ୍ରୀଜଗନ୍ନାଥ ଓଡ଼ିଆ ସଂସ୍କୃତି ତଥା ଐତିହ୍ୟର ମୂଳ ଉତ୍ସ ରୂପେ ସମ୍ମାନିତ ହୋଇ ଆସୁଛନ୍ତି । ସମୟକ୍ରମେ ଜୈନ, ବୌଦ୍ଧ, ଶାକ୍ତ ତଥା ବୈଷ୍ଣବ ମତାବଲମ୍ବୀ ଓଡ଼ିଆ ଜନତା ଶ୍ରୀଜଗନ୍ନାଥଙ୍କ ଠାରେ ଅଚଳା ଭକ୍ତି ରଖି, ତାଙ୍କୁ ସ୍ୱ ସ୍ୱ ମତବାଦର ଆରାଧ୍ୟ ରୂପେ ପୂଜା ତଥା ବନ୍ଦନା କରିଛନ୍ତି । ତଦ୍‌ବ୍ୟତୀତ ଓଡ଼ିଶାର ଆଦିବାସୀମାନେ ମଧ୍ୟ କେଉଁ ଅନାଦି ଯୁଗରୁ 'ଦାରୁଦେବତା'ର ଆରାଧନା କରି ଶ୍ରୀଜଗନ୍ନାଥ ଧର୍ମର ଅଙ୍କୁରୋପଣ କରିଛନ୍ତି । ଆଲୋଚକମାନଙ୍କ ଗବେଷଣାରୁ ଜଣାଯାଏ ଯେ, ସେହି ଆଦିମକାଳର 'ଦାରୁଦେବତା' ହିଁ ପରବର୍ତ୍ତୀ ଯୁଗରେ ଶ୍ରୀଜଗନ୍ନାଥ ନାମରେ ନାମିତ ହୋଇଛନ୍ତି । ଏହି ବିଗ୍ରହର ପ୍ରଶସ୍ତି ଇନ୍ଦ୍ରଭୂତିଙ୍କ ଲିଖିତ 'ଜ୍ଞାନ ସିଦ୍ଧି', ମୁରାରିଙ୍କ ପ୍ରଣୀତ 'ଅନର୍ଘ ରାଘବ ନାଟକ', ଶତାନନ୍ଦ ଆଚାର୍ଯ୍ୟଙ୍କ ରଚିତ 'ରତ୍ନମାଳା' ତଥା ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ସ୍ତୋତ୍ର ଆଦି ପ୍ରାଚୀନ ଗ୍ରନ୍ଥ ଓ ସ୍ତୋତ୍ର, କବଚ ଆଦିରେ ଦେଖିବାକୁ ମିଳେ । ତେଣୁ ନିଃସନ୍ଦେହରେ କୁହାଯାଇପାରେ ଯେ, ଖ୍ରୀଷ୍ଟିୟ ସପ୍ତମ ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଶାର ବଡ଼ଠାକୁର ଶ୍ରୀଜଗନ୍ନାଥ ବିଶ୍ୱବିଶ୍ରୁତ ବିଗ୍ରହ ରୂପେ ପ୍ରତିଷ୍ଠାଲାଭ କରିସାରିଥିଲେ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମହିମାଗାନରେ ଓଡ଼ିଶାର ବହୁ ପଣ୍ଡିତ ସଂସ୍କୃତ କାବ୍ୟ, ନାଟକ, ଚମ୍ପୂ ଆଦି ରଚନା କରି ଶ୍ରୀଜଗନ୍ନାଥ ସାହିତ୍ୟର ମୂଳଭିତ୍ତି ସ୍ଥାପନ କରିଯାଇଛନ୍ତି ଏବଂ ଓଡ଼ିଆ ସାହିତ୍ୟର ପ୍ରାରମ୍ଭ ଯୁଗରୁ ବଡ଼ଠାକୁର, ସାହିତ୍ୟର ଏକ ଅଭିନ୍ନ ଅଙ୍ଗ ରୂପେ ସମ୍ମାନିତ ହୋଇ ଆସୁଛନ୍ତି ।

ମୁଖ୍ୟତଃ ଓଡ଼ିଆ ସାହିତ୍ୟର ବିକାଶଯୁଗର ମହାକବି ସାରଳା ଦାସ ସ୍ୱରଚିତ 'ମହାଭାରତ' ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ପ୍ରତ୍ୟେକ ପର୍ବର ପ୍ରାୟ ପ୍ରତ୍ୟେକ ଅଧ୍ୟାୟରେ ବିଷୟବସ୍ତୁ ଆରମ୍ଭ





କରିବା ସଂଗେ ସଂଗେ ମହାଭାରତ ଯୁଦ୍ଧର ନଟନାଗର ଶ୍ରୀକୃଷ୍ଣଙ୍କୁ ବହୁସ୍ଥଳରେ ଶ୍ରୀଜଗନ୍ନାଥଙ୍କ ସହିତ ଅଭିନ୍ନ ରୂପରେ ରୂପାୟିତ କରି ବର୍ଣ୍ଣନା କରିଛନ୍ତି । ଆହୁରି ମଧ୍ୟ କବି ସାରଳା ଦାସ ତାଙ୍କ ରଚିତ 'ମହାଭାରତ' ର 'ମୂଷଳୀ ପର୍ବ' ରେ ଯଦୁବଂଶର ଧ୍ୱଂସ ପରେ, ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପ୍ରକରଣରେ ଶ୍ରୀଜଗନ୍ନାଥଙ୍କ ନାମାବଳୀ ଓ ଗୁଣାବଳୀ ଭଜନ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହେବା ଅସମୀଚୀନ ନୁହେଁ । ତଥାପି ପ୍ରସ୍ତୁତ ଭଜନ ଖଣ୍ଡରେ କବି ସାରଳା ଦାସଙ୍କ ମହାଭାରତରେ ଥିବା ଶ୍ରୀଜଗନ୍ନାଥ ନାମାବଳୀ ଓ ଗୁଣାବଳୀ ସଙ୍କଳିତ ହୋଇନାହିଁ । ତେଣୁ ଆଲୋଚକମାନଙ୍କ କୌତୂହଳର ଉପଶମ ନିମିତ୍ତ 'ସାରଳା ମହାଭାରତ'ରୁ କେତୋଟି ପଦ୍ୟାଂଶ ଏଠାରେ ପ୍ରଦତ୍ତ ହେଲା –

ଜୟ ଜୟ ଜଗନ୍ନାଥ ଜଗତ କାରଣ,  
ଜୟ ନୀଳଗିରି ବାସୀ ଭଗତ ଜୀବନ ।  
ଭକ୍ତଙ୍କ ପାଇଁ ହସ୍ତରେ ଚକ୍ରଧର ସଦା,  
ତାଙ୍କର ଅଭୀଷ୍ଟ ପ୍ରଭୁ କରିଦିଅ ପଦା ।  
ତୁମ୍ଭେ କରୁଣା ନ କଲେ ହେ କରୁଣାସିନ୍ଧୁ,  
କରି ନ ପାରନ୍ତି ନରେ ଏହି ଭବବନ୍ଧୁ ।  
ଆହା ପ୍ରଭୁ ଆପଣଙ୍କ କି ଦୟା ଭକତେ,  
ସର୍ବଦା ଅନାଇ ଥାଅ ତାଙ୍କୁ କୃପା ନେତ୍ରେ ।  
ମୁଁ ତୁମ୍ଭ ପଦକିଙ୍କର ହେ ନୀଳାଦ୍ରି ନାଥ,  
ତୁମ୍ଭ ଛଡ଼ା ଆଶ୍ରା କେହି ନାହିଁ ମୁଁ ଅର୍କ୍ଷିତ ।  
ସାରଳା ଦାସ ମୋ ନାମ ତବ ଭାବ ଭାବି,  
ଭାରତ ରଚନା କରି ବୋଲାଉଛି କବି ।

(ମହାଭାରତ, ମୂଷଳୀ ପର୍ବ)

ସାରଳା ଦାସଙ୍କ ସମୟର ଅଳ୍ପ ପରବର୍ତ୍ତୀ କବି ଅର୍ଜୁନ ଦାସ ସ୍ୱରଚିତ, 'ରାମବିଭା' ଓ ' କଳ୍ପଲତା' କାବ୍ୟରେ ବିଷୟବସ୍ତୁର ପ୍ରାରମ୍ଭ ତଥା ବିଭିନ୍ନ ସ୍ଥଳରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବିସ୍ତୃତ ବର୍ଣ୍ଣନା କରି 'ଶ୍ରୀଜଗନ୍ନାଥ ସାହିତ୍ୟ' ର ମୂଳଦୁଆକୁ ସୁଦୃଢ଼ କରିଛନ୍ତି ।

କେବଳ ସାରଳା ଦାସ ଓ ଅର୍ଜୁନ ଦାସ ନୁହନ୍ତି, ବଳରାମ ଦାସ ଆଦି ପଞ୍ଚସଖା, ପୁରୁଷୋତ୍ତମ ଦାସ (କାଞ୍ଚିକାବେରୀର ପ୍ରଣେତା), ଲୋକନାଥ ବିଦ୍ୟାଧର (ନୀଳାଦ୍ରି ମହୋତ୍ସବର କବି), ରାଜକବି ଗୋପୀନାଥ ସିଂହ (ନୀଳାଦ୍ରି ବିହାରର ପ୍ରଣେତା) ଆଦି କବିମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଯାତ୍ରା ଓ ଲୀଳା ଆଦିର ବର୍ଣ୍ଣନା କରି ଛନ୍ଦୋବଦ୍ଧ ସ୍ୱତନ୍ତ୍ର ପୁସ୍ତକମାନ ରଚନା କରିଛନ୍ତି ।

ଏତଦ୍‌ବ୍ୟତୀତ ଖ୍ରୀଷ୍ଟୀୟ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀ ମଧ୍ୟରେ ଶ୍ରୀଜଗନ୍ନାଥ ମହାପ୍ରଭୁ ତଥା ଚତୁର୍ଦ୍ଧା ମୂର୍ତ୍ତିଙ୍କ ମହିମା ବର୍ଣ୍ଣନାରେ ଯେତେ ଖଣ୍ଡି କାବ୍ୟ, ଖଣ୍ଡକାବ୍ୟ ଆଦି ରଚିତ ହୋଇଛି, ତନ୍ମଧ୍ୟରେ ଦାମ ଦାସଙ୍କ 'ଦେଉଳ ତୋଳା' ବା 'ଦାରୁବ୍ରହ୍ମ ଗୀତା', କୃଷ୍ଣ ଦାସଙ୍କ 'ଜଗମୋହନ ଛାନ୍ଦ', ଶିଶୁ ଦାମ ଦାସଙ୍କ 'ବିଦ୍ୟାପତି ରଚିତ', ପୁରୁଷୋତ୍ତମ ଦାସଙ୍କ 'ଗୁଣ୍ଡିଚା ବିଜୟ', କୃପାସିନ୍ଧୁ ଦାସଙ୍କ 'ଚତୁର୍ଦ୍ଧା ମୂର୍ତ୍ତି ବର୍ଣ୍ଣନା', ଯୁଧିଷ୍ଠିର ଦାସଙ୍କ 'ଗୁଣ୍ଡିଚା ଯାତ୍ରା', ମାଗୁଣି ଜ୍ୟୋତିଷଙ୍କ 'ଦେଉଳ ତୋଳା' ଓ 'ଶ୍ରୀଜଗନ୍ନାଥ ନାମମାଳା', ବିପ୍ର କାଶୀ ଦାସଙ୍କ 'ସ୍ନାନ ଯାତ୍ରା' ଓ 'ଗୁଣ୍ଡିଚା ବିଜେ', କବି ଜଗନ୍ନାଥ ଦାସଙ୍କ (ଭାଗବତକାର ନୁହନ୍ତି) 'ଗୁଣ୍ଡିଚା ଯାତ୍ରା', ଶିଶୁ ଦାସଙ୍କ 'ନେତ୍ର ଉତ୍ସବ ବର୍ଣ୍ଣନା', ଧରମୁ ଦାସଙ୍କ 'ବାହୁଡ଼ା ଯାତ୍ରା', ଦୀନବନ୍ଧୁ ଦାସଙ୍କ ଦେଉଳା ତୋଳା', ଗୋବିନ୍ଦ ଦାସଙ୍କ ' ଗୁଣ୍ଡିଚା ବିଜେ' ଆଦି ବହୁ ଗ୍ରନ୍ଥ ଅଦ୍ୟାପି ଲୋକମୁଖରେ ଗୀତ ହୋଇ ମହାପ୍ରଭୁଙ୍କ ଲୀଳା ପ୍ରକଟ କରାଉଛି ।

ଶ୍ରୀଜଗନ୍ନାଥଙ୍କ ମହିମା ଗାନର ଅବଲମ୍ବନରେ ରଚିତ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ମଧ୍ୟରେ ଓଡ଼ିଆ ଜଗନ୍ନାଥ ଭଜନ ବେଶ୍ ସମୃଦ୍ଧ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ସମୃଦ୍ଧ ନୁହେଁ, ଅତି ହୃଦୟସ୍ପର୍ଶୀ, ପ୍ରାଣକାତର ଓ ସମର୍ପଣ ଭାବର ସ୍ନିଗ୍ଧମଧୁର ନିବେଦନ ।

ଓଡ଼ିଶାରେ ଖ୍ରୀଷ୍ଟିୟ ପଞ୍ଚଦଶ ଶତାବ୍ଦୀଠାରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀ ସୁଦ୍ଧା ସହସ୍ର ସହସ୍ର ଭଜନ ବିଭିନ୍ନ କବି କୋବିଦଙ୍କ ଦ୍ୱାରା ରଚିତ ହୋଇଥିଲା । ସେଗୁଡ଼ିକର ସଂଗ୍ରହ ଆଜି ସୁଦ୍ଧା ହୋଇପାରି ନାହିଁ । ଅନେକ କ୍ଷୁଦ୍ର 'ଭଜନ' ପୁସ୍ତକ ପ୍ରକାଶିତ ହୋଇଥିଲେ ମଧ୍ୟ ଅଦ୍ୟାପି ବହୁସଂଖ୍ୟକ ଭଜନ ଅପ୍ରକାଶିତ ଅବସ୍ଥାରେ ରହିଛି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କେତେଖଣ୍ଡି ଭଜନ ସମ୍ବଳିତ ତାଳପତ୍ର ପୋଥି ରାଜ୍ୟର ବିଭିନ୍ନ ସ୍ଥାନରୁ ସଂଗୃହୀତ ହୋଇ ସଂରକ୍ଷିତ ହୋଇଛି । ସେହି ପ୍ରକାଶିତ ତଥା ଅପ୍ରକାଶିତ ଭଜନଗୁଡ଼ିକ ମଧ୍ୟରୁ କେତେକ ଉପାଦେୟ ଭଜନ ପ୍ରସ୍ତୁତ ସମ୍ପାଦନାରେ ସଂଗ୍ରହ କରାଯାଇ, ସେଗୁଡ଼ିକୁ ପୂର୍ବୋକ୍ତମତେ ତିନିଭାଗରେ ବିଭକ୍ତ କରାଯାଇଛି । ପ୍ରସ୍ତୁତ ବିଭାଗ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଭଜନ ସମ୍ବନ୍ଧରେ ଏଠାରେ କେତେକ ଆଲୋଚ୍ୟ ବିଷୟର ଅବତାରଣା କରାଯାଇଛି ।




ଓଡ଼ିଶାର ଭକ୍ତମାନେ ପ୍ରାଚୀନ ସଂସ୍କୃତି ପଦ୍ଧତିର ଅନୁସରଣ କରି ଭଜନ, ଜଣାଣ, ପ୍ରାର୍ଥନା ରୀତିରେ ନିଜ ନିଜ ସ୍ତୁତିଗୁଡ଼ିକୁ ରଚନା କରିଛନ୍ତି ।

ନିଷ୍କାମ ଭଜନର ପନ୍ଥା ଅନୁସରଣ କରି ଯେଉଁ ଭଜନଗୁଡ଼ିକ ରଚିତ ହୋଇଛି, ସେଗୁଡ଼ିକ ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର ରୂପ ନେଇଛି ।

କେହି ଭକ୍ତକବି କେବଳ ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ ଧ୍ୟାନ ରଖି ଦେବଦୁର୍ଲ୍ଲଭ ଦାରୁ କଳେବରର ବର୍ଣ୍ଣନା କରି କହିଛନ୍ତି–

'ଅନାଥ ନାଥଙ୍କୁ ଶ୍ରୀଜଗନ୍ନାଥଙ୍କୁ
ଧ୍ୟାନ କର ହୋ ମନ ଶ୍ୱେତପଦ୍ମ ନେତ୍ରଙ୍କୁ
ଧନ୍ୟ ସେ ନୀଳାଦ୍ରି ଡୋଳା
ଭବ ସାଗରକୁ ଭେଳା,
ଉଦେ ନାହିଁ ଅସ୍ତ କଳା
ଧ୍ୟାନେ ସଦାଶିବ ଭୋଳା,
ମନକୁ ଗଲା ହୋ !
ହେଳା କଲେ ପାଇବୁ ତୁ ଦଣ୍ଡଧର ଘାତକୁ ।' ଇତ୍ୟାଦି

ଅନ୍ୟ କେହି କେବଳ 'ନନ୍ଦାତ୍ମଜ' ଙ୍କ ନାମବ୍ରଜର ସ୍ମରଣ କରି 'ରବିଜ ଛବିଳ ପହିଜ' କୁ ଦବାଇ ସଂସାର ଯାତନାରୁ ପାରହେବା ଉଦ୍ଦେଶ୍ୟରେ ଦେବାଧିଦେବଙ୍କ ଗୁଣ ଗାନ କରି କହିଛନ୍ତି–

'ଅବିରତେ ହରି ଭଜରେ ମାନବ,
ଅବିରତେ ହରି ଭଜ,
କବି ଯଦୁମଣି ନ ବସ୍ମରୁ ସେହି ନନ୍ଦାତ୍ମଜ ନାମ ବ୍ରଜ ।'

ଆଉ କେହି କବି 'ଘୋଷଯାତ୍ରା' ରେ ଚକାଆଖିଙ୍କ ଅଭିନବ ବେଶ, ନନ୍ଦିଘୋଷର ସାଜସଜ୍ଜା ଓ ଭକ୍ତମାନଙ୍କର ଅଲୌକିକ ବିହ୍ୱଳତା ଲକ୍ଷ୍ୟକରି ନେତ୍ର ପବିତ୍ର କରିବାକୁ ମନ ବଳାଇ କଳ୍ପନା ଚକ୍ଷୁରେ ଘୋଷଯାତ୍ରାରେ ଜନାକୀର୍ଣ୍ଣ ବଡ଼ଦାଣ୍ଡରେ ପହଞ୍ଚି ଗାଇ ଉଠିଛନ୍ତି–

ହରି ହରି ଡାକ ପଡୁଥିବ ଚଉପାଶେ ।
ଚାହିଁଥିବେ ଜଗବନ୍ଧୁ ଥିରେ ସହରଷେ ।।

ଅନ୍ୟ କେହି ଜୀବନସାରା ଆହାର ନିଦ୍ରା ମୈଥୁନରେ କାଳ ବିତାଇ ହଠାତ୍ ବାର୍ଦ୍ଧକ୍ୟ ଉପସ୍ଥିତ ହୁଅନ୍ତେ, ନିଜର ମନକୁ ଚେତାବନୀ ଶୁଣାଇ ଶ୍ରୀଜଗନ୍ନାଥଙ୍କ ନାମାମୃତ ପାନରେ ମତ୍ତ ହେବାକୁ ଉପଦେଶ ଶୁଣାଇ କହିଛନ୍ତି–

ଉଠ ଲୋ ମନ ଭଜ ଗୋବିନ୍ଦ,
ମୁକୁନ୍ଦ ମାଧବ ପରମାନନ୍ଦ ।

ଅନ୍ୟ କେହି ଭକ୍ତକବି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିନ୍ଦା ବ୍ୟାଜରେ ସ୍ତୁତି କରି, ପ୍ରଭୁଙ୍କ ଛାମୁରେ ଜଣାଣ କରୁଛନ୍ତି । ଭକ୍ତ କେତେବେଳେ ପ୍ରଭୁଙ୍କ ପାଦପଦ୍ମରେ ନତ ହୋଇ କରୁଣ ନିବେଦନ ଅର୍ପଣ କରେ, ଆଉ କେତେବେଳେ ସମାଲୋଚନା କରି ଠାକୁରଙ୍କ ଦୋଷ ଦର୍ଶାଇ ଦିଏ । ଏ ପ୍ରକାର ପ୍ରଭୁଙ୍କ ପ୍ରତି ଭକ୍ତର ସମାଲୋଚନା କେବଳ ଯେ ଓଡ଼ିଆ ଭଜନରେ ଦେଖାଯାଏ, ତା' ନୁହେଁ, ସଂସ୍କୃତ ସାହିତ୍ୟରେ ଏହାର ଭୂରି ଭୂରି ଉଦାହରଣ ରହିଛି । ଶ୍ରୀମନ୍ଦିର ସମ୍ମୁଖରେ ଜନୈକ ଭକ୍ତ ଛିଡ଼ା ହୋଇ ଶ୍ରୀଜଗନ୍ନାଥଙ୍କୁ ଶୁଣାଇ କହିଛନ୍ତି–

'ଐଶ୍ୱର୍ଯ୍ୟମଦମତ୍ତୋଽପି
ମାମବଜ୍ଞାୟ ମନ୍ୟସେ ।
ସମାଗତେଷୁ ବୌଦ୍ଧେଷୁ
ମଦଧୀନା ତବ ସ୍ଥିତିଃ ।'

କବି ଗୌରଚରଣ ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥଙ୍କୁ ସମାଲୋଚନା କରି କହିଛନ୍ତି–

କଳାସିଂହ କାହିଁକି ଅଇଲୁରେ
ଶ୍ରୀନୀଳାଚଳ ଛାଡ଼ି ।
ଭାଇ ଭଗ୍ନି ସଂଗେ ଘେନି କରି ରଙ୍ଗେ
ରହିଛୁ ଗୁଣ୍ଡିଚା ବାଡ଼ି ।।

ବହୁ କବି ଶ୍ରୀଜଗନ୍ନାଥଙ୍କ ଛାମୁରେ ନିଜର ଦୁଃଖ ଦୁର୍ଦ୍ଦଶା ଦୂର କରିବା ଲାଗି ଜଣାଣ ଓ ପ୍ରାର୍ଥନା କରିଛନ୍ତି । ସେହି ଜଣାଣଗୁଡ଼ିକ ମଧ୍ୟରେ ଭିନ୍ନ ଭିନ୍ନ ଭାବଧାରାର ରଚନାମାନ ରହିଛି ।

ସାନନ୍ଦ ଦ୍ୱିଜ ନାମକ ଜଣେ ଭକ୍ତକବି 'ଚକାଆଖି' ଙ୍କ ଛାମୁରେ ନାନା ପ୍ରକାର ଅଭିଯୋଗ ଉପସ୍ଥାପିତ କରି, ନିଜ ଦୁଃଖ ନ ଶୁଣିବାର କାରଣମାନ ଦର୍ଶାଇ କହିଛନ୍ତି–

ନେବ ବୋଲି କିଛି ଲାଞ୍ଚ ମନେ କରିଅଛି ପାଞ୍ଚ,
ସେ କଥା ମନରୁ ମୁଞ୍ଚ, ବଳିଗଲା ମନ ସ୍ୱଚ୍ଛ,
ଗୋପପୁରେ ପୟସର ଚାଖି ହେ ।





ଅନ୍ୟ ଜଣେ ଭକ୍ତକବି ନିଜର ଭାଗ୍ୟକୁ ନିନ୍ଦାକରି, ପ୍ରଭୁଙ୍କ କରୁଣା ଊଣା ନିମିତ୍ତ, ନିଜେ କ୍ଷୋଭ ପ୍ରକାଶପୂର୍ବକ ଶ୍ରୀଜଗନ୍ନାଥଙ୍କଠାରେ ଜଣାଣ କରିଛନ୍ତି । ସେହି ପ୍ରସଙ୍ଗରେ କବି ନିଜକୁ ଦୀନହୀନରୂପେ ବର୍ଣ୍ଣନା କରି ମଂଗଳମୟଙ୍କଠାରୁ କଲ୍ୟାଣକର ଆଶୀର୍ବାଦ ନ ପାଇବାରୁ ନିଜର ଦୁର୍ଭାଗ୍ୟ ବୋଲି ବର୍ଣ୍ଣନା କରିଥିଲେ ମଧ୍ୟ ପ୍ରଭୁଙ୍କ ପ୍ରଭୁତ୍ୱ ଉପରେ ପରୋକ୍ଷରେ ଆକ୍ଷେପ କରି କହିଛନ୍ତି–

ମୋହ ପରି ଦୀନହୀନ ଧରା ଧାମେ ନାହିଁ ଶୁଣା
ତୃଷାର୍ତ୍ତ ଜନେ ଆଦରେ ଡାକି ବସାଇ ପାଶରେ
ପିଇବା ଆଗୁଁ ଭଣ୍ଡିଲ
ଯାଚି ସୁମଧୁର ପଣା ।

ଅନ୍ୟ କୌଣସି ଭକ୍ତକବି ନିଜକୁ ପାପତାପ ପରିପୂର୍ଣ୍ଣ ଅପରାଧୀ ବୋଲି ଚିହ୍ନାଇ କେବଳ କୃପାବଶତଃ ପ୍ରଭୁଙ୍କ କରୁଣା ଲାଭ କରିବାର ଆଶା କରିଛନ୍ତି । କାରଣ ପତିତପାବନ ବାନା ଉଡୁ ଥିବାର ଲକ୍ଷ୍ୟ କରି ଭକ୍ତ ଟାଣପଣ ଧରି ବସିଛି । ଅନ୍ୟଥା ପ୍ରଭୁପଣରେ କଳଙ୍କ ରଚିବା ସଂଗେ ସଂଗେ ଜନସମାଜରେ ସମାଲୋଚନା ପ୍ରଚାରିତ ହେବାର ଚେତାବନୀ ମଧ୍ୟ ସେ ଶୁଣାଇଛନ୍ତି । ଭୃତ୍ୟର ଦୋଷ ଦେଖି ପ୍ରଭୁ ଯଦି ତା'ର ପ୍ରାଣ ନିଅନ୍ତି, ତା'ହେଲେ ବଡ଼ପଣର ଆଉ ବିଶେଷତ୍ୱ କେଉଁଠି ?

ଖେଦ ଜଳଧିରେ ଭାସି ମୁଁ ଯାଉଛି
ତ୍ରାହିକର ହୋଇ ସୁପ୍ରସନ୍ନ
ଆହେ ଗିରିଧର !

ଅନ୍ୟ କେହି ଭକ୍ତକବି ପୌରାଣିକ ଆଖ୍ୟାୟିକା ଗଜ ଉଦ୍ଧାରଣ, ହରିଣୀ ତାରଣ, ଦୌପଦୀ ଲଜ୍ଜା ନିବାରଣ, ସୁଦାମା ଦାରିଦ୍ର୍ୟ ଭଞ୍ଜନ, ଅଜାମିଳ ତାରଣ ଆଦି ଦୃଷ୍ଟାନ୍ତ ଉପସ୍ଥାପିତ କରି, ନିଜକୁ ଅଭୟ ପ୍ରଦାନ ଦାନ କରିବା ଲାଗି ପ୍ରଭୁଙ୍କଠାରେ ଦୃଢ଼ ଦାବି ଜଣାଇଛନ୍ତି । ସେହି ପ୍ରସଙ୍ଗରେ ଭକ୍ତ କବି ପ୍ରଭୁଙ୍କର ବାଳୀବଧ ଆଦି କେତେକ ଦୋଷ ଦର୍ଶାଇ, ନିଜେ କ୍ଷମା ତଥା ପ୍ରଭୁଙ୍କ ଅନୁକମ୍ପା ପାଇବାର ଯଥାର୍ଥତା ସମ୍ବନ୍ଧରେ ଯୁକ୍ତି ଛଳରେ କହିଛନ୍ତି–

କରୀ ହରିଣୀ ଦ୍ରୌପଦୀ ବିପତ୍ତି,
ହରି ହରିଛ ପରା ଡେରି ଶ୍ରୁତି ।
ଦରିଦ୍ର ସୁଦାମାକୁ କୋଟିନିଧି
ପରିପୂର୍ଣ୍ଣେ ଦେଲ କୃପା ବାରିଧି ।

ଆଉ କେତେକ ଭଜନରେ କବିମାନେ ଲୋକମାନଙ୍କୁ ହରି ଭଜନ ଆଡ଼କୁ ଆକୃଷ୍ଟ କରାଇବା ଉଦ୍ଦେଶ୍ୟରେ ନିଜର ମନକୁ ବୁଝାଇ ହରି ଭଜନର ପ୍ରକୃଷ୍ଟ ଉଦ୍ଦେଶ୍ୟ ସମ୍ବନ୍ଧରେ କହିବାକୁ ଯାଇ ପୌରାଣିକ ଆଖ୍ୟାୟିକାଗୁଡ଼ିକର ଉଦାହରଣ ଉପସ୍ଥାପିତ କରିଛନ୍ତି । ସେହି ପ୍ରସଙ୍ଗରେ କବିମାନେ ଅତୀତରେ ହରି ଭଜନ କରି କିଏ କେଉଁ ଫଳ ପାଇଛି, ତାର ଏକ ଉଦାହରଣ ଦର୍ଶାଇଛନ୍ତି–

ଚିତ୍ତ ସମଝାଇ କିତବ କଥାରେ ମାତି
ପୂତନାରି ପାଦ ଧ୍ୟାନ ଦେଇଥା ତୁ
ଖଣ୍ଡିବେ ସେ ତୋ ଦୁର୍ଗତି ।

ଭକ୍ତକବିମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନାନା ଭାବରେ ଭଜନ, ଜଣାଣ ଓ ପ୍ରାର୍ଥନା କରି ପରମପଦ ଲାଭ କରିବା ଲାଗି ପ୍ରୟାସ କରିବା ସଂଗେ ସଂଗେ ଜନତାର ମନକୁ ଈଶ୍ୱରାଭିମୁଖୀ କରାଇବାରେ କମ ପରିଶ୍ରମ କରି ନାହାନ୍ତି । ସେଇ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ସ୍ତୁତିରେ ସେ ଭଜନ ହେଉ, ଜଣାଣ ହେଉ ଅବା ପ୍ରାର୍ଥନା ହେଉ କେଉଁ ଆବାହମାନ କାଳରୁ ବଡଦାଣ୍ଡର ଗଗନପବନ ପ୍ରକମ୍ପିତ ହୋଇଉଠୁଛି । ଘୋଷଯାତ୍ରାର ପାର୍ବଣରେ ଏହି ଜଗନ୍ନାଥ ସ୍ତୁତିରେ ହିଁ ଦୁଃଖିର ଦୁଃଖକୁ ସ୍ୱୟଂ ମହାପ୍ରଭୁ କାନଡେରି ଶୁଣିଥା'ନ୍ତି ବୋଲି ଜନଶ୍ରୁତି ରହିଛି । ବଡଦାଣ୍ଡ ଉପରେ ନନ୍ଦିଘୋଷ ରଥରେ ମହାପ୍ରଭୁଙ୍କୁ ଚାହିଁ ଦୁଃଖିଟିଏ ଅତି ଆତୁର କଣ୍ଠରେ ଗାଇଉଠେ–

'ଏତେ ବଡ ବଡ କୁଣ୍ଡଳ ତୁମ କାନରୁ ହେ ପ୍ରଭୁ ଖୋଲିଦିଅ ସେ କୁଣ୍ଡଳେ ବାଜି ଗରିବର ଡାକ ଫେରିଯାଏ ତୁମେ ଜାଣିନାହଁ ।'

ଭକ୍ତର ଡାକରେ ଥରିଯାଏ ନନ୍ଦିଘୋଷ ରଥ, ଦୟା ଓ କରୁଣାରେ ଭରିଯାଏ ଜଗନ୍ନାଥଙ୍କ ହୃଦୟ । ଭକ୍ତର ମନ ସ୍କାମନା ପୂର୍ଣ୍ଣହୁଏ । ଆଗକୁ ଗଡିଚାଲେ ନନ୍ଦିଘୋଷ ରଥ ।

କ୍ୟୁରେଟର, ପୋଥିବିଭାଗ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର






# ସାଲବେଗ ଚରିତ



ଅନଂତରାମ କର



ଓଡ଼ିଆ ଭକ୍ତି ସାହିତ୍ୟରେ ସହସ୍ରାଧିକ ଭଜନ ଜଣାଣ ରହିଥିଲେ ମଧ ଭକ୍ତ କବି ସାଲବେଗଙ୍କ ''ଆହେ ନୀଳ ଶଇଳ'' ଭଜନ ଶ୍ରୀଜଗନ୍ନାଥ ଭଜନମାଳାର ଶ୍ରେଷ୍ଠ ଗୀତ ରୂପେ ସ୍ଥାନ ପାଇବ । ଶହ ଶହ ବର୍ଷଧରି ସାଲବେଗଙ୍କ ରଚନା ତଥା ଭଜନ ଓଡ଼ିଆଙ୍କ ଭକ୍ତ ପ୍ରାଣକୁ ଆହ୍ଲାଦିତ କରିଆସିଛି । ଯଦିଓ ଓଡ଼ିଆ ଭକ୍ତି ସାହିତ୍ୟର ଇତିହାସରେ ସାଲବେଗଙ୍କୁ ଏଯାବତ୍ ଉଚିତ ସ୍ଥାନ ମିଳିନି ତଥାପି ଉତ୍କଳୀୟ ଜନମାନସରେ ସାଲବେଗ ଜଣେ ଶ୍ରେଷ୍ଠ ଭକ୍ତକବି । ରାଜାଠାରୁ ରଙ୍କୀ ତଥା ଭିକାରୀଠାରୁ ଭୂପତି ଯାଏଁ- ''ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ'' ପଦକ ଶୁଣିଲେ କିଏ ଯେ ଦଣ୍ଡେ ନ ଅଟକିଛି ! ଅତଏବ ଯିଏ ଜଗନ୍ନାଥଙ୍କୁ ଜାଣିଛି, 'ଆହେ ନୀଳ ଶଇଳ' ପଦକ ତାକୁ ମଗ୍ନ କରିଛି ।

ସାଲବେଗଙ୍କ ଜୀବନ ଚରିତ ତମସାଚ୍ଛନ୍ନ । ସେ କୌଣସି ପ୍ରସଙ୍ଗରେ ନିଜ ସମ୍ପର୍କରେ ଅଧିକ ସୂଚନା ଦେଇନାହାନ୍ତି । ''ବାପା ମୋ ମୋଗଲ ପୁଅ ମାଆ ମୋ ବ୍ରାହ୍ମଣୀ'' କେବଳ ଏଇ କେତେ ପଦ ବ୍ୟତୀତ ତାଙ୍କ ରଚନାରେ ନିଜ ସମ୍ପର୍କରେ ଅଧିକ କିଛି ଦେଖିବାକୁ ମିଳେନାହିଁ । ନିଜ ପିତା-ମାତାଙ୍କ ନାମ, ବଂଶ ପରିଚୟ ଜନ୍ମସ୍ଥାନର ସୂଚନା କୌଣସିଠାରେ ପ୍ରସଙ୍ଗକ୍ରମେ ମଧ ଉଲ୍ଲେଖ କରିନାହାନ୍ତି । ଅନ୍ୟପକ୍ଷରେ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ନିକଟ ଡୁରା ଗ୍ରାମର କବି ରାମଦାସ ତାଙ୍କ 'ଦାଢ୍ୟତାଭକ୍ତି ରସାମୃତ' ନାମକ ଚରିତ ଗ୍ରନ୍ଥରେ ସାଲବେଗଙ୍କ ସମ୍ପର୍କରେ ଚରିତଟିଏ ବର୍ଣ୍ଣନା କରିଛନ୍ତି । ରାମଦାସଙ୍କ ବର୍ଣ୍ଣନା ହେଉଛି ସାଲବେଗଙ୍କ ସମ୍ପର୍କରେ ପ୍ରଥମ ପ୍ରାମାଣିକ ତଥ୍ୟ । ଦାଢ୍ୟତା ଭକ୍ତି ରସାମୃତ ଚରିତଗ୍ରନ୍ଥର ଦ୍ୱିତୀୟଭାଗ ୨୭ ଅଧ୍ୟାୟରେ ସାଲବେଗ ଚରିତ ବର୍ଣ୍ଣନା ହୋଇଛି । ସାଲବେଗଙ୍କ ମୃତ୍ୟୁର ପ୍ରାୟ ୫୦ ବର୍ଷ ପରେ ରାମଦାସ ଏହି ଚରିତ ବର୍ଣ୍ଣନା କରିଛନ୍ତି । ପୁରୀ ସହର ତଥା ଅଞ୍ଚଳର ତାଜା ଜନଶ୍ରୁତିରୁ ତଥ୍ୟ ସାଉଁଟି ରାମଦାସ ନିଶ୍ଚୟ ବର୍ଣ୍ଣନା କରିଛନ୍ତି । ଅବଶ୍ୟ ପଞ୍ଚଦଶ ଶତାବ୍ଦୀର ମୋଗଲ ଓଡ଼ିଶା ଇତିହାସରୁ ଏ ବାବଦରେ କିଛି ତଥ୍ୟ ଐତିହାସିକ ଗବେଷକମାନେ ହାସଲ କରିଛନ୍ତି । ସାଲବେଗଙ୍କ ଜନ୍ମ ଏକ ଘଟଣା ତଥା ଦୁର୍ଘଟଣାପୂର୍ଣ୍ଣ ପରିସ୍ଥିତିରେ ହୋଇଥିଲା । ଖ୍ରୀ ୧୬୦୭/୮ ମସିହାକୁ ସାଲବେଗଙ୍କ ଜନ୍ମକାଳ ବୋଲି ଗବେଷକମାନେ ଧାର୍ଯ୍ୟ କରିଛନ୍ତି । ଏହି ସମୟକୁ ଓଡ଼ିଶାର ଗଜପତି ରାଜା ପୁରୁଷୋତ୍ତମ ଦେବ ଖୋର୍ଦ୍ଧା ରାଜଗାଦୀରେ ରାଜତ୍ୱ କରୁଥିଲେ । ମୋଗଲ ସମ୍ରାଟ ଜାହାଙ୍ଗିର ଦିଲ୍ଲୀ ସିଂହାସନରେ ବାଦଶାହ ରୂପେ ଆସୀନ ହୋଇଥାନ୍ତି ।

ସମ୍ରାଟ ଜାହାଙ୍ଗିରଙ୍କର 'ଜାହାଙ୍ଗିର କୁଲିଖାଁ' ନାମକ ଏକ ବିଶ୍ୱସ୍ତ କର୍ମଚାରୀ ଥାଆନ୍ତି । ତାଙ୍କ ଡାକନାମ ଥିଲା ଲାଲ୍‌ବେଗ୍ । ଲାଲବେଗଙ୍କ ପିତାଙ୍କ ନାମ ଥିଲା ନିଜାମ ନିଜାମ ହୁମାୟୁନଙ୍କ ଅମଳରେ ଜଣେ ଗ୍ରନ୍ଥାଗାର ରକ୍ଷକ ରୂପେ ନିଯୁକ୍ତି ପାଇଥିଲେ । ଲାଲବେଗ ନିଜର ବୁଦ୍ଧିମତ୍ତା ବଳରେ ବାଦଶାହ ଜାହାଙ୍ଗିରଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ନିଜର କାର୍ଯ୍ୟ ଦକ୍ଷତାକୁ ନେଇ ମୋଗଲ ସେନାବାହିନୀରେ ୪ହଜାର ଘୋଡା ସବାର ବିଶିଷ୍ଟ ବାହିନୀର ମୁଖ୍ୟ ବା ମନ୍‌ସବାଦାର ରୂପେ ବିହାରରେ ନିଯୁକ୍ତି




ପାଇଲେ । ପରେ ପରେ ସେ ବଙ୍ଗଳା ଓ ଓଡ଼ିଶାର ସୁବା ମୁଖ୍ୟ ହେଲେ । କେତେକ ମୋଗଲ ବିବରଣୀ ପ୍ରକାରେ ଲାଲବେଗ ଖ୍ରୀ୧୬୦୭ ମଇ ୩୦ ତାରିଖରେ ଓଡ଼ିଶା ସୁବାଦାର ରୂପେ ନିଯୁକ୍ତି ପାଇଲେ ଏବଂ ୧୬୦୮ ଅପ୍ରେଲ ୪ତାରିଖରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଘଟଣାକ୍ରମେ ଲାଲବେଗ ମୋଗଲ ଅଧିକୃତ ଓଡ଼ିଆର ସେନାମୁଖ୍ୟ ରୂପେ କଟକଠାରେ ଅବସ୍ଥାନ କରିବା କାଳରେ ସେ ଶ୍ରୀକ୍ଷେତ୍ର ଆକ୍ରମଣ କରିଥିଲେ । କଟକରୁ ପୁରୀ ଅଭିମୁଖେ ଜଗନ୍ନାଥ ସଡକରେ ସେନାଚାଳନା କରିବା ଅବସରରେ ଗ୍ରାମମାନ ଲୁଟତରାଜ କରୁଥିଲେ । ପିପିଲି ନିକଟବର୍ତ୍ତୀ ଦାଣ୍ଡମୁକୁନ୍ଦପୁର ଗ୍ରାମରେ ମୋଗଲସେନା ପ୍ରବେଶ କରି ରାହାଜାନି ଚଳାଇବା ଅବସରରେ ଶାସନୀ ବ୍ରାହ୍ମଣମାନେ ଘରଦ୍ୱାର ଛାଡି ପ୍ରାଣ ବିକଳରେ କିଏ କେଉଁ ଆଡେ ପଳାଇଲେ । ଏ ସମୟରେ ଜଣେ ଯୁବତୀ ବିଧବା ବ୍ରାହ୍ମଣୀ ସ୍ନାନସାରି ଫେରୁଥିବା ବାଟରେ ଲାଲବେଗର ହାବୁଡରେ ପଡିଲା । ବିଧବା ବ୍ରାହ୍ମଣୀର ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଲାଲବେଗ ତାଙ୍କୁ ଅପହରଣ କରି କଟକ ଲାଲବେଗ କୋଠିକୁ ଘେନିଗଲା । ବିଧବା ବ୍ରାହ୍ମଣୀ ଅଗତ୍ୟା ଲାଲବେଗର ପତ୍ନୀ ହୋଇରହିଲେ । ଘଟଣାର ବର୍ଷକ ପରେ ସମ୍ଭବତଃ ଖ୍ରୀ.୧୬୦୮/୯ ମସିହାରେ ବ୍ରାହ୍ମଣୀ ଗର୍ଭରୁ ଏକ ପୁତ୍ର ସନ୍ତାନ ଜନ୍ମ ହେଲା ଯାହାର ନାମ ରହିଲା ସାଲବେଗ । 'ଦାଢ୍ୟତାଭକ୍ତି'ର ବର୍ଣ୍ଣନା ପ୍ରକାରେ–

କଟକ ନାମରେ ସହର, ଲାଲବାଗରେ ତା'ର ଘର ।
ଜାତିରେ ଅଟଇ ପଠାଣ, ତାହାର କଥା ଏବେ ଶୁଣ ।
ମୁଗଲ ନାମେ ଲାଲବେଗ, ତାହାର ପୁତ୍ର ସାଲବେଗ ।
ତାହାର ଜନ୍ମ କର୍ମ ଯେତେ, କହିବା ଶୁଣ ଶୁଦ୍ଧଚିତ୍ତେ ।
ସେ ସାଲବେଗ ଅତି ଦୁଷ୍ଟ, ଖଳ ପ୍ରପଞ୍ଚ ବୁଦ୍ଧି ନଷ୍ଟ ।
ଶ୍ରୀଗଜପତି ଦଣ୍ଡଧାରୀ, ସଙ୍ଗତେ ଶତ୍ରୁପଣ କରି ।
ଅନେକ ସୈନ୍ୟଠୁଳ କଲା, ଓଡ଼ିଶା ଯୁଝିବାକୁ ଗଲା ।

x x x

ଗ୍ରାମମାନଙ୍କେ ଯେ ଉତ୍ତମ, ଦାଣ୍ଡମୁକୁନ୍ଦପୁର ନାମ ।

x x x

ଛାଡିଣ ବ୍ରାହ୍ମଣ ଶାସନ, ପଳାଇ ଗଲେ ସର୍ବଜନ ।
ତହିଁ ଏକ ବିଧବା ନାରୀ, ଯାଇଥିଲା ଯେ ସ୍ନାନ କରି ।
ଏକାକୀ ଜନ ଜଳ ଘାଟେ, ସୈନ୍ୟ ତା' ଦେଖିଲା ନିକଟେ ।
ଡରେ ସେ ନପାରିଲା ଯାଇ, ରହିଲା ସ୍ତମ୍ଭୀଭୂତ ହୋଇ ।
ଏକେ ବ୍ରାହ୍ମଣୀ ଦୁଜେଯୁବା, କେ କହିପାରେ ତା'ର ଶୋଭା ।

x x x

ଏମନ୍ତବେଳେ ଲାଲବେଗ, ଆସି ମିଳିଲା ତା'ର ଆଗ ।
ଏତକ ସେ ଦୁଷ୍ଟ ବଳବନ୍ତ, ତା' ସଙ୍ଗେ ବଳ ହିଁ ବହୁତ ।
ଦେଖିଣ ଅତ୍ୟନ୍ତ ସୁନ୍ଦରୀ, ମଦନ ଶରେ ହେଲା ଘାରି ।
ବଳେ ଧରିଲା ତା' ଭୁଜ, ମୃଗୀକୁ ଯେହ୍ନେ ମୃଗରାଜ ।
ବସାଇ ଅଶ୍ୱର ଉପରେ, ସେ ନାରୀ ଦଇବ ସୁମରେ ।

x x x

ଝିନ ବସନ ପିନ୍ଧାଇଲା, ନାନା କୁସୁମେ ବେଶ କଲା ।
ସର୍ବାଙ୍ଗେ ଗନ୍ଧସାର ବୋଳି, ତା' ସଙ୍ଗେ କଲା କାମକେଳି ।
ନାନା ବିନୋଦେ ମନମୋହି, କୁଟୁମ୍ବ ଦେଲା ପାଶୋରାଇ ।
ଦଇବେ ଅବଳା ଶରୀର, ସଙ୍ଗ ହିଁ ସିନା ମୂଳତା'ର ।
ତା'ଠାରୁ ରତିସୁଖ ପାଇ, ରହିଲା ପତ୍ନୀ ପ୍ରାୟ ହୋଇ ।
ଏମନ୍ତ କେତେ ଦିନ ଗଲା, ସେ ନାରୀ ପୁତ୍ର ପ୍ରସବିଲା ।
ପୁତ୍ରକୁ ଦେଖି ଲାଲବେଗ, ତା'ନାମ ଦେଲେ ସାଲବେଗ ।

(ଦାଢ୍ୟତା ଭକ୍ତି ରସାମୃତ– ୨୭ଅଧ୍ୟାୟ)

ସାଲବେଗଙ୍କ ଜନ୍ମର ଅଳ୍ପକିଛି ମାସ ପୂର୍ବରୁ କିମ୍ବା ପରେ ତାଙ୍କ ପିତା ଲାଲବେଗଙ୍କ ମୃତ୍ୟୁ ହୋଇଥିବା ଅନୁମାନ କରାଯାଏ । ଏହାପରେ ସାଲବେଗଙ୍କ ମାତା ଅନାଶ୍ରିତା ହୋଇଛନ୍ତି । ମୋଗଲ ଗୋଳର ଘନଘଟା ମଧ୍ୟରେ ଶିଶୁ ସାଲବେଗ ଓ ତାଙ୍କ ବିଧବା ମାତାଙ୍କ ପରିଚୟ ହଜିଯାଇଛି । କିନ୍ତୁ 'ଦାଢ୍ୟତା ଭକ୍ତି'ର ମତ ଭିନ୍ନ । ରାମଦାସଙ୍କ ରଚନାରେ ସେ ଉଲ୍ଲେଖ କରିଛନ୍ତି– ସାଲବେଗ ମୋଗଲ କାଇଦାରେ ବଢି ମୋଗଲ ସେନାରେ ଯୋଗ ଦେଇଥିଲେ । ଦିନେ ଯୁଦ୍ଧ ଭୂମିରେ ଆହତ ହୋଇ ମାତାଙ୍କ ପରାମର୍ଶ ପ୍ରକାରେ ଜଗନ୍ନାଥଙ୍କ ନାମ ନେଇ ଆରୋଗ୍ୟ ଲାଭ କରିଥିଲେ । ଜଗନ୍ନାଥଙ୍କ ନାମ ନେଇ ପୁନର୍ଜନ୍ମ ଲାଭ କରିବା ପରେ ସେ ମୋଗଲ ରୀତି ଛାଡି ସନ୍ନ୍ୟାସ ହୋଇ ଜଗନ୍ନାଥଙ୍କ ଗୁଣକୀର୍ତ୍ତନରେ ଆଜୀବନ ବିତାଇଥିଲେ ।

ଇତିହାସର ସୂକ୍ଷ୍ମ ଖିଅକୁ ଧରି ଅନୁମାନ କରିହେବ ଯେ– ପିତାଙ୍କ ମୃତ୍ୟୁପରେ ସାଲବେଗଙ୍କ ସହିତ ତାଙ୍କ ମାତା ମଧ୍ୟ ଅନାଥ ହୋଇଥିଲେ । ଏମିତି ଏକ ଅଭାବନୀୟ ସ୍ଥିତିରେ ହୁଏତ ସାଲବେଗ ପୁରୀ କଟକ ଅଞ୍ଚଳରେ ଭିକ୍ଷା ବୃତ୍ତି କରିଥିଲେ । ସମାଜ ତାଙ୍କୁ ଅଜାତିଆ, ବିଧର୍ମୀ, ବାସନ୍ଦ ମଧ୍ୟ କରିଥିଲା । ତଥାପି ହିନ୍ଦୁ ତଥା ବ୍ରାହ୍ମଣୀ ମାତାଙ୍କ ରକ୍ତଗତ ସଂସ୍କାରରେ ଅନୁପ୍ରାଣିତ ହୋଇ ସେ ଜଗନ୍ନାଥଙ୍କ ଆଶ୍ରିତ





ହୋଇଗଲେ । ଶ୍ରୀକ୍ଷେତ୍ର, ଶ୍ରୀଜଗନ୍ନାଥ, ନୀଳଚକ୍ର, ବଡଦାଣ୍ଡ, ନିର୍ମାଲ୍ୟ ଆଦି ହେଲା ତାଙ୍କ ଚିନ୍ତନର ଶ୍ରେଷ୍ଠ ସମ୍ପଦ ।

ସାଲବେଗଙ୍କ ରଚନାକୁ ଆଧାର କରି କହି ହୁଏ ଯେ ସେ ଦୀର୍ଘ ଏକଶତ ତିରିଶ ବର୍ଷ ଯାଏ ବଞ୍ଚିଥିଲେ । ଜଣେ ସାଧକ ଏଭଳି ଦୀର୍ଘଜୀବୀ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ସାଲବେଗଙ୍କ ସମୟ ଥିଲା ଓଡ଼ିଆ ସାହିତ୍ୟର ଭକ୍ତିଯୁଗ । ଏଣୁ ଯୁଗ ପ୍ରଭାବରେ ସେ ଏଭଳି ଶତାଧିକ ଭଜନ ଜଣାଣ ରଚନା କଲେ । ଓଡ଼ିଆ ସମେତ, ସଂସ୍କୃତ, ବଙ୍ଗଳା, ବ୍ରଜ ବୋଲି ଉର୍ଦ୍ଦୁ ଭାଷା ମଧ୍ୟ ତାଙ୍କୁ ଜଣାଥିଲା । କେତେକ ରଚନାରେ ସେ 'ଶାଳିଆଦାସ', 'ସାରିଆଭିକ' ବୋଲି ମଧ୍ୟ ନିଜକୁ ପରିଚିତ କରିଛନ୍ତି । ସାଲବେଗଙ୍କ ସମଗ୍ର ରଚନାକୁ- ଶ୍ରୀକୃଷ୍ଣ ଲୀଳା ପଦ୍ୟାବଳୀ, ଶ୍ରୀଜଗନ୍ନାଥ ପଦ୍ୟାବଳୀ, ଶିବପଦ୍ୟାବଳୀ, ବ୍ରହ୍ମଜ୍ଞାନ, ମାଳିକା, ଦେବୀ ପଦ୍ୟାବଳୀ ଆଦି ଭାଗରେ ବିଭକ୍ତ କରାଯାଇପାରେ ।

ସାଲବେଗ ସହସ୍ର ଭଜନ ରଚନା କରିଥିଲେ ମଧ୍ୟ ଏଯାବତ୍ ଦେଢଶହରୁ ଦୁଇଶହ ମଧ୍ୟରେ ଭଜନ ସଂଗ୍ରହ ହୋଇପାରିଛି । ଯେଉଁ ରଚନାରେ ରହିଛି ଭାବ ଭକ୍ତି ଆଉ ଭବ୍ୟର ଆବେଗ । ସଂଯୋଜିତ ସରଳ ଭାଷା ଓ ଛାନ୍ଦ ସରଳତା ଦେଖିହୁଏ ତାଙ୍କ ରଚନାରେ ।

ସାଲବେଗଙ୍କ ଜୀବନର ସର୍ବାଧିକ ସମୟ ପୁରୀଠାରେ ହିଁ ବିତିଥିଲା । ଯବନ ବେଟା, ବିଧର୍ମୀ ହିସାବରେ କେବେ ବି ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ କରିପାରି ନଥିବା ଏହି କବି କିନ୍ତୁ ଜଗନ୍ନାଥଙ୍କ ପାଇଁ ଆଜୀବନ ଭଜି ହୋଇଥିଲେ । ଯୋଗୀ, ତ୍ୟାଗୀ, ବଇରାଗୀ ହେଲେ ମଧ୍ୟ ଥରଟିଏ ଜଗନ୍ନାଥଙ୍କୁ ମାଗିଥିଲେ-

ଜଗନ୍ନାଥ ହେ କିଛି ମାଗୁନାହିଁ ତୋତେ,<br>
ଧନ ମାଗୁନାହିଁ ଜନମାଗୁ ନାହିଁ,<br>
ମାଗୁଛି ଶରଧା ବାଲିରୁ ହାତେ ।

ସାଲବେଗଙ୍କ ମାଗୁଣି ଜଗନ୍ନାଥ ରକ୍ଷା କରିଥିଲେ । ଶରଧାବାଲିରୁ ହାତେ କାହିଁକି, ସାତ ହାତ ଜମି ସାଲବେଗଙ୍କୁ ଦେଇଥିଲେ । ଅନୁମାନିକ ଖ୍ରୀ-୧୭୪୦-୪୫ ମସିହା ମଧ୍ୟରେ ସାଲବେଗଙ୍କ ସ୍ୱର୍ଗାରୋହଣ ହୋଇଥିଲା । ଏକଦା ସାଲବେଗ ରଥଯାତ୍ରା ସମୟରେ ବୃନ୍ଦାବନରୁ ଫେରିବା ବାଟରେ ଅସୁସ୍ଥ ହୋଇ ଅଟକି ଯାଇଥିଲେ । ରଥ ଉପରେ ଜଗନ୍ନାଥଙ୍କୁ ଦେଖି ନପାରି 'ଜଗବନ୍ଧୁ ହେ ଗୋସାଇଁ ମୋହ ଯିବା ଯାଏଁ ନନ୍ଦୀଘୋଷେ ଥିବ ରହି' ବୋଲି ଡାକ ପକାଇଥିଲେ । ସତକୁ ସତ ବଡଦାଣ୍ଡର ବଳଗଣ୍ଡି ନିକଟରେ ରଥ ସପ୍ତାହେ ବ୍ୟାପୀ ଅଟକି ଯାଇଥିଲା । ପରବର୍ତ୍ତୀ କାଳରେ ସେହି ସ୍ଥାନରେ ସାଲବେଗ ଆଶ୍ରମଟିଏ କରି ଆଜୀବନ ବାସ କରିବା ସହ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ତାଙ୍କ ଅନୁଗତ ଭକ୍ତମାନେ ସେହି ସ୍ଥାନରେ ସମାଧି ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ସେହି ସ୍ଥାନରେ ରମାନନ୍ଦ ସମ୍ପ୍ରଦାୟର ବଳଗଣ୍ଡି ଛତାମଠ ପ୍ରତିଷ୍ଠା ହୋଇଥିଲା । ଆଜି ମଧ୍ୟ ଏହି ମଠର ଉତ୍ତର ଦିଗରେ ସାଲବେଗଙ୍କ ସମାଧି ପୂଜା ପାଇଛି ।

ଶ୍ରୀ କୌଣ୍ଡିନ୍ୟ<br>
ଗ୍ରା/ପୋ- ଭୀଷ୍ମଗିରି, ଗଞ୍ଜାମ-୭୬୧୦୫୫

# ଅନାଥର ନାଥ

ଡକ୍ଟର କୃତ୍ତିବାସ ନାୟକ

ନଭଜି ଭଜିଲି ଅନାଥ ନାଥଙ୍କୁ ନମାଗି ମାଗିଲି ଭିକ,<br>
ନଜପି ଜପିଲି ଅଜପା ମାଳିକୁ ନପାଇ ପାଇଲି ଦୁଃଖ ।<br>
ନଦେଖି ଦେଖିଲି ଅଧାଗଢା ଦିଅଁ ନଭୁଲି ଭୁଲିଲି ସତେ,<br>
ନକହି କହିଲି ଲୋଡାନାହିଁ କିଛି ଦେଖୁଥିବି ତୋତେ ।



ନଜାଣି ଜାଣିଲି ମନ୍ତୁରା ବୋଳା ସେ ଚକାଆଖି କଳାମୁଖ<br>
ନଖାଇ ଖାଇଲି ଆନନ୍ଦ ବଜାରେ ଅମୃତ ଅବଢା ଭାତ ।<br>
ନବୁଲି ବୁଲିଲି ଶ୍ରୀମନ୍ଦିର ବେଢା ବାନ୍ଧି ହୋଇଗଲା ଚିତ୍ତ<br>
ନଚିନ୍ତି ଚିନ୍ତିଲି ନଡାକି ଡାକିଲି ମହାବାହୁ ମୋତେ ରଖ ।

ଆକାଶବାଣୀ, କଟକ-୧

# ସୁଭଦ୍ରା ଏକ ତାତ୍ତ୍ୱିକ ବିଶ୍ଳେଷଣ

ସୂର୍ଯ୍ୟମଣି ଖୁଣ୍ଟିଆ

ମଧ୍ୟେ ବେଦି ପରାତ୍‌ପରା ଭଗବତୀ ଯାହ୍ଲାଦିନୀ ରୂପିଣୀ
ନିର୍ଲିପ୍ତାଗୁପ୍ତ ଦେହା ତ୍ରିଭୁବନଜନନୀ ସୂକ୍ଷ୍ମରୂପା ବିବ୍ରତା ।
ଦେବୀ ଆନନ୍ଦକନ୍ଦା କନକତନୁଧରା ସର୍ବସୌଭାଗ୍ୟ ରୂପା
ଦେହିମେ ଶୁଦ୍ଧଭକ୍ତିଂ ହରିପଦଯୁଗଳେ ଯୋଗମାୟାଂ ସ୍ମରାମି ।

ଶ୍ରୀମନ୍ଦିରର ରତ୍ନବେଦୀ ଉପରେ ମଧ୍ୟଭାଗରେ ବସିଥିବା ସେଇ ଭଗବତୀ ଆହ୍ଲାଦିନୀ ରୂପିଣୀ, ନିର୍ଲିପ୍ତା, ଗୁପ୍ତଦେହା ତ୍ରିଭୁବନ ଜନନୀ ସ୍ନେଇ 'ସୁଭଦ୍ରା' କିଏ ? ସାଧାରଣ ଲୋକମତରେ ବଡ ସହଜ ଉତ୍ତର ହେଉଛି- ''ସେ ହେଉଛନ୍ତି ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କର ଭଉଣୀ । ଦ୍ୱାପର ଯୁଗରେ ସିଏ ଥିଲେ କୃଷ୍ଣ ବଳରାମଙ୍କର ଭଉଣୀ ଭାଗବତ କହନ୍ତି ସୁଭଦ୍ରା ହେଉଛନ୍ତି ଦେବକୀଙ୍କର କନ୍ୟା ।

ପୁତ୍ରାନ୍ ପ୍ରସୁଷୁବେ ଚାଷ୍ଟୌ କନ୍ୟାଂଚୈବାନୁବତ୍ସରମ୍

ଯଦି ଭାଗବତର ଏଇ ଶ୍ଳୋକକୁ ଅର୍ଥ କରାଯାଏ ତେବେ ଅର୍ଥ ହେବ ଦେବକୀ ବର୍ଷକୁ ବର୍ଷ ଆଠଗୋଟି ପୁତ୍ର ଓ ଗୋଟିଏ କନ୍ୟା ଜନ୍ମ କଲେ । ରାମକୃଷ୍ଣଙ୍କର ତ ଗୋଟିଏ ଭଉଣୀ, ସେ ଭଉଣୀଟି ସୁଭଦ୍ରା ନିଶ୍ଚୟ । ତେବେ ସୁଭଦ୍ରା ଦେବକୀଙ୍କର କନ୍ୟା ।

ସ୍କନ୍ଦପୁରାଣ ଉତ୍କଳଖଣ୍ଡରେ କୁହାଗଲା-

'ଇୟଂ କୃଷ୍ଣାବତାରେ ହି ରୋହିଣୀ ଗର୍ଭସମ୍ଭବା'

ଦୁଇଟିଯାକ ମତ ଭିତରେ ବିରୋଧାଭାସ ଦେଖାଯାଉଛି, ପ୍ରଥମ ମତ ଅନୁଯାୟୀ ଯଦି ବର୍ଷକୁ ବର୍ଷ ଦେବକୀଙ୍କର ପିଲା ଜନ୍ମ ହୋଇଥାଆନ୍ତି ତେବେ ସୁଭଦ୍ରା ମଧ୍ୟ କଂସର ବନ୍ଦୀ ଗୃହରେ ଜନ୍ମ ହୋଇଥିବେ । କାରଣ ରାମକୃଷ୍ଣ କଂସବଧ କରିବା ପର୍ଯ୍ୟନ୍ତ ଦେବକୀ ବସୁଦେବ ବନ୍ଦୀ ଗୃହରେ ଥିଲେ ।

ଦ୍ୱିତୀୟ ମତ ଅନୁଯାୟୀ ବସୁଦେବଙ୍କର ଅନ୍ୟତମା ପତ୍ନୀ ରୋହିଣୀ କଂସବଧ ପର୍ଯ୍ୟନ୍ତ ଗୋପରେ ନନ୍ଦ ମନ୍ଦିରରେ ଥିଲେ ।



ତେବେ କଂସ ବଧ ହେଲାପରେ ରୋହିଣୀ ମଥୁରାକୁ ଆସିଥିବେ । ବସୁଦେବଙ୍କ ସହିତ ରହିଥିବେ । ତା'ପରେ ସୁଭଦ୍ରାଙ୍କର ଜନ୍ମ ହୋଇଥିବ । ଏ କଥାଟି ସମ୍ଭବ ହୋଇପାରେ । କିନ୍ତୁ ବଳଭଦ୍ର ଜଗନ୍ନାଥଙ୍କ ମଝିରେ ଥିବା ଏ ହରିଦ୍ରାବର୍ଣ୍ଣା ସୁଭଦ୍ରା କିଏ ? ଗୋଟିଏ ତୃତୀୟ ମତ ଓ ଯୁକ୍ତି ଆସିପାରେ ।

ଯେହେତୁ ସୁଭଦ୍ରା ନିଜେ ଯୋଗମାୟା, ଜଗନ୍ନାଥ ମାୟାଧର ବା ମାୟାପତି ତେଣୁ ସୁଭଦ୍ରା ଯେ ଜଗନ୍ନାଥଙ୍କର ମାୟାଶକ୍ତି ଏଥିରେ ଦ୍ୱିମତ ହେବାର ନାହିଁ । ତା'ହେଲେ ସେ ଜଗନ୍ନାଥଙ୍କର ପତ୍ନୀ ହେବେ । ଓଡ଼ିଶା ବାହାରୁ ବିଶେଷକରିପଶ୍ଚିମ



ଭାରତର ଭକ୍ତମାନେ ଜଗନ୍ନାଥଙ୍କୁ ସୁଭଦ୍ରା ପତି କହି ପ୍ରଣାମ କରନ୍ତି । ସେମାନେ କହନ୍ତି,

ନମସ୍ତୁତେ ଜଗନ୍ନାଥାୟ ସୁଭଦ୍ରାପତୟେ ନମଃ ।

ଏଭଳି ବିଚାର ପଛରେ ବଳିଷ୍ଠ ଯୁକ୍ତି ମଧ୍ୟ ରହିଛି ।

ଶ୍ରୀମଦ୍‌ଭାଗବତର (ସଂସ୍କୃତ) ଦ୍ୱିତୀୟ ଅଧ୍ୟାୟରେ ଓ ଓଡ଼ିଆ ଭାଗବତର ତୃତୀୟ ଅଧ୍ୟାୟରେ ଯେଉଁ ବର୍ଣ୍ଣନା ଦିଆଯାଇଛି ତାକୁ ଦେଖିବା । ମାଆ ଦେବକୀଙ୍କର ଷଡପୁତ୍ରଂକୁ କଂସ ନାଶକଲା । ସପ୍ତମ ଗର୍ଭରେ ସ୍ୱୟଂ ଅନନ୍ତ ଉଦୟ ହେଲେ । ସେତିକି ବେଳେ କ୍ଷୀରାବ୍ଧିଶାୟୀ ବିଷ୍ଣୁନାରାୟଣ ତାଙ୍କର ପରାଶକ୍ତି ଯୋଗମାୟାଙ୍କୁ ଡାକିଲେ । ଯୋଗମାୟା ସାକାର ହୋଇ କରଯୋଡି ତାଙ୍କ ଆଗରେ ଛିଡାହେଲେ । ନାରାୟଣ କହିଲେ 'ମାୟା' କଂସର ବନ୍ଦୀଶାଳାରେ ମାଆଦେବକୀଙ୍କ ଗର୍ଭରେ ଅନନ୍ତ ଉଦୟ ହୋଇଛନ୍ତି । ତମେ ମର୍ତ୍ତ୍ୟପୁରକୁ ଯାଇ ଦେବକୀଙ୍କ ଗର୍ଭରୁ ଅନନ୍ତଙ୍କୁ ଆକର୍ଷଣ କରିଆଣି ଗୋପପୁରରେ ଥିବା ବସୁଦେବଙ୍କର ଅନ୍ୟତମା ପତ୍ନୀ ରୋହିଣୀଙ୍କ ଗର୍ଭରେ ସ୍ଥାନିତ କରିଦିଅ । ମୁଁ ଦେବକୀଙ୍କ ଅଷ୍ଟମ ଗର୍ଭରେ ଉଦୟ ହେବି । ତମେ ନନ୍ଦରାଣୀ ଯଶୋଦାଙ୍କ ଗର୍ଭରେ ଉଦୟ ହେବ । ମୁଁ ଯେଉଁଦିନ ଦେବକୀଙ୍କ ଗର୍ଭରୁ ଜନ୍ମନେବି ତମେ ସେଇଦିନ ନନ୍ଦରାଣୀ ଯଶୋଦାଙ୍କ ଗର୍ଭରୁ ଜନ୍ମନେବ । ମୋ ବାପା ବସୁଦେବ ମୋତେ ନେଇ ନନ୍ଦରାଣୀଙ୍କ କୋଳରେ ଥୋଇ ତୁମକୁ ନେଇଆସି ଦେବକୀଙ୍କ କୋଳରେ ଥୋଇବେ ।

କଥାଟା ଶୁଣି ଯୋଗମାୟା ହସିଲେ । କହିଲେ, 'ପ୍ରଭୁ ! ମୁଁ ଆପଣଙ୍କର ମାୟାଶକ୍ତି । ମୁଁ ଆପଣଙ୍କର ପ୍ରକୃତି । ମୁଁ ଆପଣଙ୍କର ପତ୍ନୀ ମୁଁ ହେବି ଯଶୋଦାଙ୍କର ଜନ୍ମିତା କନ୍ୟା । ଆପଣ ହେବେ। ଯଶୋଦାଙ୍କର ପାଳିତପୁତ୍ର, ଆମ ଦିଜଣଙ୍କ ଭିତରେ ସମ୍ପର୍କତ ହୋଇଯିବ ଭାଇଭଉଣୀ ।'

ପ୍ରଭୁ ହସି ହସି ଉତ୍ତର ଦେଲେ 'କଲ୍ୟାଣି ! ମୋ ଲୀଳାରେ ସବୁ ସମ୍ଭବ, ଜଗତର କଲ୍ୟାଣ ପାଇଁ ମତେ ବିଭିନ୍ନ ଭାବରେ ଲୀଳା କରିବାକୁ ହୁଏ । ଜଗତ ଜନେ ତୁମକୁ ବିଭିନ୍ନ ନାମରେ ଜାଣିବେ । ଯଥା–

ନାମଧେୟାନି କୁର୍ବନ୍ତି ସ୍ଥାନାଦି ଚ ନରାଭୁବି
ଦୁର୍ଗେତି ଭଦ୍ରକାଳୀତି ବିଜୟା ବୈଷ୍ଣବୀତିଚ
କୁକୁନ୍ଦା ଚଣ୍ଡିକା କୃଷ୍ଣା ମାଧବୀ କନ୍ୟକା
ମାୟା ନାରାୟଣୀ ଶାନୀ ଶାରଦେତ୍ୟ ମିକେତିଚ

ଭା. ୧୦।୨।୧୧।୧୨

ଅର୍ଥାତ୍ ପୃଥିବୀରେ ଲୋକେ ତୁମକୁ ଦୁର୍ଗା, ଭଦ୍ରାକାଳୀ, ବିଜୟା, ବୈଷ୍ଣବୀ, କୁଶୁନ୍ଦା, ଚଣ୍ଡିକା, କୃଷ୍ଣା, ମାଧବୀ, କନ୍ୟକା, ମାୟା, ନାରାୟଣୀ, ଶାନୀ, ଶାରଦା ଇତ୍ୟାଦି ନାମରେ ଜାଣିବେ । ଓଡ଼ିଆ ଭାଗବତର ତୃତୀୟ ସ୍କନ୍ଧରେ କୁହାଗଲା–

ଜୟା ବିଜୟା ଭଦ୍ରାକାଳୀ ॥ ଚଞ୍ଚଳା ମଙ୍ଗଳା କରାଳୀ
ଗ୍ରାମ ଗ୍ରାମକେ ତୋର ପୂଜା ॥ ଅନେକ ଦେବେ ବଳିଭୋଜା

ଯୋଗମାୟା ଯଶୋଦାଙ୍କ ଗର୍ଭରୁ ଜନ୍ମନେଲେ । ବସୁଦେବ ଯଶୋଦାଙ୍କ କୋଳରୁ ଆଣି ଦେବକୀଙ୍କ କୋଳରେ ଦେଲେ । କଂସ ଦେବକୀଙ୍କ କୋଳରୁ ଛଡାଇନେଇ ଶିଳାରେ ପିଟି ସେ କନ୍ୟାକୁ ମାରି ଦେବାକୁ ଉଦ୍ୟମ କଲା । କନ୍ୟା କିନ୍ତୁ ବିଜୁଳି ରୂପ ଧାରଣ କରି କଂସ ହାତରୁ ଖସିଯାଇ କଂସକୁ ତାର ମୃତ୍ୟୁ ଆସନ୍ନ ବୋଲି ସତର୍କ କରାଇଦେଇ ଅଦୃଶ୍ୟ ହୋଇଥିଲେ । ସେ ଯୋଗମାୟା, ସେହି ବିଜୁଳିକନ୍ୟା ଏ ସୁଭଦ୍ରା ନୁହଁନ୍ତି ତ ? ଆମେ ବିଚାର କରୁ ନା ଏ ଦେବକୀଗର୍ଭ ସମ୍ଭୁତା, ନା ରୋହିଣୀ ଗର୍ଭ ସମ୍ଭୁତା, ଇଏ ସୁଭଦ୍ରା ହେଉଛନ୍ତି ଯଶୋଦା ଗର୍ଭ ସମ୍ଭୁତା କାରଣ ଏ ହେଉଛନ୍ତି ଯୋଗମାୟା ସ୍ୱରୂପା । ପୁଣି ଦେଖିବା ବ୍ରହ୍ମବାଦୀମାନଙ୍କର ସିଦ୍ଧାନ୍ତକୁ । ସେମାନଙ୍କ ମତରେ ଏ ତ୍ରିମୂର୍ତ୍ତି ଭିତରେ କେହି ସ୍ତ୍ରୀ ନାହାଁନ୍ତି । ସମସ୍ତେ ପୁରୁଷ । ସେଇ ମତକୁ ସମ୍ଭବତଃ ଗ୍ରହଣ କରିଛନ୍ତି ସାରଳା ଦାସ । ତେଣୁ ତାଙ୍କ ମହାଭାରତରେ କହିଛନ୍ତି,

ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀନୀଳକନ୍ଦରେ ବିଜେ ହରିହର ବ୍ରହ୍ମା ।

ଅର୍ଥାତ୍ ବଳଭଦ୍ର ହେଉଛନ୍ତି ଶିବ ସ୍ୱରୂପ, ଶ୍ରୀଜଗନ୍ନାଥ ହେଉଛନ୍ତି ବିଷ୍ଣୁ । ଏ ଦୁହିଁଙ୍କ ମଧ୍ୟରେ ବସିଛନ୍ତି ସ୍ୱୟଂ ବ୍ରହ୍ମା । ବୈଷ୍ଣବମାନେ ସୁନ୍ଦର କାହାଣୀଟିଏ ଯୁକ୍ତି ପଛରେ ଯୋଡିଛନ୍ତି । ବ୍ରହ୍ମା ଶ୍ରୀକୃଷ୍ଣଙ୍କର ଗୋବତ୍ସା ଓ ଗୋପ ବାଳକମାନଙ୍କୁ ହରଣ କରିନେଇ ବର୍ଷେ ପର୍ଯ୍ୟନ୍ତ ରଖିଲେ । ଶ୍ରୀକୃଷ୍ଣ ମାୟାରେ ଗୋପ ବାଳକମାନଙ୍କ ସହିତ ଗୋବତ୍ସାମାନଙ୍କୁ ସୃଷ୍ଟିକରି ବର୍ଷେ ଯାଏ କାମ ଚଳାଇ ଦେଲେ । ବର୍ଷକ ପରେ ନିଜର ପରାଜୟ ସ୍ୱୀକାର କରି ବ୍ରହ୍ମା ବତ୍ସା ଓ ବାଳକମାନଙ୍କୁ ଫେରାଇ ଦେଲେ । ତଥାପି କୃଷ୍ଣ ବ୍ରହ୍ମାଙ୍କୁ ଅଭିଶାପ ଦେଲେ– 'ତମେ କଳିଯୁଗରେ ନାରୀ ବେଶ ଧାରଣକରି ଆମ ଦୁଇଭାଇଙ୍କ ମଧ୍ୟରେ ବିରାଜମାନ କରିବ । ତେଣୁ ସୁଭଦ୍ରା ହେଉଛନ୍ତି ବ୍ରହ୍ମା, ସେ ନାରୀ ନୁହଁନ୍ତି

ପୁରୁଷ । ତନ୍ତ୍ରଶାସ୍ତ୍ର ମତରେ ରତ୍ନସିଂହାସନ ଉପରେ କେହି ପୁରୁଷ ନାହାଁନ୍ତି । ସମସ୍ତେ ସ୍ତ୍ରୀ । ମହା ନିର୍ବାଣ ତନ୍ତ୍ରରେ କୁହାଗଲା–

ତାରା ସାକ୍ଷାତ୍ ଶୂଳପାଣିଃ ସୁଭଦ୍ରା ଭୁବନେଶ୍ୱରୀ,

ନୀଳାଦ୍ରୌ ତୁ ଜଗନ୍ନାଥଃ ସାକ୍ଷାତ୍ ଦକ୍ଷିଣକାଳିକା,

ଅର୍ଥାତ୍ ଶିବ ସ୍ୱରୂପ ବଳଭଦ୍ର ହେଉଛନ୍ତି ତାରା, ସୁଭଦ୍ରା ଭୁବନେଶ୍ୱରୀ ଏବଂ ସ୍ୱୟଂ ଜଗନ୍ନାଥ ହେଉଛନ୍ତି ଦକ୍ଷିଣକାଳିକା । ସ୍କନ୍ଦ ପୁରାଣରେ କୁହାଗଲା–

ଧାରୟେତ୍ତୁ ଫଣାଗ୍ରେଣ ସୋଽନନ୍ତୋ ବଳସଂଜ୍ଞତଃ

ତସ୍ୟ ଶକ୍ତିଃ ସ୍ୱରୂପେୟଂ ଭଗିନୀ ଶ୍ରୀଃ ପ୍ରବର୍ତ୍ତିତା

ପୁଣି କୁହାଗଲା–

ସୁଭଦ୍ରା ଶକ୍ତିଃ ଚ ଲକ୍ଷ୍ମୀଃ ଚ

ସୁଭଦ୍ରା ହେଉଛନ୍ତି ବଳଭଦ୍ରଙ୍କର ଶକ୍ତି ଓ ଜଗନ୍ନାଥଙ୍କର ଲକ୍ଷ୍ମୀ, ଏକ ବିଚିତ୍ର ପରିକଳ୍ପନା ।

ବେଦବାଦୀମାନଙ୍କ ମତରେ ରତ୍ନସିଂହାସନ ଉପରେ ବିରାଜିତ ଥିବା ଚତୁର୍ଦ୍ଧା ମୂର୍ତ୍ତି ହେଉଛନ୍ତି ଚାରିଗୋଟି ବେଦ। ତେଣୁ କୁହାଗଲା,

ଋକ୍‌ବେଦରୂପୀ ହଳଧୃକ୍ ସାମବେଦୋ ନୃକେଶରୀ

ଯଦୁର୍ମୂର୍ତ୍ତିସ୍ତିୟଂ ଭଦ୍ରା, ଚକ୍ରମାଧର୍ବଣଂ ସ୍ମୃତମ୍ ।

ଅର୍ଥାତ୍ ବଳଭଦ୍ର ହେଉଛନ୍ତି ଋକ୍‌ବେଦ, ଜଗନ୍ନାଥ ସାମବେଦ, ସୁଭଦ୍ରା ହେଉଛନ୍ତି ଯଜୁଃବେଦ– ଚକ୍ର ସୁଦର୍ଶନ ହେଉଛନ୍ତି ଅଥର୍ବବେଦ ।

ତେଣୁ ଜଗନ୍ନାଥ ତତ୍ତ୍ୱ ବିଶେଷକରି ସୁଭଦ୍ରାଙ୍କର ତତ୍ତ୍ୱକୁ ବିଶ୍ଳେଷଣ କଲାବେଳେ ମାନବୀୟ ଚିନ୍ତା ଚେତନାର ପରିଧି ଭିତରେ ସେ ଆବଦ୍ଧ ହୋଇପାରନ୍ତିନାହିଁ । ରାମବାଦୀମାନେ କହିଲେ ସୁଭଦ୍ରା ହେଉଛନ୍ତି ସୀତା, ଜଗନ୍ନାଥ ରାମ ଏବଂ ବଳଭଦ୍ର ହେଉଛନ୍ତି ଲକ୍ଷ୍ମଣ । ସନ୍ଥ ତୁଳସୀ ସୁଭଦ୍ରାଙ୍କ ସ୍ଥାନରେ ସୀତାକୁ ଦର୍ଶନ କଲାବେଳେ ଓଡ଼ିଆ କବି ବଳରାମ ସେହି ଭାବରେ ସୀତାଙ୍କୁ ଦେଖିଛନ୍ତି ।

ଜଗନ୍ନାଥ ଛାମୁରେ ଶ୍ରୀରାମ ଉଭା ହୋଇ

ଲକ୍ଷ୍ମଣ ବଳରାମଙ୍କ ସାନ୍ନିଧ୍ୟକୁ ଯାଇ

ସୀତା ସୁଭଦ୍ରା ଯେ ଭେଟ ହେଉଛନ୍ତି ବେନି

ତିନି ଦେବତା ହୋଇ ସେ ତିନିମୂର୍ତ୍ତି ଘେନି

(ଜଗମୋହନ ରାମାୟଣ)

ଏ ସମସ୍ତ ଆଲୋଚନା କିନ୍ତୁ ଗ୍ରନ୍ଥମାନଙ୍କର ତତ୍ତ୍ୱ ଓ ତର୍କମାନଙ୍କ ଉପରେ ଆଧାରିତ । ଶାସ୍ତ୍ରକାରମାନେ ତ ନିଜ ମନ ଓ ବିଚାର ଅନୁଯାୟୀ ପୃଥକ୍ ପୃଥକ୍ ଭାବରେ ବହୁତ କଥା କହିଛନ୍ତି, କିନ୍ତୁ ଆମେ ଥରେ ନିଜକୁ ପଚାରିଛୁ କି ... ଯେଉଁ ସ୍ରଷ୍ଟା ଏ ତିନି ମୂର୍ତ୍ତିକୁ ଗଢି ଥୋଇଲା ସେ କ'ଣ ଶାସ୍ତ୍ରମାନ ପଢି ସୃଷ୍ଟି କରିଥିଲା ନା ମୂର୍ତ୍ତିମାନଙ୍କର ସୃଷ୍ଟି ପରେ ଶାସ୍ତ୍ରକାର ଓ ପଣ୍ଡିତମାନେ ଅଟକଳ ଲଗାଇଲେ । ଅସଲ କଥାଟି ହେଉଛି ସମସ୍ତେ କେବଳ ଅଟକଳ ଲଗାଇଛନ୍ତି । ଇଏ ଏଇୟା ହୋଇଥିବେ ବା ହୋଇପାରନ୍ତି, ଇଏ ରାମ, କୃଷ୍ଣ, ଜୀନ, ବୁଦ୍ଧ, ବ୍ରହ୍ମ ସବୁକିଛି । ସବୁକିଛି ହୋଇପାରନ୍ତି । ଯିଏ ଯେମିତି ତାଙ୍କୁ ବିଚାର କଲା କେବଳ ଏତିକି ଆମ ମନକୁ ଆସେ, ଏ ତିନି ମୂର୍ତ୍ତି ଏକ ଓ ଅଭିନ୍ନ । ଏମାନଙ୍କର ସଂଜ୍ଞାନାହିଁ କି କୌଣସି ସଂଜ୍ଞା ଏମାନଙ୍କୁ ଦିଆଯାଇ ନପାରେ । କେବଳ ଏତିକି କୁହାଯାଇପାରେ ଏମାନେ ସବୁକିଛି । ଏମାନେ ଜଗତର ମୂଳାଧାର । ସୃଷ୍ଟି, ସ୍ଥିତି, ବିଲୟର କାରଣ ଓ କର୍ତ୍ତା । ଏମାନେ ଚିନ୍ତା, ଚେତନା, ଗବେଷଣା, ଅଟକଳ ଓ ତାତ୍ତ୍ୱିକ ବିଶ୍ଳେଷଣରୁ ବହୁ ଊର୍ଦ୍ଧ୍ୱରେ । ତେଣୁ ତାକୁ ବାରମ୍ବାର ନମସ୍କାର ।

କୋରାଇ, ଯାଜପୁର–୭୫୫୦୨୨







# ରଥଚକର ବୈଜ୍ଞାନିକ ତତ୍ତ୍ୱ

ବିନ୍ଦୁବଳୟ ଦାଶ

ଦେଶର ପ୍ରଗତି ପାଇଁ ବିଜ୍ଞାନର ଦାନ ଅତୁଳନୀୟ । ରାଷ୍ଟ୍ର ତଥା ମଣିଷର ସୁଖସୁବିଧା ପାଇଁ ବୈଜ୍ଞାନିକମାନେ ସଦାସର୍ବଦା ଗବେଷଣାରତ । ବିଜ୍ଞାନର ମୂଲ୍ୟକୁ ଉପଲବ୍ଧି କରି ଏହାକୁ ଉପଯୋଗ କରିବା ଆବଶ୍ୟକ । ବିଜ୍ଞାନ ଧ୍ୱଂସର କଥା କହେନାହିଁ । ବିଜ୍ଞାନ ସୃଷ୍ଟିକୁ ରକ୍ଷା କରିବାର କଥା କହେ । ବେଳେ ବେଳେ ବିଜ୍ଞାନର ବାସ୍ତବ ଉଦ୍ଦେଶ୍ୟକୁ ନବୁଝି ମଣିଷ ଏହାକୁ ଅପକାରରେ ଲଗାଇଥାଏ । ତଥାପି ବିଜ୍ଞାନକୁ ଛାଡି ବଞ୍ଚିବା ଅସମ୍ଭବ । ଦିନକୁ ଦିନ ଗବେଷଣା ତା'ର କାୟା ବିସ୍ତାର କରୁଥିଲାବେଳେ ଆଦ୍ୟରୁ ବିଜ୍ଞାନ ରହିଛି । ଜଳ ଯେତେବେଳେ ସୃଷ୍ଟି ହେଲେ ବି ତାହା $H_2o$ ହିଁ ଥିବ । ନିଉଟନଙ୍କ ଗବେଷଣା ପୂର୍ବରୁ ଫଳ ଗଛରୁ ପଡୁଥିବ, ଆର୍କମେଡିସ ଡଙ୍ଗା ଚାଲିବାର ସୂତ୍ର ନିର୍ଣ୍ଣୟ ପୂର୍ବରୁ ଡଙ୍ଗା ଅବା ଭେଳା ନଈରେ ଭାସୁଥିବ । ବିଜ୍ଞାନ ଚିର ସତ୍ୟ– ଏହାକୁ ଅସ୍ୱୀକାର କରାଯାଇନପାରେ । ତେବେ ବିଜ୍ଞାନ ଯେମିତି ଦେଶ ଓ ଜାତିର ପ୍ରଗତିରେ ସହାୟ ଆଧାତ୍ମ ଜୀବନ ସେମିତି ଶୃଙ୍ଖଳିତ ମାନବ ସମାଜ ଗଠନରେ ସହାୟ ହୁଏ । ଯୁଗଯୁଗରୁ ବିଜ୍ଞାନ ସହିତ ଆଧାତ୍ମ ମିଶି ରହିଛି । ଆଧାତ୍ମ ଶିଖାଇଥାଏ ଧୈର୍ଯ୍ୟ ଓ ସହିଷ୍ଣୁତା । ବୈଜ୍ଞାନିକମାନେ ଧୈର୍ଯ୍ୟର ସହ ବର୍ଷ ବର୍ଷ ଧରି ବିଜ୍ଞାନଗାରରେ କଷ୍ଟ ସହି ଗବେଷଣା କରି ଉଦ୍ଭାବନ ଆବିଷ୍କାରମାନ ଭେଟି ଦିଅନ୍ତି । ବିଜ୍ଞାନ ଓ ଆଧାତ୍ମର ଆଉ ଏକ ମହାମିଳନ ଆମ ସଂସ୍କୃତିର ପ୍ରତୀକ ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା । ଏଠାରେ ତିନି ଠାକୁରଙ୍କ ରଥର ଚକ କଥା ଆଲୋଚନା କରିବା ।

ଆପଣମାନେ ସମସ୍ତେ ଜାଣିଥିବେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ନନ୍ଦିଘୋଷ ରଥ ସଂଖ୍ୟା ୧୬ । ପ୍ରଭୁ ଶ୍ରୀଜଗନ୍ନାଥ ଜଗତର ଆରାଧ୍ୟ ଦେବତା । ତାଙ୍କ ଯୋଗୁଁ ସୃଷ୍ଟିର ସ୍ଥିତି ବୋଲି ଆଧାତ୍ମ ପ୍ରବକ୍ତାମାନେ କୁହନ୍ତି । ଏଠାରେ ସୂଚନାଯୋଗ୍ୟ ସମଗ୍ର ପରିବେଶର ମଣିଷ, ଜୀବଜନ୍ତୁ ଅମ୍ଳଜାନ ଯୋଗୁଁ ବଞ୍ଚିପାରନ୍ତି । ଅମ୍ଳଜାନ ପାରମାଣବିକ ବସ୍ତୁତ୍ୱ ହେଉଛି ୧୬ । ଅମ୍ଳଜାନ ଯେପରି ସୃଷ୍ଟିକୁ ବଞ୍ଚାଇ ରଖିଛି ପ୍ରଭୁ ଜଗନ୍ନାଥ ସୃଷ୍ଟିକୁ ପାଳିଛନ୍ତି ବୋଲି ପ୍ରବାଦ ଅଛି । ସେଥିପାଇଁ ହୁଏତ ତାଙ୍କ ନନ୍ଦିଘୋଷ ରଥଚକ ସଂଖ୍ୟା ୧୬ ହୋଇଥାଇପାରେ ।

ଅକ୍‌ସିଜେନ୍ ଦହନରେ ସହାୟତା କରେ । ବଞ୍ଚି ରହିବା ପାଇଁ ଅମ୍ଳଜାନ ସହିତ ନାଇଟ୍ରୋଜେନର ଆବଶ୍ୟକତା ଜରୁରୀ । ଆମ ବାୟୁମଣ୍ଡଳର ୭୨% ନାଇଟ୍ରୋଜେନ ଅମ୍ଳଜାନର କ୍ରମାଗତ **imflamability**କୁ କମାଇ ରଖୁଛି । ତେଣୁ **Nitrozen** ପ୍ରୋଟେକ୍ଟର ଭାବେ କାମ କରୁଛି । ଠିକ୍ ସେମିତି ପ୍ରଭୁ ଶ୍ରୀବଳଭଦ୍ର ହଳଧରି ଖାଦ୍ୟ ଉତ୍ପାଦନ କରି ସମଗ୍ର ସୃଷ୍ଟିକୁ ଖାଦ୍ୟ ଯୋଗାଇ ରକ୍ଷା କରୁଛନ୍ତି । ବଳଭଦ୍ରଙ୍କୁ ସେଥିପାଇଁ ନରଶେଷ/ଅନନ୍ତନାଗ ମଧ୍ୟ ପୁରାଣକାରମାନେ କହିଛନ୍ତି । Nitrozenର ଆଟୋମିକମାସ ବା ପାରାମାଣବିକ ବସ୍ତୁତ୍ୱ ୧୪ । ତେଣୁ ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥର ସଂଖ୍ୟା ଏଇ କ୍ରମରେ ୧୪ ହୋଇଥାଇପାରେ ।

ଦେବୀ ସୁଭଦ୍ରା ଶକ୍ତି ସ୍ୱରୂପିଣୀ । ସେ ଦୁଇଭାଇଙ୍କ ମଝିରେ ରହି ଉଭୟଙ୍କୁ ମହାଶକ୍ତି ପ୍ରଦାନ କରିଥାନ୍ତି ବୋଲି ଅଧାତ୍ମ ପ୍ରବକ୍ତାଙ୍କ ମତ । ଅନୁରୂପ କଟନରୁ ଶକ୍ତି ମିଳିଥାଏ ଏବଂ ଏହାର Atomic mass 12 । ଦେବୀ ସୁଭଦ୍ରା ଶକ୍ତିରୂପା ହେତୁ ତାଙ୍କର ରଥ ଦେବଦଳନର ଚକ ସଂଖ୍ୟା କାର୍ବନର ପାରମାଣବିକ ବସ୍ତୁତ୍ୱ ଅନୁସାରେ ୧୨ ହୋଇଥାଇପାରେ । ଏଣୁ ଏଠାରେ ବିଜ୍ଞାନ ଓ ଅଧାତ୍ମ ଉଭୟ ଏକତ୍ର ହୋଇପାରନ୍ତି । ତେଣୁ ସୃଷ୍ଟି ପାଇଁ ବିଜ୍ଞାନ ସହିତ ଦର୍ଶନ ଓ ଅଧାତ୍ମର ଆବଶ୍ୟକତା ରହିଛି । ଗୋଟିଏ ନୂତନ ତଥ୍ୟ ଦେଉଛି– ଅନ୍ୟଟି ଏହାକୁ ଶୃଙ୍ଖଳିତ ବ୍ୟବହାର କରିବାକୁ ପଥ ଦେଖାଦେଉଛି ।

ରେଭେନ୍ସା କଲିଜିଏଟ ସ୍କୁଲ, କଟକ–୨





# ଶ୍ରୀଜଗନ୍ନାଥ ମନ୍ଦିର ଐକ୍ୟ ସ୍ଥାପନା ଓ ଶ୍ରୀଜଗନ୍ନାଥ ପାଞ୍ଚରାତ୍ର

ଗୋପୀନାଥ ମହାନ୍ତି

ଶ୍ରୀଜଗନ୍ନାଥ ଚେତନା ଏକ ଧାରଣା ନୁହେଁ, ବରଂ ପ୍ରବହମାନ ଏକ ଧାରା । ଚୈତନ୍ୟଯୁକ୍ତ ଶକ୍ତି ଅର୍ଥାତ୍ ଚିତ୍ତର ଭାବନା ହିଁ ଚେତନା । ଯାହା ବିବେକ ଅନୁମୋଦିତ, ଶାସ୍ତ୍ର ଅନୁମୋଦିତ ଏବଂ ସମାଜ ଅନୁମୋଦିତ, ତାହାହିଁ ଚେତନାଯୁକ୍ତ କର୍ମ । ଅପରପକ୍ଷରେ ସତ୍ୟକୁ ଭାଗବତରେ ଚେତନା ବୋଲି କୁହାଯାଇଛି । ଯଥା-

ଆବୋରି ଅଛୁ ତିନି ସତ୍ୟ

ଦେହ, ଅବନୀ, ପରମାର୍ଥ ।



ଭଗବାନ ଦେହ ସ୍ତରରେ ସତ୍ୟ, ଅବନୀ (ସମାଜ) ସ୍ତରରେ ସତ୍ୟ ଏବଂ ପରମାର୍ଥିକ ସ୍ତରରେ ମଧ୍ୟ ସତ୍ୟ । ଚିନ୍ମୟ, ଚିଦ୍‌ଘନ ପୁରୁଷୋତ୍ତମ ସତ୍ତା । ଏହି ଭଗବାନ ଓ ପରଂବ୍ରହ୍ମଙ୍କର ଗୁଣାବଳୀ ବ୍ୟାସଦେବକୃତ ସ୍କନ୍ଦପୁରାଣ(ପୁରୁଷୋତ୍ତମଖଣ୍ଡ) ଅନୁମୋଦିତ । ଏହାକୁ ଆଧାର କରି ଏହାର ପାରାୟଣ ବିଧି, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ଅନୁସୃତ ପୂଜାପଦ୍ଧତି ଏବଂ ପାଞ୍ଚଦିନ ବ୍ୟାପୀ ମହାପ୍ରଭୁଙ୍କ କଥା ଶ୍ରବଣର ଦିବ୍ୟ ସୁଯୋଗ ସମସ୍ତଙ୍କୁ ପ୍ରଦାନ କରିବା ପାଇଁ ଶ୍ରୀଜଗନ୍ନାଥ ପାଞ୍ଚରାତ୍ର ପଦ୍ଧତିର ପ୍ରଚଳନ ମାତ୍ର । ଏହା ଏକ ନୂଆ ପରମ୍ପରା ବା ଧାରା ନୁହେଁ । ଏହା ଶାସ୍ତ୍ରାନୁମୋଦିତ ଧାରା । ଗଣଦେବତା ଶ୍ରୀଜଗନ୍ନାଥଙ୍କ ଗୁଣାବଳୀ ପାଞ୍ଚ ଦିନରେ ସମସ୍ତଙ୍କୁ ଜଣାଇବା ପାଇଁ ଏହା ଏକ ପ୍ରୟାସ ମାତ୍ର ।

ସତ୍ୟସ୍ୱରୂପ ଶ୍ରୀଜଗନ୍ନାଥଙ୍କର ଲୀଳା, ଅନୁଷ୍ଠାନ, ସ୍ୱାଧ୍ୟାୟ, ଶ୍ରବଣ, ପାରାୟଣ, ସଂକୀର୍ତ୍ତନ ଯାହାକିଛି ସେବନୀୟ, ତା'ର କେନ୍ଦ୍ରବିନ୍ଦୁ ହେଲା ମନ୍ଦିର । ଶ୍ରୀଜଗନ୍ନାଥଙ୍କ ମନ୍ଦିରକୁ କେନ୍ଦ୍ରକରି ଯାନିଯାତ୍ରା, ପର୍ବପର୍ବାଣି, ବିଭିନ୍ନ ଉତ୍ସବ, ସତ୍‌ସଙ୍ଗ, ପାରାୟଣ ଆଦି ଅନୁଷ୍ଠାନର କ୍ରମବିକାଶ ଲାଭ କରିଥିଲା । ଶ୍ରୀଜଗନ୍ନାଥ ଚେତନାର ପରିପ୍ରସାର କେବଳ ମହାପ୍ରଭୁଙ୍କ ମନ୍ଦିରମାନଙ୍କୁ ନେଇ ହିଁ ସମ୍ଭବ- ଏ କଥାରେ ଦ୍ୱିମତ ନାହିଁ । ପରେ ପରେ ଉତ୍ସବରେ ଶୋଭାଯାତ୍ରା ସମ୍ମିଳିତ ହେବାପରେ ମଧ୍ୟ ସେହି ମନ୍ଦିରକୁ ହିଁ କେନ୍ଦ୍ରକରି ଉତ୍ସବ ଓ ଶୋଭାଯାତ୍ରା ପାଳିତ ହେଲା । ଶ୍ରୀଜଗନ୍ନାଥଙ୍କ ଉପାସନାରେ 'ଗୁଣ୍ଡିଚା ମହୋତ୍ସବ' କେବଳ ମହୋତ୍ସବ ନୁହେଁ, ଶୋଭାଯାତ୍ରା ସମ୍ମିଳିତ ।

ପାଞ୍ଚରାତ୍ର ମତରେ ଶରଣାଗତ ଭକ୍ତ ଯେତେବେଳେ ନିଜ ମନକୁ ନିଷ୍ଠାର ସହ ଈଶ୍ୱରଙ୍କ ଶରଣରେ ବିନିଯୋଗ କରେ, ସେତେବେଳେ ତା' ମନ ଓ ଚେତନା ଈଶ୍ୱରମୟ ହୋଇଉଠେ । ଏହାହିଁ ଶ୍ରୀଜଗନ୍ନାଥ ଚେତନାର ସତ୍ୟ । କୁହାଯାଏ 'ଯାହାର ମନ ଯେଉଁ, ତାହାର ପ୍ରଭୁ ସେଉଁ' । ଶ୍ରୀଜଗନ୍ନାଥ ଚେତନାରେ ମନ ସମ୍ପୂର୍ଣ୍ଣ ଜଗନ୍ନାଥମୟ ହେଲାପରେ ଭକ୍ତ ଶ୍ରୀଜଗନ୍ନାଥଙ୍କ ନିକଟତର ହୋଇଥାଏ । ସେଥିପାଇଁ ଭକ୍ତର ଆକୁଳ ପ୍ରାର୍ଥନା ହେଉଛି, ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁମେ' । ମନ୍ଦିରମାନଙ୍କର ରୀତିନୀତି, ସେବାପୂଜା ମନ୍ଦିର ଚତୁଃପାର୍ଶ୍ୱରେ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରିଥାଏ । ଏହା ଭକ୍ତମାନଙ୍କୁ ସ୍ୱତଃ ମନ୍ଦିରକୁ ଟାଣିନେଇଥାଏ ।




ଏହି ସମାଗମ ହିଁ ଧାର୍ମିକ ପରମ୍ପରା ଏବଂ ଅନୁଷ୍ଠାନର ମୁଖ୍ୟ ସ୍ରୋତ ।

ଓଡ଼ିଶା ଓ ଓଡ଼ିଶା ବାହାରେ ଥିବା ପ୍ରାୟ ୪୦୦୦ରୁ ଅଧିକ ଶ୍ରୀଜଗନ୍ନାଥ ମନ୍ଦିର ବିବରଣୀ, ବିଭିନ୍ନ ଅନୁଷ୍ଠାନ ତଥା ଗବେଷଣା ଅଧିକାରୀମାନଙ୍କ ଦ୍ୱାରା ସଂଗୃହୀତ ହୋଇଅଛି । ବହୁ ମନ୍ଦିରମାନଙ୍କ ସହ ପୁରୀର ଶ୍ରୀମନ୍ଦିର ଭାବଗତ ଏକତା ପ୍ରତିଷ୍ଠା ହୋଇପାରିନାହିଁ । ଏଣୁ ଦେଶାଚାର ଭିତ୍ତିରେ ମୂର୍ତ୍ତି ଗଠନରେ ଭିନ୍ନତା, ବେଶଭୂଷାରେ ଭିନ୍ନତା, ସେବା ପୂଜାରେ ଭିନ୍ନତା, ପ୍ରସାଦ ନୈବେଦ୍ୟରେ ଭିନ୍ନତା ପରିଲକ୍ଷିତ ହୁଏ । ଏହି ଭିନ୍ନତା ଶାସ୍ତ୍ରାନୁମୋଦିତ ନୁହେଁ । ଏହାଦ୍ୱାରା ଶ୍ରୀଜଗନ୍ନାଥ ସଂସ୍କୃତି ନିଶ୍ଚିତରେ ଅବକ୍ଷୟଗାମୀ । ଏହି ଦୁରବସ୍ଥାକୁ ରୋକିବା ପାଇଁ ଏବଂ ଶ୍ରୀଜଗନ୍ନାଥଙ୍କ ଐକ୍ୟ ସ୍ଥାପନା କରିବା ପାଇଁ ଏ ପ୍ରୟାସ ପ୍ରଭୁଙ୍କ ଇଚ୍ଛାରେ ହିଁ କାର୍ଯ୍ୟକାରୀ ହୋଇପାରିଛି । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ପ୍ରଥମ ଥର ପାଇଁ ପୁରୀର ଶ୍ରୀମନ୍ଦିର ଆନୁକୂଲ୍ୟରେ ଶ୍ରୀଜଗନ୍ନାଥ ମନ୍ଦିର ଐକ୍ୟସ୍ଥାପନା ଜାତୀୟ ସମ୍ମିଳନୀ ପୁରୀର ଶରଧା ବାଲିରେ ଗତ ଫେବୃୟାରୀ ୧୦-୧୧ରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶା ଓ ଓଡ଼ିଶା ବାହାରର ପ୍ରାୟ ୮୫୩ ମନ୍ଦିରରୁ ପ୍ରାୟ ୧୫୦୦ ପ୍ରତିନିଧି ଯୋଗ ଦେଇଥିଲେ । ଏତଦ୍‌ବ୍ୟତୀତ ବଙ୍ଗଳାଦେଶରୁ ତିନିଜଣ ଓ ଆମେରିକାର ତିନୋଟି ମନ୍ଦିରର ପ୍ରତିନିଧି ମଧ୍ୟ ଯୋଗ ଦେଇଥିଲେ । ଏହି ଜାତୀୟ ସମ୍ମିଳନୀରେ ୩୦ରୁ ଅଧିକ ହିନ୍ଦୁଧର୍ମର ସନ୍ଥମାନେ ଯୋଗଦେଇ ଏହି କାର୍ଯ୍ୟାବଳୀକୁ ଆଶୀର୍ବାଦ କରିଥିଲେ ।

ପରେ ପରେ ପୁରୁଷୋତ୍ତମ ବାଟିକାରେ ୧୦୦ରୁ ଅଧିକ ପ୍ରବଚକମାନଙ୍କର ପାଞ୍ଚରାତ୍ର ବିଧି ଉପରେ କର୍ମଶାଳା ତା.୧୦.୨.୨୦୧୨ରିଖରେ ଆୟୋଜନ କରାଯାଇଥିଲା । ଏହି ଦୁଇ କାର୍ଯ୍ୟକ୍ରମକୁ ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ଶ୍ରୀନିଶ୍ଚଳାନନ୍ଦ ସରସ୍ୱତୀ ଓ ପୁରୀର ଗଜପତି ଶ୍ରୀ ଦିବ୍ୟସିଂହ ଦେବ ଉଦ୍‌ଘାଟନ କରିଥିଲେ ।

'ଶ୍ରୀଜଗନ୍ନାଥ ପାଞ୍ଚରାତ୍ର' ଯାହା କେବଳ ସମ୍ପୂର୍ଣ୍ଣ ଶାସ୍ତ୍ର ଅନୁମୋଦିତ, ତା'ର ପରିପ୍ରସାର କେବଳ ଶ୍ରୀଜଗନ୍ନାଥ ମନ୍ଦିରମାନଙ୍କୁ ନେଇ ହିଁ କରାଯାଇ ପାରିବ । ବିଭିନ୍ନ ଶାସ୍ତ୍ରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ, ବିଶେଷକରି ସ୍କନ୍ଦପୁରାଣରେ ଶ୍ରୀଜଗନ୍ନାଥଙ୍କ ଇତିବୃତ୍ତିକୁ ପାଞ୍ଚଦିନ ବ୍ୟାପୀ କାର୍ଯ୍ୟକ୍ରମରେ ପ୍ରଚାର, ପ୍ରସାର କରିବା ମନ୍ଦିରମାନଙ୍କ ସହଯୋଗରେ ହିଁ ସମ୍ଭବ ଏବଂ ବସ୍ତୁତଃ ସେଥିପାଇଁ ଶ୍ରୀଜଗନ୍ନାଥ ମନ୍ଦିରମାନଙ୍କର ଐକ୍ୟ ସ୍ଥାପନା ଏକାନ୍ତ ଅନିର୍ବାର୍ଯ୍ୟ । ଏ ସବୁକୁ ଦୃଷ୍ଟିରେ ରଖି ଶ୍ରୀଜଗନ୍ନାଥ ପାଞ୍ଚରାତ୍ର କାର୍ଯ୍ୟକ୍ରମ ଫେବୃୟାରୀ ମାସ ୯ତାରିଖରେ ଅର୍ଥାତ୍ ଅଧିବାସ ଦିନ ସନ୍ଥମାନଙ୍କ ଗ୍ରହଣରେ ଶଙ୍କରାଚାର୍ଯ୍ୟ ଓ ଗଜପତିଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ପାଞ୍ଚରାତ୍ରର ପାରାୟଣ, ପୂଜା ଓ ପ୍ରବଚନ କାର୍ଯ୍ୟକ୍ରମ ୧୦ତାରିଖରୁ ୧୪ତାରିଖ ପର୍ଯ୍ୟନ୍ତ ଚାଲିଥିଲା ।

ଗୁଣ୍ଡିଚା ମନ୍ଦିରର ସମ୍ମୁଖସ୍ଥ ଶରଧା ବାଲିରେ ସୁସଜ୍ଜିତ ପାଣ୍ଡେଲ, ପୂର୍ବପାର୍ଶ୍ୱରେ ଯଜ୍ଞମଣ୍ଡପ । ହଜାର ହଜାର ଶ୍ରଦ୍ଧାଳୁ ଭକ୍ତମାନଙ୍କ ଗହଣରେ ଏବଂ ସାଧୁ ଓ ସନ୍ଥମାନଙ୍କ ସଦୟ ଉପସ୍ଥିତିରେ ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ଶ୍ରୀ ନିଶ୍ଚଳାନନ୍ଦ ସରସ୍ୱତୀ ଓ ପୁରୀର ଗଜପତି ଶ୍ରୀ ଦିବ୍ୟସିଂହ ଦେବ ପାଞ୍ଚରାତ୍ର କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିଥିଲେ । ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ, ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ମାସ ମାସ ଧରି କାର୍ଯ୍ୟ କରି ଆସୁଥିବା ବିଭିନ୍ନ ସହଯୋଗୀ ସଂସ୍ଥା ଯଥା ଆଦିତ୍ୟବାହିନୀ, ମୁକ୍ତିମଣ୍ଡପ, ଶ୍ରୀଜଗନ୍ନାଥ ସଂସ୍କୃତି ପରିଷଦର ସଦସ୍ୟମାନେ ଉପସ୍ଥିତ ଥିଲେ । ହୁଳହୁଳି ଓ ଜୟଜଗନ୍ନାଥ ଶବ୍ଦରେ ଗଗନ ପବନ ମୁଖରିତ ହୋଇଉଠିଲା । ଶ୍ରୀଜଗନ୍ନାଥ ସଂସ୍କୃତିରେ ପ୍ରଥମଥର ପାଇଁ ଶ୍ରୀଜଗନ୍ନାଥ ପାଞ୍ଚରାତ୍ର କାର୍ଯ୍ୟକ୍ରମର ସୂତ୍ରପାତ ହେଲା ।

ତା'ପରେ ଦୁଇଦିନ ଅର୍ଥାତ୍ ୧୦ ଓ ୧୧ ତାରିଖରେ ମନ୍ଦିରମାନଙ୍କରୁ ଆସିଥିବା ପ୍ରତିନିଧିମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ଅଂଶ ଗ୍ରହଣ କରି ଗଜପତି ଶ୍ରୀ ଦିବ୍ୟସିଂହ ଦେବ ଠାକୁରଙ୍କ ସେବାପୂଜା, ଭୋଗରାଗ ଆଦି ସମ୍ବନ୍ଧରେ ସମ୍ୟକ ଧାରଣା ଦେଇଥିଲେ । ଆବଶ୍ୟକ ସ୍ଥଳେ ମନ୍ଦିରର ବରିଷ୍ଠ ସେବାୟତ, ମୁକ୍ତିମଣ୍ଡପର ପ୍ରତିନିଧିମାନେ ସେମାନଙ୍କର ସୁଚିନ୍ତିତ ମତ ରଖିଥିଲେ । ପ୍ରସଙ୍ଗକ୍ରମେ ଗଜପତି କେତେକ ଆବଶ୍ୟକୀୟ ନିୟମ ମାନିବା ପାଇଁ ମନ୍ଦିରର ପ୍ରତିନିଧିମାନଙ୍କୁ ଅନୁରୋଧ କରିଥିଲେ ।

ଶ୍ରୀଜଗନ୍ନାଥ ସଂସ୍କୃତିରେ ଶ୍ରୀଜଗନ୍ନାଥ ପାଞ୍ଚରାତ୍ର ଏକ ନୂତନ ପରମ୍ପରା । ନିଜକୁ ଉଦ୍‌ବୁଦ୍ଧ କରିବା ପାଇଁ ପ୍ରବଚକମାନଙ୍କର ଏକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପୁରୁଷୋତ୍ତମ ବାଟିକାରେ ସାଧୁ-ସନ୍ଥମାନଙ୍କ ଗହଣରେ ଅନୁଷ୍ଠିତ ହୋଇଥିଲା । ସ୍କନ୍ଦପୁରାଣର କେଉଁଦିନ କେତେ ଅଂଶ ପାରାୟଣରେ ପଠନ କରାଯିବ ଏବଂ ସନ୍ଧ୍ୟାରେ ସେହି ବିଷୟରେ ପ୍ରବଚନ ହେବ, ତାହା ମଧ୍ୟ ଗ୍ରହଣୀୟ ହୋଇଥିଲା ।





ଏହି ଉଦ୍‌ଘାଟନୀ କାର୍ଯ୍ୟକ୍ରମରେ ସାତୋଟି ପୁସ୍ତକର ଲୋକାର୍ପଣ କରାଯାଇଥିଲା । ଦେବନାଗରୀ ଓ ଓଡ଼ିଆ ଅକ୍ଷରରେ ସ୍କନ୍ଦପୁରାଣ (ଉତ୍କଳଖଣ୍ଡ), ଶ୍ରୀଦାରୁବ୍ରହ୍ମଙ୍କ ସେବା ପରମ୍ପରା ଓ ସଂକ୍ଷିପ୍ତ ପୂଜା ବିଧି (ଶ୍ରୀଜଗନ୍ନାଥ ଚେତନା ଗବେଷଣା ପ୍ରତିଷ୍ଠାନ, ପୁରୀ କୃତ), ଶ୍ରୀଜଗନ୍ନାଥ ପାଞ୍ଚରାତ୍ର ପଦ୍ଧତି, (ଶ୍ରୀମନ୍ଦିର କୃତ), ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ଓ ସେବାପୂଜା, (ଶ୍ରୀମନ୍ଦିର କୃତ) ଏବଂ ଶ୍ରୀଜଗନ୍ନାଥ ସଂସ୍କୃତି ପରିଷଦ ଆନୁକୂଲ୍ୟରେ ପ୍ରକାଶିତ ଶ୍ରୀଜଗନ୍ନାଥଙ୍କ ଉପରେ ବିଭିନ୍ନ ଭାଷାରେ ପ୍ରକାଶିତ ପୁସ୍ତକର ବିବରଣୀ, ''ଶ୍ରୀଜଗନ୍ନାଥ ଗବେଷଣା ଶହେ ଏକ ସୂଚୀ'' ଓ ''ଶ୍ରୀମନ୍ଦିର, ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ'' ପୁସ୍ତକ ଦ୍ୱୟର ମଧ୍ୟ ଲୋକାର୍ପଣ କରାଯାଇଥିଲା ।

ଏହି ଜାତୀୟ ସମ୍ମିଳନୀରେ ଯୋଗଦେଇଥିବା ପ୍ରତିନିଧିମାନଙ୍କର ରହିବା, ଖାଇବା ତଥା ଯାବତୀୟ ବନ୍ଦୋବସ୍ତ କରାଯାଇଥିଲା । ପ୍ରତ୍ୟହ ରାତ୍ରରେ ପ୍ରତିନିଧିମାନଙ୍କୁ ଶ୍ରୀଜୀଉଙ୍କ ଅବଢାରେ ଆପ୍ୟାୟିତ କରାଯାଇଥିଲା । ଶ୍ରୀଜଗନ୍ନାଥ ସଂସ୍କୃତି ପରିଷଦର ସଦସ୍ୟମାନେ ପ୍ରତିନିଧିମାନଙ୍କର ବ୍ୟବସ୍ଥା ସୁଚାରୁ ରୂପରେ ପରିଚାଳନା କରିଥିଲେ ।

ଏହି ଜାତୀୟ ସମ୍ମିଳନୀର ସମସ୍ତ ଖର୍ଚ୍ଚ କୋଲକାତାର ସେବାଟ୍ରଷ୍ଟ ଅକୁଣ୍ଠିତ ଚିତ୍ତରେ ବହନ କରିଥିଲେ ।

ସତ୍ୟଭିଲ୍ଲା, ବ୍ୟାସକବି ଫକୀରମୋହନ ମାର୍ଗ
୧୮,ଭି.ଆଇ.ପି କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର-୧୫

# ଆଖି ନୁହେଁ ସେ ତ ବ୍ରହ୍ମାଣ୍ଡ ଜ୍ୟୋତି

ଡକ୍ଟର ନଟବର ସାହୁ

ଆଖି ନୁହେଁ ସେ ତ ବ୍ରହ୍ମାଣ୍ଡ ଜ୍ୟୋତି
ସେ ଜ୍ୟୋତିକୁ କିଏ କଳିଛି,
ଭକତର ପ୍ରାଣ ହୁଏ ଆଲୋକିତ
ସେ ଏକା ଏହାକୁ ବୁଝିଛି ॥

ହସ ନୁହେଁ ସେତ ମାୟାର ଗରଳ
ସେ ବିଷଜ୍ୱାଳା କେ ଚାଖିଛି,
ସେ ହସର ନିଶା କରଇ ଅବଶ
ଭକତର ପ୍ରାଣ ଦହିଛି ।



ହାତ ନୁହେଁ ସେତ ବନଶୀର ଦଣ୍ଡ
ସେ ଥୋପ ଥରେ ଯେ ଗିଳିଛି,
କେତେ ଟଣାଟଣି, ନମିଳେ ସରଣୀ
ଭକତ ସେ ଭାବ କଳିଛି ।

ସେ ପାଦ ଅଦୃଶ୍ୟ ହର ବ୍ରହ୍ମାଲେଶ
ପାଇ ନାହିଁ କିଏ କଳିଛି,
ଛୁଇଁବାକୁ ତାରେ କେ କେତେ ବିକଳେ
ଭକ୍ତ ତା ପରଶ ପାଇଛି ।

କାଳିଆ ମନୁଆ କାହାରେ ସୁଦୟା
କରିବ ସେ ଏକା ଜାଣିଛି ।
ଦେଖିବା, ଜାଣିବା, ବୁଝିବା, ଧରିବା
ମୋ ପାଇଁ ସପନ ମଣୁଛି ॥

ଅବସରପ୍ରାପ୍ତ ମୂଲ୍ୟାୟନ ଅଧିକାରୀ
ଦରଖାପାଟଣା, କଲ୍ୟାଣୀନଗର,
କଟକ-୭୫୩୦୧୩







# ଶ୍ରୀଜଗନ୍ନାଥ ସଂସ୍କୃତିର ଅନନ୍ୟ ପରମ୍ପରା ଛେରାପହଁରା

ଦେବାଶିଷ ଚକ୍ରବର୍ତ୍ତୀ

ଶାନ୍ତି, ମୈତ୍ରୀ ଓ ପ୍ରୀତିର ପ୍ରତୀକ ମହାପ୍ରଭୁ ଶ୍ରୀଜଗନ୍ନାଥ ଉତ୍କଳର ପ୍ରାଣଧନ ହେଲେ ମଧ୍ୟ ସେ କେବଳ ଉତ୍କଳର ନାଥ ନୁହଁନ୍ତି ବରଂ ଜଗତର ନାଥ ଭାବରେ ତାଙ୍କର ସର୍ବାଧିନାୟକତ୍ୱ ଘୋଷିତ ହୋଇଆସୁଛି । ତେଣୁ ତାଙ୍କୁ ସର୍ବଦେବାଧିପତି ବୋଲି ଅଭିହିତ କରି ସ୍କନ୍ଦପୁରାଣ ପ୍ରକାଶ କରିଛି– 'ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମମ୍' । ସେ ଦେବାଧିପତି ହେଲେ ମଧ୍ୟ ଭକ୍ତର ହୃଦୟାଧିପତି । ଜାତିବର୍ଣ୍ଣର ବିଭେଦ ତାଙ୍କ ନିକଟରେ ନଥାଏ । ସେଇଥି ପାଇଁ ଭକ୍ତ ସାଲବେଗ, ଯବନ ହରିଦାସ, ସନ୍ଥ କବୀର, ରଘୁଅରକ୍ଷିତ ଓ ଦାସିଆ ବାଉରି ଭଳି ଭିନ୍ନ ଧର୍ମାବଲମ୍ବୀ ତଥା ଦଳିତ ସମ୍ପ୍ରଦାୟର ଭକ୍ତଜନ ମଧ୍ୟ ତାଙ୍କର କୃପାଲାଭ କରିପାରିଛନ୍ତି ।



ତାଙ୍କର ନୀତି, ବେଶ ଓ ଯାତ୍ରାରୁ ମାନବୀୟ ଆଚରଣ ବାରିହୋଇ ପଡୁଥିବାରୁ ସେ ସମସ୍ତଙ୍କର ଆପଣାର ମନେହୁଅନ୍ତି । ପ୍ରତ୍ୟୁଷରୁ ପ୍ରତିହାରିଙ୍କର ମଣିମା, ମଣିମା ଡାକରେ ତାଙ୍କର ଶଯ୍ୟା ତ୍ୟାଗ, ଦନ୍ତମାର୍ଜନ ଓ ସ୍ନାନବିଧିରୁ ମାନବୀୟ ଦିଗ ସ୍ୱତଃ ଉନ୍ମୋଚିତ ହୋଇଥାଏ । ଏପରିକି ଆତ୍ମା ପୁରାତନ କଳେବରକୁ ପରିତ୍ୟାଗ କରି ନୂତନ ଜନ୍ମଗ୍ରହଣ କରିବା ପରି ସେ ମଧ୍ୟ ନିଜର ଜୀର୍ଣ୍ଣ କଳେବରକୁ କୋଇଲି ବୈକୁଣ୍ଠରେ ସମାଧିସ୍ଥ କରି 'ନବକଳେବର' ହୁଅନ୍ତି । 'ଯଥା ଦେହେ ତଥା ଦେବେ' ନୀତିରେ ଶ୍ରୀମନ୍ଦିରରେ ସ୍ନାନ, ଦୋଳ, ଅକ୍ଷୟ ତୃତୀୟା ପ୍ରଭୃତି ଦ୍ୱାଦଶ ଯାତ୍ରା ଅନୁଷ୍ଠିତ ହୋଇଥାଏ । ମାତ୍ର ଏହି ଯାତ୍ରାମାନଙ୍କ ମଧ୍ୟରେ ରଥଯାତ୍ରାର ଶ୍ରେଷ୍ଠତ୍ୱ ଧ୍ୱନିତ ହୋଇଆସୁଛି ।

ରଥଯାତ୍ରା କେବଳ ଏକ ଧାର୍ମିକ ଉପଚାର ନୁହେଁ, ଏହା ଉତ୍କଳୀୟର ପ୍ରାଣତନ୍ତ୍ରୀରେ ଏକ ଲଳିତ ମୂର୍ଚ୍ଛନା । ରଥାରୂଢ଼ା ଶ୍ରୀଜଗନ୍ନାଥଙ୍କର ଦର୍ଶନ ଭକ୍ତ ପ୍ରାଣରେ ଆନନ୍ଦର ଲହରୀ ଖେଳାଇ ଦେଇଥାଏ । ବ୍ରହ୍ମପୁରାଣ, ପଦ୍ମପୁରାଣ, ଯାତ୍ରାଭାଗବତ, ନୀଳାଦ୍ରି ମହୋଦୟ ଓ ବାମଦେବ ସଂହିତା ପ୍ରଭୃତି ଗ୍ରନ୍ଥରେ ଏହାର ସୂଚନା ମିଳିଥାଏ । ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ବଡଠାକୁର ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନ କର୍ତ୍ତୃକ ଚତୁର୍ଦ୍ଧା ମୂର୍ତ୍ତିଙ୍କର ରଥରେ ଗୁଣ୍ଡିଚା ଘରକୁ ଯାତ୍ରା ଉତ୍ସବ ରଥଯାତ୍ରା ରୂପେ ଭୁବନ ବିଦିତ । ସେ କେବଳ ଭକ୍ତକୁ ଆମୋଦିତ କରିନଥାନ୍ତି ବରଂ ତା'ର ସମସ୍ତ କଳୁଷ ହରଣ କରି ତାକୁ ପୁର୍ନଜନ୍ମ ରୂପକ ଭବବନ୍ଧନରୁ ମୁକ୍ତି ଦେଇଥାନ୍ତି । ତେଣୁ କୁହାଯାଇଛି ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନବିଦ୍ୟତେ ।''

ରଥଯାତ୍ରାରେ ଅନୁଷ୍ଠିତ ନୀତିମାନଙ୍କ ମଧ୍ୟରେ 'ଛେରାପହଁରା' ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା କାଳୀନ ବିଧିବ୍ୟବସ୍ଥାରେ ଏହା ଏକ ନୂତନ ସଂଯୋଜନ




ଭଳି ପ୍ରତୀୟମାନ ହୋଇଥାଏ । ଏହାର କାଳ ନିର୍ଣ୍ଣୟ ସମ୍ପର୍କରେ ମତାନ୍ତର ପ୍ରକାଶ ପାଇଥାଏ । ଶ୍ରୀଜଗନ୍ନାଥ ସଂସ୍କୃତିର ଅନ୍ୟତମ ଗବେଷକ ସ୍ୱର୍ଗତ ହରିହର ବାହିନୀପତି ଏହି ବିଧି ପ୍ରଚଳନ କରିଥିବା କଥା ପ୍ରକାଶ କରିଛନ୍ତି । ମାତ୍ର ଗଜପତି ପୁରୁଷୋତ୍ତମ ଦେବ ରଥମାର୍ଜନା ରୂପକ ଚଣ୍ଡାଳ କର୍ମକରି କାଞ୍ଚିରାଜା ଶାଳ୍ୱ ନରସିଂହଙ୍କ ଦ୍ୱାରା ଚଣ୍ଡାଳ ରୂପେ ଭର୍ତ୍ସିତ ହୋଇଥିବାରୁ କାଞ୍ଚି ଅଭିଯାନର ସୂତ୍ରପାତ ହୋଇଥିବା କଥା ପୁରୁଷୋତ୍ତମ ଦାସଙ୍କର 'କାଞ୍ଚିକାବେରୀ' କାବ୍ୟାନୁଶୀଳନରୁ ଜଣାଯାଏ ।

ଗଜପତି ପୁରୁଷୋତ୍ତମଦେବ ଏକ ବିଶେଷ ପରିସ୍ଥିତିରେ ପଡି ଏହି ସେବାନୀତି ପ୍ରଚଳନ କରିଥିଲେ ବୋଲି କେତେକ ଆଲୋଚକ ମତ ପୋଷଣ କରିଥାନ୍ତି । କପିଳେନ୍ଦ୍ରଦେବଙ୍କ ପାଟରାଣୀଙ୍କ ଗର୍ଭସମ୍ଭୂତ ହମୀରଦେବ ଥିଲେ ଉତ୍କଳ ରାଜସିଂହାସନର ପ୍ରକୃତ ଦାୟାଦ । ମାତ୍ର କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ପରେ ହମୀରଦେବଙ୍କ ଅନୁପସ୍ଥିତିର ସୁଯୋଗନେଇ ଶ୍ରୀଜଗନ୍ନାଥଙ୍କର କେତେକ ପ୍ରଭାବଶାଳୀ ସେବକ କପିଳେନ୍ଦ୍ରଙ୍କର ଫୁଲବିବାହୀର ପୁତ୍ର ପୁରୁଷୋତ୍ତମଙ୍କୁ ସିଂହାସନରେ ଅଭିଷିକ୍ତ କରାଇଥିଲେ । ସିଂହାସନର ଯୋଗ୍ୟ ଉତ୍ତରାଧିକାରୀ ହମୀରଦେବ ଜୀବିତ ଥିବାବେଳେ ପୁରୁଷୋତ୍ତମଙ୍କର ସିଂହାସନ ଆରୋହଣ ପ୍ରସଙ୍ଗ ସଂସ୍କୃତି ସଚେତନ ଉତ୍କଳୀୟଙ୍କ ଦ୍ୱାରା ଗ୍ରହଣୀୟ ମନେ ନହେବାର ଆଶଙ୍କାଥିବାରୁ ସେମାନେ (ଶ୍ରୀଜଗନ୍ନାଥଙ୍କର ସେବକମାନେ) ଏକ ବିଶେଷ ସେବାବିଧିର ପ୍ରଚଳନ କରି ଜନତାର ପ୍ରିୟଭାଜକ ହେବାକୁ ପରାମର୍ଶ ଦେଇଥିଲେ । ସେବକମାନଙ୍କର ପରାମର୍ଶକ୍ରମେ ସେ ଛେରାପହଁରା ସେବା ବିଧିର ପ୍ରଚଳନ କରି ଜନମାନସକୁ ପ୍ରଭାବିତ କରିପାରିଥିଲେ । ଏହି ପରମ୍ପରା ସମ୍ପୂର୍ଣ୍ଣ ଭକ୍ତି ସଂଜାତ ନହୋଇ ଆବଶ୍ୟକତା ସମ୍ଭୂତ ହୋଇଥିଲେ ମଧ୍ୟ ଶାସକ ଓ ପ୍ରଜାଙ୍କ ମଧ୍ୟରେ ରହିଥିବା ଦୂରତ୍ୱକୁ ସଂକୁଚିତ କରି ଶ୍ରୀଜଗନ୍ନାଥ ସଂସ୍କୃତିରେ ଏକ ମହାନ ପରମ୍ପରାର ସୂତ୍ରପାତ କରିଛି ।

ଶ୍ରୀଜଗନ୍ନାଥଙ୍କର ପ୍ରାତ୍ୟହିକ ସେବାବିଧିରେ ପୂର୍ବେ ଗଜପତିମାନେ ସକ୍ରିୟ ଭୂମିକା ଗ୍ରହଣ କରୁଥିଲେ । ପ୍ରତ୍ୟୟ ଶ୍ରୀଜଗନ୍ନାଥଙ୍କୁ ସୁବର୍ଣ୍ଣ ଆଳତିଦାନିରେ ଆଳତି କରିବା ପରେ ଆଲଟଚାମର ସେବା ସମାହିତ କରିଥାନ୍ତି । ଗଜପତିଙ୍କ ଦ୍ୱାରା ଏହି ନୀତି ସମାହିତ ହେଉଥିବାରୁ ଏହାକୁ 'ରାଜନୀତି' କୁହାଯାଏ । ଏହାପରେ ସେମାନେ ଗର୍ଭଗୃହ ସମାର୍ଜନ କରୁଥିଲେ । ପରବର୍ତ୍ତୀକାଳରେ ଗଜପତି ଯେଉଁଦିନ ଶ୍ରୀମନ୍ଦିରକୁ ଯାଉଥିଲେ, ସେହିଦିନ ଏହିକର୍ମ କରୁଥିଲେ । ମାତ୍ର କାଳକ୍ରମେ ଗଜପତିଙ୍କ ଦ୍ୱାରା ଶ୍ରୀମନ୍ଦିରର ଗର୍ଭଗୃହ ସମାର୍ଜନ ପ୍ରକ୍ରିୟା ଲୋପ ପାଇ ତାଙ୍କର ପ୍ରତିନିଧି ମୁଦିରଥଙ୍କ ଦ୍ୱାରା ସମାହିତ ହେଉଛି ।

ପୂର୍ବେ ଗଜପତିମାନେ ଯେ କେବଳ ଶ୍ରୀମନ୍ଦିରର ଗର୍ଭଗୃହ ସମାର୍ଜନ କରୁଥିଲେ ତାହାନୁହେଁ, ସ୍ନାନପୂର୍ଣ୍ଣିମା ଦିନ ସ୍ନାନମଣ୍ଡପରେ ମଧ୍ୟ ସେମାନେ ଛେରାପହଁରା କରୁଥିଲେ । ଚନ୍ଦନଯାତ୍ରା ସମୟରେ ଚାପ ଉପରେ ଏହା ସମାହିତ ହେଉଥିଲା । ଏହାଛଡା ଦୋଳବେଦୀରେ ମଧ୍ୟ ସେମାନେ ଛେରାପହଁରା କରୁଥିଲେ । ମାତ୍ର ଏହା ଏବେ ମୁଦିରଥଙ୍କ ଦ୍ୱାରା ସମାହିତ ହେଉଛି ।

ଶ୍ରୀଜୀଉମାନେ ରଥ ଉପରକୁ କିମ୍ବା ସ୍ନାନମଣ୍ଡପକୁ ବିଜେ କଲାବେଳେ ଗଜପତି ପ୍ରଣାମ ଜ୍ଞାପନ ପୂର୍ବକ ଚନ୍ଦନଛେରା ପକାଇ ପହଣ୍ଡି ବିଜୟପଥ ସମାର୍ଜନ କରୁଥିଲେ । ପଦାବଳି ଯୁଗର ବିଶିଷ୍ଟ ସାଧକ ଗୌରଚରଣ ଅଧିକାରୀଙ୍କ ସୃଷ୍ଟିରେ ଏହାର ମନୋଜ୍ଞ ଆଲେଖ୍ୟ ଅଙ୍କିତ ହୋଇଛି –''ଆଗେ ଗଜପତି ଉଭା ହୋଇଛନ୍ତି, ଶିରେ ଯୋଡିକର ଦୁଇକି/ସୁନାଶୋଧନୀରେ ମାର୍ଜନା କରନ୍ତି, ପହଣ୍ଡି ବିଜୟ ଭୂଇଁକି ।'' ଗଜପତି ପ୍ରତାପରୁଦ୍ର ଦେବ ରଥମାର୍ଜନା ପରିବର୍ତ୍ତେ ରଥ ଆଗରେ ରଥଦାଣ୍ଡ ଓଳାଇ ଓଳାଇ ଯାଉଥିବା କଥା ଭିକାରୀ ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ରଥଚକଡାରୁ ଜଣାଯାଏ । ଶ୍ରୀଚୈତନ୍ୟ ନିଜବସ୍ତ୍ରରେ ରଥଯାତ୍ରା କାଳରେ ଗୁଣ୍ଡିଚା ଗୃହ ଓ ରତ୍ନବେଦୀ ସମାର୍ଜନ କରୁଥିବାର କଥା 'ଚୈତନ୍ୟ ଚରିତାମୃତ' ପ୍ରକାଶ କରିଛି– ''ନିଜ ବସ୍ତ୍ରେ କୈଲପ୍ରଭୁ ଗୃହ ସମାର୍ଜନ/ମହାପ୍ରଭୁ ନିଜ ବସ୍ତ୍ରେ ମାର୍ଜି ସିଂହାସନ ।'' ମାତ୍ର କ୍ରମେ ଏହି ଛେରାପହଁରା କର୍ମ ଗଜପତିଙ୍କ ଦ୍ୱାରା କେବଳ ରଥମାର୍ଜନାରେ ହିଁ ସୀମିତ ହୋଇ ରହିଯାଇଛି । ଗଜପତିଙ୍କ ବାହୁଡା ଯାତ୍ରା ରଥଯାତ୍ରା ଭଳି ଗୁରୁତ୍ୱ ସମ୍ପନ୍ନ ମନେହେଉ ନଥିବାରୁ ମୁଦିରଥଙ୍କ ଦ୍ୱାରା ଏହା ସମାହିତ ହେଉଥିଲା । ମାତ୍ର ବର୍ତ୍ତମାନ ଗଜପତିଙ୍କ ଦ୍ୱାରା ଉଭୟ ରଥଯାତ୍ରା ଓ ବାହୁଡା ଯାତ୍ରାରେ ଏହି ସେବାବିଧି ଯଥାରୀତି ପାଳିତ ହେଉଛି ।

ଶ୍ରୀଜୀଉମାନେ ଧାଡିପହଣ୍ଡିରେ ବିଜେକରି ରଥାରୂଢ ହେବାପରେ 'ଚାଙ୍ଗଡାମେକାପ' ଯୋଗାଇଥିବା 'ଗୋଲ ତକିଆ' ସେମାନଙ୍କର ପୃଷ୍ଠ ଦେଶରେ ଲାଗି କରାଯାଏ । ଏହାକୁ ଚକାଅଣସର ବୋଲି କୁହାଯାଏ । ତା'ପରେ ଯାତ୍ରାକାଳୀନ ଦୁର୍ଘଟଣା ଏଡାଇବା ପାଇଁ ସିଂହାସନ ସଂଲଗ୍ନ ପୃଷ୍ଠଦେଶର ପ୍ରଭା ସହିତ ଶ୍ରୀଜୀଉମାନେ ପାଟଡୋରରେ ରୁନ୍ଧା(ବନ୍ଧା) ହୁଅନ୍ତି । ତା'ପରେ





ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କର ଚଳନ୍ତି ପ୍ରତିମା ମଦନମୋହନ ଓ ରାମକୃଷ୍ଣ ଯଥାକ୍ରମେ ନନ୍ଦିଘୋଷ ଓ ତାଳଧ୍ଵଜ ରଥରେ ଆସୀନ ହୁଅନ୍ତି । ତା'ପରେ ଶ୍ରୀଜୀଉମାନେ ଚିତାଲାଗି ହୁଅନ୍ତି । ଏହାପରେ ସିଂହାରୀମାନେ ସେମାନଙ୍କୁ ବେଶ କରାନ୍ତି । ପାଟବସ୍ତ୍ରରେ ସେମାନଙ୍କୁ ବେଶ କରିବା ପରେ ନାସାରେ ଫୁଲର ନାକୁଆସୀ, ଗୁଣା, ତିଳକ, ଅଧରମାଳ ପ୍ରଭୃତି ଲାଗିକରି ସିଂହାରୀମାନେ ସଜାଇଲା ପରେ ଗଜପତିଙ୍କ ଦ୍ଵାରା ଛେରାପହଁରା ସେବାବିଧି ପାଇଁ ପ୍ରସ୍ତୁତି ସମାହିତ ହୁଏ ।

'ଛେରା ପହଁରା' କର୍ମ ସମ୍ପାଦନ ପାଇଁ ଗଜପତି ବ୍ରତାଚରଣ ପୂର୍ବକ ରାଜଗୁରୁଙ୍କ ଉପସ୍ଥିତିରେ ଶ୍ରୀନବରରେ ଶ୍ରୀଗଣେଶ, କନକଦୁର୍ଗା, ବିଷ୍ଣୁ, ଶିବ ଓ ସୂର୍ଯ୍ୟ ପ୍ରଭୃତି ପଞ୍ଚଦେବଦେବୀଙ୍କର ଉପାସନା କରିଥାନ୍ତି । ଏହାପରେ ରାଜଗୁରୁଙ୍କ ଦ୍ଵାରା ଦଶବିଧ ଉପଚାରରେ ମଙ୍ଗଳାରୋପଣ କର୍ମ ସମାହିତ ହୋଇଥାଏ । ତା'ପରେ ଗଜପତି ମହାରାଜା ଶୁକ୍ଳବସ୍ତ୍ର, ନୀଳରଙ୍ଗର କମରପଟୀ, ଲାଲ୍‌ରଙ୍ଗର ପଇତାପଟି, ଲାଲ୍‌ରଙ୍ଗର ପାଛୁଡା (ଉତ୍ତରୀୟ) ପରିଧାନ ସହିତ ଅଣ୍ଟାରେ ଭାଜଦଣ୍ଡ (ତରବାରି) ଝୁଲାଇ ମୁଣ୍ଡରେ ପରତୁଳ ସଂଯୋଜିତ ଜରିଲଗା ଶୁଭ୍ରପାଗ ପିନ୍ଧି ଛେରାପହଁରା ପାଇଁ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ବିଧିବଦ୍ଧ ଆମନ୍ତ୍ରଣକୁ ପ୍ରତୀକ୍ଷା କରିଥାନ୍ତି ।

ରଥାରୂଢ ଶ୍ରୀଜୀଉଙ୍କର ମାଳଚୂଳାଦି ଲାଗି କର୍ମ ସମାପନ ପରେ ସେବାୟତମାନେ ଆଜ୍ଞାମାଳ ନେଇ ଛେରାପହଁରା ପାଇଁ ଗଜପତିଙ୍କୁ ଆନୁଷ୍ଠାନିକ ରୀତିରେ ଆମନ୍ତ୍ରଣ କରିବାକୁ ରାଜନଅରକୁ ଯାଇଥାନ୍ତି । ଏହାପରେ ଗଜପତି ବେଦଜ୍ଞ ବ୍ରାହ୍ମଣଙ୍କ ସ୍ତୋତ୍ରପାଠ ମଧ୍ୟରେ ରାଜନଅରର ଅଧିଷ୍ଠାତ୍ରୀ ଦେବୀ କନକଦୁର୍ଗାଙ୍କୁ ଦର୍ଶନକରି ଛେରାପହଁରା ପାଇଁ ରାଜଉଆସରୁ 'ତାମ୍‌ଯାନ୍'ରେ ବିଜେ କରନ୍ତି । କାଶୀର ରାଜା ନରପତି, ମଦ୍ର ଦେଶର ରାଜା ଅଶ୍ଵପତି, ମହାରାଷ୍ଟ୍ରର ରାଜା ଛତ୍ରପତି ଭାବରେ ଚିହ୍ନିତ ହେଉଥିବାବେଳେ ଉତ୍କଳାଧିପତି 'ଗଜପତି' ଭାବରେ ବିଦିତ ହୋଇଛନ୍ତି । ତେଣୁ ପୂର୍ବେ ଗଜପତିମାନେ ଗଜାରୂଢ ହୋଇ ଛେରାପହଁରା କରିବାକୁ ଯାଉଥିଲେ । ପରବର୍ତ୍ତୀକାଳରେ ଗଜପତିଙ୍କର ଛେରାପହଁରା ଶୋଭାଯାତ୍ରାର ଅଗ୍ରଭାଗରେ ସୁସଜ୍ଜିତ ହାତୀ ସାମିଲ୍ ହୋଇ ଗଜପତିଙ୍କୁ ବାଟ କଢେଇ ଆଣୁଛି । ଗଜପତିଙ୍କ ସହଯାତ୍ରୀ ଭାବରେ ଥାଟରାଜା, କୁମାର ସାହେବ, ଶ୍ରୀନଅରର ପରିଛା, ବକ୍‌ସି, ରାୟଗୁରୁ ଓ ରାଜଗୁରୁ ପ୍ରମୁଖ ଯାଇଥାନ୍ତି । ଏହି ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଶ୍ଵେତଛତ୍ର, ଚାମର, ଆଲଟ ପ୍ରଭୃତି ବ୍ୟବହୃତ ହୋଇଥାଏ ।

ଗଜପତି ପ୍ରଥମେ ବଡଠାକୁର ବଳଭଦ୍ରଙ୍କ ରଥ ସମ୍ମୁଖରେ ଉପଗତ ହେବାପରେ ଦଇତାପତିମାନେ ତାଙ୍କୁ ଚାରମାଳ ଦେଇ ରଥ ଉପରକୁ ପାଛୋଟି ଆଣିଥାନ୍ତି । ଏହି ସମୟରେ ଚନ୍ଦନ ଓ ରୂପାରେ ଧୂପଦାନି ସହିତ 'ଘଟୁଆରି', ଶ୍ଵେତବର୍ଣ୍ଣର ପୁଷ୍ପ ସହିତ 'ଦୟଣାମାଳୀ' ରୂପାପିଙ୍ଗଣ (ପାତ୍ର) ଧରି ମୁଦୁଲି, ସୁନା ଆଳତି, କର୍ପୂର ଓ ଆଲଟଚାମର ଧରି 'ମେକାପ' ଓ ପାଣିଝରି ଧରି ଗରାବଡୁ ଅପେକ୍ଷା କରି ରହିଥାନ୍ତି । ଗଜପତି ପ୍ରଥମେ ରଥଗର୍ଭ ମଧ୍ୟକୁ ଯାଇ ମହାପ୍ରଭୁ ବଳଭଦ୍ରଙ୍କୁ ଦଣ୍ଡପ୍ରଣାମ କରି ଗରାବଡୁଙ୍କ ପାଖରୁ ଜଳନେଇ ହାତୁଆଣିକରି (ହାତ ଧୋଇ) ଦୁଇଖଣ୍ଡ ଶୁକ୍ଳବସ୍ତ୍ର ଅର୍ପଣ କରନ୍ତି । ଏହାକୁ ନିଉଛାଳି କୁହାଯାଏ । ତା'ପରେ ଦୟଣାମାଳୀଠାରୁ ଫୁଲ ଓ ଘଟୁଆରିଙ୍କ ପାଖରୁ ଚନ୍ଦନ ଆଣି ଶ୍ରୀଜୀଉଙ୍କଠାରେ ଲାଗି କରିବା ପରେ କର୍ପୂର ଆଳତି କରିଥାନ୍ତି । ଏହାପରେ ମେକାପଙ୍କଠାରୁ ସ୍ଵର୍ଣ୍ଣବେଷ୍ଟିଯୁକ୍ତ ଆଲଟଚାମର ନେଇ ବଡଠାକୁରଙ୍କୁ ଆଲଟଚାମର ସେବା କରିବା ପରେ ପ୍ରଣାମକରି ପୟରମାଳ ଗ୍ରହଣପୂର୍ବକ ଗର୍ଭଗୃହରୁ ବାହାରି ଆସନ୍ତି । ପ୍ରତ୍ୟେକ ସେବାର ସମାପ୍ତି ଓ ଅନ୍ୟସେବାର ଆରମ୍ଭ ପୂର୍ବରୁ ଗଜପତି ହସ୍ତ ପ୍ରକ୍ଷ୍ୟାଳନ କରିଥାନ୍ତି । ଏହି ସମୟରେ କାହାଳୀବାଜି ପ୍ରତ୍ୟେକ ସେବାର ଶେଷ ଓ ଅନ୍ୟ ସେବାର ଆରମ୍ଭ ସମ୍ପର୍କରେ ସୂଚନା ଦେଇଥାଏ ।

ଛେରା ପହଁରାରେ ଅନୁସୃତ ଏହି ପ୍ରାଥମିକ ବିଧିବ୍ୟବସ୍ଥାର ସମାପନ ପରେ ପ୍ରକୃତ ଛେରାପହଁରା ଆରମ୍ଭ ହୋଇଥାଏ । ବାହାଳୀ ବାଜିବା ପରେ 'ଦୟଣାମାଳୀ' ଦେଇଥିବା ଶ୍ଵେତପୁଷ୍ପକୁ ଭଣ୍ଡାର ମେକାପ ରୂପାପିଙ୍ଗଣ(ପାତ୍ର)ରେ ଧାରଣକରି ରଥ ଚତୁଃପାର୍ଶ୍ଵସ୍ଥ ରଥବେଦୀରେ ପକାଇ ରଥମାର୍ଜନା ପାଇଁ ଗଜପତିଙ୍କୁ ଅନୁରୋଧ କରନ୍ତି । ଗଜପତି ରଥପରିକ୍ରମା ପୂର୍ବକ ସୁନାବେଷ୍ଟିଯୁକ୍ତ ଖଡିକାରେ ରଥମାର୍ଜନା କରନ୍ତି । ଭଣ୍ଡାର ମେକାପଙ୍କ ଦ୍ଵାରା ପକାଯାଇଥିବା ଶ୍ଵେତପୁଷ୍ପକୁ ଖରକିବା ପରେ କାହାଳୀ ବାଜିଉଠେ । ରଥ ମାର୍ଜନାବେଳେ ରାଜପରିବାରର ସଦସ୍ୟ ତଥା ବରିଷ୍ଠ ରାଜକର୍ମଚାରୀମାନେ ତାଙ୍କୁ ଅନୁସରଣ କରିଥାନ୍ତି । କାହାଳୀ ବାଜିବାପରେ ରାଜଗୁରୁଙ୍କ ନିର୍ଦ୍ଦେଶକ୍ରମେ ତଡାଉକରଣ ଧାରଣ କରିଥିବା ରୂପାପିଙ୍ଗଣରୁ ବହଳିଆ ଘୋରା ଚନ୍ଦନ ନେଇ ରଥଭୂମିରେ ପକାଇଥାଆନ୍ତି । ଗଜପତି ରଥମାର୍ଜନା କରିବା ପରେ





ଦେଉଳକରଣ ତମ୍ବାପାତ୍ରରୁ ଚନ୍ଦନଗୁଣ୍ଡ ରଥଭୂମିରେ ଛିଞ୍ଚିଥାନ୍ତି । ଗଜପତି ତୃତୀୟଥର ରଥ ସମାର୍ଜନ କରିବାପରେ ବଡଠାକୁରଙ୍କୁ ଆଲିଙ୍ଗନ ପୂର୍ବକ ପ୍ରଣାମଜ୍ଞାପନ କରିଥାନ୍ତି । ଏହାପରେ ଦଇତାପତିମାନେ ପୟରମାଳି, ଶ୍ରୀକପଡା ଓ ମହାପ୍ରସାଦ ଆଣି ପିଙ୍ଗଣରେ ଦିଅନ୍ତି । ରାଜଗୁରୁ ସେସବୁକୁ ଗଜପତିଙ୍କ ମସ୍ତକରେ ଲଗାଇ ଅଭିମନ୍ତ୍ରିତ କରିବା ପରେ ପୟରମାଳ ଓ ଶ୍ରୀକପଡାକୁ ଗଜପତିଙ୍କ ଗଳାରେ ପିନ୍ଧାଇ ଦିଅନ୍ତି । ଏହାପରେ ଗଜପତି ତାମ୍‌ଯାନ୍‌ରେ ନନ୍ଦିଘୋଷ ଓ ଦେବଦଳନ ରଥକୁ ଯାଇ ଛେରାପହଁରା କରିଥାନ୍ତି ।ମହାପ୍ରଭୁଙ୍କର ଏହି ସେବାବିଧି ପାଇଁ ଗଜପତି କୌଣସି ସ୍ୱତନ୍ତ୍ର ଭତ୍ତା ନେଇନଥାନ୍ତି । ଛେରାପହଁରା ଏକ ମହନୀୟ ପରମ୍ପରା ରୂପେ ଶ୍ରୀଜଗନ୍ନାଥ ସଂସ୍କୃତିକୁ ମହିମାମଣ୍ଡିତ କରିଆସୁଛି ।

ମଣ୍ଡୁଆ, କେନ୍ଦୁଝରଗଡ଼-୭୫୮୦୭୪

# ନୀଳାଦ୍ରି ଅନୁଚିନ୍ତା

**ବିଜୟ କୁମାର ମହାନ୍ତି**

ଜଗତ କରତା ଜଗତନାଥ ଜଗଦୀଶ୍ୱରେ,
ରହିଥାଉ ମୋର ଧିଆନ ଜନ୍ମ ଜନମାନ୍ତରେ ।୧।

ମିଶିଯାଉ ମୋର ପରାଣ ସେଇ ନୀଳ କନ୍ଦରେ,
ହଜିଯାଉ ଯଥା ତଟିନୀ ମିଶେ ନୀଳସାଗରେ ।୨।

ମିଶିଯାଉ ମୋର ନୟନ ସେଇ ଚକାନୟନେ,
ନିରେଖୁ ସେ ମହାଜ୍ୟୋତିକୁ ତେଜୋମୟ
ତପନେ ।୩।

ମିଶିଯାଉ ମୋର ଏ କର ସେଇ ବିପୁଳ କରେ,
ଲଭୁଥାଉ ସୁଖ ଶ୍ରୀଭୁଜ ପ୍ରେମ ଆଲିଙ୍ଗନରେ ।୪।

ଝରିଯାଉ ଦିନେ ଜୀବନ-କଳି ସେଇ ଧାମରେ,
ରହିଥାଉ ଆଶା ଭେଟିବ ଧନେ ଜନ୍ମ ଜନ୍ମରେ ।୫।



ପାଉଥାଉ ଟଙ୍କତୋରାଣି ଜୀବ ଯିବା ବେଳରେ,
ଲଭୁଥାଉ ବଇଷ୍ଣବାଗ୍ନି ଶେଷେ ତା କରୁଣାରେ ।୬।

ଯାଉ ଥାଉ ମୋର ଶରୀର ସେଇ ସିଂହ ଦୁଆରେ,
ଲମ୍ବିଥାଉ ତା ଛଡାମାଳ ମୋର ହୃଦୟ ପରେ ।୭।

ଜଳୁଥାଉ ଜୁଇ ଅଦୂରେ ସେଇ ସ୍ୱର୍ଗ ଦୁଆରେ,
ଲିଭିଯାଉ ଶେଷ ଦୃଶ୍ୟ ମୋ ଜୀବନ ନାଟକରେ ।୮।

'ଅଭିନବ ଶ୍ରୀକ୍ଷେତ୍ର'
ସ୍ୱର୍ଣ୍ଣଗଡ଼ 'ମୁରସିଂହ', ବଲାଙ୍ଗୀର








# ଶ୍ରୀଜଗନ୍ନାଥଙ୍କ ସେବାରେ ଗଜପତି ଠାକୁର ରାଜା

ବିରଞ୍ଚିନାରାୟଣ ପାଣିଗ୍ରାହୀ

ପୁରୀର ଠାକୁର ରାଜାଙ୍କ ନାମ ପୂର୍ବରୁ 'ବୀରଶ୍ରୀ ଗଜପତି, ଗୌଡେଶ୍ୱର, ନବକୋଟି, କର୍ଣ୍ଣାଟୋତ୍କଳ , କଳବର୍ଗେଶ୍ୱର, ଅଭୟତି ଭୂତ ଭୈରବ, ଦୁଃସହ ଦୁଃଶାସନ, ଅନିନିରଣେ ରାଉତରାଏ, ଅତୁଳବଳି ପରାକ୍ରମ, ସଂଗ୍ରାମେ ସହସ୍ରବାହୁ, କ୍ଷତ୍ରିୟକୁଳ ଧୂମକେତୁ, ବୀରାଧିବୀରବର ମହାପ୍ରତାପୀ, ଶ୍ରୀଶ୍ରୀଶ୍ରୀ ମହାରାଜା (ମହାରାଜାଙ୍କ ନାମ) ଲେଖାଯାଏ । ଗତପତି ମହାରାଜା ଶ୍ରୀଜଗନ୍ନାଥଙ୍କ ସେବା ପୂଜାନୀତି ସହ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟକ୍ଷ ସମ୍ପର୍କ ରଖି ଶ୍ରୀଜଗନ୍ନାଥ ସଂସ୍କୃତିର ପୃଷ୍ଟପୋଷକତା କରୁଥିବାରୁ ତାଙ୍କୁ ଉତ୍କଳର ଠାକୁର ରାଜା କୁହାଯାଏ । କାଶୀ ରାଜାଙ୍କୁ ନରପତି, ମହାରାଷ୍ଟ୍ର ଦେଶର ରାଜାଙ୍କୁ ଛତ୍ରପତି, ମଦ୍ରଦେଶର ରାଜାଙ୍କୁ ଅଶ୍ୱପତି କୁହାଯିବା ଭଳି ପୁରୀ ମହାରାଜାଙ୍କୁ ଗଜପତି କୁହାଯାଏ । ଗଜପତି ଠାକୁର ରାଜାଙ୍କୁ ଜନସାଧାରଣ ଚଳନ୍ତି ଜଗନ୍ନାଥ ରୂପେ ମାନ୍ୟତା ପ୍ରଦାନ କରି ପବିତ୍ରତାର ଅଧିକାରୀ ହେବାର ଗୌରବ ପ୍ରଦାନ କରିଥାଆନ୍ତି । ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ଓ ଶ୍ରୀଜଗନ୍ନାଥ ବିଗ୍ରହ ପ୍ରତିଷ୍ଠାତା ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କର ଦାସ ରୂପେ ନିଜକୁ ସମର୍ପଣ କରିଦେଇ, ଦେବତା, ଗନ୍ଧର୍ବ, ଯକ୍ଷ ଆଦି ଆଶ୍ରୟ କରିଥିବା ପ୍ରଭୁଙ୍କ ପରମ ପଦ-ପଙ୍କଜର ସେବା ପ୍ରଦାନ କରିବା ପାଇଁ ପ୍ରାର୍ଥନା କରିଛନ୍ତି । ବ୍ରହ୍ମପୁରାଣରେ ବର୍ଣ୍ଣନା କରାଯାଇଛି-

''ପ୍ରୀତୋସ୍ମି ଯଦି ମେ ନାଥ, ବୃଣୋପି ବର ମୁତ୍ତମମ୍ ।
ଦେବା ସୁରାସ ଗନ୍ଧର୍ବା ଯକ୍ଷୋ, ରକ୍ଷୋ ମହୋରଗାଃ ॥
ନିର୍ଗୁଣଂ ନିର୍ମଳଂ ଶାନ୍ତଂ ଯତ୍ ପଶ୍ୟନ୍ତି ମନୀଷିଣଃ ।
ତତ୍ ପଦଂଗନ୍ତୁ ମିଚ୍ଛାମି ତ୍ୱତ୍ ପ୍ରସାଦାତ୍ ସୁଦୁର୍ଲ ଭଂ ॥'

ଇନ୍ଦ୍ରଦ୍ୟୁମ୍ନଙ୍କ ପରେ ତାଙ୍କର ପରବର୍ତ୍ତୀ ଗଜପତି ମହାରାଜାମାନେ ପ୍ରଭାବିତ ହୋଇ ଶ୍ରୀଜଗନ୍ନାଥଙ୍କର ଅଙ୍ଗସେବା କରି ପରମ ସେବକର ମହନୀୟ, ପବିତ୍ର ତଥା ପାରମ୍ପରିକ ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖି ଠାକୁର ରାଜା ରୂପେ ଗୌରବର ମହିମାନ୍ୱିତ ହୋଇଥିଲେ । ଗଜପତି ମହାରାଜା ଶ୍ରୀଜଗନ୍ନାଥଙ୍କ ଅଙ୍ଗସେବା କରିବା ସଙ୍ଗେ ସଙ୍ଗେ ରଥ ମାର୍ଜନା ଓ ଛେରା ପହଁରା ଦ୍ୱାଦଶ ଯାତ୍ରାରେ ରାଜନୀତି ବନ୍ଦାପନା ସମ୍ପାଦିତ କରୁଥିଲେ । ମୋଗଲ ଓ ମରହଟ୍ଟା ଶାସନରେ ରାଜାଙ୍କର ଅନୁପସ୍ଥିତିରେ ମୁଦ୍ରାହସ୍ତ ବା ମୁଦିରଥ ଏବଂ ତାଙ୍କ ଅନୁପସ୍ଥିତିରେ ଭିତରଚ୍ଛୁ ମହାପାତ୍ର ରାଜ ପ୍ରତିନିଧି ରୂପେ ସେବାକାର୍ଯ୍ୟ କରୁଥିଲେ ।

ଗଜପତି ମହାରାଜା ରାମଚନ୍ଦ୍ର ଦେବଙ୍କ ସମୟରେ ରାଜପ୍ରତିନିଧି ମୂଳକ ସେବାକାର୍ଯ୍ୟ ପ୍ରଚଳିତ ହୋଇଥିଲା । ରଥଯାତ୍ରାରେ ରଥମାର୍ଜନା-ଛେରା ପହଁରା ଓ ରାଜନୀତି ବନ୍ଦାପନା କାର୍ଯ୍ୟ ରାଜପ୍ରତିନିଧିଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା । ପ୍ରଥମ ସେବକ ହିସାବରେ ଜୀଉମାନଙ୍କର ରଥମାର୍ଜନା-ଛେରାପହଁରା ଓ ରାଜ ବନ୍ଦାପନା ନୀତି ଠାକୁର ରାଜାଙ୍କ ଦ୍ୱାରା ଆଜିପର୍ଯ୍ୟନ୍ତ ପରମ୍ପରାକ୍ରମେ ସମ୍ପାଦିତ ହୋଇଆସୁଛି । ଶ୍ରୀଜୀଉମାନଙ୍କୁ ରଥରେ ଉପାସନା, ଘୋରା ଚନ୍ଦନ ଛିଞ୍ଚି, ପୁଷ୍ପ ପକାଇ ଓଳାଇବା କାର୍ଯ୍ୟ ହିଁ ଛେରା ପହଁରାର ଅନ୍ତର୍ଭୁକ୍ତ । ଅସାଧାରଣ ବ୍ୟକ୍ତିତ୍ୱ ସମ୍ପନ୍ନ ସ୍ୱୟଂ ଗଜପତି ଠାକୁର ରାଜାଙ୍କ ଦ୍ୱାରା ଏହା ସମ୍ପାଦିତ ହେଉଥିବାରୁ ଜୀଉମାନଙ୍କ ସେବା ପୂଜା ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଯୁକ୍ତ, ମହନୀୟ ଓ ପବିତ୍ର ନୀତିରୂପେ ମାନ୍ୟତା ପାଇସାରିଛି । ରଥଯାତ୍ରାରେ ରଥମାର୍ଜନା-ଛେରାପହଁରା ନୀତି ଏକ ଅପରିହାର୍ଯ୍ୟ ନୀତି ଚକ୍ରକ୍ଷେତ୍ର ତଥା ଏକାମ୍ରକ୍ଷେତ୍ର ଭୁବନେଶ୍ୱରରେ ଚୈତ୍ର ଶୁକ୍ଳ ଅଷ୍ଟମୀ 'ଅଶୋକାଷ୍ଟମୀ'ର ଶ୍ରୀଲିଙ୍ଗରାଜଙ୍କର ରକୁଣା ରଥଯାତ୍ରା, ଗଦାକ୍ଷେତ୍ର ତଥା ଶକ୍ତିକ୍ଷେତ୍ର ଯାଜପୁରରେ ଦଶହରା ସମୟରେ ମା' ବିରଜାଙ୍କର ରଥଯାତ୍ରା ଏବଂ ପଦ୍ମକ୍ଷେତ୍ର ତଥା ଅର୍କକ୍ଷେତ୍ର କୋଣାର୍କରେ ମାଘ ଶୁକ୍ଳ ସପ୍ତମୀର ସୂର୍ଯ୍ୟ ନାରାୟଣଙ୍କ




ରଥଯାତ୍ରାରେ ଛେରାପହଁରା ନୀତିବିଧି ରକ୍ଷା ପୂର୍ବକ ଜଣେ ସେବକଙ୍କ ଦ୍ୱାରା କରାଯାଉଥିଲେ ମଧ୍ୟ ଶ୍ରୀକ୍ଷେତ୍ରରେ ଆଷାଢ ଶୁକ୍ଳ ଦ୍ୱିତୀୟାର ରଥଯାତ୍ରା ଓ ଶୁକ୍ଳ ଦଶମୀର ବାହୁଡା ଯାତ୍ରାରେ ଜୀଉଙ୍କର ପ୍ରଥମ ସେବକ ସ୍ୱୟଂ ଗଜପତି ଠାକୁରରାଜା ରଥମାର୍ଜନା, ଛେରାପହଁରା ଓ ରାଜନୀତି ବନ୍ଦାପଦା କାର୍ଯ୍ୟ କରିଥାଆନ୍ତି । ରଥଯାତ୍ରା ସମୟରେ ରଥମାର୍ଜନା ଓ ଛେରା ପହଁରା ନୀତି କପିଳେନ୍ଦ୍ର ଦେବଙ୍କ ଦ୍ୱାରା ପ୍ରଚଳନ କରାଯାଇଥିବାର କୁହାଯାଉଥିବା ବେଳେ ଅନ୍ୟ କେତେକଙ୍କ ମତରେ ରାଜା ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ପ୍ରଥମେ ପ୍ରଚଳନ କରାଯାଇଥିଲା । ସେ ଯାହାହେଉ ରଥଯାତ୍ରା ଆରମ୍ଭର ବହୁଦିନ ପରେ ଛେରାପହଁରା କାର୍ଯ୍ୟ ଆରମ୍ଭ ହୋଇଥିବାର ଜଣାଯାଏ । ମାତ୍ର ବହୁତ ପୂର୍ବରୁ ଠାକୁର ରାଜା ଗଜପତିଙ୍କ ଦ୍ୱାରା ଛେରା ପହଁରା ନୀତି ସମୟର ପରିବର୍ତ୍ତନ ସହିତ ପରମ୍ପରା ବିବର୍ତ୍ତିତ ହୋଇଅଛି । ଏହି ବିଧି ବ୍ୟବସ୍ଥାରେ ବହୁତ ପରିବର୍ତ୍ତନ ହୋଇଯାଇଛି । ଠାକୁର ରାଜା ଗଜପତି ହେଉଛନ୍ତି ଜୀଉଙ୍କର ଆଦ୍ୟ ତଥା ଆର୍ଯ୍ୟ ସେବକ । ଶ୍ରୀଜଗନ୍ନାଥଙ୍କର ବାରମାସରେ ତେରଯାତ୍ରା ଅନୁଷ୍ଠିତ ହୁଏ । ଏ ଯାତ୍ରାମାନଙ୍କ ମଧ୍ୟରେ ଶ୍ରେଷ୍ଠଯାତ୍ରା ହେଉଛି ସ୍ନାନ ଯାତ୍ରା ଓ ଗୁଣ୍ଡିଚାଯାତ୍ରା । ସ୍ନାନ ଯାତ୍ରା ହେଉଛି ଶ୍ରୀଗୁଣ୍ଡିଚା ରଥଯାତ୍ରାର ଆଦ୍ୟପର୍ବ । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଲେଖିଛନ୍ତି:-

'ସ୍ନାନ ଗୁଣ୍ଡିଚାଏ ବେନି ସ୍ୱୟଂ ଲୀଳା ଯାର ।
ପତିତ ପାବନ ଅର୍ଥେ ପ୍ରାସାଦୁଁ ବାହାର ।।'

ସମସ୍ତ ଯାତ୍ରାମାନଙ୍କ ମଧ୍ୟରୁ ଏ ଦୁଇଟି ଯାତ୍ରା ଭିନ୍ନ ପ୍ରକାରର । ଅନ୍ୟ ଯାତ୍ରାମାନଙ୍କରେ ଜୀଉଙ୍କର ଚଳନ୍ତି ପ୍ରତିମା ବା ବିଜେ ପ୍ରତିମା ଯାତ୍ରା କରୁଥିବାବେଳେ କେବଳ ସ୍ନାନ ଓ ଗୁଣ୍ଡିଚା ରଥଯାତ୍ରାରେ ସ୍ୱୟଂ 'ଚତୁର୍ଦ୍ଧା ମୂର୍ତ୍ତି ଯାତ୍ରା କରିଥାନ୍ତି । ଶ୍ରୀଜଗନ୍ନାଥଙ୍କ ନୀତି ସହ ଗଜପତି ମହାରାଜା ପାରମ୍ପରିକ ରୀତିରେ ପ୍ରତ୍ୟକ୍ଷଭାବେ ସମ୍ପୃକ୍ତ ହୋଇଥିବାରୁ ସାର୍ବଜନୀନ ରଥଯାତ୍ରାରେ ଛେରାପହଁରା ନୀତି ଅନ୍ୟତମ ଜନପ୍ରିୟ ଦେବନୀତି ଏବଂ ଏହା ଏକ ଅପରିହାର୍ଯ୍ୟ ନୀତି ରୂପେ ଗ୍ରହଣ କରାଯାଇଛି । ରଥଯାତ୍ରା ପୂର୍ବଦିନ ଶ୍ରୀନଅର ଆଗରେ ଥିବା ରଥଖଳାରେ ଥିବା ତିନିରଥକୁ ଜଗନ୍ନାଥଙ୍କ ଆଜ୍ଞାମାଳ ପାଇବା ପରେ ଶ୍ରୀମନ୍ଦିର ଆଗକୁ ଅଣାଯାଇଥାଏ । ରଥଯାତ୍ରା ଦିନ ସମସ୍ତନୀତି ଶେଷ ହେବାପରେ ରଥଟଣା ଯାଏ । ଏହି ନୀତିମାନଙ୍କ ମଧ୍ୟରେ ଗଜପତିଙ୍କ ଛେରାପହଁରା ମଧ୍ୟ ଗୋଟିଏ ନୀତି । ଛେରା ପହଁରା ପରେ ପରେ ରଥଟଣା ପ୍ରସ୍ତୁତି କାର୍ଯ୍ୟର ଅଗ୍ରଗତି ହୁଏ ।

ରଥଯାତ୍ରା ଦିନ, ସକାଳ ଓଳି ଗଜପତି ମହାରାଜା ଶ୍ରୀନଅର ମଧ୍ୟରେ ଥିବା କନକ ଦୁର୍ଗା, ଶିବ, ବିଷ୍ଣୁ, ଗଣେଶ ଓ ସୂର୍ଯ୍ୟଦେବ ଆଦି ପଞ୍ଚଇଷ୍ଟ ଦେବଦେବୀଙ୍କୁ ରାଜଗୁରୁଙ୍କ ସହାୟତାରେ ପୂଜା-ଆରାଧନା କରିଥାଆନ୍ତି । ପୂଜା ଶେଷ ହେବା ପରେ ଶ୍ରୀଜଗନ୍ନାଥଙ୍କ ଛେରାପହଁରା କାର୍ଯ୍ୟ ପାଇଁ ରଥ ପୋଷାକ ପରିଧାନ କରିବା ପାଇଁ ପ୍ରସ୍ତୁତ ହୁଅନ୍ତି । ଏହି ପୋଷାକ ପରିଧାନ କାଯ୍ୟରେ ଶ୍ରୀନଅର ବାରିକ ଓ ଦରଜୀ ଗଜପତିଙ୍କୁ ସହାୟତା କରନ୍ତି । ଗଜପତିଙ୍କ ମସ୍ତକରେ ଶୋଭା ପାଇବାକୁ ଥିବା ଶ୍ୱେତପାଟ ପଗଡି ନିର୍ଦ୍ଦିଷ୍ଟ ଢାଞ୍ଚାରେ ପ୍ରସ୍ତୁତ କରିବାକୁ ଅନେକ ସମୟ ଲାଗିଥାଏ । ଚତୁର୍ଦ୍ଧା ମୂର୍ତ୍ତି ରଥରେ ସ୍ୱସ୍ଥାନରେ ଉପବେଶନ କରିବା ପରେ ରୁନ୍ଧା, ସୋଲ ଚିତାଲାଗି, ଚଳନ୍ତି ଦେବତା ଯଥା ରାମ-କୃଷ୍ଣଙ୍କର ବଳଭଦ୍ରଙ୍କ ତାଳଧ୍ୱଜ ରଥରେ ଓ ମଦନମୋହନଙ୍କର ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥରେ ବିଜେ କରିବା ପରେ ଚତୁର୍ଦ୍ଧାମୂର୍ତ୍ତି ଜୀଉମାନଙ୍କୁ ବେଶ କରାଯାଇ ଛେରା ପହଁରା କାର୍ଯ୍ୟର ଶୁଭାରମ୍ଭ ନିମନ୍ତେ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୁଏ । ଛେରା ପହଁରା ନୀତି ପାଇଁ ଗଜପତିଙ୍କୁ ଆମନ୍ତ୍ରଣ କରାଯାଏ । ଗଜପତି ଶ୍ୱେତ ପାଇଜାମା ଓ ଚୁଡିଦାର, ନାଲି ରଙ୍ଗର ଉତ୍ତରୀୟ ନୀଳରଙ୍ଗର କମର ପଟି, ନାଲି ରଙ୍ଗର ପଇତାପଟି କମରରେ ଖଣ୍ଡା ଓ ଶ୍ୱେତପାଟ ପଗଡି ପରିଧାନ କରି ଶ୍ରୀନଅର ମଧ୍ୟରେ ପ୍ରସ୍ତୁତ ଥାଆନ୍ତି । ଶ୍ରୀନଅରରେ ଆରାଧ ଦେବୀ କନକ ଦୁର୍ଗାଙ୍କୁ ଦର୍ଶନ କରିବା ପରେ ଠାକୁର ରାଜା ଗଜପତି ଶ୍ରୀନଅର ମଧ୍ୟରେ ଥିବା ରୋପ୍ୟ ତାନ୍‌ଜାନ/ମେହେନା/ହାଦୋଳା/ପାଲିଙ୍କି ଆରୋହଣ କରି ଅତି ମନୋମୁଗ୍ଧକର ବେଶରେ ପଟୁଆର ସହ ତିନି ରଥ ନିକଟକୁ ଆସନ୍ତି । ପଟୁଆରର ଆଗରେ ପାଟହାତୀ ତା' ପଛରେ ତେଲିଙ୍ଗିବାଜା, ଧଳା ଓ କଳା ଛତ୍ର ଏବଂ ଆଲଟ ଚାମର ମଧ୍ୟରେ ରାଜ କର୍ମଚାରୀ ବିଶେଷତଃ କାହାଳିଆ, ରାଜଗୁରୁ, ଗରାବଡୁ, ଭଣ୍ଡାର ମେକାପ, ଦୟଣାମାଳୀ ଓ ଘଟୁଆରୀ ଆଦିଙ୍କ ଗହଣରେ ପ୍ରଥମେ ବଳଭଦ୍ରଙ୍କ ରଥ ନିକଟକୁ ଆସନ୍ତି । ଦଇତାପତିମାନେ ଗଜପତିଙ୍କୁ ସ୍ୱାଗତ କରି ତାଳଧ୍ୱଜ ରଥ ଉପରକୁ ନେଇଯାଆନ୍ତି । ଗଜପତି ପ୍ରଥମେ ବଡ ଠାକୁର ବଳଭଦ୍ରଙ୍କୁ ଦଣ୍ଡପ୍ରଣାମ ହେବା ପରେ ଗରାବଡୁ ପାଣିଝରିରେ ହାତଧୋଇ ଦୁଇଖଣ୍ଡ ଶୁକ୍ଳ ବସ୍ତ୍ର ଲାଗି କରନ୍ତି । ତା'ପରେ ପୁଷ୍ପ ଓ ଚନ୍ଦନ ଲାଗି କରାଇବା ପରେ ସୁନା ଆଳତି ଦାନୀରେ କର୍ପୂର ଆଳତି କରିବା ପରେ ଆଲଟ ଚାମର ସେବା କରିବା ପରେ ପୁନଃ ପୁନଃ ପ୍ରଣାମ କରି ଶ୍ରୀପୟର ମାଳା ଗ୍ରହଣ କରି ଚକା ବଇଠିରୁ ଓହ୍ଲାଇ ଆସିଥାଆନ୍ତି । ଏହାଦ୍ୱାରା ଗଜପତି ମହାରାଜାଙ୍କର ଶ୍ରୀଜୀଉ ଦର୍ଶନ, ଦଣ୍ଡପ୍ରଣାମ, ନିଉଛାଳି

(ଶ୍ୱେତ ବସ୍ତ୍ର) ପ୍ରଦାନ, ମାଳଚୂଳ ଓ ଫୁଲ ଚନ୍ଦନ ଲାଗି, ପୁଷ୍ପାଞ୍ଜଳି, କର୍ପୂର ଆଳତୀ, ଆଲଟ ଚାମର ସେବା ପ୍ରଭୃତି ବିଧି ସଂପାଦନ କରିଥାଆନ୍ତି । ଗଜପତିଙ୍କର ଏଭଳି ରାଜନୀତି ବନ୍ଦାପନା ପରେ କାହାଳୀ ବାଜେ । କାରଣ ଗୋଟିଏ ସେବାଶେଷ ହେଲେ କାହାଳୀ ବାଜିବା ବିଧି ରହିଛି । ଏହାପରେ ଗଜପତି ଧାତଧୋଇ ରଥ ଗର୍ଭଗୃହରେ ରଥମାର୍ଜନା କାର୍ଯ୍ୟ ଆରମ୍ଭ କରନ୍ତି । ଦୟଣାମାଳି ପ୍ରଦତ୍ତ ଧବଳ ପୁଷ୍ପକୁ ଭଣ୍ଡାର ମେକାପ ଏକ ରୌପ୍ୟ ପିଙ୍ଗଣରେ ଧରି ଶ୍ରୀଜୀଉ ଅବସ୍ଥାନ କରୁଥିବା ଗର୍ଭଗୃହର ଚାରିପାଖରେ ଥିବା ରଥଭୂମି ବା ରଥପୀଠରେ ପକାଇ ରଥ ମାର୍ଜନା ପାଇଁ ଗଜପତିଙ୍କୁ ଅନୁରୋଧ କରନ୍ତି । କାହାଳୀ ବାଜିବା ପରେ ରାଜଗୁରୁଙ୍କ ଅଭିମନ୍ତ୍ରିତ ସୁନାବେଣ୍ଟ ଥିବା ଖଡିକାକୁ ଗଜପତି ନେଇ ବଳଭଦ୍ରଙ୍କୁ ଦକ୍ଷିଣରେ ରଖି ବିଛାଇ ହୋଇ ଚାରିଆଡେ ପଡିଥିବା ପୁଷ୍ପଗୁଡିକୁ ଓଳାଇ ଥାଆନ୍ତି । ଗଜପତିଙ୍କ ପଛରେ ରାଜପରିଷଦଗଣ ଗଜପତିଙ୍କୁ ଅନୁଗମନ କରୁଥାଆନ୍ତି । ଏହାପରେ ରୌପ୍ୟ ପିଙ୍ଗଣରେ ଘଟୁଆରୀ ପ୍ରଦତ୍ତ ଘୋରାଚନ୍ଦନ ଓ ତାମ୍ର ପାତ୍ରରେ ଚୁରାଚନ୍ଦନକୁ ରାଜଗୁରୁ ଅଭିମନ୍ତ୍ରିତ କରିବା ପରେ ଚଢାଉକରଣ ଓ ଦେଉଳକରଣଙ୍କୁ ଅର୍ପଣ କରନ୍ତି । କାହାଳୀ ବାଜିବାମାତ୍ରେ ରାଜଗୁରୁଙ୍କ ସଙ୍କେତ କ୍ରମେ ଚଢାଉକରଣ ଧରିଥିବା ଘୋରାଚନ୍ଦନକୁ ରଥଭୂମିରେ ଅଭିସିଞ୍ଚିତ କରାଯାଏ । ଦ୍ୱିତୀୟ ଥର ରଥ ପରିକ୍ରମଣ କାର୍ଯ୍ୟ ହୁଏ । ଏହି କାର୍ଯ୍ୟପରେ ପବିତ୍ରିକରଣ କାର୍ଯ୍ୟ ଆରମ୍ଭ ହୋଇଥାଏ । ପୁନଶ୍ଚ କାହାଳୀ ବାଜିଲେ ଦେଉଳକରଣ ତାମ୍ର ପାତ୍ରରୁ ଚନ୍ଦନଗୁଣ୍ଡ ଛିଞ୍ଚିବା ପରେ ଗଜପତି କନକ ସମାର୍ଜନୀ ବା ସୁନା ଖଡିକାରେ ରଥଭୂମି ଚାରିପାଖ ପହଁରା କରି, ତୃତୀୟଥର ରଥ ପରିକ୍ରମା କରିଥାଆନ୍ତି । ଶେଷରେ ରଥ ଭିତରକୁ ଯାଇ ବଡ ଠାକୁର ବଳଭଦ୍ରଙ୍କୁ କୋଳ କରିଥାଆନ୍ତି । ଏହାପରେ ଦଇତାପତିମାନେ ଶ୍ରୀପୟର ମାଳ, ଶିରିକପଡା ଓ ମହାପ୍ରସାଦ ଆଣି ପିଙ୍ଗଣରେ ଦେଇଥାଆନ୍ତି । ଗଜପତିଙ୍କ ମସ୍ତକରେ ରାଜଗୁରୁ ସେସବୁ ସ୍ପର୍ଶ କରାଇ ଶ୍ରୀପୟର ଓ ଶିରିକପଡା ଗଜପତିଙ୍କ ଗଳାରେ ପିନ୍ଧାଇ ଦିଅନ୍ତି । ଏହି ଅନୁସାରେ ମାର୍ଜନ ସଂସ୍କାର ଓ ପବିତ୍ରିକରଣ ନିମିତ୍ତ ତିନିଥର ରଥ ପରିକ୍ରମା ସମାପନ ପରେ ତାଳଧ୍ୱଜ ରଥରୁ ଅବତରଣ କରି ମେହେନାରେ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ କିମ୍ବା କପିଧ୍ୱଜ ରଥକୁ ଯାଇ ରଥ ମାର୍ଜନା-ଛେରାପହଁରା କାର୍ଯ୍ୟ କରନ୍ତି ଓ ପୁନଶ୍ଚ- ସମାପନ ପରେ ମେହେନାରେ ସୁଭଦ୍ରାଙ୍କ ଦର୍ପଦଳନ ବା ପଦ୍ମଧ୍ୱଜ ଅଥବା ଶକ୍ତିଧ୍ୱଜ ରଥକୁ ଯାଇ ରଥମାର୍ଜନା ଓ ଛେରାପହଁରା କାର୍ଯ୍ୟ କରନ୍ତି । ତିନିରଥକୁ ଛେରା ପହଁରା ରଥ ମାର୍ଜନା ଓ ରାଜନୀତି ବନ୍ଦାପନା ସମାପନ ପରେ ରାଜନବରକୁ ତାନ୍‌ଜାନରେ ପଟୁଆର ସହ ପ୍ରତ୍ୟାବର୍ତ୍ତନ କରନ୍ତି । ଦିନସାରା ଉପବାସବ୍ରତ କରୁଥିବା ଗଜପତି ରାଜନବରରେ ହବିଷ୍ୟାନ୍ନ ସେବନ କରିବା ପରେ ରଥଯାତ୍ରା ଦର୍ଶନ କରିବା ପାଇଁ ରାଜନବର ଉପରେ ଥିବା ଆସନରେ ଉପବେଶନ କରିଥାଆନ୍ତି । ଏହା ହିଁ ଗଜପତି ମହାରାଜାଙ୍କ ରଥମାର୍ଜନା ଓ ଛେରାପହଁରା କାର୍ଯ୍ୟ ବିଧି କୁହାଯାଏ । ଜଗନ୍ନାଥଙ୍କ ନିକଟରେ ଏଭଳି ଛେରାପହଁରା କାର୍ଯ୍ୟକୁ ଚଣ୍ଡାଳର କାର୍ଯ୍ୟ ରୂପେ ବିବେଚନା କରି କାଞ୍ଚି ମହାରାଜା ତାଙ୍କ ରାଜକନ୍ୟା, ପୁରୁଷୋତ୍ତମ ଦେବ ଗଜପତି ଠାକୁର ରାଜାଙ୍କୁ ଚଣ୍ଡାଳ ଭଳି ଛେରାପହଁରା କାର୍ଯ୍ୟ କରୁଥିବା ଯୋଗୁଁ ବିବାହ ଦେବା ପାଇଁ ଅସ୍ୱୀକାର କରିଥିବାରୁ ଗଜପତି ପୁରୁଷୋତ୍ତମ ଦେବ ଓ କାଞ୍ଚିମହାରାଜାଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ପ୍ରଥମ ଥର ଯୁଦ୍ଧରେ ଗଜପତି ପୁରୁଷୋତ୍ତମ ଦେବ ପରାଜୟବରଣ କରିଥିଲେ । ଦ୍ୱିତୀୟ ଥର ଯୁଦ୍ଧରେ ସ୍ୱୟ ବଳଭଦ୍ର ଓ ଜଗନ୍ନାଥ କଳା ଓ ଧଳା ଘୋଡା ଦୁଇଟିରେ ଯାଇ ପୁରୁଷୋତ୍ତମ ଦେବଙ୍କୁ ସହାୟତା କରିଥିବାରୁ କାଞ୍ଚି ମହାରାଜ ଯୁଦ୍ଧରେ ପରାସ୍ତ ହେବାରୁ ରାଜକନ୍ୟାଙ୍କୁ ପୁରୁଷୋତ୍ତମ ନେଇ ଜଣେ ଚଣ୍ଡାଳ ସହ ବିବାହ ଦେବାକୁ ସ୍ୱ ମନ୍ତ୍ରୀଙ୍କୁ ଆଦେଶ ଦେଇଥିଲେ । ପରବର୍ଷ ରଥଯାତ୍ରା ସମୟରେ ଗଜପତି ପୁରୁଷୋତ୍ତମ ଦେବ ଛେରାପହଁରା କାର୍ଯ୍ୟ କରୁଥିବା ବେଳେ ଗଜପତିଙ୍କ ମନ୍ତ୍ରୀ, କାଞ୍ଚିରାଜ କନ୍ୟା ପଦ୍ମାବତୀଙ୍କୁ ନେଇ ଛେରା ପହଁରା କରୁଥିବା ରାଜାପୁରୁଷୋତ୍ତମ ଦେବ ଚଣ୍ଡାଳ ଭଳି କାର୍ଯ୍ୟ କରୁଥିବାରୁ ତାଙ୍କ ହସ୍ତରେ କାଞ୍ଚିରାଜ କନ୍ୟାଙ୍କୁ ଅର୍ପଣ କରିଥିଲେ । ଏ କାହାଣୀ ଓଡ଼ିଶା ଇତିହାସ ଓ ସାହିତ୍ୟରେ ରହିଛି । ଛେରାପହଁରା, ରଥମାର୍ଜନା ଓ ରାଜନୀତି ବନ୍ଦାପନା ଯୋଗୁଁ ଗଜପତି ଠାକୁର ରାଜା ବ୍ରାହ୍ମଣ ଭଳି ପୂଜାର୍ଚ୍ଚନା, କ୍ଷତ୍ରିୟ ଭଳି ବେଶପୋଷାକ ପରିଧାନ, ବୈଶ୍ୟମାନଙ୍କ ଭଳି ଶ୍ରୀପୟର ମାଳ, ଶିରିକପଡା ଓ ମହାପ୍ରସାଦ ଗ୍ରହଣ ଓ ଶୂଦ୍ରୋଚିତ ବିଧିରେ ଛେରାପହଁରା କାର୍ଯ୍ୟନିର୍ବାହ କରିଥାନ୍ତି । ଏଠି ରାଜା ରାଜାଧିରାଜଙ୍କର ସେବକ । ଗଜପତି ମହାରାଜା ଚଣ୍ଡାଳ ଭଳି ଛେରାପହଁରା କାର୍ଯ୍ୟକୁ ପବିତ୍ର କର୍ମକୁ ଆଚରଣ କରି କିଛି କେବେ ଆଶା କରିନାହାନ୍ତି । ଜଗନ୍ନାଥ ସଂସ୍କୃତିରେ ସମନ୍ୱୟ ସାଧନାର ଏକ ବୈଶିଷ୍ଟ୍ୟ ହେବା ସଙ୍ଗେ ସଙ୍ଗେ ଶ୍ରମର ସମ୍ମାନ ବୋଧକୁ ପ୍ରତିପାଦନ କରାଯାଇଛି । ତେଣୁ ପତିତପାବନ ଜଗନ୍ନାଥଙ୍କ ନିକଟରେ ରାଜା ମଧ୍ୟ ସେବକ । ଏହି ମହନୀୟ ଓ ଆକର୍ଷଣୀୟ ସେବାକାର୍ଯ୍ୟ ପରମ୍ପରା କ୍ରମେ ଚଳି ଆସୁଥିବାରୁ ଜଗନ୍ନାଥ ଧର୍ମରେ ସମସ୍ତ ଜାତି ଓ ମଣିଷ ସମାନ । ଜଣେ ରାଜା ସେବକ ଭଳି





ସବୁ ଜାତିର କର୍ମ କରି ତା'ର ଆଦର୍ଶ ପ୍ରତିପାଦନ କରୁଛି । କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ଭାଷାରେ-

''ସେ କମ୍ବୁକଟକେ ରାଜାନାମ ଜଗନ୍ନାଥ ।

ଚାରିବର୍ଣ୍ଣେ ଚଉବର୍ଗ ହେବାକୁ ସମର୍ଥ ।।''

ଆଷାଢ ଶୁକ୍ଳ ଦ୍ୱିତୀୟା ଦିନ ଶ୍ରୀଗୁଣ୍ଡିଚା ରଥଯାତ୍ରା ପରେ ଆଷାଢ ଶୁକ୍ଳ ଦଶମୀ ଦିନ ବାହୁଡାଯାତ୍ରାରେ ମଧ ଗଜପତି ମହାରାଜା ପୂର୍ବଭଳି ଅନୁରୂପ ବିଧିବିଧାନ ସହ ଗୁଣ୍ଡିଚା ମଣ୍ଡପ ସମ୍ମୁଖରେ ଶରଧାବାଲିରେ ତିନିରଥର ରାଜନୀତି ବନ୍ଦାପନା, ରଥମାର୍ଜନା ଓ ଛେରାପହଁରା କାର୍ଯ୍ୟ ସମାପନ କରି ଶ୍ରୀନଅରକୁ ଫେରିଆସନ୍ତି । ବାହୁଡା ଯାତ୍ରା ଦିନ ନନ୍ଦିଘୋଷ ରଥରେ ଶ୍ରୀଜଗନ୍ନାଥ ବାହୁଡି ଆସିବା ସମୟରେ ଶ୍ରୀନଅର ଆଗରେ ରଥ ଅଟକିଯାଏ । ଶ୍ରୀମନ୍ଦିରରୁ ମାଆ ମହାଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା ଶ୍ରୀ ନଅର ଆଗକୁ ଆସି ସେଠାରେ ବିଜେ କରନ୍ତି । ଭିତରଛୁ ମହାପାତ୍ର, ପତି ମହାପାତ୍ର ଓ ରାଜଗୁରୁଙ୍କ ସହାୟତାରେ ପନ୍ତିଭୋଗ ପରେ ଗଜପତି ମହାରାଜା ଲକ୍ଷ୍ମୀ ପ୍ରତିମାକୁ ଶ୍ରୀଜଗନ୍ନାଥଙ୍କ ରଥ ଚାରିପାଖରେ ପରିକ୍ରମା କରାଇବା ପରେ ନିଜ ହାତରେ ଟେକି ନନ୍ଦିଘୋଷ ରଥ ସମ୍ମୁଖରେ ଶ୍ରୀଜଗନ୍ନାଥଙ୍କ ସହ ମିଳନ ଭେଟି କରାଇଥାଆନ୍ତି । ଏହାକୁ ଲକ୍ଷ୍ମୀନାରାୟଣ ଭେଟ କୁହାଯାଏ । ସେହିପରି ହେରାପଞ୍ଚମୀ ତିଥିରେ ଗଜପତିଙ୍କ ମହାରାଣୀ ତାଙ୍କ ହାତ ଛୁଆଁ ତିନିଖଣ୍ଡ ଶାଢୀ ମହାଲକ୍ଷ୍ମୀଙ୍କୁ ଉପହାର ଦିଆଯାଏ ।

ଗଜପତି ମହାରାଜାଙ୍କ ମହାରାଣୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ନୀତିକୁ 'ଗହଣ ବିଜେ' କୁହାଯାଏ । ମହାରାଣୀ ଶ୍ରୀନଅରଠାରୁ ସ୍ୱଜନ ପରିବୃତ ହୋଇ ଶୋଭାଯାତ୍ରାରେ ସିଂହଦ୍ୱାର ଦେଇ ଶ୍ରୀମନ୍ଦିର ଭିତରକୁ ଯାଆନ୍ତି । ମହାରାଣୀ ଯିବା ପୂର୍ବରୁ ଶ୍ରୀମନ୍ଦିର ବେଢା ଶୋଧ କରାଯାଇ ଜନଶୂନ୍ୟ କରାଯାଇଥାଏ । ମହାରାଣୀଙ୍କୁ ସେ ସମୟରେ କେହି ଦର୍ଶନ କରିବାର ସୁବିଧା ନଥାଏ । ମହାରାଣୀଙ୍କ ଶ୍ରୀଜୀଉଙ୍କୁ ଦର୍ଶନ ସମୟରେ କେବଳ ମୁଦ୍ରହସ୍ତ ମୁଦିରଥ ମହାରାଣୀଙ୍କୁ ସହାୟତା ପ୍ରଦାନ ପାଇଁ ପାଖରେ ଉପସ୍ଥିତ ଥାଆନ୍ତି । ଶ୍ରୀଜଗନ୍ନାଥଙ୍କୁ ପୂଜା ଓ ପ୍ରାର୍ଥନା କରିବା ପରେ ମହାରାଣୀ ଆଳତୀ ଓ ରାଜନୀତି ବନ୍ଦାପନା କରି ପୂର୍ବ ଦ୍ୱାର ଦେଇ ଶ୍ରୀନଅରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଶ୍ରୀଜଗନ୍ନାଥଙ୍କ ସେବାପୂଜାରେ ଗଜପତି ମହାରାଜା ପ୍ରଥମ ସେବକ ରୂପେ ପରମ୍ପରାକ୍ରମେ ମହାନ୍ ପଦମର୍ଯ୍ୟାଦା ଲାଭ କରୁଛନ୍ତି ।

ଶ୍ରୀଗୁଣ୍ଡିଚା ରଥଯାତ୍ରାର ରଥ ନିର୍ମାଣ ନିମନ୍ତେ ଆସିଥିବା ରଥକାଠକୁ ମାଘ ଶୁକ୍ଳ ପଞ୍ଚମୀ ଶ୍ରୀପଞ୍ଚମୀ ଦିନ ରାଜଗୁରୁ ପରମ୍ପରା ଅନୁସାରେ ପୂଜା ଅର୍ଚ୍ଚନା କରିଥାନ୍ତି ।

ଏକ ମୋକଦ୍ଦମାର ବିଚାର କରି ମୁଖ୍ୟ ଅଦାଲତ ଇଂରେଜ ସରକାରଙ୍କର ଦାବିକୁ ଗ୍ରହଣ ନକରି ଗଜପତି ମହାରାଜାଙ୍କୁ ଶ୍ରୀମନ୍ଦିରର ସତ୍ତ୍ୱାଧିକାର ଅର୍ପଣ କରିଥିଲେ ।

ଗଜପତି ମହାରାଜା ଚାରିବର୍ଣ୍ଣର କାର୍ଯ୍ୟ ଗୋଟିଏ ମୁହୂର୍ତ୍ତରେ ତୁଲାଉଥିବାରୁ ତାଙ୍କର ମହନୀୟ ସେବାପୂଜା ନୀତି ଏକ ଅଭିନବ ସମନ୍ୱୟ ଓ ସାମ୍ୟବାଦର ଧ୍ୱଜା ଉଡାଇ ଶ୍ରୀଜଗନ୍ନାଥ ତୀର୍ଥରାଜ ଶ୍ରୀପୁରୁଷୋତ୍ତମକ୍ଷେତ୍ର ଓ ଉତ୍କଳର ଗୌରବ ବିଶ୍ୱ ବ୍ରହ୍ମାଣ୍ଡରେ ଦର୍ଶାଇପାରି ଅଛନ୍ତି । ଶ୍ରୀ ଗୁଣ୍ଡିଚା ଯାତ୍ରାର ମୌଳିକ ନୀତି ସହିତ ଠାକୁର ରାଜା ଗଜପତିଙ୍କର ନିଗୂଢ ସଂପର୍କ ରହିଛି । ଭଗବଦ୍ ଗୀତାରେ ଭଗବାନ ଅନାଶକ୍ତ କର୍ମର ଉଦ୍‌ଘୋଷଣ କରିଛନ୍ତି । ଶ୍ରୀକ୍ଷେତ୍ର, ଶ୍ରୀମନ୍ଦିର, ଶ୍ରୀଜଗନ୍ନାଥଙ୍କ ସହ ଗଜପତି ମହାରାଜଙ୍କର ସମ୍ପୃକ୍ତି ସର୍ବଶ୍ରେଷ୍ଠ । ଗଜପତି ମହାରାଜା ପୁରୀର ମହାରାଜା ରୂପେ ଦେବାଧିରାଜ ଶ୍ରୀଜଗନ୍ନାଥଙ୍କୁ ସ୍ୱୀକାର କରି ନିଜକୁ ତାଙ୍କ ରାଉତ ରୂପେ ଅଭିହିତ କରିଛନ୍ତି । କବି ଗୋପବନ୍ଧୁଙ୍କ ଭାଷାରେ-

''ଉତ୍କଳର ରାଜା ସ୍ୱୟଂ ଜଗନ୍ନାଥ ।

ଗଜପତି ରାଜା ତାହାଙ୍କ ରାଉତ ।।''

ଗଜପତି ମହାରାଜା ହେଉଛନ୍ତି ଉତ୍କଳର ଠାକୁର ରାଜା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପ୍ରଥମ ସେବକ ।

ଘରନଂ-୧ଏଫ୍, ଭରଷା ପ୍ଲାଜା
ମହତାବ ରୋଡ୍, ପୁରୁଣା ଭୁବନେଶ୍ୱର






# ଶ୍ରୀଜୀଉଙ୍କ ଚନ୍ଦନ ଯାତ୍ରା

**କୃଷ୍ଣ ଚନ୍ଦ୍ର ସୁଆର**



ଶ୍ରୀଜଗନ୍ନାଥଙ୍କ ନିମନ୍ତେ ଓଡ଼ିଶା ସାରା ବିଶ୍ୱରେ ପରିଚିତ । ଜଗନ୍ନାଥ ଜଗତମୟ । ବ୍ରହ୍ମାଣ୍ଡ ସ୍ୱରୂପ ଓ ସେ ବିଶ୍ୱବ୍ୟାପି ସର୍ବଧର୍ମ ସମନ୍ୱୟର ପ୍ରତୀକ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ମତରେ ହିନ୍ଦୁମାନଙ୍କ ଶ୍ରେଷ୍ଠଧାମ ହେଉଛି ପୁରୀ । ଏହା ମୁକ୍ତିର ଧାମ, ବୈକୁଣ୍ଠଧାମ ଓ ସ୍ୱତନ୍ତ୍ର ବିଶିଷ୍ଟତା ରହିଛି ଏହାର । ଏହି ମନ୍ଦିର ଶ୍ରୀମନ୍ଦିର, ବାନା ପତିତପାବନ, ମଣ୍ଡପ ମୁକ୍ତି ମଣ୍ଡପ, ବଜାର ଆନନ୍ଦବଜାର, ମୁଖ୍ୟଦ୍ୱାର ସିଂହଦ୍ୱାର, ଦ୍ୱାର ସ୍ୱର୍ଗଦ୍ୱାର, ଧାମ ବୈକୁଣ୍ଠ ତଥା ମୁକ୍ତିର ଧାମ ଠାକୁର ଜଗତର ନାଥ ଶ୍ରୀଜଗନ୍ନାଥ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ବାରମାସରେ ତେର ଯାତ୍ରା ଅନୁଷ୍ଠିତ ହୋଇଥାଏ । ଚନ୍ଦନଯାତ୍ରା ବାସ୍ତବିକ ଅନନ୍ୟ । ଶ୍ରୀକ୍ଷେତ୍ରର ବିଭିନ୍ନ ପର୍ବପର୍ବାଣି ମଧ୍ୟରେ ପତିବର୍ଷ ଅକ୍ଷୟ ତୃତୀୟାଠାରୁ ୨୧ଦିନ ବ୍ୟାପୀ ହେଉଥିବା ଚନ୍ଦନଯାତ୍ରା (ବାହାର)ର ଆକର୍ଷଣ ସ୍ୱତନ୍ତ୍ର । ତେଣୁ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଚନ୍ଦନଯାତ୍ରା ପ୍ରସିଦ୍ଧିକୁ ଅନୁଧ୍ୟାନ କରି କୁହାଯାଇଛି ପୁରୀଚନ୍ଦନ, ବଳଙ୍ଗା ମେଳନ, ଆଳି ଝୁଲଣ ଓ କଟକ ଭସାଣି ଆଦି ଭାରତ ପ୍ରସିଦ୍ଧ । ନରେନ୍ଦ୍ର ସରୋବରରେ ଠାକୁରଙ୍କର ନୌକାବିହାର ତଥା ଚାପ ଖେଳ ଭକ୍ତ ଓ ଶ୍ରଦ୍ଧାଳୁଙ୍କୁ ବେଶ୍ ମନ୍ତ୍ରମୁଗ୍ଧ କରିଥାଏ । ଚନ୍ଦନ ଯାତ୍ରାର ମାହାତ୍ମ୍ୟ ଅନେକ । ଏହା ଯେ ଦର୍ଶନ କରନ୍ତି, ସେ ବିପୁଳ ଧନ ଓ ସୁଖ ପ୍ରାପ୍ତ ହୋଇ ଅନ୍ତକାଳରେ ହରିପଦ ପ୍ରାପ୍ତ ହୋଇ ବୈକୁଣ୍ଠପୁରକୁ ଗମନ କରିଥାନ୍ତି । ଚନ୍ଦନ ଯାତ୍ରାର ଗନ୍ଧଯାତ୍ରା, ଜଳକେଳୀ ଯେ ଦର୍ଶନ କରନ୍ତି, ସେମାନଙ୍କର ପାପ କ୍ଷୟ ଓ ସନ୍ତତି ବର୍ଦ୍ଧନ ହୋଇ ଶେଷରେ ବୈକୁଣ୍ଠ ପ୍ରାପ୍ତି ହୋଇଥାଏ । ଠାକୁର କହିଛନ୍ତି, ଚନ୍ଦନ ବିଲେପନ ଯେପରି ସନ୍ତାପହାରକ ସେହିପରି ଏହି ଉତ୍ସବ ମଧ୍ୟ ତ୍ରିତାପ ବିନାଶକ ଅଟେ । ତେଣୁ ପୁରାଣ ପୃଷ୍ଠାରେ ବର୍ଣ୍ଣିତ ଅଛି ।

''ଯଥା ସନ୍ତାପହରଣଂ ଚନ୍ଦନେନାନୁଲେପନମ୍ ।
ତଥୋତ୍ସବୋଽୟଂ ମେ ହ୍ୟନ୍ତ ସନ୍ତାପତ୍ରୟନାଶନଃ ।।''

ଚନ୍ଦନଯାତ୍ରା ସମ୍ପର୍କରେ ବିଭିନ୍ନ ପ୍ରାଚୀନ ପୋଥି ଓ ପୁରାଣମାନଙ୍କରେ ଉଲ୍ଲେଖ ରହିଛି । ପୁରାଣରୁ ଜଣାଯାଏ ଯେ ସତ୍ୟ ଯୁଗରେ ନୃସିଂହ ଦେବ ଏହି ଯାତ୍ରାର ଆୟୋଜନ କରିଥିଲେ । ଦ୍ୱାପର ଯୁଗରେ ପଞ୍ଚୁପାଣ୍ଡବ ଅଜ୍ଞାତବାସ ପରେ ବିରାଟ ରାଜାଙ୍କ ନିକଟରେ ନିଜର ପ୍ରକୃତ ପରିଚୟ ପ୍ରଦାନ କରିଥିଲେ । ବିରାଟ ରାଜା ଶ୍ରୀକୃଷ୍ଣ ଓ ବଳରାମଙ୍କୁ ରାମକୃଷ୍ଣେ ରୂପରେ ପଞ୍ଚୁପାଣ୍ଡବଙ୍କ




ସହିତ ଦର୍ଶନ କରିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ଭଗବାନ ଶ୍ରୀକୃଷ୍ଣ ତାଙ୍କର ଇଚ୍ଛାପୂରଣ ପାଇଁ ସମ୍ମତ ହୋଇଥିଲେ । ଏହା ପରେ ଏକ ବିରାଟ ଜଳାଶୟ ସୃଷ୍ଟି କରାଯାଇ ଜଳ କେଳି ମଣ୍ଡପ ନିର୍ମାଣ କରାଯାଇଥିଲା । ଉପଲବ୍ୟ ଓ ବିଭାସ୍ତୁ ନଗରୀରେ ଏହି ଉତ୍ସବ ସମ୍ପନ୍ନ ହୋଇଥିଲା । ସମ୍ଭବତଃ ଏହି କାରଣରୁ ମଦନମୋହନ, ରାମକୃଷ୍ଣଙ୍କ ସହ ପଞ୍ଚୁପାଣ୍ଡବ ଜଳକ୍ରୀଡା ପାଇଁ ସରୋବରକୁ ଯାତ୍ରା କରିଥାନ୍ତି । ଦେବ ବିଗ୍ରହମାନେ ନରେନ୍ଦ୍ର ପୁଷ୍କରିଣିର ଚକଡା ନିକଟରେ ବିଜେ କରିବା ପରେ ଠାକୁରଙ୍କ ଜଳ ଲାଗି, ଦିଅଁ ଚାପକୁ ବିଜେ, ଚାପ ଆରମ୍ଭ, ଚାପ ଶେଷ, ଦିଅଁ ଚନ୍ଦନ କୁଣ୍ଡକୁ ବିଜେ, ଚନ୍ଦନ କୁଣ୍ଡରୁ ବାହାରିବା, ସାଧାବେଶ, ଶୀତଳଭୋଗ, ବେଶ, ମାଣ୍ଡୁଅ ଭୋଗ, ଦିଅଁ ବାହାରକୁ ବିଜେ, ବିଡିଆମଣୋହି, ବନ୍ଦାପନା, ଦିଅଁ ଚାପକୁ ବିଜେ, ଚାପ ଆରମ୍ଭ ଓ ଶେଷ, ବାହୁଡା ବିଜେ ପ୍ରଭୃତି ଦେବନୀତି ସମ୍ପାଦନା କରିବା ନିମନ୍ତେ ଦୈନିକ ପ୍ରାୟ ୪୧ଜଣ ବିଭିନ୍ନ ବର୍ଗର ସେବକଙ୍କର ଆବଶ୍ୟକତା ପଡିଥାଏ ।

ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ମଧ୍ୟରୁ ଚନ୍ଦନଯାତ୍ରା ଅନ୍ୟତମ । ଶ୍ରୀଜୀଉଙ୍କର ଚନ୍ଦନ ଯାତ୍ରା ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟା ପବିତ୍ର ଅକ୍ଷୟ ତୃତୀୟାଠାରୁ ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ୪୨ଦିନ ଅନୁଷ୍ଠିତ ହୋଇଥାଏ । ଅକ୍ଷୟ ତୃତୀୟା ଏକ ବଡପର୍ବ । ଏହି ଦିନ ଅନେକଶୁଭ କାର୍ଯ୍ୟ କରାଯାଇଥାଏ । କୃଷିଭିତ୍ତିକ ପର୍ବରୂପେ ମୁଖ୍ୟତଃ ଅକ୍ଷୟ ତୃତୀୟାକୁ ପାଳନ କରାଯାଉଥିବା ବେଳେ ଘର ପ୍ରତିଷ୍ଠା, ନୂଆ ଦୋକାନର ଶୁଭାରମ୍ଭ, ଖଡିଛୁଆଁ, ଘଡି ପଥୁଲି ସଂଗ୍ରହ ଓ ଏହିଦିନ ରଥ ଅନୁକୂଳ ମଧ୍ୟ କରାଯାଇଥାଏ । ମଦନମୋହନଙ୍କୁ ଚନ୍ଦନମଣ୍ଡପରେ ପ୍ରତ୍ୟହ ଭିନ୍ନ ଭିନ୍ନ ବେଶରେ ସୁସଜ୍ଜିତ କରାଯାଇଥାଏ । ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇଥାଏ ଏହିବେଶ । ତେଣୁ କବିପ୍ରାଣ ଆଚାର୍ଯ୍ୟ ଦାମୋଦର ଶର୍ମା ତାଙ୍କ ରଚିତ ''ଆମ ଶ୍ରୀଜଗନ୍ନାଥ ଭାବ– ତତ୍ତ୍ୱ ମହା ଭାଗବତ''ରେ କହନ୍ତି–

''ନରେନ୍ଦ୍ର ପୋଖରୀ ମଧ୍ୟେ ଚନ୍ଦନ ମଣ୍ଡପ
ଶ୍ରୀଜୀଉ ନିଅନ୍ତି ତହିଁ ଭିନ୍ନ ଭିନ୍ନ ରୂପ ।
ନଟବର ବେଶ ଆଉ, ହରି ଜନ୍ମ ବେଶ
ଖଟ ଦୋଳି ବେଶ ପୁଣି ଆଉ ରାଜାବେଶ ।
ବସ୍ତ୍ରଚାରଣ ବେଶ ତ, ନାବକେଳୀ ବେଶ
ବସ୍ତ୍ରହରଣ ବେଶ ଆଉ ନୃସିଂହ ବେଶ ।
ଗୋମତୀ କୃଷ୍ଣବେଶକୁ, ଅଘାବିଧ ବେଶ
ଚକ୍ରନାରାୟଣ ବେଶ, ରଘୁନାଥ ବେଶ ।
ରାମମଣ୍ଡଳୀ ବେଶକୁ, ଶିର ପୂଜାବେଶ
କନ୍ଦର୍ପ ରଥ ବେଶ ଯେ କୁଞ୍ଜ ଦୋଳି ବେଶ ।
କନ୍ଦର୍ପ ରଥ ବେଶତ ଷଡଗୌରାଙ୍ଗ ବେଶ
ବସ୍ତ୍ରହରଣ ବେଶ ଓ ଗଜମୁକ୍ତି ବେଶ ।
କେବଳ ଗୋଟିଏ ଦିନ ହୁଅନ୍ତି ନିବେଶ
ପ୍ରଭୁଜାଣେ ସେ କଥାର କେବଳ ରହସ୍ୟ ।
ଏକୋଇଶି ଦିନରେ ତ କୋଡିଏଟି ବେଶ

ଏହି ବିବିଧ ବେଶରେ ଶ୍ରୀଜୀଉ ସଜ୍ଜିତ ଚନ୍ଦନଯାତ୍ରା ହେଉଛି ବଡଠାକୁରଙ୍କର ସବୁଠାରୁ ଦୀର୍ଘକାଳୀନ ଯାତ୍ରା । ୪୨ଦିନ ମଧ୍ୟରୁ ବାହାର ଚନ୍ଦନ ୨୧ଦିନ ଓ ଭିତର ଚନ୍ଦନ ୨୧ଦିନ ପାଳିତ ହୋଇଥାଏ । ଅକ୍ଷୟ ତୃତୀୟାଠାରୁ ପ୍ରଥମ ୨୧ଦିନ ଶ୍ରୀଜୀଉଙ୍କ ଚଳନ୍ତି ପ୍ରତିମା ମଦନମୋହନ, ରାମ, କୃଷ୍ଣ, ଶ୍ରୀଦେବୀ (ଲକ୍ଷ୍ମୀ), ଭୂଦେବୀ (ସରସ୍ୱତୀ) ଏବଂ ପଞ୍ଚ ମହାଦେବ ଶ୍ରୀଲୋକନାଥ, ଶ୍ରୀକପାଳମୋଚନ, ଶ୍ରୀମାର୍କଣ୍ଡେୟ, ଶ୍ରୀନୀଳକଣ୍ଠ, ଶ୍ରୀଜମ୍ୱେଶ୍ୱର ନିଜସ୍ୱ ବିମାନରେ ନରେନ୍ଦ୍ର ପୁଷ୍କରିଣିକୁ ନୌବିହାର ନିମନ୍ତେ ଯାତ୍ରା କରିବାକୁ 'ବାହାର ଚନ୍ଦନ' କୁହାଯାଏ । ପରବର୍ତ୍ତୀ ୨୧ଦିନ କିନ୍ତୁ ଠାକୁର ବାହାରକୁ ବିଜେ କରିନଥାନ୍ତି । ଶ୍ରୀମନ୍ଦିରରେ ଚନ୍ଦନଲାଗି, ଆଲଟ୍‌ଲାଗି, ବେଶ, ଜଳକ୍ରୀଡା, ଭୋଗ ଆଦି ସମସ୍ତ ବିଧି ବିଧାନକୁ 'ଭିତର ଚନ୍ଦନ' କୁହାଯାଏ । ପ୍ରଚଣ୍ଡ ରୌଦ୍ରତାପରୁ ରକ୍ଷା ପାଇବା ପାଇଁ ଦେବ ମନ୍ଦିରରେ ଅକ୍ଷତ ବିଗ୍ରହମାନଙ୍କୁ ଚନ୍ଦନଲାଗି କରାଯିବାର ବିଧି କାହିଁ କେଉଁ ଅନାଦିକାଳରୁ ପ୍ରଚଳିତ । ମହାପ୍ରଭୁ ଚନ୍ଦନଲାଗି ହେବା ସହ ସୁଶୀତଳ ସୁବାସିତ ଜଳରେ ସ୍ନାନ କରିଥାନ୍ତି ।

ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ରାଜା ଚୋଡଗଙ୍ଗ ଦେବ ଜଗନ୍ନାଥ ବଲ୍ଲଭର ବେଣ୍ଟ ପୁଷ୍କରିଣିରେ ଏହି ଯାତ୍ରା କରାଇଥିଲେ । ଏହାପରେ ଚନ୍ଦନପୁର ନିକଟସ୍ଥ ଜଳକବର ସଂଲଗ୍ନ ପୁଷ୍କରିଣିରେ ଚନ୍ଦନଯାତ୍ରା ଅନୁଷ୍ଠିତ ହେଉଥିଲା । ସମ୍ଭବତଃ ଏହି କାରଣରୁ ଏହାର ଅନତି ଦୂରରେ ଅବସ୍ଥିତ ଚନ୍ଦନପୁର ନାମରେ ଏକ ବଜାର ନାମିତ ହୋଇଥିଲା । କିଛି ବର୍ଷ ଚନ୍ଦନଯାତ୍ରା ଏଠାରେ ହେବାପରେ ବୀର ହରେକୃଷ୍ଣ ପୁର ସ୍ଥିତ ରାଣୀ ତଲାବରେ ଅନୁଷ୍ଠିତ ହେଉଥିଲା । ପରବର୍ତ୍ତୀ ସମୟରେ ଅର୍ଥାତ୍ ୧୭୩୭ ମସିହାଠାରୁ ପ୍ରାୟ ଶ୍ରୀକ୍ଷେତ୍ରର ନରେନ୍ଦ୍ର ସରୋବରରୁ ଚନ୍ଦନ ଯାତ୍ରା ହୋଇ ଆସୁଛି । ଗଜପତି





କପିଳେନ୍ଦ୍ର ଦେବଙ୍କ ଭାଇ ନରେନ୍ଦ୍ର ଦେବଙ୍କ ଦ୍ୱାରା 'ନରେନ୍ଦ୍ର ସରୋବର' ଖୋଳା ଯାଇଥିଲା ।

ଶ୍ରୀଜୀଉଙ୍କର କେତେକ ସ୍ୱତନ୍ତ୍ର ନୀତି ଅକ୍ଷୟ ତୃତୀୟା ଦିନ ଶ୍ରୀମନ୍ଦିରରେ ପାଳିତ ହୋଇଥାଏ । ତନ୍ମଧ୍ୟରେ ମହାସ୍ନାନ ଅଳଙ୍କାରରେ ସଜ୍ଜିତ କରାଯାଇ ବେଶ, ପ୍ରସାଦ ଲାଗି, ବିଭିନ୍ନ ମଠରୁ ଆସିଥିବା ଚଉସରା ଲାଗି, ବନ୍ଦାପନା, ଆଜ୍ଞାମାଳ ଇତ୍ୟାଦି ସୁସଜ୍ଜିତ ପାଲିଙ୍କିରେ ରାମ, କୃଷ୍ଣ ଓ ମଣି ବିମାନରେ ମଦନମୋହନ, ଭୂଦେବୀ, ଶ୍ରୀଦେବୀ, ବିଜେ ହୁଅନ୍ତି । ସେଠାରେ ବସିବା ପରେ ଠାକୁରଙ୍କୁ ଫୁଲ ମାଳରେ ସଜାଯାଏ । ତା'ପରେ ବିଜେ କାହାଳୀ ସହ ସିଂହଦ୍ୱାର ସମ୍ମୁଖକୁ ଆସନ୍ତି । ପୂର୍ବରୁ ସେଠାରେ ପଞ୍ଚମହାଦେବ ଅପେକ୍ଷା କରିଥାଆନ୍ତି । ମନ୍ଦିର ଭିତରୁ ଠାକୁରମାନେ ବାହାରକୁ ଆସିବା ପରେ ପ୍ରଥମେ ପାଲିଙ୍କି ଏବଂ ମଣିବିମାନ ଯିବାପରେ ପଛରେ ପଞ୍ଚମହାଦେବ ନରେନ୍ଦ୍ର ପୁଷ୍କରିଣୀଅଭିମୁଖେ ଯାତ୍ରା କରନ୍ତି । ଠାକୁରମାନଙ୍କ ଯାତ୍ରା ସମୟରେ ବିମାନ ଓ ପାଲିଙ୍କି ରାଜନଅର ସମ୍ମୁଖରେ ପହଞ୍ଚିବା ପରେ ରଥ ଅନୁକୂଳ ନୀତି ସମ୍ପନ୍ନ ହୋଇଥାଏ ଓ ସ୍ଥାନେ ସ୍ଥାନେ ପନ୍ତିଭୋଗ ହୋଇଥାଏ । ପୁଷ୍କରିଣିର ଚକଡାରେ ପହଞ୍ଚିବା ପରେ ଗରାବଡୁ ସେବକ ଜଗନ୍ନାଥ ବଲ୍ଲଭରୁ ଆସିଥିବା ଜଳରେ କର୍ପୂରଯୁକ୍ତ ଓ ଭିତରଚ୍ଛୁ ମହାପାତ୍ର ପାଞ୍ଚବାଡରେ କର୍ପୂର ଜଳମଣୋହି କରନ୍ତି । ତତ୍ ପରେ ପରେ ରାମକୃଷ୍ଣ ବିଜେ ହୁଅନ୍ତି ସୁସଜ୍ଜିତ ହୋଇ ପୁଷ୍କରିଣୀ କୂଳରେ ରହିଥିବା ବଡବିମାନ ଚାପରେ । ତା'ସହିତ ମହାଦେବ ସେଠାରେ ଥିବା ଅନ୍ୟ ଏକ ଭାସମାନ ବିଜେ ହୁଅନ୍ତି । ଦ୍ୱିତୀୟ ବିମାନ ଚାପରେ ମଦନମୋହନ, ଶ୍ରୀଦେବୀ, ଭୂଦେବୀ, ବିଜେହେବା ପରେ ମୁଦିରସ୍ତ ସେବକମାନେ ପ୍ରସାଦ ଭୋଗ କରିଥାଆନ୍ତି ଓ ପରେ ବିଡିଆପାନ ମଣୋହି ମଧ୍ୟ ହୋଇଥାଏ । ତା'ପରେ ବୈଜୟନ୍ତୀ ଓ ବାଦ୍ୟକାରମାନେ ଆଗ ନୌକାରେ ଯିବାପରେ ଶ୍ରୀଜୀଉମାନଙ୍କର ଚାପଖେଳର ଅପୂର୍ବ ଦୃଶ୍ୟ ଆରମ୍ଭ ହୋଇଥାଏ । ନରେନ୍ଦ୍ରରେ ରାମ, କୃଷ୍ଣଙ୍କର ଚାପର ନାମ ନନ୍ଦା ଓ ମଦନମୋହନ ବିଜେ କରୁଥିବା ଚାପର ନାମ ଭଦ୍ରା ଅଟେ । ବଡ ଚାପ ବା ଭଦ୍ରାରେ ୨ଟି ସିଂହାସନ ରହିଥାଏ । ଗୋଟିଏରେ ରାମକୃଷ୍ଣ ଓ ଅନ୍ୟଟିରେ ପଞ୍ଚମହାଦେବ ବିଜେ କରିଥାନ୍ତି । ସାନଚାପ ବା ନନ୍ଦାରେ ଭୂଦେବୀ ଓ ଶ୍ରୀଦେବୀ ନୌକା ବିହାର କରନ୍ତି । ଚାପ ଦ୍ୱୟର ଆଗେ ଆଗେ ଚାଲିଥାଏ ବାଜନ୍ତରୀ ନୌକା । ବାଦ୍ୟକାରମାନେ ଏହି ନୌକାରେ ବସି ପାରମ୍ପରିକ ତେଲିଙ୍ଗିବାଦ୍ୟ ବାଦନ କରିଥାନ୍ତି । ପୂର୍ବେ ଗୋଟିଏ ଚାପରେ ଦେବଦାସୀ ନୃତ୍ୟ ଓ ଅନ୍ୟଟିରେ ଗୋଟିପୁଅ ନୃତ୍ୟ ପରିବେଷଣ କରାଯାଉଥିଲା । ବର୍ତ୍ତମାନ ଏହି ନୃତ୍ୟ ବନ୍ଦ ରହିଛି । ଠାକୁରମାନେ ଦିନକୁ ଦୁଇଥର ଚାପ ଖେଳିଥାନ୍ତି। ଦିନ ଚାପରେ ଠାକୁରମାନେ ପୁଷ୍କରିଣୀର ଚତୁଃପାର୍ଶ୍ୱରେ ଗୋଟିଏ ଘେରା ବୁଲୁଥିବା ବେଳେ ରାତି ଚାପରେ ତିନିଘେରା ବୁଲିଥାନ୍ତି । ଦିନ ଚାପ ପରେ ଠାକୁରମାନେ ଚାମର ଆଲଟ ହୋଇ ଚନ୍ଦନ କୁଣ୍ଡରେ ସ୍ନାନ କରିଥାନ୍ତି । ପରମ୍ପରାକ୍ରମେ ଏହି ଯାତ୍ରାର ପଞ୍ଚମ ଓ ଶେଷ ଦିବସରେ ଗଜପତି ଛେରାପହଁରା କରିବାର ବିଧି ରହିଛି । ଚନ୍ଦନଯାତ୍ରାର ଶେଷ ଦିନକୁ ଭଉଁରୀ ଯାତ୍ରା କହନ୍ତି । ଏହା ପରଦିନ ହଳଦିପାଣି ଅନୁଷ୍ଠିତ ହୋଇଥାଏ । ବିଗ୍ରହମାନେ ସେଦିନ ନରେନ୍ଦ୍ର ସରୋବରରେ ବିଜେ କରୁଥିଲେ ମଧ୍ୟ ନୌକା ବିହାର କରନ୍ତିନାହିଁ । ଚନ୍ଦନଯାତ୍ରାରୁ ଫେରିଲା ପରେ ଶ୍ରୀଜୀଉମାନେ ମନ୍ଦିରରେ ଥିବା ବଟବୃକ୍ଷ ନିକଟରେ ଏକତ୍ର ହୁଅନ୍ତି । ଏହାପରେ ମନ୍ଦିର ପରିସରରେ ୨୧ଦିନ ବ୍ୟାପୀ ଭିତର ଚନ୍ଦନ ଅନୁଷ୍ଠିତ ହୋଇଥାଏ । ଏହା ଅତ୍ୟନ୍ତ ରହସ୍ୟ ପୂର୍ଣ୍ଣ ଓ ଗୋପନୀୟ ମନେହୁଏ ।

ଚନ୍ଦନଯାତ୍ରା ସମୟରେ ବିଭିନ୍ନ ଜାଗା ଆଖଡା ପକ୍ଷରୁ ମେଳା ମଉଜ କରାଯାଇଥାଏ ଏବଂ ଆୟୋଜିତ ହୋଇଥାଏ ଚନ୍ଦନହୁଡା ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଅନେକ ଜାକଜମକର ବ୍ୟବସ୍ଥା କରାଯାଇଥାଏ । ଶ୍ରୀକ୍ଷେତ୍ରର 'ଚନ୍ଦନଯାତ୍ରା'ରେ ପ୍ରତ୍ୟକ୍ଷଭାବେ ସ୍ଥାନୀୟ ଜନସାଧାରଣ ବହୁ ଭାବରେ ଅଂଶଗ୍ରହଣ କରନ୍ତି । ପ୍ରତିସାହି, ବସ୍ତି ଓ ଜାଗା ଆଖଡାମାନଙ୍କରୁ ମେଢ ବାହାରେ । ସଙ୍ଗୀତ, ନୃତ୍ୟ, ବାଦ୍ୟ, ବାଣ, ନାଗା, ହାତୀ, ସଂକୀର୍ତ୍ତନ ଓ ଆଲୋକର ତାଳେ ତାଳେ ବର୍ଣ୍ଣାଢ୍ୟ ପଟୁଆରରେ ଚନ୍ଦନମଉଜ ନିମନ୍ତେ ନରେନ୍ଦ୍ର ଯାତ୍ରା କରିବା, ନରେନ୍ଦ୍ରରେ ଜଳକ୍ରୀଡା ପରେ ସମବେତ ହୋଇ ଭଜନ ପରିବେଷଣ କରିବାରେ ନିଦାଘର ଉପଚାର ସ୍ୱରୂପ ଯେଉଁ ଆନନ୍ଦ ତାହା ଅନୁଭବୀ ହିଁ କେବଳ ଜାଣେ । ଆବାଳବୃଦ୍ଧ ବନିତା, ଭକ୍ତ ତଥା ପର୍ଯ୍ୟଟକମାନଙ୍କ ଲାଗି ପ୍ରକୃତରେ ଏହି ଯାତ୍ରା ଏକ ଆକର୍ଷଣୀୟ ଭାବବିନ୍ଦୁ । ଓଡ଼ିଶାରେ ଶ୍ରୀକ୍ଷେତ୍ର ପରି ଅନେକ ବ୍ରାହ୍ମଣ ଶାସନ ଗ୍ରାମରେ ଥିବା ବିଭିନ୍ନ ଦେବାଦେବୀ, ମନ୍ଦିର ଓ ପୂଜାପୀଠମାନଙ୍କରେ ଏହି ଚନ୍ଦନ ଯାତ୍ରା ଉତ୍ସବ ଆଡମ୍ବର ସହକାରେ ପାଳିତ ହୋଇ ଆସୁଅଛି ।

'ଚନ୍ଦନଯାତ୍ରା' ସମ୍ବନ୍ଧରେ ଓଡ଼ିଆ ସାହିତ୍ୟରେ ଅନେକ ବର୍ଣ୍ଣନା ଦେଖାଯାଏ । ପ୍ରାଚୀନ ମହାମନା କବି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଜଗନ୍ନାଥ ଦାସ, ବଳଦେବ ରଥ, ବନମାଳୀ, ଗଜପତି ବୀର କେଶରୀ, ଲୋକନାଥ ବିଦ୍ୟାଧର ଓ ସଦାଶିବ କାବ୍ୟକଣ୍ଠ

ଏହି ଯାତ୍ରା ସମ୍ବନ୍ଧରେ କବିତା ଓ ଚମ୍ପୂ ରଚନା କରିଛନ୍ତି –

**ଭକ୍ତକବି ଦୀନକୃଷ୍ଣ ଦାସ**

ହେ ମଦନମୋହନ,
କରୀନ୍ଦ୍ର ଦନ୍ତପଲଙ୍କ ତେଜନାଥ
ନରିନ୍ଦ୍ର ଚାପେ ଗମନ (ଘୋଷା)
ଅଷ୍ଟରତ୍ନ ଚଉଦୋଳରେ ବିଜୟେ
ନଉକା ବେହାର ପାଇଁ
ଗ୍ରୀଷମ ହରିତେ ପାପୀ ଉଦ୍ଧାରିତେ
ବିଜେକର ଲକ୍ଷ୍ମୀସାଇଁ ॥

ସଙ୍ଗେ ପରିବାରୀ ପଣ୍ଡା ପଢିଆରୀ
ରାମପ୍ରମ ସାଧୁଜନ
କର୍ପୂରଚନ୍ଦନ ଚୂଆ ଚମ୍ପା ପୁଷ୍ପ
ନିର୍ଝର ଜଳ ସଞ୍ଚନ ॥

ଏମ୍.ଆଇ.ଜି.ୱାନ୍ ୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର–୧୬

# ପଥ ହିଁ ତୁମେ

ମିନତୀ ମିଶ୍ର

ପଥ ହିଁ ତୁମେ
ଚିର ପାନ୍ଥ ମୁଁ
ଆବୋରି ନେଇଛ ମୋତେ
ଯାତ୍ରା ହିଁ ତୁମେ
ଚିରଯାତ୍ରୀ ମୁଁ
ଆଦର ଦେଇଛ କେତେ ।୦।

ପାହାନ୍ତା ପହର
ଶେଷ ତାରକା ମୁଁ
ମଳିନ ଆଲୋକ ନେଇ
ତୁମରି ଆକାଶ
ଆବୋରି ଥାଏ ମୁଁ
ବାହୁ ଛାୟା ତଳେ ଥାଇ



ତୁମେ ଦୂରେଇ ଦେଇନ
ପାଖେଇ ଆସିଛ
ବରାଭୟ ନେଇ କେତେ ।୧।

ଅନାମିକା ଫୁଲ
ଚିରଦିନ ମୁହିଁ
ତୁମେ ସଉରଭ ମୋର
ତୁମ କରୁଣାକୁ
ପ୍ରଣାମ ନକରି
ବାଣ୍ଟେ ଅହମିକା ମୋର
ମୁଁ ଯେ ଫେରିପାରୁନାହିଁ
ତୁମେ ବାହୁମେଲି
ଆଦରେ ଡାକିଲେ ଯେତେ ।

ଭାରତୀୟ ଷ୍ଟେଟ୍‌ବ୍ୟାଙ୍କ
ମୁଖ୍ୟ ଶାଖା, ଭୁବନେଶ୍ୱର









# ଶ୍ରୀଜଗନ୍ନାଥଙ୍କ ବେଶଭୂଷାରେ ପୁଷ୍ପର ମହତ୍ତ୍ୱ

ନନ୍ଦକିଶୋର ସିଂହ

ନୀଳାଚଳରେ ଦାରୁ ରୂପରେ ପୂଜିତ ହେବା ଆଗରୁ ସେ ଥିଲେ ବିଶ୍ୱାବସୁଙ୍କ ନୀଳମାଧବ । ନୀଳମାଧବ ଘଞ୍ଚ ଅରଣ୍ୟରେ ରହି ବନଫୁଲ ଦ୍ୱାରା ପୂଜିତ ହେଉଥିଲେ । ବନମାଳ ବକ୍ଷରେ ଧାରଣ କରୁଥିବାରୁ ତାଙ୍କର ଅନ୍ୟ ଏକ ନାମ ବନମାଳି । କଳିଯୁଗର ଦାରୁଦେବ ପୂର୍ବରୁ ଦ୍ୱାପର ଯୁଗରେ କୃଷ୍ଣ ରୂପରେ ତଳତମାଳ ବନ, ଗିରିଗୋବର୍ଦ୍ଧନ ପାଦଦେଶର ଗୋଚାରଣ ଭୂମିରେ ଭ୍ରମି ଭ୍ରମି କାନନ କୁସୁମରେ ନିଜକୁ ସଜ୍ଜିତ କରୁଥିଲେ । ତ୍ରେତୟା ଯୁଗରେ ରାମ ରୂପରେ ସେ ଦୀର୍ଘଦିନ ବନବାସ କରିଥିଲେ । ଏଣୁ ଯୁଗଯୁଗ ଧରି ପ୍ରକୃତି ସହ ଭଗବାନଙ୍କ ସମ୍ପର୍କ ଅତି ନିବିଡ ।

ଦାରୁଦେବତାଙ୍କ ବେଶଭୂଷାରେ ଏ ଯୁଗରେ ମଧ୍ୟ ପୁଷ୍ପର ମହତ୍ତ୍ୱ ରହିଛି । ଶ୍ରୀମନ୍ଦିର ଛାଡି ରଥଯାତ ବେଳେ ସେ ରଥାରୂଢ ହେବା ପୂର୍ବରୁ କୁସୁମ ସଜ୍ଜିତ ଟାହିଆ ମସ୍ତକରେ ଧାରଣ କରନ୍ତି । ବାହୁରେ ଦୟଣା ମଣ୍ଡିତ ହୋଇଥାଏ । ଜଗନ୍ନାଥଙ୍କ ବେଶଭୂଷାରେ ପୁଷ୍ପର ମହତ୍ତ୍ୱ ସଠିକ୍‌ଭାବେ ଅନୁଭବ କରିବାକୁ ହେଲେ ଆମକୁ ତିନି ଠାକୁରଙ୍କ ବେଶଭୂଷା ଉପରେ ଆଲୋକପାତ କରିବାକୁ ହେବ ।

ବଡଠାକୁର ନୀଳାଚଳ ନିବାସୀ, ନୀଳାଦ୍ରି ବିହାରୀଙ୍କ ପ୍ରସିଦ୍ଧ ବେଶଗୁଡିକ ହେଲା– ରାଧାବେଶ, ବଡସିଂହାର ବେଶ, ଚନ୍ଦନଲାଗି ବେଶ, ଗଣେଶ ବା ହାତୀ ବେଶ, ବଣଭୋଜି ବେଶ, କାଳୀୟଦଳନ ବେଶ, ସୁନାବେଶ, ପ୍ରଳମ୍ବାସୁରବଧ ବେଶ, କୃଷ୍ଣ ବଳରାମ ବେଶ, ରାଧା ଦାମୋଦର ବେଶ, ଲକ୍ଷ୍ମୀନାରାୟଣ ବେଶ, ବାମନବେଶ, ରାଜାବେଶ, ହରିହର ବେଶ, ବାଙ୍କଚୂଡ ବେଶ, ନାଗାର୍ଜୁନ ବେଶ, ତ୍ରିବିକ୍ରମ ବେଶ, ରାଜରାଜେଶ୍ୱର ବେଶ, ରଘୁନାଥ ବେଶ, ପଦ୍ମବେଶ, ଚାଚେରି ବେଶ, ଗଜଉଦ୍ଧାରଣବେଶ, ନୃସିଂହ ବେଶ ।

ଉପରୋକ୍ତ ବର୍ଣ୍ଣିତ ଚବିଶ ଗୋଟି ବେଶ ମଧ୍ୟରୁ ଗୋଟିଏ ରାମଙ୍କର, ଦୁଇଟି ବାମନଙ୍କର, ଗୋଟିଏ ଗଣେଶଙ୍କର ସାତଗୋଟି କୃଷ୍ଣଙ୍କର, ଗୋଟିଏ ନୃସିଂହଙ୍କର ଏବଂ ଅବଶିଷ୍ଟ ବାରଗୋଟି ହେଉଛି ବଡଠାକୁର ଜଗନ୍ନାଥଙ୍କର ।

ବଡଠାକୁରଙ୍କର ଦୈନିକ ନୀତି ଭିତରେ କବାଟଫିଟା, ପହାନ୍ତି ଅବକାଶ ଗୋପାଳ ବଲ୍ଲଭ, ସକାଳଧୂପ, ଅଧରପୋଛା ଦ୍ୱିପହର ଧୂପ, ସଂଧ୍ୟାଧୂପ, ବଡସିଂହାର ବେଶ ଏବଂ ପହୁଡ ଆଦି ପ୍ରଧାନ । ପ୍ରତିଦିନ ନୀତି ମଧ୍ୟରେ ଜଗନ୍ନାଥଙ୍କୁ ଯେଉଁ ନିତ୍ୟନୈମିତ୍ତିକ ବେଶ କରାଯାଏ । ସେଗୁଡିକ ମୁଖ୍ୟତଃ ବସ୍ତ୍ର, ଭୂଷଣ ଓ ପୁଷ୍ପ ଶୃଙ୍ଗାର ଭାବେ ଜଡିତ । ଏହି ପୁଷ୍ପ ଶୃଙ୍ଗାର ମୁଖ୍ୟତଃ ବଡସିଂହାର ବେଶ ପାଇଁ ଅପରିହାର୍ଯ୍ୟ ।

ଶ୍ରୀମନ୍ଦିରର ଦୈନନ୍ଦିନ ନୀତି ବା ସେବାରେ ବିଭିନ୍ନ ପ୍ରକାର ପୁଷ୍ପର ଆବଶ୍ୟକତା ପଡିଥାଏ । ସେହିପରି ଶ୍ରୀମନ୍ଦିରରେ ବିଭିନ୍ନ ସେବାରେ ନିଯୁକ୍ତ ପାଇଥିବା ସିଂହାରୀ, ଭଣ୍ଡାର ମେକାପ ବିଶ୍ୱକର୍ମା ନିଯୋଗ ପରି ଫୁଲଦାସୀ ମଧ୍ୟ ସ୍ଥାନ ପାଇଛନ୍ତି । ଏହି ଫୁଲଦାସୀମାନେ ବିଗ୍ରହମାନଙ୍କ ପାଇଁ ଯଥାଯୋଗ୍ୟ ଫୁଲଭେଟି ଦେଇଥାନ୍ତି ।

ଶ୍ରୀମନ୍ଦିରରେ ବିଭିନ୍ନ ପର୍ବପର୍ବାଣି ପାଳିତ ହୁଏ । ଏହି ପର୍ବ ପାଳନର ଭିନ୍ନତା ଅନୁସାରେ ଭିନ୍ନ ଭିନ୍ନ ପୁଷ୍ପର ଆବଶ୍ୟକତା ପଡିଥାଏ ।

ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଜଗନ୍ନାଥଙ୍କର ହାତୀବେଶ ଖୁବ୍ ମନୋହର । ସୋଲ ଜରି ଜମ୍ବୁରା କଦଳୀ ପଟୁଆରେ ତରାସ ଚୂଳ ସାଙ୍ଗକୁ ଫୁଲମାଳରେ ଏ ବେଶକୁ ସୁସଜ୍ଜିତ କରାଯାଇଥାଏ ।



ଶ୍ରାବଣ ମାସର ଝୁଲଣ ମଣ୍ଡପରେ ଠାକୁରଙ୍କ ଝୁଲଣ ବେଶରେ ତୁଳସୀ ଚନ୍ଦନ କର୍ପୂର ସାଙ୍ଗକୁ ଫୁଲର ଆବଶ୍ୟକତା ଅଧିକ । ବିଭିନ୍ନ ପୁଷ୍ପ ବିମଣ୍ଡିତ ବିଗ୍ରହ ଝୁଲଣରେ ରହି ଭକ୍ତଙ୍କ ଚିତ୍ତ ଆନ୍ଦୋଳିତ କରିଥାନ୍ତି ।

ଭାଦ୍ରବ କୃଷ୍ଣ ଏକାଦଶୀ ଦିନ କାଳୀୟ ଦଳନ ବେଶରେ ଜଗନ୍ନାଥ ବାମ ହାତରେ କାଳୀୟ ନାଗର ପୁଚ୍ଛ ଧରିବା ସାଙ୍ଗକୁ ପଦ୍ମକଳିକା ଧାରଣ କରିବାର ବିଧି ରହିଛି । ଏଣୁ କାଳୀୟ ଦଳନ ବେଶଭୂଷାରେ ପଦ୍ମ କଳିକାର ଆବଶ୍ୟକତା ହିଁ ପଦ୍ମର ମହତ୍ତ୍ୱ ପ୍ରତିପାଦନ କରିଥାଏ । ଏଥିପାଇଁ ବୋଧେ ଜଗନ୍ନାଥଙ୍କର ସ୍ୱତନ୍ତ୍ରଭାବେ ପଦ୍ମବେଶ ନାମରେ ଏକ ବେଶ ରହିଛି ।

କୃଷ୍ଣ ବଳରାମ ବେଶରେ କଦମ୍ବ ପୁଷ୍ପର ଆବଶ୍ୟକତା ରହିଛି । ଏହି ବେଶ ସମୟରେ ଦେବୀ ଶୁଭଦ୍ରା ଏକ ଗାଦିରେ ଉପବିଷ୍ଟ ହୋଇଥାନ୍ତି । କଦମ୍ବ ବୃକ୍ଷ କଦମ୍ବ ପୁଷ୍ପ ସାଙ୍ଗକୁ ଗୋମାତା, ଯଶୋଦା, ଦେବକୀ ବାସୁଦେବଙ୍କର ପ୍ରତିମା ସ୍ଥାପନ କରାଯାଇ ଦ୍ୱାପର ଯୁଗର ସ୍ମୃତିଚାରଣ କରାଇଥାନ୍ତି ।

ମହାପ୍ରଭୁଙ୍କର କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀର ଦିବସରେ ନୃସିଂହ ବା ଡାଳିକିଆ ବେଶ ହୋଇଥାଏ । ଏହି ବେଶରେ ପୁଷ୍ପ ଓ ଭଣ୍ଡି ଚୂଳ ଲାଗି କରାଯାଏ ।

ପଞ୍ଚକ ଛଅଦିନିଆ ପଡିଲା ବର୍ଷରେ ପୂର୍ଣ୍ଣିମା ଆଗଦିନ ନାଗାର୍ଜୁନ ବେଶ କରାଯାଏ । ଏହି ବେଶରେ ବିଗ୍ରହଙ୍କ ମଥାରେ ପୁଷ୍ପହାଣ୍ଡିଆ ସାଙ୍ଗକୁ ସ୍କନ୍ଦଦେଶରେ ଧନୁତୀର, କଟିରେ କଟିଢାଲ ଶୋଭାବର୍ଦ୍ଧନ କରିଥାଏ । କାରଣ ନାଗାର୍ଜୁନ ବେଶ ଏକ ସାମରିକ ବେଶ ।

ପୌଷ ପୂର୍ଣ୍ଣିମା ଦିନ ଜଗନ୍ନାଥଙ୍କୁ ରାଜବେଶ କରାଯାଏ । ଏ ବେଶରେ ପାରମ୍ପରିକ ସ୍ୱର୍ଣ୍ଣ ଅଳଙ୍କାର ସାଙ୍ଗକୁ ସୁବାସିତ ପୁଷ୍ପ ଓ କର୍ପୂର ଲାଗି କରାଯାଏ ।

ମାଘ ଅମାବାସ୍ୟା ପରେ ବସନ୍ତ ପଞ୍ଚମୀ ମଧ୍ୟରେ ପଡୁଥିବା ବୁଧବାର କିମ୍ବା ଶନିବାର ଦିନ ମହାପ୍ରଭୁଙ୍କର ପଦ୍ମବେଶ ହୁଏ । ଏହି ଋତୁରେ ପଦ୍ମଫୁଲ ସହଜରେ ଉପଲବ୍ଧ ନହେଲେ ମଧ୍ୟ ପ୍ରଭୁଙ୍କର ମହିମା ଅପାର ଯୋଗୁଁ ଫୁଲର ଅଭାବ ପଡେନା । ଏହି ବେଶରେ ପଦ୍ମପୁଷ୍ପ ପରିହିତ ଜଗନ୍ନାଥ ଜଳାଶୟ ମଧ୍ୟରେ ବିଜେ କରିଥିବାର ପ୍ରତୀୟମାନ ହୋଇଥାଏ ।

ଗଜ ଉଦ୍ଧାରଣ ବେଶରେ ପ୍ରଭୁ ଶଙ୍ଖଚକ୍ର ଗଦା ସାଙ୍ଗକୁ ପଦ୍ମକୋରକ ମଧ୍ୟ ଧାରଣ କରିଥାନ୍ତି ।

ଚାଚେରୀ ବେଶରେ ପ୍ରଭୁଙ୍କର ବାସନ୍ତି ଦୋଳ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ବେଶରେ କୁନ୍ଦାଦି ପୁଷ୍ପ ଦ୍ୱାରା ବିଗ୍ରହ ସୁଶୋଭିତ ହୋଇଥାନ୍ତି ।

ଉପରୋକ୍ତ ଆଲୋଚନାରୁ ଆମେ ଅନୁଭବ କରୁଛେ ଶ୍ରୀଜଗନ୍ନାଥଙ୍କ ବେଶଭୂଷାରେ ପୁଷ୍ପର ଆବଶ୍ୟକତା କେତେ ଅଧିକ । ପ୍ରତ୍ୟେକ ଦେବାଳୟରେ ପୂଜନ ଅର୍ଚ୍ଚନା ପାଇଁ ଧୂପଦୀପ ଚନ୍ଦନ କର୍ପୂର ସାଙ୍ଗକୁ ପୁଷ୍ପର ଆବଶ୍ୟକତା ରହିଆସିଛି । ତେବେ କେତେକ ବିଶେଷ କ୍ଷେତ୍ରରେ ଶିବଙ୍କ ପାଇଁ ଚମ୍ପା, କେତକୀ, ମହାଲକ୍ଷ୍ମୀଙ୍କ ପାଇଁ ପଦ୍ମ । କୁମାର ବା କାର୍ତ୍ତିକେୟଙ୍କ ପାଇଁ କୁମୁଦ ପରି ଦାରୁ ବ୍ରହ୍ମଙ୍କର ବିଭିନ୍ନ ପୂଜା ବିଧିରେ ବିଭିନ୍ନ ପୁଷ୍ପର ଆବଶ୍ୟକତା ପଡିଥାଏ । ଉଦାହରଣ ସ୍ୱରୂପ ରାଧା ଦାମୋଦର ବେଶ କଥା ନିଆଯାଉ । ଏ ବେଶରେ ତିନି ମୂର୍ତ୍ତିଯାକ ଫୁଲର ନୋସଣି ଓ ନାକଚଣା ପିନ୍ଧନ୍ତି । ପଦ୍ମଫୁଲର ମହତ୍ୱ ବୃଦ୍ଧି ପାଇଁ ବିଗ୍ରହଙ୍କ ପଦ୍ମବେଶ ପରି ଚନ୍ଦନଲାଗି ବେଶ ପାଇଁ ସୁଗନ୍ଧଯୁକ୍ତ ପୁଷ୍ପରାଜିର ଆବଶ୍ୟକତା ରହିଛି ।

ପରିଶେଷରେ ଏତିକି କୁହାଯାଇପାରେ ଶ୍ରୀମନ୍ଦିରରେ ଧୂପ, ଦୀପ, କର୍ପୂର ଚନ୍ଦନ ତୁଳସୀମାଳ ପରି ଫୁଲର ମଧ୍ୟ ମହତ୍ତ୍ୱ ରହିଛି । ଏଥିପାଇଁ ଆଜି ପ୍ରାୟତଃ ଦେବାଳୟମାନଙ୍କରେ ପୁଷ୍ପବାଟିକା ମାନ ପରିଦୃଷ୍ଟ ହୁଏ । ଶ୍ରୀମନ୍ଦିରରେ ମଧ୍ୟ ତୁଳସୀ ଉଦ୍ୟାନ ସାଙ୍ଗକୁ ବିଭିନ୍ନ ପୁଷ୍ପବାଟିକାମାନ ରହିଛି । ଏସବୁ ଉଦ୍ୟାନରେ ପ୍ରବେଶ କଲେ ତୁଳସୀର ମହ ମହ ବାସ୍ନା ସାଙ୍ଗକୁ ବିଭିନ୍ନ ପୁଷ୍ପର ସୁରଭିରେ ଭକ୍ତ, ଭଗବାନଙ୍କ ଅସ୍ତିତ୍ୱ ଉପଲବ୍ଧି କରିଥାଏ ।

କୁସୁମ ପରଶେ ପଟ ନିସ୍ତରେ ନ୍ୟାୟରେ ଦେବତାଙ୍କ ପାଦତଳେ ପୁଷ୍ପାଞ୍ଜଳି ଦେଇ ଭକ୍ତ ଭଗବାନଙ୍କ ନିକଟତର ହେବା ପାଇଁ ତାର ଉଦ୍ୟମ ଜାରି ରଖୁ । ଏହି ଯାନ୍ତ୍ରିକ ସଭ୍ୟତା ସମ୍ପନ୍ନ ଯୁଗରେ ମଧ୍ୟ ଆଧାତ୍ମିକ ଭିତ୍ତି ଭୂମି ଦୃଢ କରିବା ପାଇଁ 'ପୁଷ୍ପ' ତାର ଭୂମିକା ସଦର୍ପେ ନିର୍ବାହ କରିଚାଲୁ ଏତିକି କାମନା।

ସମ୍ପାଦକ
ବୋଲେ ହୁଁଟି, କୋରେଇ,
ଯାଜପୁର-୭୫୫୦୨୨






# ଓଡ଼ିଶାର ଚାରି ଶ୍ରୀକ୍ଷେତ୍ର

ପ୍ରମୋଦ କୁମାର ନାୟକ

ବିଶ୍ୱ ସମ୍ବିଧାନର ପ୍ରତୀକାତ୍ମକ, ଅଖିଳ ବିଶ୍ୱର ବିଶ୍ୱବନ୍ଦ୍ୟ ଠାକୁର ଶ୍ରୀଜଗନ୍ନାଥ, ଅନାଦିକାଳରୁ ଦିବ୍ୟ ନୀଳାଚଳଧାମରେ ନିତ୍ୟଲୀଳାଲୀନ । ସେ ସମସ୍ତ ଛୁଆଁ ଅଛୁଆଁ ଭେଦଭାବକୁ ଦୂରକରି ଜାତି, ବର୍ଣ୍ଣ, ଧର୍ମ ଓ ନିର୍ବିଶେଷରେ ସାମ୍ୟ ଓ ମୈତ୍ରୀର ଜୈତ୍ର ପତାକାକୁ ଉଡାଇ ଚାଲିଛନ୍ତି । ତେଣୁ ଶ୍ରୀକ୍ଷେତ୍ରର ଶରଧା ବାଲି ସ୍ପର୍ଶ କଲାମାତ୍ରେ, ପ୍ରତ୍ୟେକ ମତ ଓ ପଥରେ ଅନୁପ୍ରାଣିତ ହୋଇଥିବା ବ୍ୟକ୍ତି ବିଶେଷଙ୍କ ଅହଂଭାବ ଦୂରିଭୂତ ହୋଇଯାଏ । ମନମୀନ ସ୍ୱତଃ ମିଶିଯାଏ ଶ୍ରୀଜଗନ୍ନାଥଙ୍କ ଲୀଳା ଅବଗାହନରେ । ଏହି ଦିବ୍ୟଦୃଷ୍ଟିରୁ ଶ୍ରୀନୀଳାଚଳ ଧାମରେ ପ୍ରତିଷ୍ଠିତ ହୋଇଥିବା ବିଭିନ୍ନ ସମ୍ପ୍ରଦାୟର ମଠ ହେଉଛି, ଏହାର ଜ୍ୱଳନ୍ତ ଉଦାହରଣ । ଅଧିକନ୍ତୁ, ଶ୍ରୀଜଗନ୍ନାଥଙ୍କ ଲୀଳାରେ ଅବଗାହନ ନିମିତ୍ତ ବିଶ୍ୱର କୋଣେ ଅନୁକୋଣେ ନିର୍ମିତ ହୋଇଛି ଶ୍ରୀଜଗନ୍ନାଥଙ୍କ ଭବ୍ୟ ମନ୍ଦିର । ସର୍ବୋପରି ଶ୍ରୀଜଗନ୍ନାଥଙ୍କ ନିତ୍ୟଲୀଳାସ୍ଥଳୀ ଶ୍ରୀକ୍ଷେତ୍ର ନାମକରଣକୁ ନେଇ ବହୁ ଶ୍ରୀକ୍ଷେତ୍ର ପୁଣ୍ୟଭୂମି ଓଡ଼ିଶାରେ ପ୍ରତିଷ୍ଠିତ ଓ ପୂଜିତ । ତନ୍ମଧ୍ୟରୁ ଆଲୋଚ୍ୟ ପ୍ରସଙ୍ଗରେ ଶ୍ରୀକ୍ଷେତ୍ର ପୁରୀ, ଶରଣଶ୍ରୀକ୍ଷେତ୍ର, ମାରଦା, ଶାବର ଶ୍ରୀକ୍ଷେତ୍ର, କୋରାପୁଟ ଓ ଶୈଳ ଶ୍ରୀକ୍ଷେତ୍ର ଅନୁଗୋଳ ସମ୍ପର୍କରେ ଏକ ସଂକ୍ଷିପ୍ତ ଆଲୋକପାତ ମାତ୍ର ।

**ଶ୍ରୀକ୍ଷେତ୍ର ପୁରୀ:**



ଯୁଗେ ଯୁଗେ ଶ୍ରୀକ୍ଷେତ୍ର ପୁରୀ ବହୁଧା ନାମରେ ନାମିତ । ସେଗୁଡିକ ହେଲା, ନୀଳାଦ୍ରି, ନୀଳଗିରି, ନୀଳାଚଳ, ନୀଳଶୈଳ, ନୀଳକନ୍ଦର, ଶଙ୍ଖକ୍ଷେତ୍ର, ଶ୍ରୀଧାମ, ଜଗନ୍ନାଥଧାମ, ଭୂ ସ୍ୱର୍ଗ, ମର୍ତ୍ତ୍ୟବୈକୁଣ୍ଠ, ପୁରୁଷୋତ୍ତମ, ଜଗନ୍ନାଥଧାମ ପୁରୀ ଓ ଅନେକ । ଏହି ପୁଣ୍ୟ ଶ୍ରୀକ୍ଷେତ୍ରରେ ଯୁଗେ ଯୁଗେ ଭଗବାନ ଦିବ୍ୟଲୀଳା ସଂରଚନା କରି ଆସୁଛନ୍ତି । ଯୁଗ ପରିବର୍ତ୍ତନ ହେଲେ ହେଁ, ଏହି କ୍ଷେତ୍ର ହେଉଛି ଶ୍ରୀବିଷ୍ଣୁଙ୍କର ନିତ୍ୟବୈକୁଣ୍ଠଧାମ ।

ପୁରାଣ ଶାସ୍ତ୍ର ସିଦ୍ଧାନ୍ତାନୁସାରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପଥପୁରୁଷ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ସହସ୍ରେ ବୈଦିକ ଯଜ୍ଞାନୁଷ୍ଠାନ ଏହି ଭୂଖଣ୍ଡରେ ଅନୁଷ୍ଠିତ କରିଥିଲେ । ଯଜ୍ଞ-ପୂର୍ଣ୍ଣାହୂତି ଶେଷରେ, ସ୍ୱପ୍ନାଦେଶ କ୍ରମେ ମହୋଦଧିରୁ ବିଶାଳ ଚତୁଶାଖାଯୁକ୍ତ ବିଶାଳଦାରୁ ପ୍ରାପ୍ତ ହୋଇ, ମୂର୍ତ୍ତିବନ୍ତ କଲେ ଚତୁର୍ଦ୍ଧା ବିଗ୍ରହଙ୍କୁ । ବୈକୁଣ୍ଠ ପୁରୀର ଶ୍ରୀବସ୍ତ୍ର ଖଣ୍ଡଶାଳ ରୀତିରେ ନିର୍ମାଣ କଲେ ଶ୍ରୀମନ୍ଦିର ଏବଂ ସ୍ୱୟଂ ଦେବପତି ବ୍ରହ୍ମାଙ୍କ ପୌରହିତ୍ୟରେ ରତ୍ନସିଂହାସନାରୂଢା କରିଥିଲେ ଶ୍ରୀବିଗ୍ରହମାନଙ୍କୁ ଏବଂ ମର୍ତ୍ତ୍ୟ ବୈକୁଣ୍ଠ ମାନ୍ୟତରେ ଶ୍ରୀନୀଳାଚଳ ଧାମ ହେଲା ବିଶ୍ୱ ବିଖ୍ୟାତ । ପରବର୍ତ୍ତୀ କାଳରେ ବହୁ ଦେବ ଦେବୀ ଶଙ୍ଖକ୍ଷେତ୍ରରେ ପଞ୍ଚକ୍ରୋଶ ମଧ୍ୟରେ ହେଲେ ଅଧିଷ୍ଠିତ ଓ ପୂଜିତ । ତତ୍ ସହିତ ମୁନିଋଷି ଆଶ୍ରମ ସମେତ ମଠ ସଂସ୍କୃତି ଶ୍ରୀକ୍ଷେତ୍ର ମହିମାକୁ କରିଛି ପ୍ରସାରିତ ।

ରାଜର୍ଷି ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ମିତ ଶ୍ରୀମନ୍ଦିର ଆଦି କାଳର କରାଳ ଗର୍ଭରେ ବିଲୀନ । ତଦୁପରେ ବାରମ୍ବାର ନିର୍ମିତ ହୋଇ ଚାଲିଛି ନୂତନ ମନ୍ଦିର । କିନ୍ତୁ ବଳିଆରଭୁଜ ସବୁ ଯୁଗରେ, ସବୁସ୍ଥିତିରେ ଅପରିବର୍ତ୍ତିତ । ଅଧୁନା ପରିଦୃଷ୍ଟ ଶ୍ରୀମନ୍ଦିର ଅନନ୍ତବର୍ମ ଚୋଡଗଙ୍ଗ ଦେବଙ୍କ ଅକ୍ଷୟ କୀର୍ତ୍ତି । ଏହି ଭବ୍ୟ ମନ୍ଦିରର ଉଚ୍ଚତା ୧୧୪ ଫୁଟ ୮ଇଞ୍ଚ । ମନ୍ଦିରର ଶୀର୍ଷ ଦେଶରେ ୧୧ଫୁଟ ୮ଇଞ୍ଚର ନୀଳଚକ୍ର ଏବଂ ତଦୁପରେ ପତିତପାବନ ବାନା ଅହର୍ନିଶି ଫରଫର ହୋଇ ଉଡୁଅଛି । ଶ୍ରୀମନ୍ଦିରସ୍ଥ ରତ୍ନ ସିଂହାସନରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ଶ୍ରୀଦେବୀ ଓ ଭୂଦେବୀ ଅଧିଷ୍ଠିତ




ହୋଇ ଅଖିଳ ବିଶ୍ୱବାସୀଙ୍କ ମଙ୍ଗଳ କାମନାରେ ନିତ୍ୟ ଲୀଳାରେ ବ୍ୟାପୃତ । ମହନୀୟତା ହେଲା, ଶ୍ରୀଜଗନ୍ନାଥଙ୍କ ଅପାର କରୁଣାକୁ ଆଶାୟୀ ହୋଇ ଶ୍ରୀକ୍ଷେତ୍ର ଧାମକୁ ପ୍ରତ୍ୟହ ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ଭକ୍ତଙ୍କ ଆଗମନ ହୋଇଥାଏ । ଲୋକମାନଙ୍କ ମଧ୍ୟରେ ବିଭୁପ୍ରେମ ଜାଗ୍ରତ କରିବା ନିମିତ୍ତ, ଶ୍ରୀଜଗନ୍ନାଥ ଭିଆଣ କରିଛନ୍ତି, ବାରମାସକୁ ଦ୍ୱାଦଶଯାତ୍ରା । ସର୍ବୋପରି, ଆଷାଢ଼ ଦ୍ୱିତୀୟାରେ ଅନୁଷ୍ଠିତ, ଘୋଷଯାତ୍ରା ହେଉଛି ଶ୍ରୀଜଗନ୍ନାଥଙ୍କ ମାଧୁର୍ଯ୍ୟମୟ ପତିତପାବନ ଯାତ୍ରା ।

ଶ୍ରୀକ୍ଷେତ୍ରର ବର୍ଣ୍ଣନା ପ୍ରବନ୍ଧର କ୍ଷୀଣ କଳେବର ମଧ୍ୟରେ ସମ୍ଭବପର ନୁହେଁ । ସଂକ୍ଷେପରେ କହିଲେ ଶ୍ରୀକ୍ଷେତ୍ର ପୁରୀ ହେଉଛି, ଭଗବାନଙ୍କର ନିତ୍ୟବୈକୁଣ୍ଠ ଧାମ । ଶ୍ରୀକ୍ଷେତ୍ରରେ ଅଧିଷ୍ଠିତ ଓ ପୂଜିତ ଠାକୁର ହେଉଛନ୍ତି ବିଶ୍ୱଜୀବ ଜଗତର ଏକମାତ୍ର ତ୍ରାଣକର୍ତ୍ତା ।

**ଶରଣ ଶ୍ରୀକ୍ଷେତ୍ର:** ସମୟଚକ୍ରରେ ଶ୍ରୀଜଗନ୍ନାଥଙ୍କ ଉପରେ ଅନେକବାର ବିଧର୍ମୀମାନଙ୍କର ଆକ୍ରମଣ ହୋଇଥିବା ଇତିହାସ ପ୍ରମାଣ ଦିଏ । ତଦନୁଯାୟୀ ମୁସଲମାନମାନଙ୍କ ଓଡ଼ିଶା ଅଧିକାର ପରେ ୧୭୩୩ ମସିହାରେ ତକି ଖାଁ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିବାର ଖବରପାଇ ଶ୍ରୀମନ୍ଦିରର ସେବାୟତଗଣ ଶ୍ରୀବିଗ୍ରହମାନଙ୍କୁ ସ୍ଥାନିତ କରିଥିଲେ ଐତିହାସିକ 'ମାରଦା' ପୀଠକୁ । ତତ୍‌କାଳୀନ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବ ଥିଲେ ବନ୍ଦୀ ଶାଳାରେ । ଏହିବର୍ଷ ଯୋଡା ଆଷାଢରେ ଶ୍ରୀଜଗନ୍ନାଥଙ୍କ ନବକଳେବରକୁ ମନରେ ରଖି, ରାମଚନ୍ଦ୍ର ଦେବ କୌଶଳ କ୍ରମେ ବନ୍ଦୀଗୃହରୁ ପଳାଇ ଆସିଥିଲେ । ଶ୍ରୀଜଗନ୍ନାଥଙ୍କ ଅପାର ଅଲୌକିକ ଲୀଳା ଯୋଗୁଁ ନବକଳେବର ସମ୍ଭବ ହେଲା । ଅଥଚ ଶ୍ରୀରାମଚନ୍ଦ୍ର ଦେବଙ୍କ ପଳାୟନ ଜାଣି, ତକି ଖାଁ ଖୋର୍ଦ୍ଧା ଉପରେ ଆକ୍ରମଣ ଚଳାଇଲା । ରାମଚନ୍ଦ୍ର ଦେବ ଆତ୍ମଗୋପନ କଲେ ବାଣପୁରରେ । ଅପରପକ୍ଷରେ, ଶ୍ରୀମନ୍ଦିର ସେବାୟତଗଣ ନିଶାର୍ଦ୍ଧରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଧରି ନିଳାମ୍ବୁ ଚିଲିକା ଗର୍ଭରେ ଡଙ୍ଗା ଦ୍ୱାରା ପଥରାଘାଟ ପର୍ଯ୍ୟନ୍ତ ଆଣିଥିଲେ । ସେଠାରୁ ଶଗଡଗାଡି ସାହାଯ୍ୟରେ ଖଲ୍ଲିକୋଟ ଗଡଦେଇ, ବନଦୁର୍ଗା ପାହାଡ କଡେ କଡେ ଆଠଗଡ ସନ୍ନିକଟ 'ହାତୀବାରୀ' ଦୁର୍ଗମ ଅରଣ୍ୟାନି ମଧ୍ୟରେ ରାଜା ଜଗନ୍ନାଥ ହରିଚନ୍ଦନଙ୍କ ତତ୍ତ୍ୱାବଧାନରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ସ୍ଥାନିତ କଲେ । ଅପରପକ୍ଷରେ, ତକି ଖାଁ, ରାଜାରାମଚନ୍ଦ୍ର ବାଣପୁରରେ ଥିବା ଜାଣି ଆକ୍ରମଣ କଲେ । ତତ୍‌ପୂର୍ବରୁ ରାଜା ଜାଣିପାରି ବର୍ବରା ଜଙ୍ଗଲ ପଥରେ ପ୍ରାଣ ଭୟରେ ଗତିକରି ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହେଲେ । ପରିଣାମରେ ଶ୍ରୀଜଗନ୍ନାଥ ଭକ୍ତର ମନଜାଣି ଆଦେଶ ଦେଲେ, ''ଆମ୍ଭେ ରାଜା ଜଗନ୍ନାଥ ହରିଚନ୍ଦନଙ୍କ ତତ୍ତ୍ୱାବଧାନରେ ଆଠଗଡ ରାଜ୍ୟର 'ହାତୀ ବାରୀ' ଜଙ୍ଗଲ ମଧ୍ୟରେ ଅଛୁ । ତୁମେ ଏଠାକୁ ଆସ । ଏହି ଘଟଣାଟି ଘଟିଥିଲା ୧୭୩୩ ମସିହା ଡିସେମ୍ବର ୨୯ତାରିଖ ଦିନ । ସଂଯୋଗକ୍ରମେ, ଖୋର୍ଦ୍ଧା ରାଜ ପରିବାର ସମେତ ରାଜା ରାମଚନ୍ଦ୍ର ଦେବ 'ହାତୀବାରି' ଜଙ୍ଗଲରେ ଆଶ୍ରୟ ନେଲେ । ଶ୍ରୀଜଗନ୍ନାଥ ଲୀଳାମୟ । ସେ ସ୍ୱପ୍ନାଦେଶ ଦ୍ୱାରା ଆଠଗଡ ରାଜା ଜଗନ୍ନାଥ ହରିଚନ୍ଦନଙ୍କୁ ଖବର ଦେଲେ । ରାଜା ଆବଶ୍ୟକୀୟ ଦ୍ରବ୍ୟ ସହିତ ଶ୍ରୀଜଗନ୍ନାଥଙ୍କ ନିକଟକୁ ଯାଇଥିଲେ । ସେଠାରେ ରାଜା ରାମଚନ୍ଦ୍ର ଦେବ ମଠ ମହନ୍ତ ତଥା ଶଙ୍କରାଚାର୍ଯ୍ୟଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ । ସେ କାଳ ବିଳମ୍ବ ନକରି ଲୋକମାନଙ୍କ ଦ୍ୱାରା ଜଙ୍ଗଲକୁ ପରିଷ୍କାର କରି ଏକ 'ମେରଦା' ନିର୍ମାଣ କଲେ । ଏହି ମେରଦା ଦୁଇମାସ ମଧ୍ୟରେ, ୩୮ x ୩୦ ଫୁଟ ମନ୍ଦିର ହୋଇଥିଲା । ୨୦ଫୁଟ ସିଂହାସନରେ ଶ୍ରୀଜଗନ୍ନାଥଙ୍କୁ ଅଧିଷ୍ଠିତ କରିଥିଲେ । ସେହିପରି ଅନ୍ୟ ବିଗ୍ରହମାନଙ୍କୁ ସେମାନଙ୍କ ଚକାରେ ଅବସ୍ଥାପିତ କଲେ ଓ ବିଧିପୂର୍ବକ ପୂଜାରାଧନା ବିଧି ବ୍ୟବସ୍ଥା କରିଥିଲେ । ଉପର୍ଯ୍ୟୁକ୍ତ ମେରଦା ଉପରକୁ ଟୀଖ ହୋଇ ନଥିବାରୁ, ଏହା କାଳକ୍ରମେ 'ମେରଦା' ନାମରେ ନାମିତ । ରାଜା ହରିଚନ୍ଦନ ଶ୍ରୀଜଗନ୍ନାଥଙ୍କ ନିମିତ୍ତ ୯୦୦ ଭରଣ ଧାନଜମି ଖଞ୍ଜା କରିଥିଲେ । ଏହି ମାରଦା ମଧ୍ୟରେ ଚତୁର୍ଦ୍ଧା ମୂର୍ତ୍ତି ୨ବର୍ଷ ୪ମାସ ରହିଥିଲେ । ଅପରପକ୍ଷରେ, ରାଜପରିବାର ରହିବା ନିମିତ୍ତ ପାନ୍ତି ଆମ୍ବାଠାରେ ଭୂମିତଳେ ନିର୍ମିତ କରିଥିଲେ ଏକ ଦୁର୍ଗ । ରାଜା ଜଗନ୍ନାଥ ହରିଚନ୍ଦନ ଅସମୟରେ, ଗଜପତିଙ୍କ ପରିବାର ତଥା ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ସସମ୍ମାନେ ରଖିଥିବାରୁ, ଗଜପତି ରାଜା ପରବର୍ତ୍ତୀ କାଳରେ, ଆଠଗଡ ରାଜାଙ୍କୁ ଶ୍ରୀକ୍ଷେତ୍ରରେ ଏକ ସାହି ଦେଇ 'ଆଠଗଡସାହି' ନାମରେ ଘୋଷିତ କଲେ । ତଥା ପ୍ରତ୍ୟେକ ବଡ ଏକାଦଶୀ ଦିନରେ ଶ୍ରୀମନ୍ଦିରରେ ମହାଦୀପ ଚଢାଇଲା ବେଳେ ଜଗନ୍ନାଥ ହରିଚନ୍ଦନଙ୍କ ନିମିତ୍ତ ଉତ୍ସର୍ଗ କରିବାର ପ୍ରଥା ଅବଧି ପ୍ରଚଳିତ ।

ଯଥା– ଶରଣ ପଞ୍ଜିର ମାନ ଉଦ୍ଧାରଣ ଜଗଦ୍ଦେବଭାଇ
ହରିଚନ୍ଦନଙ୍କୁ ଶଙ୍ଖରେ ପୂରାଇ ଚକ୍ରଆଡୁଆଳରେ
ରଖିବା ଆଜ୍ଞା ହେଉ ହେ ମଣିମା, ଶୁଣିମା ।

ସଂକ୍ଷେପରେ କହିଲେ, ଆଠଗଡ ରାଜାଙ୍କ ନିକଟରେ, ଅସମୟରେ ଶ୍ରୀଜଗନ୍ନାଥ ଓ ଗଜପତି ପରିବାର ଶରଣ ନେଇଥିବା ଦୃଷ୍ଟେ, ମାରଦା ଶରଣ ଶ୍ରୀକ୍ଷେତ୍ର ନାମରେ ମହିମାବନ୍ତ । ଅଧୁନା ଶରଣ ଶ୍ରୀକ୍ଷେତ୍ର ମାରଦା ଏକ ପୁଣ୍ୟପୀଠର ମାନ୍ୟତା ପାଇବାକୁ ଆଶାୟୀ ହୋଇ ରହିଛି ।



**ଶାବର ଶ୍ରୀକ୍ଷେତ୍ର:** ଶାବର ଶ୍ରୀକ୍ଷେତ୍ର, କୋରାପୁଟ ଜିଲ୍ଲାର ମଧ୍ୟସ୍ଥଳରେ ଏକ ପାହାଡ ଉପରେ ଦଣ୍ଡାୟମାନ । ନୀଳାଚଳଧାମ



ପୁରୀରେ ୧୯୬୯ ମସିହାରେ ଠାକୁରଙ୍କର ନବକଳେବର ହୋଇଥିଲା । ଏହି ସମୟରେ ବଳକା ଦାରୁକୁ ନେଇ ନିର୍ମିତ ହୋଇଥିଲେ ଚତୁର୍ଦ୍ଧାମୂର୍ତ୍ତୀ ଓ ସ୍ଥାନିତ ହୋଇଥିଲେ ସୁଦୂର କୋରାପୁଟରେ । କୋରାପୁଟ ସହରର ମଧ୍ୟସ୍ଥଳରେ ପ୍ରଥମେ ପୁରୁଣା ପିଚୁ ଟିଣରେ ୧୦ x ୧୦ଫୁଟ ଓସାରରେ ନିର୍ମିତ ହେଲା ଏକ ଗମ୍ବୁଜାକୃତି ମନ୍ଦିର । ଏହି ମନ୍ଦିରଟି ପ୍ରତିଷ୍ଠା ହେଲା ୧୯୭୨ ମସିହାରେ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ପୌରହିତ୍ୟରେ । ଶ୍ରୀଜଗନ୍ନାଥଙ୍କ ଆଦ୍ୟ ସେବକ ଶବରବଂଶଜ ତଥା କୋରାପୁଟ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ହୋଇଥିବାରୁ ଭବ୍ୟମନ୍ଦିରର ନାମକରଣ ଶ୍ରୀଶର୍ମା ଦେଲେ ଶାବର ଶ୍ରୀକ୍ଷେତ୍ର ।

ସମୟକ୍ରମେ ୧୯୭୭ ଅକ୍ଟୋବର ୨ ତାରିଖରେ ଶାବର ଶ୍ରୀକ୍ଷେତ୍ର ପରିଚାଳନା ନିମିତ୍ତ ନବ୍ୟକର୍ମକର୍ତ୍ତା ନିର୍ବାଚନ ହେଲା । ସେମାନଙ୍କ ସାଧୁ ଉଦ୍ୟମ ଫଳରେ ଶ୍ରୀଜଗନ୍ନାଥ ଚେତନାକୁ ଲୋକାଭିମୁଖୀ କରିବାରେ ସକ୍ଷମ ହେଲେ । ପରିଣାମରେ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ମନ୍ଦିର ପ୍ରବେଶାଧିକାର ମିଳିଲା ।

ଶାବର ଶ୍ରୀକ୍ଷେତ୍ରରେ ମନ୍ଦିର ପ୍ରଶାସନ ଦ୍ୱାରା ରଥଯାତ୍ରା ଆରମ୍ଭ ହୋଇଥିଲା ୧୯୭୨ ମସିହାରେ । ଏହି ଯାତ୍ରାରେ ପୁରୀ ଗଜପତି ରଥରେ ଛେରାପହଁରା କରିଥିଲେ। ଇତ୍ୟବସରେ, ଗଜପତି ଜଣେ ବୃଦ୍ଧ ଆଦିବାସୀଙ୍କୁ ରଥରେ ଛେରା ପହଁରା କରିବା ନିମିତ୍ତ ନୂତନ ପରମ୍ପରା ସୃଷ୍ଟି କରିଥିଲେ ।

୧୯୭୮ ମସିହାରେ ଶ୍ରୀଜଗନ୍ନାଥଙ୍କ ପାଇଁ ନିର୍ମିତ ହେଲା ଭବ୍ୟମନ୍ଦିର । ପୁନଶ୍ଚ ଗଜପତିଙ୍କ ଉପସ୍ଥିତିରେ ଚତୁର୍ଦ୍ଧା ମୂର୍ତ୍ତି ସିଂହାସନାରୂଢ ହେଲେ, ୧୯୭୮ ମସିହା ଜୁନ୍ ୯ତାରିଖରେ ।

କାଳକ୍ରମେ ଶାବର ଶ୍ରୀକ୍ଷେତ୍ରର ଶ୍ରୀବୃଦ୍ଧି ନିମିତ୍ତ, ବିଦ୍ୟାନଗରୀ କାଶୀରେ ଦୀର୍ଘ ଦୁଇଶହ ବର୍ଷଧରି ପୂଜିତ ବାଣଲିଙ୍ଗଙ୍କୁ ଅଣାଯାଇ, ଶ୍ରୀଶବରେଶ୍ୱର ନାମରେ ଅଧିଷ୍ଠିତ ହେଲେ ଶାବର ଶ୍ରୀକ୍ଷେତ୍ରରେ ୧୯୮୨ ମସିହା ଏପ୍ରିଲ ମାସରେ । ପରବର୍ତ୍ତୀ, ୧୯୮୮ ଫେବୃଆରୀ ୨୫ ତାରିଖଠାରୁ ୨୯ ତାରିଖ ମଧ୍ୟରେ ଶାବର ଶ୍ରୀକ୍ଷେତ୍ର ପରିସୀମା ମଧ୍ୟରେ ପାର୍ଶ୍ୱମନ୍ଦିର ସମୂହ ପ୍ରତିଷ୍ଠା ଲାଭ କରିଥିବା ସମସ୍ତ ଦେବାଦେବୀ ମନ୍ଦିର ଶାବର ଶ୍ରୀକ୍ଷେତ୍ରରେ ଦେଖିବାକୁ ମିଳେ । ଶ୍ରୀଶ୍ରୀଜଗନ୍ନାଥଙ୍କର ବିଭିନ୍ନ ବେଶର କମନୀୟ ମୂର୍ତ୍ତି ଶାବର ଶ୍ରୀକ୍ଷେତ୍ରକୁ କରିଛି ସରସ ଓ ସୁନ୍ଦର ତଥା ଭକ୍ତ ପ୍ରାଣରେ ବିଭୁପ୍ରେମ ଉଦ୍‌ବେଳିତ କରେ ।

ଶାବର ଶ୍ରୀକ୍ଷେତ୍ରରେ ଶ୍ରୀଜୀଉମାନଙ୍କୁ ଶ୍ରୀକ୍ଷେତ୍ର ପୁରୀ ଅନୁକରଣରେ ନିତ୍ୟ ନୈମିତ୍ତିକ ପୂଜା ବିଧି ପ୍ରଚଳିତ । ଶାବର ଶ୍ରୀକ୍ଷେତ୍ର ମଧ୍ୟରେ ଆନନ୍ଦବଜାର ସମସ୍ତଙ୍କୁ ଆନନ୍ଦ ବିଭୋର କରିବାରେ ସମର୍ଥ ।

ପରିଶେଷରେ ବକ୍ତବ୍ୟ ଏହି ଯେ, ଶାବର ଶ୍ରୀକ୍ଷେତ୍ର ସବୁକ୍ଷେତ୍ରରେ ତାର ଜୟଯାତ୍ରା ଅବ୍ୟାହତ ରଖିଛି । ପରିଣାମରେ, ନିର୍ମିତ ହୋଇଛି ଶାବର ସଂସ୍କୃତି ଗବେଷଣା କେନ୍ଦ୍ର ଓ ଶାବର ଶ୍ରୀକ୍ଷେତ୍ର ପତ୍ରିକା, ଶାବର ଶ୍ରୀକ୍ଷେତ୍ର ସମାଚାର ଯାହାକି ଶ୍ରୀଜଗନ୍ନାଥ ସଂସ୍କୃତିର ସାମ୍ୟ ଓ ମୈତ୍ରୀର ଜୟଗାନ କରେ ।

**ଶୈଳଶ୍ରୀକ୍ଷେତ୍ର:** ଓଡ଼ିଶାର କେନ୍ଦ୍ରାଞ୍ଚଳରେ ଅବସ୍ଥିତ ଅନୁଗୋଳ ସହର । ଏହି ସହରର ମଧ୍ୟଭାଗରେ ରାଜରାସ୍ତା



ପାର୍ଶ୍ୱରେ ସୁନାଶଗଡ ପାହାଡ ଉପରେ ନିର୍ମିତ ହୋଇଛି ଶୈଳ ଶ୍ରୀକ୍ଷେତ୍ର ।

ଶ୍ରୀଜଗନ୍ନାଥ ଲୀଳାମୟ । ସେ କେତେବେଳେ କେଉଁ ରୂପ ବିଭବରେ ଉଦ୍‌ଭାସିତ ହେବେ କିଏ କହିବ । ତା' ନହେଲେ, ଏକ ପ୍ରସ୍ତର ଉପରେ ୧୧୧ ଫୁଟ ଉଚ୍ଚତା ବିଶିଷ୍ଟ ବିଶାଳ ଶ୍ରୀବସ୍ତ ଖଣ୍ଡଶାଳ ସଦୃଶ ମନ୍ଦିର ସମ୍ଭବ ହୋଇନଥାନ୍ତା।




ଯୁଗଯୁଗ ଧରି ସୁନା ଶଗଡରେ ବିଶାଳ ପାଷାଣ ଖଣ୍ଡ ପଡି ରହିଥିଲା ସତେକିବା ଅଭିଶପ୍ତ ହୋଇ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କର ପଦସ୍ପର୍ଶରେ ପାଷାଣୀ ଅହଲ୍ୟା ମୁକ୍ତିପାଇ ସ୍ୱାମୀ ଗୌତମଙ୍କର ପ୍ରିୟ ଭାଜନ ହୋଇଥିଲେ । ତଦ୍ରୂପରି, ଅନୁଗୋଳ ସହର ମଧ୍ୟରେ ଅବହେଳିତ ତଥା ସମସ୍ତ ଅପକର୍ମକୁ ନିରବରେ ସହିନେଇଥିବା ସୁନାଶଗଡ ପାହାଡ ଆଜି ମସ୍ତକରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଧାରଣ କରି ସତେ କିବା ଅଭିଶାପରୁ ମୁକ୍ତହୋଇଛି ।

ଐତିହାସିକ ସିଦ୍ଧାନ୍ତାନୁସାରେ ଅନୁଗୋଳ ଥିଲା ପ୍ରାଚୀନ ଗଡଜାତମାନଙ୍କ ମଧ୍ୟରୁ ଅନ୍ୟତମ । ରାଜତନ୍ତ୍ର ଶାସନ କାଳରେ, ଏହାର ରାଜବାଟୀ ଥିଲା ମାତଙ୍ଗିନୀ ନଦୀ କୂଳରେ । ଯାହାକି ଆଜି ପୁରୁଣାଗଡ ନାମରେ କଥିତ। ରାଜତନ୍ତ୍ର ଶାସନ କାଳରେ ଏଠାରେ ଶ୍ରୀଜଗନ୍ନାଥଙ୍କ ଭବ୍ୟ ମନ୍ଦିର ସମେତ ବହୁଦେବଦେବୀ ଥିଲେ ଅଧିଷ୍ଠିତ ଓ ପୂଜିତ । ଭାରତର ସ୍ୱାଧୀନତା ତଥା ରାଜତନ୍ତ୍ରରେ ଉଚ୍ଛେଦ ପରେ, ଅନୁଗୋଳ ଏକ ସ୍ୱତନ୍ତ୍ର ଜିଲ୍ଲାର ମାନ୍ୟତା ଲାଭକଲା ଏବଂ ଅନୁଗୋଳ ଗଡ ସ୍ଥାନାନ୍ତରିତ ହେଲା ସୁନାଶଗଡ ପାହାଡ ପାଦଦେଶକୁ । ଏଠାରେ ପୂର୍ବରୁ ମା' ବୁଢୀ ଠାକୁରାଣୀଙ୍କ ଆସ୍ଥାନ ଥିଲା । ଅନୁଗୋଳ ସହର ସୁନାଶଗଡକୁ କେନ୍ଦ୍ରକରି ଗଢି ଉଠିବାରୁ ନିର୍ମିତ ହେଲା ଶ୍ରୀବ୍ରହ୍ମେଶ୍ୱର ଓ ମଦନମୋହନଙ୍କ ଭବ୍ୟମନ୍ଦିର । ପରିଣାମରେ ଶୈବ, ଶାକ୍ତ ଓ ବୈଷ୍ଣବ ଧାରା ପ୍ରବାହିତ ହେଲା । କିନ୍ତୁ ଶ୍ରୀଜଗନ୍ନାଥଙ୍କ ବିହୁନେ କେତେକ ଜଗନ୍ନାଥ ପ୍ରେମୀଙ୍କ ମନରେ ବିଶ୍ୱ ପ୍ରେମ ଜାଗରୁତ ହେଲା । ଫଳତଃ ପ୍ରଥମେ ରଥଯାତ୍ରା ଅବସରରେ କେତେକ ଜଗନ୍ନାଥ ପ୍ରେମୀ ଚତୁର୍ଦ୍ଧା ମୂର୍ତ୍ତି ପ୍ରତିଷ୍ଠା ପୂର୍ବକ ରଥଯାତ୍ରା ଆରମ୍ଭ କଲେ । ବାହୁଡା ଯାତ୍ରା ଅନ୍ତେ, ଠାକୁରମାନଙ୍କୁ ନେଇ ମଦନମୋହନ (ରାଧାକୃଷ୍ଣ) ମନ୍ଦିରରେ ରଖିଲେ । ଏହିପରି କିଛି ବର୍ଷ ପରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ମଦନମୋହନଙ୍କ ମନ୍ଦିରରେ ପାର୍ଶ୍ୱ ଦେବତା ଭାବରେ ରଖିବା ଅନୁଚିତ ମନେହେଲା । ଶ୍ରୀଜଗନ୍ନାଥ ଲୀଳା ଭିଆଣ କଲେ ।

ଅନୁଗୋଳ ସହରର ତଥା ଆଖପାଖ ଅନେକ ଗ୍ରାମର ଜଗନ୍ନାଥ ପ୍ରେମୀ ଏକତ୍ରିତ ହୋଇ ସୁନାଶଗଡ ପାହାଡ ଉପରେ ଶ୍ରୀଜଗନ୍ନାଥଙ୍କ ଭବ୍ୟମନ୍ଦିର ନିର୍ମାଣ ନିମିତ୍ତ ବିଚାର ବିମର୍ଷ କଲେ । ପରିଣାମରେ, ୧୯୯୬ ମସିହା ଫେବୃଆରୀ ମାସ ୨୧ ତାରିଖ ଦିନ ଶୁଭ ମୁହୂର୍ତ୍ତରେ ସୁନାଶଗଡ ପାହାଡ ଉପରେ ମନ୍ଦିର ନିର୍ମିତ ଶିଳାନ୍ୟାସ କରାଗଲା । ସମୟର ସିକତା ଉପରେ ପଞ୍ଚପୀଢ ପଞ୍ଚରଥ ବିଶିଷ୍ଟ, ବୈକୁଣ୍ଠ ପୁରୀର ଶ୍ରୀବସ୍ତ ଖଣ୍ଡୁଶାଳ ସଦୃଶ ୧୧୧ଫୁଟ ଉଚ୍ଚତାର ଭବ୍ୟମନ୍ଦିର ସମେତ ଜଗମୋହନ ଓ ନାଟ୍ୟ ମନ୍ଦିର କାର୍ଯ୍ୟ ସମ୍ପନ୍ନ ହେଲା । ଶାସ୍ତ୍ରୀୟ ବିଧିମତେ ଦାରୁ ସଂଗ୍ରହ କରାଯାଇ ଚତୁର୍ଦ୍ଧା ମୂର୍ତ୍ତିଙ୍କ ଶ୍ରୀବିଗ୍ରହ ୧୯୯୯ ମସିହାରେ ନିର୍ମିତ ହୋଇଥିଲା । ଶ୍ରୀକ୍ଷେତ୍ର ପୁରୀ ଅନୁକରଣରେ ନିର୍ମିତ ହେଲା କୂର୍ମବେଢା ଓ ମେଘନାଦ ପାଚେରୀ । କ୍ରମେ କ୍ରମେ କ୍ଷେତ୍ରେଶ୍ୱରୀ ମା ବିରଜା, ସରସ୍ୱତୀ, ମହାଲକ୍ଷ୍ମୀ ଓ ସୂର୍ଯ୍ୟମନ୍ଦିର ଯଥାକ୍ରମେ ମନ୍ଦିରର ଅଗ୍ନିକୋଣ, ପଶ୍ଚିମ, ବାୟୁକୋଣରେ ନିର୍ମିତ ହେଲା । ଐଶାନ୍ୟ କୋଣରେ ଆନନ୍ଦବଜାର କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ମନ୍ଦିର ସମ୍ମୁଖରେ ବାଇଶି ପାହାଚ ସିଂହଦ୍ୱାର ଗୁମ୍ଫୁଟ ତଥା ସମ୍ମୁଖରେ ଦେବସାରଥି ଅରୁଣସ୍ତମ୍ଭ ନିର୍ମିତ ହେଲା । କାଶୀ ବିଶ୍ୱନାଥଙ୍କୁ ବାଇଶି ପାହାଚର ତୃତୀୟ ପାବଚ୍ଛର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥାପିତ କରାଗଲା। ପରିଶେଷରେ ତା ୨୨।୨।୨୦୦୨ରିଖରେ ଶୁଭଲଗ୍ନ ଯୋଗେ ଶ୍ରୀବିଗ୍ରହମାନଙ୍କୁ ରତ୍ନସିଂହାସନରେ ପ୍ରତିଷ୍ଠିତ କରାଯାଇ ପୂଜାର୍ଚ୍ଚନାବିଧି ପ୍ରଚଳିତ ହେଲା। । ପୂର୍ବରୁ ପୂଜିତ ହେଉଥିବା ଚତୁର୍ଦ୍ଧା ବିଗ୍ରହଙ୍କୁ ମଦନମୋହନଙ୍କ ମନ୍ଦିରରୁ ଅଣାଯାଇ ଶ୍ରୀମନ୍ଦିରରେ ମଧ ସିଂହାସନାରୁଢ କରାଗଲା । ଅଧୁନା ସୁନାଶଗଡ ପାହାଡର ନାମ ପରିବର୍ତ୍ତନ ହୋଇ ଶୈଳଶ୍ରୀକ୍ଷେତ୍ର ନାମରେ ନାମିତ ହେଲା ।

ଶୈଳ ଶ୍ରୀକ୍ଷେତ୍ରରେ ତିନିଧୂପ ଓ ପାଞ୍ଚ ଅବକାଶ ରୀତିରେ ଦୈନିକ ପୂଜାବିଧି ଠାକୁରଙ୍କୁ ଅର୍ପଣ କରାଯାଉଛି । ବର୍ଷ ସାରା ୬୪ଟି ପର୍ବପର୍ବାଣି ଶୈଳଶ୍ରୀକ୍ଷେତ୍ରରେ ପାଳିତ ହେଉଅଛି । ସର୍ବୋପରି ଶ୍ରୀଜଗନ୍ନାଥଙ୍କ ଘୋଷଯାତ୍ରା ସମୟରେ ତିନିଗୋଟି ରଥର ପ୍ରଚଳନ ଏ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପଦକ୍ଷେପ ।

ସ୍ୱତନ୍ତ୍ର ଭୂ-ଅର୍ଜନ କାର୍ଯ୍ୟାଳୟ
ରେଙ୍ଗାଳି ଦକ୍ଷିଣ କେନାଲ ସିଷ୍ଟମ, ଢେଙ୍କାନାଳ





# ଶ୍ରୀଜଗନ୍ନାଥଙ୍କ ଶକ୍ତିତତ୍ତ୍ୱ

**ଶିବସୁନ୍ଦର ପଟ୍ଟନାୟକ**



ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ଧାମରେ ନୀଳଗିରି ଉପରେ ନୀଳ କନ୍ଦରରେ ବା ମନ୍ଦିରରେ ବିଜେ କରିଅଛନ୍ତି । ତେବେ ଏ ପ୍ରଭୁ କିଏ ? ସଂକ୍ଷିପ୍ତ ଉତ୍ତର ହେବ- ସେ ଭଗବାନ ଅଟନ୍ତି । କେହି କେହି ଶ୍ରୀଜଗନ୍ନାଥଙ୍କୁ ଅର୍ଚ୍ଚା ବିଗ୍ରହ କହନ୍ତି । କେହି କେହି ମଧ୍ୟ ପରମବ୍ରହ୍ମ-ପରମାତ୍ମା କହନ୍ତି । ଅର୍ଚ୍ଚା ବିଗ୍ରହ ବା ଦୃଶ୍ୟମାନ ମୂର୍ତ୍ତି ଯାହାକୁ ନିଜ ହାତରେ ପୂଜା ବା ସେବା କରିବାକୁ ସୁବିଧା ପାଉଅଛେ । ପରମବ୍ରହ୍ମଙ୍କୁ ମଧ୍ୟ ଆମ୍ଭେମାନେ ସେବା କରିବା । ସେ ସେବା ମାନସିକ ସେବା ଭଗବାନଙ୍କ କୌଣସି ଅବତାର ବା ଶ୍ରୀବିଗ୍ରହକୁ ବାଚ୍ୟ କୁହନ୍ତି । ଭଗବାନଙ୍କ କୌଣସି ନାମକୁ ବାଚକ କହନ୍ତି । ବାଚ୍ୟ ଓ ବାଚକ ମଧ୍ୟରେ କିଛି ତଫାତ୍ ନାହିଁ । ଭଗବାନ କେବଳ ଭକ୍ତକୁ ପ୍ରେମପୂର୍ଣ୍ଣ ସେବା କରିବା ପାଇଁ ସୁଯୋଗ ଦେଇଥାନ୍ତି ।

ଆମ୍ଭେମାନେ ବେଦ ଉପନିଷଦ ଓ ପୁରାଣମାନଙ୍କରୁ ଜାଣିବାକୁ ପାଉଅଛେ ଯେ ଭଗବାନ ଗୋଲକ ଧାମରୁ ବିଭିନ୍ନ ଅବତାର ଲୀଳା କରିବା ପାଇଁ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ନିଜ କାର୍ଯ୍ୟବଳୀ ଶେଷରେ ସ୍ୱଧାମ ଗୋଲକ ଧାମକୁ ଫେରିଯାଆନ୍ତି । ଯେହେତୁ ନୀଳାଚଳଧାମ ଗୋଲକଧାମ ଅଟେ ଏବଂ ଶ୍ରୀଜଗନ୍ନାଥ ଗୋଲକପତି ଭଗବାନ ଅଟନ୍ତି ସମସ୍ତ ଅବତାରମାନ ନୀଳାଚଳଧାମରୁ ପ୍ରକଟ ହୋଇ ଧରାଧାମରେ ଲୀଳା କରି ନୀଳାଚଳ ଧାମକୁ ଫେରିଆସନ୍ତି । ଅନେକ ଓଡ଼ିଆ ବୈଷ୍ଣବ କବି ସେ ବିଷୟରେ ବର୍ଣ୍ଣନା କରିଅଛନ୍ତି । ଏଠାରେ ବୈଷ୍ଣବ କବି ଦୀନକୃଷ୍ଣ ଦାସ ରସକଲ୍ଲୋଳ ଖଣ୍ଡକାବ୍ୟରେ ଯାହା ବର୍ଣ୍ଣନା କରିଅଛନ୍ତି, ତାହା ଉଲ୍ଲିଖିତ ହୋଇଅଛି ।

କମଳାନେତ୍ର-କମଳା-ପ୍ରାଣ ନାୟକ ।<br>
କଳା ପରବ ତରେ ଲୀଳା କର ଅନେକ ॥<br>
କଲେ ଇଚ୍ଛା ମନେ ହେବା କଂସ ଅନ୍ତକ ।<br>
କରିବା ଉଶ୍ୱାସ ମହୀଭରା ଯେତେକ ॥<br>
କପଟେ ହୋଇବା ବ୍ରଜେ ନନ୍ଦ ବାଳକ ।<br>
କଉତୁକେ ବୋଲାଇବା ପଶୁ ପାଳକ ॥<br>
କରି ଏ ବିଚାର କଇବଲ୍ୟ ଦାୟକ ।<br>
କଂସ ଆଦି ରାକ୍ଷସଙ୍କୁ ମାରିବାକୁ ଉତ୍ସୁକ ॥<br>
କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ ।<br>
କରିବାକୁ ଜାତ ଜଗନ୍ନାଥ ଜନକ ॥

(ରସ କଲ୍ଲୋଳ-୧/୧୩-୧୭)

(ରାଗ-ସଙ୍ଗମତୀ ଆହାରୀ)




କେବଳ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ନୁହେଁ, ହିନ୍ଦୁଧର୍ମ ଶାସ୍ତ୍ର ବେଦ, ଉପନିଷଦ, ପୁରାଣ ଆଦି ସଂସ୍କୃତ ଗ୍ରନ୍ଥରେ ଶ୍ରୀଜଗନ୍ନାଥ ଯେ ଭଗବାନ ଏହା ସ୍ୱୀକାର କରାଯାଇଅଛି । ଏ ପ୍ରବନ୍ଧରେ ସାମାନ୍ୟ କେତୋଟି ଉଦାହରଣ ଦିଆଯାଇଅଛି ।

କାଳୀୟଦଳନ ବେଳେ ନାଗପତ୍ନୀମାନଙ୍କ ଅନୁରୋଧରେ ଶ୍ରୀକୃଷ୍ଣ ଭଗବାନ କାଳୀୟ ନାଗକୁ କ୍ଷମା କଲା ପରେ ସେମାନେ ଭଗବାନ ଗରୁଡଧ୍ୱଜ ଶ୍ରୀଜଗନ୍ନାଥଙ୍କୁ ପ୍ରଦକ୍ଷିଣ ଓ ବନ୍ଦନା କରିଥିଲେ । ଶ୍ରୀମଦ୍ ଭାଗବତମ୍‌ରେ ତାହା ଏପରି ବର୍ଣ୍ଣନା ଅଛି–

''ପୂଜୟିତ୍ୱା ଜଗନ୍ନାଥ ପ୍ରସାଦ୍ୟ ଗରୁଡଧ୍ୱଜମ୍ ।

ତତ୍ ପ୍ରୀତୋଽଭ୍ୟନୁଜ୍ଞାତଃ ପରିକ୍ରମ୍ୟା ଭିବନ୍ଦତମ୍ ।।'

(ଶ୍ରୀମଦ୍‌ଭାଗବତମ୍–ସ୍କନ୍ଧ–୧୦।୧୬।୬୬ଶ୍ଳୋକ)

ନାଗପତ୍ନୀମାନେ ଏବଂ ଶ୍ରୀକୃଷ୍ଣଙ୍କୁ ସ୍ତୁତି ବେଳେ ଏବଂ ନାଗରାଜ କାଳୀୟ ଶ୍ରୀକୃଷ୍ଣଙ୍କୁ ଜଗତସ୍ୱାମୀ ରୂପେ କହିଥିବା କଥା ଶ୍ରୀବିଷ୍ଣୁପୁରାଣରେ ଯଥାକ୍ରମେ ଅଂଶ ୫।୭।୫୭ ଶ୍ଳୋକ ଏବଂ ଅଂଶ ୫।୭।୭୫ ଶ୍ଳୋକରେ ବର୍ଣ୍ଣନା ଅଛି । ଶ୍ରୀଜଗନ୍ନାଥ ଶବ୍ଦର ଅର୍ଥ ମଧ୍ୟ ଜଗଦ୍‌ସ୍ୱାମୀ ଅଟେ । କିନ୍ତୁ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥ ବୋଲି ସ୍ୱୀକାର କରିବା ନିମ୍ନ ଶ୍ଳୋକରେ ଅଛି–

''ଭୁବନେଶ ଜଗନ୍ନାଥ ମହାପୁରୁଷ ପୂର୍ବଜ ।

ପ୍ରାଣାଂସ୍ତ୍ୟଜତି ନାଗୋଽୟଂ ଭର୍ତୃଭିକ୍ଷାଂ ପ୍ରୟଚ୍ଛନଃ ।''

(ଶ୍ରୀବିଷ୍ଣୁ ପୁରାଣ ଅଂଶ ୫।୭।୫୮ଶ୍ଳୋକ)

ହେ ଭୁବନେଶ ! ତ୍ରିଭୁବନର ଈଶ୍ୱର ! ହେ ଜଗନ୍ନାଥ !

ହେ ମହାପୁରୁଷ ! ହେ ପୂର୍ବଜ ! (ଆଦିପୁରୁଷ)

ଏହି ନାଗ ଏବେ ନିଜର ପ୍ରାଣ ଛାଡିଦେବାକୁ ଚାହୁଁଛି ।

ସେହି କାଳୀୟଦଳନ ବେଳେ ଶ୍ରୀକୃଷ୍ଣଙ୍କ ଅଗ୍ରଜ ଶ୍ରୀବଳରାମ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥ ବୋଲି ସ୍ୱୀକାର କରିଅଛନ୍ତି–

''ଜଗତ୍ୟର୍ଥ ଜଗନ୍ନାଥ ଭାରାବତରଣେଚ୍ଛୟା ।

ଅବତୀର୍ଣ୍ଣୋଽସି ମର୍ତ୍ତ୍ୟେଷୁ ତବାଂଶଶ୍ଚାହମଗ୍ରଜଃ ।।''

(ଶ୍ରୀବିଷ୍ଣୁପୁରାଣ–ଅଂଶ ୫।୭।୩୮ ଶ୍ଳୋକ)

(ହେ ଜଗନ୍ନାଥ ! ସଂସାର ହିତ ପାଇଁ ପୃଥିବୀଭାର ହରଣ ଇଚ୍ଛାରେ ଆପଣ ମର୍ତ୍ତ୍ୟଲୋକରେ ଅବତାର ନେଇ ଅଛନ୍ତି । ଆପଣଙ୍କ ଅଗ୍ରଜ ମୁଁ ମଧ୍ୟ ଆପଣଙ୍କ ଅଂଶ ଅଟେ ।)

ଶ୍ରୀବିଷ୍ଣୁପୁରାଣରେ ଶ୍ରୀଶିବ କହିଥିଲେ–

''କୃଷ୍ଣ କୃଷ୍ଣ ଜଗନ୍ନାଥ ଜାନେ ତ୍ୱାଂ ପୁରୁଷୋତ୍ତମମ୍ ।
ପରେଶଂ ପରମାତ୍ମା ନମନାଦିନିଧନଂ ହରିମ୍ ।।''

(ଶ୍ରୀବିଷ୍ଣୁପୁରାଣ–ଅଂଶ ୫।୩୩।୪୧)

(ହେ କୃଷ୍ଣ ! ହେ କୃଷ୍ଣ ! ହେ ଜଗନ୍ନାଥ ! ମୁଁ ଏହା ଜାଣିଛି ଯେ ଆପଣ ପୁରୁଷୋତ୍ତମ ପରମେଶ୍ୱର ପରାମାତ୍ମା ଅଟନ୍ତି ଏବଂ ଆଦିଅନ୍ତ ରହିତ ଅଟନ୍ତି ।)

କେଶୀ ମରଣ ପରେ ନାରଦ ଶ୍ରୀକୃଷ୍ଣଙ୍କୁ ଏପରି କହିଥିଲେ–

''ସାଧୁ ସାଧୁ ଜଗନ୍ନାଥ ଲୀଳାୟୈବ ଯଦଚ୍ୟୁତ ।
ନିହତୋଽୟଂ ତ୍ୱୟା କେଶୀ କ୍ଳେଶଦ୍‌ସିଦି ବୌକସାଏମ୍ ।।''

(ଶ୍ରୀବିଷ୍ଣୁପୁରାଣ–ଅଂଶ ୫।୧୬।୧୯ ଶ୍ଳୋକ)

(ହେ ଜଗନ୍ନାଥ ! ହେ ଅଚ୍ୟୁତ ! ଆପଣ ଧନ୍ୟ ଅଟନ୍ତି । ଅହୋ ! ଦେବତାମାନଙ୍କୁ କ୍ଳେଶ ଦେଉଥିବା ଏହି କେଶୀକୁ ଆପଣ ଲୀଳାରେ ମାରିଦେଲେ ।)

ବସୁଦେବ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଶ୍ରୀଜଗନ୍ନାଥ ବୋଲି ସ୍ୱୀକାର କରିଥିବା ବର୍ଣ୍ଣନା ଅଛି–

''ଜଗଦେତ ଜଗନ୍ନାଥ ସମ୍ଭୂତମଖିଳଂ ଯତଃ ।
କୟାଯୁକ୍ତ୍ୟା ବିନାମାୟାଂ ସୋଽସ୍ମତ୍ତଃ ସମ୍ଭବିଷ୍ୟତି ।।''

(ଶ୍ରୀବିଷ୍ଣୁପୁରାଣ–ଅଂଶ– ୫।୨୦।୧୦୧ଶ୍ଳୋକ)

(ହେ ଜଗନ୍ନାଥ ! ଯେପରି ଆପଣଙ୍କଠାରୁ ସମ୍ପୂର୍ଣ୍ଣ ଜଗତ୍ ଉତ୍ପନ୍ନ ହୋଇଅଛି, ସେପରି ଆପଣଙ୍କ ବିନା ମାୟାଶକ୍ତିଦ୍ୱାରା କିପ୍ରକାର ଆମ୍ଭଠାରୁ ଉତ୍ପନ୍ନ ହେବେ ।)

ଭଗବାନଙ୍କର ବିଶିଷ୍ଟ ବୈଭବ ହେଲା ସେ ଷଡ ଐଶ୍ୱର୍ଯ୍ୟପୂର୍ଣ୍ଣ ଅଟନ୍ତି । ଯେହେତୁ ଶ୍ରୀଜଗନ୍ନାଥ ଭଗବାନ ଅଟନ୍ତି ତାଙ୍କ ପାଖରେ । ଏହି ଐଶ୍ୱର୍ଯ୍ୟମାନ ପୂର୍ଣ୍ଣ ବା ବିପୁଳ ରୂପରେ ବା ସମଗ୍ର ଏବଂ ଅଦ୍ୱିତୀୟ ଭାବରେ ବିଦ୍ୟମାନ । ତାହା ହେଲା–

''ଐଶ୍ୱର୍ଯ୍ୟାସ୍ୟ ସମଗ୍ରସ୍ୟ ଧର୍ମସ୍ୟ ଯଶଶ୍ରିୟଃ ।
ଜ୍ଞାନ ବୈରାଗ୍ୟୟୋଶ୍ଚୈବ ଷର୍ଣ୍ଣାଂ ଭଗଇତୀରଣା ।।''




(ଶ୍ରୀବିଷ୍ଣୁପୁରାଣ–ଅଂଶ ୬।୫।୭୪ ଶ୍ଳୋକ, ମହର୍ଷି ପରାଶର ମହର୍ଷି ମୈତ୍ରେୟଙ୍କୁ କହିଥିଲେ)

(ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ଏହି ଛଅଟି ଶକ୍ତିକୁ ଭଗ କହନ୍ତି । ଏହି ଛଅଟି ଶକ୍ତି ଯାହା ପାଖରେ ବିପୁଳ ବା ପୂର୍ଣ୍ଣ ରୂପରେ ବା ସମଗ୍ର ଏବଂ ଅଦ୍ୱିତୀୟ ଭାବରେ ବିଦ୍ୟମାନ ଅଛି ସେ ଭଗବାନ ଅଟନ୍ତି ।)

ଐଶ୍ୱର୍ଯ୍ୟ ଅର୍ଥ ଶକ୍ତି, ଈଶ୍ୱରତ୍ୱ, ଆଧିପତ୍ୟ, ଧନବୈଭବ, ସିଦ୍ଧି, ସର୍ବବ୍ୟାପକତା, ଏହି ଛଅ ପ୍ରକାରର– ପୂର୍ଣ୍ଣଶ୍ରୀ, ପୂର୍ଣ୍ଣଐଶ୍ୱର୍ଯ୍ୟ, ପୂର୍ଣ୍ଣବୀର୍ଯ୍ୟ, ପୂର୍ଣ୍ଣଯଶ, ପୂର୍ଣ୍ଣ ଜ୍ଞାନ ଏବଂ ପୂର୍ଣ୍ଣ ବୈରାଗ୍ୟ । ଭଗବାନଙ୍କଠାରେ ବା ଶ୍ରୀଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ କାହାରି ଏହି ଗୁଣଗୁଡିକ ବା ଶକ୍ତିଗୁଡିକ ପୂର୍ଣ୍ଣଭାବରେ ରହିନଥାଏ ।

ମହର୍ଷି ପରାଶରଙ୍କ ଏହି ବିଶ୍ଳେଷଣ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଆସୁଅଛି । ତାଙ୍କର ପୁତ୍ର ମହର୍ଷି ବ୍ୟାସଦେବ ମଧ୍ୟ ଶ୍ରୀମଦ୍‌ଭାଗବତମ୍‌ରେ ଏହା ଉଦ୍ଧାର କରିଅଛନ୍ତି ।

ଭଗବାନ ଶବ୍ଦ ମହର୍ଷି ପରାଶର ଆହୁରି ବିଶ୍ଳେଷଣ କରିଅଛନ୍ତି । ଭଗବାନ ଶବ୍ଦର ପ୍ରଥମ ଅକ୍ଷର 'ଭ' ଅକ୍ଷରର ଅର୍ଥ ଯିଏ ପୋଷଣ କରେ ଓ ସମସ୍ତଙ୍କ ଆଧାର ବାଭର୍ତ୍ତା ଅଟନ୍ତି । 'ଗ' ଅକ୍ଷର ସୂଚନା ଦିଏ ଯେ ସେ କର୍ମଫଳ ପ୍ରାପ୍ତ କରନ୍ତି ଏବଂ ସେ ସମସ୍ତ ସୃଷ୍ଟି (ଜୀବ ଓ ଜଡ ଜଗତ ସୃଷ୍ଟି ବା ରଚନା କରନ୍ତି ଏବଂ ଲୟ କରାନ୍ତି । 'ବ'କାର ସୂଚନା ଦିଏ ଯେ ସେହି ଚିରନ୍ତନ ବା ଅବ୍ୟୟ ଅଖିଳ ଭୂତାତ୍ମାଙ୍କଠାରେ ସମସ୍ତ ଭୂତ ନିବାସ କରନ୍ତି ଏବଂ ସେ ମଧ୍ୟ ସ୍ୱୟଂ ଭୂତମାନଙ୍କଠାରେ ବିରାଜମାନ ଅଛନ୍ତି । 'ଭଗବ' ଏହି ତିନୋଟି ଅକ୍ଷରରେ ବ୍ୟାକରଣ ସୂତ୍ରରେ ଅନ୍ ପ୍ରତ୍ୟୟ ହୋଇ ଭଗବାନ ଶବ୍ଦ ହୋଇଅଛି । ଏହି ବିଶିଷ୍ଟ ଶବ୍ଦ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଶ୍ରୀବାସୁଦେବଙ୍କ ବାଚକ ଅଟେ ।

ଏହି ବାସୁଦେବ ଶବ୍ଦ ଖାଣ୍ଡିକ୍ୟଜନକ (ସୀତାଦେବୀଙ୍କ ଜେଜେବାବା ବା ବାପାଙ୍କ ବାପା)ଙ୍କ ଜିଜ୍ଞାଷାରେ ମହର୍ଷି କେଶିଧ୍ୱଜ ନିମ୍ନ ପ୍ରକାରେ ବିଶ୍ଳେଷଣ କରିଥିଲେ –

''ଭୂତେଷୁ ବସତେ ସୋଽନ୍ତର୍ବସନ୍ତ୍ୟତ୍ର ଚ ତାନିଯତ୍ ।

ଧାତା ବିଧାତା ଜଗତାଂ ବାସୁଦେବସ୍ତତଃ ପ୍ରଭୁ ।।''

(ଶ୍ରୀବିଷ୍ଣୁପୁରାଣ–ଅଂଶ ୬।୫।୮୨)

(ପ୍ରଭୁ ସମସ୍ତ ଭୂତରେ ବ୍ୟାପ୍ତ ଓ ସମ୍ପୂର୍ଣ୍ଣ ଭୂତ ମଧ୍ୟ ତାଙ୍କଠାରେ ଅବସ୍ଥାନ କରନ୍ତି ଏବଂ ସେ ମଧ୍ୟ ସଂସାରରେ ରଚୟିତା ଓ ରକ୍ଷକ ଅଟନ୍ତି । ଏଥିପାଇଁ ତାଙ୍କୁ ବାସୁଦେବ କହନ୍ତି ।)

ଜୀବ ଶ୍ରୀଜଗନ୍ନାଥଙ୍କର ସୂକ୍ଷ୍ମ ଅଣୁ ବା ଚିତ୍‌କଣ ସଦୃଶ– 'ସୂକ୍ଷ୍ମାଣାମପ୍ୟାହଂ ଜୀବୋ'

(ଶ୍ରୀମଦ୍‌ଭାଗବତମ୍–ସ୍କନ୍ଧ ୧୧।୧୬।୧୧ଶ୍ଳୋକ) । କିନ୍ତୁ ଶ୍ରୀଜଗନ୍ନାଥଙ୍କର ବିଶାଳତା ଅତିବଡ । ସ୍ଥୂଳ ଚକ୍ଷୁରେ ସେ କ୍ଷୁଦ୍ର ଦେଖାଯାଉଥିଲେ ମଧ୍ୟ ସେ ଏତେ ବିଶାଳ ଯେ ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ତାଙ୍କର ଦଶ ଅଙ୍ଗୁଳର ପରିସୀମା ସଙ୍ଗେ ସମାନ– (ଋକ୍‌ବେଦ–ମଣ୍ଡଳ ୧୦।୦।୧ମନ୍ତ୍ର) ଏତେ ବିରାଟ ପୁରୁଷଙ୍କର ଶକ୍ତି ଆମର କଳ୍ପନାତିତ ଅଟେ ।

ଶ୍ରୀଜଗନ୍ନାଥଙ୍କର ନାମ କୃଷ୍ଣ, ବିଷ୍ଣୁ, ନାରାୟଣ ଇତ୍ୟାଦି । ଶ୍ରୀକୃଷ୍ଣଙ୍କ ନାମକରଣ ବେଳେ ଗାର୍ଗ ମହର୍ଷି ଏପରି କହିଥିଲେ–

'ବହୁନି ସନ୍ତି ନାମାନି ରୂପାଣି ଚ ସୁତସ୍ୟ ତେ ।

ଗୁଣ କର୍ମାନୁରୂପାଣି ତାନ୍ୟହଂ ବେଦନୋଜନାଃ ।।'

(ଶ୍ରୀମଦ୍‌ଭାଗବତମ୍–ସ୍କନ୍ଧ ୧୦।୮।୧୫)

(ଗୁଣ କର୍ମ ଅନୁସାରେ ତାଙ୍କର ଅନେକ ନାମ ଓ ରୂପ ରହିଛି । ସେଗୁଡିକ ମୁଁ (ଗାର୍ଗ ମହର୍ଷି) ଶାସ୍ତ୍ରଦ୍ୱାରା ଜାଣେ । ସାଧାରଣଲୋକେ ଜାଣନ୍ତି ନାହିଁ ।)

ଶ୍ରୀଜଗନ୍ନାଥଙ୍କର ସତ୍ୱ, ରଜ ଓ ତମ ତିନୋଟି ଗୁଣ ବା ଶକ୍ତି ଅଛି । ସେ ରଜଗୁଣରେ ବ୍ରହ୍ମାଙ୍କଦ୍ୱାରା ସୃଷ୍ଟି କରନ୍ତି । ନିଜେ ସତ୍ୱଗୁଣରେ ସ୍ୱୟଂପୁରୁଷ ରୂପରେ ପାଳନ କରନ୍ତି ଏବଂ ତମଗୁଣରେ ଶିବଙ୍କ ଦ୍ୱାରା ପ୍ରଳୟ ଘଟାଇଥାନ୍ତି । ଏହି ତ୍ରିଶକ୍ତି ଧାରଣ ପୂର୍ବକ ସେ ବିଶ୍ୱ ପ୍ରତିପାଳନ କରନ୍ତି । ଏହି ତିନିଗୁଣ ତାଙ୍କଠାରୁ ସୃଷ୍ଟି ହୋଇଥିଲେ ହେଁ ତାଙ୍କୁ ଗୁଣ ସ୍ପର୍ଶ କରିପାରେ ନାହିଁ ।

ଶ୍ରୀଜଗନ୍ନାଥଙ୍କର ଦୁଇଟି ଶକ୍ତି ଅଛି– ଅନ୍ତରଙ୍ଗା ଶକ୍ତି ଓ ବର୍ହିରଙ୍ଗା ଶକ୍ତି । ଏହି ଅନ୍ତରଙ୍ଗା ଶକ୍ତିରୁ ଜୀବଜଗତ ଓ ବର୍ହିରଙ୍ଗା ଶକ୍ତିରୁ ବା ମାୟୀକ ଶକ୍ତିରୁ ଜଡଜଗତ ସୃଷ୍ଟି ହୋଇଅଛି । ଅନ୍ୟ ଦୃଷ୍ଟିରେ କହିଲେ ଶ୍ରୀଜଗନ୍ନାଥ ତିନୋଟି ଜାଗାରେ ଅବସ୍ଥାନ କରନ୍ତି ଯଥା– ''ବ୍ରହ୍ମେତି, ପରମତ୍ମେତି ଭଗବାନ ଶବ୍ଦତେ ।'' ବ୍ରହ୍ମ ବା ଶ୍ରୀଜଗନ୍ନାଥ ଗୋଲକଧାମ ବା ନୀଳାଚଳ ଧାମରେ ଅବସ୍ଥାନ




କରନ୍ତି । ଶ୍ରୀଜଗନ୍ନାଥଙ୍କ ଦ୍ୱିତୀୟ ଅବସ୍ଥାନ– ଏ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରିବା । ଭଗବାନ ଶ୍ରୀଜଗନ୍ନାଥ ନିଜେ ବିସ୍ତାର ହୋଇଯାଇଅଛନ୍ତି । ସେଥିପାଇଁ ତାଙ୍କୁ ବିଷ୍ଣୁ ମଧ କହନ୍ତି । ଶ୍ରୀଜଗନ୍ନାଥଙ୍କ ତୃତୀୟ ଅବସ୍ଥା– ଭଗବାନ ସେ ନିଜେ ଜୀବ ମଧରେ ପ୍ରବେଶ କରିଅଛନ୍ତି ।

ଶ୍ରୀଜଗନ୍ନାଥଙ୍କର ତିନୋଟି ବୈଭବ ବା ଗୁଣ ବା ଶକ୍ତି ଅଛି । ତାହା ହେଲା ସତ୍, ଚିତ୍ ଓ ଆନନ୍ଦ । ତେଣୁ ତାଙ୍କୁ ସଚ୍ଚିଦାନନ୍ଦ କହନ୍ତି ।

ସତ୍ କ୍ରିୟାଶୀଳ ହେଲେ ସଂଧିନୀ ବା ବିଚ୍ଛେଦ ରହିତ କରାଏ । ଚିତ୍ କ୍ରିୟାଶୀଳ ହେଲେ ସଂବୀତ୍ ବା ବିଦ୍ୟାଶକ୍ତି ପ୍ରଦାନ କରେ । ଆନନ୍ଦ କ୍ରିୟାଶୀଳ ହେଲେ ଆହ୍ଲାଦିନୀ ବା ଆନନ୍ଦ ପ୍ରଦାନ କରାଏ । ଆହ୍ଲାଦିନୀର ଶ୍ରେଷ୍ଠତ୍ୱ ହେଲେ ଭଗବତ୍ ପ୍ରଦାନ କରେ । ସଂଧିନୀର ଶ୍ରେଷ୍ଠତ୍ୱ ହେଲେ ଭୁଲୋକରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ବୈଭବ ପ୍ରଦାନ କରେ । ସମ୍ବିତ୍‌ର ଶ୍ରେଷ୍ଠତ୍ୱ ହେଲେ କୈବଲ୍ୟ ମୁକ୍ତି ପ୍ରଦାନ କରେ ।

ହ୍ଲାଦିନୀ ସଂଧିନୀ ସଂବିତ୍ୱୟ୍ୟେକା ସର୍ବସଂସ୍ଥିତୌ
ହ୍ଲାଦତାପକରୀ ମିଶ୍ରାତ୍ୱୟିନୋ ଗୁଣ ବର୍ଜିତେ ॥
(ଶ୍ରୀବିଷ୍ଣୁପୁରାଣ–ଅଂଶ– ୧।୧୨।୬୮ ଶ୍ଲୋକ)

ହେ ଜଗନ୍ନାଥ ସମସ୍ତ ଆଧାର ରୂପେ ଆପଣଙ୍କଠାରେ ହ୍ଲାଦିନୀ, ସଂଧିନୀ ଓ ସଂବିତ୍ ଅଭିନ୍ନ ରୂପେ ରହିଅଛନ୍ତି । ବିଷୟ ସୁଖ ପାଇଁ ଆପଣଙ୍କ ଉପରେ ଆହ୍ଲାଦ ବା ତାପ ଦେଉଥିବା ସାତ୍ତ୍ୱିକ ଓ ତାମସିକ କିମ୍ବା ଉଭୟ ମିଶ୍ରିତ ରାଜସିକ କୌଣସି ଶକ୍ତି ପ୍ରଭାବ ପକାଇ ପାରିବ ନାହିଁ । କାରଣ ଆପଣ ନିର୍ଗୁଣ ଅଟନ୍ତି ।

ଶ୍ରୀଜଗନ୍ନାଥଙ୍କର ବୀର୍ଯ୍ୟ ଗଣିବା ବା ଶକ୍ତି ବା ପରାକ୍ରମ ବର୍ଣ୍ଣନା କରିବା ସମ୍ଭବପର ନୁହେଁ, ସେହି କଥା ଋଗ୍‌ବେଦରେ ମଣ୍ଡଳ– ୧।୧୫୪।୧ମନ୍ତ୍ର ଯାହାକି ମଧ ଅଥର୍ବ ବେଦରେ ୭।୨୬।୧ମନ୍ତ୍ର ଏବଂ ସେହି କଥା ଯର୍ଜୁବେଦରେ ୫।୧୮ମନ୍ତ୍ରରେ ବର୍ଣ୍ଣନା ଅଛି ।

କନକମୃଗ, କାରାଗାରପଥ, ଖୋର୍ଦ୍ଧା

# କାଳିଆ ଠାକୁର

ଦିଲ୍ଲୀପ କୁମାର ବେହୁରା



କିଏ କହେ ତୁମେ କାଳିଆ ଠାକୁର
ଡୋରିରେ ଟାଣୁଛ ନୀତି
ଯାହାକୁ ଡାକିଲ ଭାବରେ ରହିଲା
ତୁମରି ପ୍ରେମରେ ମାତି ।
ଚିନ୍ତାମଣି ହୋଇ କେତେ ଭକତର
ଚିନ୍ତାକୁ କରିଛ ଦୂର
କରୁଣା ସାଗର ଭାବଗ୍ରାହୀ ତୁମେ
ପରଂବ୍ରହ୍ମ ନିରାକାର ।
ପତିତପାବନ ନାମ ବହି ଅଛ ଅଟ ଜଗତର ପତି ।
ଦାସିଆ ବାଉରୀ କଥାରେ ନଡିଆ
ନେଇଥିଲ ବଡ ପଣେ
ବଳରାମ ଦାସ ବାଲିରଥେ ବସି
ବାନା ଉଡାଇଲ ଦିନେ ।
ସାଲବେଗ ଡାକେ ବଡ ଦାଣ୍ଡେ ରଥ ରଖିଥିଲ ମହାମତି ।
ସଂସାର ରଥକୁ ଚଳାଉଛ ତୁମେ
ଆହେ ପ୍ରଭୁ ଚକାଡୋଳା ।
କେଉଁ କାଳୁ ବସି ନୀଳାଚଳ ଧାମେ
କରୁଅଛ ଲୀଳା ଖେଳା ।
ତୁମ ବିନୁ ଭବୁ ତରିବାର ପାଇଁ ନାହିଁ କାର ଆନଗତି ।

ଗ୍ରାମ–ପୋଖରିଆ, ପୋ– ମହୁଲିଆ,
ଜିଲ୍ଲା– କେନ୍ଦ୍ରାପଡା







# ଐତିହ୍ୟରେ ବଡ଼ଦାଣ୍ଡ

ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା

ଶ୍ରୀମନ୍ଦିର ସମ୍ମୁଖସ୍ଥ ପ୍ରଶସ୍ତ ରାସ୍ତାକୁ ବଡଦାଣ୍ଡ କୁହାଯାଇଥାଏ । ଅରୁଣସ୍ତମ୍ଭଠାରୁ ଶ୍ରୀଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ୨.୮କିମି ପର୍ଯ୍ୟନ୍ତ ଏହି ରାସ୍ତା ପରିବ୍ୟାପ୍ତ । ସଂପ୍ରତି ବଡଦାଣ୍ଡର ଭୂମି ପତନ ପରି ଅତୀତରେ ଏହି ପତନ ନଥିଲା । ମନ୍ଦିରର ବାଇଶି ପାହାଚର ଆରମ୍ଭରୁ ପ୍ରାୟ ଏକ ପୁରୁଷ(୫'/୬') ନିମ୍ନରେ ଏହାର ଭୂମି ପତନ ଥିଲା । ଲୋକମୁଖରୁ ଶୁଣାଯାଏ ଯେ ମହାପ୍ରସାଦ ବୋହି ନେଉଥିବା ବୋଝିଆମାନେ ପାହାଚ ଉପରେ ମହାପ୍ରସାଦ ବୋଝ ରଖି ବଡଦାଣ୍ଡରେ ଠିଆହୋଇ ମୁଣ୍ଡ ଉପରକୁ ଅକ୍ଳେଶରେ ମୁଣ୍ଡାଇ ନେଇ ପାରୁଥିଲେ । କାଳକ୍ରମେ ଏହା ପୋତି ହୋଇ ବର୍ତ୍ତମାନର ୨୦୩ ନମ୍ବର ଜାତୀୟ ରାଜପଥ ସହିତ ସଂଯୁକ୍ତ ହୋଇପାରିଅଛି । ଐତିହାସିକ ମନମୋହନ ଗାଙ୍ଗୁଲିଙ୍କର Orissa and her Remains ପୁସ୍ତକରେ ବଡ ଦେଉଳର ଉଚ୍ଚତା ସମ୍ପର୍କରେ ଭୂମି ପତନଠାରୁ ୨୧୪ଫୁଟ ୮ଇଞ୍ଚ ବା ୧୪୩ ହାତ ବୋଲି ଉଲ୍ଲେଖ କରିଛନ୍ତି । ଡଃ ସୂର୍ଯ୍ୟନାରାୟଣ ଦାସଙ୍କ ମତରେ ବଡଦାଣ୍ଡର ପତନଠାରୁ ମନ୍ଦିର ବିମାନର ଖପୁରୀ ପର୍ଯ୍ୟନ୍ତ ଉଚ୍ଚତା ୨୧୪ଫୁଟ,୮ଇଞ୍ଚ ବୈରାଜ ଶ୍ରେଣୀର ମନ୍ଦିର । ସମଚତୁରସ୍ର ବାସ୍ତୁ ଉପରେ ନିର୍ମିତ । ବିମାନଟି ପଞ୍ଚରଥ ଦେଉଳ । ବର୍ତ୍ତମାନ ବିଦ୍ୟମାନ ମନ୍ଦିରର ଉଚ୍ଚତା ମନ୍ଦିରର ମୂଳରୁ ୧୯୨ ଫୁଟ ବା ୧୨୮ହାତ ।

ମହାପ୍ରଭୁଙ୍କର ପ୍ରସିଦ୍ଧ ଦ୍ୱାଦଶ ଯାତ୍ରା ମଧ୍ୟରୁ ପ୍ରଧାନ ଏବଂ ଶ୍ରେଷ୍ଠ ଯାତ୍ରା ହେଉଛି ଶ୍ରୀଗୁଣ୍ଡିଚା ଯାତ୍ରା । ଏହି ଯାତ୍ରାର ଅନ୍ୟନାମ ପତିତପାବନ ଯାତ୍ରା । ବଡଦାଣ୍ଡରେ ହିଁ ଏହି ଯାତ୍ରା ଅନୁଷ୍ଠିତ ହୋଇଥାଏ । ମହାପ୍ରଭୁ ଭାଇ ଭଉଣୀଙ୍କ ସହିତ ସର୍ବସାଧାରଣ ଜନତାଙ୍କ ସହିତ ଲୀଳା କରିବା ପାଇଁ ବଡ ଦେଉଳର ରତ୍ନ ସିଂହାସନରୁ ବାହାରି ବଡ ଦାଣ୍ଡରେ ଧୂଳି ଧୂସରିତ ହେଉଥିବାରୁ ତାଙ୍କର ମହିମା ବିଶ୍ୱବିଦିତ । ମହାପ୍ରଭୁଙ୍କ ସ୍ପର୍ଶ ଓ ସାନିଧ୍ୟ ଏହାର ପବିତ୍ରତାକୁ ବହୁଗୁଣିତ କରି ଦେଇଅଛି । ବର୍ଷକରେ ଥରେ ମହାପ୍ରଭୁଙ୍କର ସ୍ପର୍ଶ ପାଉଥିଲେ ମଧ୍ୟ ବର୍ଷସାରା ଏହାର ଧୂଳିର ପବିତ୍ରତା ଭକ୍ତର ମାନସିକତାରେ ଜାଗରୁକ ହୋଇ ରହିଥାଏ । ଏଥିପାଇଁ ଭକ୍ତ ବଡଦାଣ୍ଡରେ ପାଦ ଦେଉ ଦେଉ ପ୍ରଥମେ ଏହାର ଧୂଳିକୁ ନେଇ ମୁଣ୍ଡରେ ମାରି ମହାପ୍ରଭୁଙ୍କ ସାକ୍ଷାତ ସାନିଧ୍ୟ ଲାଭର ତୃପ୍ତି ପାଇଥାଏ । ମହାପ୍ରଭୁ ''ଭୂମାବୈସଃ''ର ପ୍ରତୀଭୂ । ଏଥିପାଇଁ ତାଙ୍କ ଦାଣ୍ଡର ନାମକରଣ ମଧ୍ୟ ଅନୁରୂପ ହୋଇଅଛି ।

ଯେଉଁଦିନଠାରୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ହୋଇଆସୁଛି, ସେହିଦିନଠାରୁ ବଡଦାଣ୍ଡର ମହତ୍ତ୍ୱ ସ୍ୱୀକାର୍ଯ୍ୟ । ଏହାର ଧୂଳିମାଟି ବହୁ ସାଧୁ, ସନ୍ଥ, ମୁନି, ଋଷିମାନଙ୍କର ଆକର୍ଷଣର ସ୍ଥଳୀ ହୋଇପାରିଅଛି । ଅତୀତରେ ବଳଗଣ୍ଡିଠାରେ ବଡଦାଣ୍ଡକୁ ମାଳିନୀ ନଦୀ ଦ୍ୱିଧା ବିଭକ୍ତ କରୁଥିଲା । ଗୁଣ୍ଡିଚା ମନ୍ଦିର ଓ ଶ୍ରୀମନ୍ଦିର ମଧ୍ୟରେ ପ୍ରତିବନ୍ଧକ ହେଉଥିବାରୁ ରଥଯାତ୍ରା ସମୟରେ ୩ଟି ରଥ ପରିବର୍ତ୍ତେ ୬ଟି ରଥ ନିର୍ମାଣ କରାଯାଉଥିଲା । ତିନୋଟି ରଥରେ ସିଂହଦ୍ୱାରଠାରୁ ଠାକୁରମାନଙ୍କୁ ମାଳିନୀ ନଦୀ ପର୍ଯ୍ୟନ୍ତ ନିଆଯାଇ ଚାପରେ ନଦୀପାର କରାଯାଉଥିଲା ଏବଂ ନଦୀର ଅପର ପାଖରେ ନିର୍ମିତ ତିନୋଟି ରଥରେ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ନିଆଯାଉଥିଲା । ଫଳତଃ ଜନ୍ମବେଦୀ/ଆଡପମଣ୍ଡପ/ଗୁଣ୍ଡିଚା ମନ୍ଦିରରେ ସାତଦିନ ରହଣି ସମ୍ଭବ ହୋଇପାରୁ ନଥିଲା । ଲୋକ ମୁଖରୁ ମଧ୍ୟ ଶୁଣାଯାଏ ଯେ ନଦୀର ଅପରପାଖରୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଠାକୁରମାନଙ୍କୁ ଶଗଡିରେ ନିଆଯାଉଥିଲା । ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ପୁତ୍ର ଭାନୁଦେବ ଖ୍ରୀ ୧୨୩୦ରେ ଗୁରୁ ମାଧବାଚାର୍ଯ୍ୟଙ୍କ ପରାମର୍ଶରେ ବାଙ୍କି ମୁହାଣ ଆଡୁ ମାଳିନୀ ନଦୀକୁ ପୋତି ଦେଲେ । ଫଳରେ ବଡଦାଣ୍ଡ ବିଭାଜିତ ନହୋଇ ଏକକ ଭାବରେ ରହିପାରିଲା ।





ଫଳ ସ୍ୱରୂପ ତିନୋଟି ରଥରେ ଠାକୁରମାନଙ୍କର ରଥଯାତ୍ରା ଅନୁଷ୍ଠିତ ହେଲା । ରାଜା ଭାନୁଦେବଙ୍କ ରାଣୀ ଶ୍ରଦ୍ଧା ଦେବୀଙ୍କ ଉତ୍ସାହ ଓ ପ୍ରରୋଚନା ଉକ୍ତ କାର୍ଯ୍ୟ କରିବା ପାଇଁ ବିଶେଷ ପ୍ରେରଣା ଯୋଗାଇଥିବାରୁ ରାଣୀଙ୍କର ନାମାନୁସାରେ ସେ ନଦୀ ବାଲିର ନାମ ଶରଧାବାଲି ବୋଲି ଲୋକମୁଖରେ ରହିଲା । ରାଜାଙ୍କ ଦ୍ୱାରା ନଦୀ ବାଲିରେ ପୋତାଯାଇ ଏକ ଶଙ୍ଖ ନିର୍ମାଣ କରାଯାଇଥିବାରୁ ସେ ସ୍ଥାନକୁ ବଡଶଙ୍ଖ କୁହାଗଲା ।

ଶ୍ରୀଗୁଣ୍ଡିଚା ଯାତ୍ରା ବିଶ୍ୱ ପ୍ରସିଦ୍ଧ। ଜାତି, ଧର୍ମ, ବର୍ଣ୍ଣ ସମ୍ପ୍ରଦାୟ ନିର୍ବିଶେଷରେ ମହାପ୍ରଭୁଙ୍କର ସାନ୍ନିଧ୍ୟ ଲାଭ ବଡଦାଣ୍ଡରେ ହିଁ ସମସ୍ତ ଭକ୍ତଙ୍କୁ ମିଳିଥାଏ । ଯାହାକି ଶ୍ରୀମନ୍ଦିର ମଧ୍ୟରେ ସମ୍ଭବ ହୋଇପାରିନଥାଏ । ବଡଦାଣ୍ଡରେ ରଥ ଉପରେ ବାମନରୂପୀ ଜଗନ୍ନାଥଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହୋଇନଥାଏ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି– 'ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ଲଭ୍ୟତେ ।' ଅତୀତରେ ଠାକୁର ରାଜାମାନେ ରତ୍ନ ସିଂହାସନଠାରୁ ସିଂହଦ୍ୱାରରେ ଦଣ୍ଡାୟମାନ ରଥ ପର୍ଯ୍ୟନ୍ତ ଛେରା ପହଁରା କରୁଥିଲେ । ଅଧୁନା କେବଳ ସ୍ମାରକୀ ସ୍ୱରୂପ ରଥ ଉପରେ ଏହି ନୀତି ଗଜପତି ସମାପନ କରୁଛନ୍ତି । ସିଂହଦ୍ୱାରଠାରୁ ଗୁଣ୍ଡିଚା ମନ୍ଦିର ମଧ୍ୟରେ ବଡଦାଣ୍ଡର ଉଭୟ ପାର୍ଶ୍ୱରେ ବିଭିନ୍ନ ଧର୍ମ ସମ୍ପ୍ରଦାୟର ମଠ, ମନ୍ଦିର ରହି ମହାପ୍ରଭୁଙ୍କର ସେବା କାର୍ଯ୍ୟରେ ନିୟୋଜିତ ହୋଇଆସୁଛନ୍ତି । ସେମାନଙ୍କ ମଧ୍ୟରୁ ଏମାର ମଠ, ମଙ୍ଗୁମଠ, ବଳରାମ ମଠ, ରାଧାବଲ୍ଲଭ ମଠ, ବଡଛତାମଠ, ପଞ୍ଚରାମାନନ୍ଦୀ, ବଡ ଆଖଡା, ପାପୁଡିଆ, ଜଗନ୍ନାଥ ବଲ୍ଲଭ, ବାଘଆଖଡା, ପଠାଘର, ରାଜନବର, ମାଉସୀମା ମନ୍ଦିର, ସାଲବେଗ ସମାଧି ପୀଠ, ଦଶାବତାର ମଠ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଏହିସବୁ ମଠମାନଙ୍କ ମଧ୍ୟରୁ ଶ୍ରୀଗୁଣ୍ଡିଚା ବା ବାହୁଡା ଯାତ୍ରା ସମୟରେ ରଥାରୂଢ ମହାପ୍ରଭୁଙ୍କୁ ପଂକ୍ତିଭୋଗ ଅର୍ପଣ କରାଯାଇଥାଏ । ବାହୁଡା ଯାତ୍ରା ସମୟରେ ମାଉସୀମା' ମନ୍ଦିରର ପୋଡପିଠା ଭୋଗ, ସାଲବେଗ ସମାଧିଠାରେ ପଂକ୍ତିଭୋଗ ଉଲ୍ଲେଖନୀୟ ଘଟଣା । ବଡଦାଣ୍ଡରେ ଏହି ଦୁଇସ୍ଥାନରୁ ଭୋଗ ଗ୍ରହଣ ନିମନ୍ତେ ରଥ କିଛି ସମୟ ଅଟକି ରହିଥାଏ । ବାହୁଡା ଯାତ୍ରା ସମୟରେ ବଡ ଦାଣ୍ଡସ୍ଥ ରାଜାଙ୍କ ଶ୍ରୀନଅରଠାରେ ଗଜପତି ଲକ୍ଷ୍ମୀନାରାୟଣ ଭେଟନୀତି କରନ୍ତି ।

ବଡଦାଣ୍ଡରେ ଅକ୍ଷୟ ତୃତୀୟାଠାରୁ ରାଜନବର ସମ୍ମୁଖସ୍ଥ ରଥଖଳାରେ ରଥ ନିର୍ମାଣର ଶୁଭାରମ୍ଭ ହୋଇଥାଏ । ଆଷାଢ ଶୁକ୍ଳ ପ୍ରତିପଦା ଦିନ ଦକ୍ଷିଣ ମୋଡ ହୋଇ ସିଂହଦ୍ୱାର ସମ୍ମୁଖକୁ ରଥତ୍ରୟକୁ ନିଆଯାଏ । ବାହୁଡା ଏକାଦଶୀ ରାତ୍ରିରେ ରଥାରୂଢା ଜୀଉମାନଙ୍କର ସୁନାବେଶ ଓ ଶୟନ ଉତ୍ସବନୀତି ଅନୁଷ୍ଠିତ ହୁଏ । ଦ୍ୱାଦଶୀ ରାତ୍ରିରେ ରଥାରୂଢ ଜୀଉମାନଙ୍କୁ ଅଧରପଣା ଅର୍ପଣ ନୀତି ଅନୁଷ୍ଠିତ ହୁଏ । ତ୍ରୟୋଦଶୀ ରାତ୍ରିରେ ରସଗୋଲା ଭୋଗ ଭକ୍ତମାନେ ମହାପ୍ରଭୁଙ୍କୁ ଅର୍ପଣ କରିଥାନ୍ତି । ନୀଳାଦ୍ରି ବିଜେ ଅବ୍ୟବହିତ ପୂର୍ବରୁ ମେଘନାଦ ପାଚେରୀ ସଂଲଗ୍ନ ଚାହାଣୀ ମଣ୍ଡପଠାରେ ଲକ୍ଷ୍ମୀଙ୍କ ଆବିର୍ଭାବ ସହିତ ମହାପ୍ରଭୁଙ୍କର ବନ୍ଦାପନା କାର୍ଯ୍ୟ ଅନୁଷ୍ଠିତ ହୁଏ । ରଥଯାତ୍ରା ବ୍ୟତୀତ ଚନ୍ଦନ ଯାତ୍ରା ସମୟରେ ମହାପ୍ରଭୁଙ୍କର ପ୍ରତିନିଧି ମଦନମୋହନଙ୍କ ସହିତ ଶ୍ରୀଦେବୀ, ଭୁଦେବୀ, ରାମବଳରାମ ଓ ପଞ୍ଚ ମହାଦେବ (ଜାମେଶ୍ୱର, ମାର୍କଣ୍ଡ, ଲୋକନାଥ, ନୀଳକଣ୍ଠ, କପାଳମୋଚନ)ଙ୍କର ନରେନ୍ଦ୍ର ପୁଷ୍କରିଣୀକୁ ମଣିବିମାନ, ପାଲିଙ୍କି ଏବଂ ଅନ୍ୟ ପାଞ୍ଚୋଟି ବିମାନ ୨୧ଦିନ ପର୍ଯ୍ୟନ୍ତ ଚନ୍ଦନ ଚାପ କ୍ରୀଡା ଉଦ୍ଦେଶ୍ୟରେ ଘଣ୍ଟ, ବାଦ୍ୟ, ନୃତ୍ୟ ସହିତ ମହାଆଡମ୍ବରରେ ଯାତ୍ରା କରିଥାନ୍ତି । ଏତଦ୍‌ବ୍ୟତୀତ ବେଷ୍ଟନୀତି ପାଇଁ ଶ୍ରୀଜୀଉଙ୍କ ପ୍ରତିନିଧି ଶ୍ରୀରାମ ଜଗନ୍ନାଥ ବଲ୍ଲଭ ମଠ ପରିସରକୁ ପାଲିଙ୍କିରେ ଘଣ୍ଟବାଦ୍ୟ ସହ ଆସିଥାନ୍ତି । ସୁଦର୍ଶନଙ୍କର ଚାରିଆଶ୍ରମ ବିଜେ (ମାର୍କଣ୍ଡ, ଅଙ୍ଗିରା, ଭୃଗୁ ଓ ପଣ୍ଡୁ) ରାଧାଷ୍ଟମୀ, ଗହ୍ମାପୂର୍ଣ୍ଣମୀ ଓ ବିଜୟା ଦଶମୀରେ ଅନୁଷ୍ଠିତ ହୋଇଥାଏ । ବାଡିନୃସିଂହଙ୍କର କ୍ଷେତ୍ର ପରିକ୍ରମା ବଡଦାଣ୍ଡର ସିଂହଦ୍ୱାରରୁ ଆରମ୍ଭ ହୋଇଥାଏ । ରଥ ନିର୍ମାଣ ପାଇଁ କାଠ ନବକଳେବର ସମୟରେ ଶ୍ରୀଜୀଉମାନଙ୍କ ପାଇଁ ସଂଗୃହୀତ ଦାରୁ ଘଣ୍ଟ, ଘଣ୍ଟା ବାଦ୍ୟ ସହିତ ଅଠର ନଳା ଦେଇ ବଡଦାଣ୍ଡରେ ପଦାର୍ପଣ କରି ବଡଦେଉଳର ଉତ୍ତରଦ୍ୱାର ବାଟେ କାରୁଶାଳାକୁ ନିଆଯାଇଥାଏ । ଗୁପ୍ତଗୁଣ୍ଡିଚା ଯାତ୍ରା, ଦୋଳଉତ୍ସବ, ଇନ୍ଦ୍ରଧ୍ୱଜ ପୂଜା ବଡଦାଣ୍ଡରେ ହିଁ ଅନୁଷ୍ଠିତ ହୁଏ । ସ୍ନାନ ପୂର୍ଣ୍ଣମୀଦିନ ସ୍ନାନ ବେଦୀ ଅଧିରୂଢ ଜୀଉମାନଙ୍କର ସ୍ନାନୋତ୍ସବକୁ ଓ ସଂଧ୍ୟା ସମୟର ହାତୀ ବେଶକୁ ଅଗଣିତ ଭକ୍ତ ନିର୍ନିମେଷ ନୟନରେ ଅବଲୋକନ କରି ଭକ୍ତିପୂତ ପ୍ରଣାମ ଜଣାଇଥାନ୍ତି ।

**ଐତିହ୍ୟରେ ବଡଦାଣ୍ଡ–** (୧) ଅନଙ୍ଗଭୀମ ୨ୟଙ୍କ ପୁତ୍ର ଭାନୁଦେବ (୧୨୫୬–୧୨୭୪) ୧୨୭୦ ଖ୍ରୀଷ୍ଟାବ୍ଦରେ ବଡଦାଣ୍ଡକୁ ଦ୍ୱିଧା ବିଭକ୍ତ କରୁଥିବା ମାଳିନୀ ନଦୀଗର୍ଭକୁ ପୋତି ସିଂହଦ୍ୱାର ଠାରୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଗୋଟିଏ ରାସ୍ତାରେ ପରିଣତ କରିବା ଏକ ଐତିହାସିକ କୀର୍ତ୍ତି । ତାଙ୍କ ରାଣୀ ଶ୍ରଦ୍ଧା ଦେବୀଙ୍କ ନାମାନୁସାରେ ପୋତା ଯାଇଥିବା ବାଲିକୁ ଶରଧାବାଲି କୁହାଗଲା ଭାନୁଦେବଙ୍କ ଗୁରୁଙ୍କ ନିର୍ଦ୍ଦେଶ ଏବଂ ରାଣୀମାନଙ୍କ ପ୍ରେରଣା ଉକ୍ତ କାର୍ଯ୍ୟ ପାଇଁ ରାଜାଙ୍କୁ ପ୍ରୋତ୍ସାହିତ କରିଥିଲା ।




(୨) ଚତୁର୍ଦ୍ଦଶ ଶତାବ୍ଦୀରେ ଫିରୋଜ ସାହା (ତତ୍କାଳୀନ ଦିଲ୍ଲୀର ବାଦଶାହା) ଓଡ଼ିଶା ଆକ୍ରମଣ କରି ରତ୍ନ ସିଂହାସନରୁ ପ୍ରତିମାମାନଙ୍କୁ ନେଇ ନାକ କଣାକରି ବଡଦାଣ୍ଡରେ ଘୋଷାରି ଘୋଷାରି ଦିଲ୍ଲୀ ନେଇ ଯାଇଥିଲେ । ସେଠାରେ ଜୁମା ମସ୍‌ଜିଦ୍ ଆଗରେ ପ୍ରତିମାଗୁଡିକୁ ପକାଇ ମୁସଲମାନମାନେ ପାଦରେ ଦଳିଥିଲେ । ଏ ସମ୍ପର୍କରେ 'ତାରିକ-ଇ-ଫିରୋଜ ସାହା'' ଗ୍ରନ୍ଥରେ ଉଲ୍ଲେଖ କରାଯାଇଅଛି ।

(୩) ଷୋଡଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆଫଗାନ ପଠାଣ କଳାପାହାଡ ଚିଲିକା ମଧ୍ୟରେ ଲୁଚାଯାଇଥିବା ମୂର୍ତ୍ତିମାନଙ୍କୁ ଆଣି ବଡଦାଣ୍ଡରୁ ହାତୀ ପିଠିରେ ଲଦି ଗଂଗା କୂଳକୁ ନେଇଯାଇ ସେଠାରେ ନିଜର ସୈନ୍ୟ ସାମନ୍ତଙ୍କ ଦ୍ୱାରା ପୋଡି ଦେଇଥିଲେ ।

(୪) ଷୋଡଶ ଶତାବ୍ଦୀର ସାଧକ କବି ମତ୍ତ ବଳରାମ ଦାସଙ୍କ ଭକ୍ତିରେ ବଡଦାଣ୍ଡରେ ରଥ ନଚଳି ରହିଯିବା ଏକ ଉଲ୍ଲେଖନୀୟ ଘଟଣା । ଭକ୍ତକବିଙ୍କ ଦ୍ୱାରା ବାଙ୍କିମୁହାଣରେ ବାଲିରଥ ନିର୍ମାଣ ଏବଂ ଗଜପତିଙ୍କର ନିର୍ଦ୍ଦେଶରେ ବଳରାମ ଦାସଙ୍କୁ ଉଚିତ ମର୍ଯ୍ୟାଦା ପ୍ରଦାନ ପରେ ବଡଦାଣ୍ଡରେ ରଥ ଯାତ୍ରା ବିଷୟ କବିଙ୍କର 'ଭାବସମୁଦ୍ର' ଗ୍ରନ୍ଥରେ ବର୍ଣ୍ଣନା କରାଯାଇଅଛି ।

(୫) ଶ୍ରୀଗୁଣ୍ଡିଚା ରଥଯାତ୍ରା ସମୟରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ନନ୍ଦିଘୋଷ ରଥ ସମ୍ମୁଖରେ ଉଦଣ୍ଡ ସଂକୀର୍ତ୍ତନ କରୁଥିବା ବେଳେ ପାଦରେ ଆଘାତ ପ୍ରାପ୍ତ ହୋଇଥିଲେ । ଯେଉଁ ଆଘାତ ତାଙ୍କର ଦେହାବସାନର କାରଣ ହୋଇଥିଲା ।

(୬) ସପ୍ତଦଶ ଶତାବ୍ଦୀର ପ୍ରଥମ ଦଶକରେ କେଶୋ ଦାସ ମାରୁ ରଥ ଯାତ୍ରା ସମୟରେ ଦଣ୍ଡାୟମାନ ତିନିରଥକୁ (ଦିଅଁ ଗୁଣ୍ଡିଚା ମନ୍ଦିରରେ ଥିବା ସମୟରେ) ପୋଡି ଦେବା ଏବଂ ବଡ ଦେଉଳକୁ ଲୁଣ୍ଠନ କରିବା ଏକ କଳଙ୍କିତ ଇତିହାସ । ଏହି ଘଟଣାରୁ ଦିଅଁମାନେ ଚଉଦୋଳାରେ ବଡଦେଉଳକୁ ନିଆଯାଇ ଏକ ମାସ ପର୍ଯ୍ୟନ୍ତ ଶୀତଳ ଭୋଗ କରାଯାଇଥିଲା ।

(୭) ଖ୍ରୀଷ୍ଟାବ୍ଦ ୧୬୩୩ରେ Captain Brutan ଙ୍କ ପ୍ରଦତ୍ତ Reportରେ ରଥଯାତ୍ରା ସମୟରେ ବଡଦାଣ୍ଡରେ ରଥ ଚକ ତଳେ ମନୁଷ୍ୟ ମରିବାକୁ ମହାଭାଗ୍ୟ ବୋଲି ଗ୍ରହଣ କରାଯାଉଥିବା କଥା ଉଲ୍ଲେଖ ରହିଅଛି । ଏଥିର ପ୍ରତିକାର ପାଇଁ Lord North coock ସାହେବଙ୍କୁ ରଥ ଛୋଟକରି ତିଆରି କରିବାକୁ ଓଡ଼ିଶାର ଲେଫନାଣ୍ଟ ଗଭର୍ଣ୍ଣର କ୍ୟାମ୍ପ ବେଲ୍ ଖ୍ରୀଷ୍ଟାବ୍ଦ ୧୮୭୩ରେ ପ୍ରସ୍ତାବ ଦେଇଥିଲେ । କିନ୍ତୁ କୁକ୍‌ସାହେବ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଲେ । କୁକ୍ ସାହେବଙ୍କ ଏତାଦୃଶ କାର୍ଯ୍ୟକୁ ପ୍ରଶଂସା କରି ତା ୫.୭.୧୮୭୩ରିଖରେ ଉତ୍କଳଦୀପିକାରେ ସଂବାଦ ପ୍ରକାଶିତ ହୋଇଥିଲା ।

(୮) ଯବନ ଭକ୍ତ ସାଲବେଗ, କବୀର, ହରିଦାସ ବଡଦାଣ୍ଡରୁହିଁ ସେମାନଙ୍କର ଭକ୍ତିର ଅର୍ଘ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିବେଦନ କରିଛନ୍ତି । ରାଜା ନରସିଂହ ଦେବଙ୍କ ହୁକୁମ ନାମାନୁସାରେ ସାଲବେଗଙ୍କ ସମାଧି ପାଇଁ (୧୭ଶ ଶତାବ୍ଦୀ) ବଳଗଣ୍ଡିଠାରେ ସ୍ଥାନ ଦିଆଯାଇଥିଲା ।

(୯) ମରହଟ୍ଟାମାନଙ୍କ ଅମଳରେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ରାଜା ଦିବ୍ୟସିଂହ ଦେବ କୋଣାର୍କରୁ ଅରୁଣସ୍ତମ୍ଭକୁ ଆଣି ସିଂହଦ୍ୱାର ସମ୍ମୁଖସ୍ଥ ବଡଦାଣ୍ଡରେ ସ୍ଥାପନ କରିଥିଲେ ।

ବଡଦାଣ୍ଡ ହିଁ ଉପରୋକ୍ତ ଘଟଣାର ମୂକସାକ୍ଷୀ । ଏହାସହିତ ଶ୍ରୀଜଗନ୍ନାଥଙ୍କର ସର୍ବଧର୍ମ ସମନ୍ୱୟ ସାମ୍ୟ, ମୈତ୍ରୀ ଭାବ ସହିତ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ମହାପ୍ରଭୁଙ୍କ ସମ୍ମୁଖରେ ଏକତ୍ରିତ କରିବା ପାଇଁ ସତତ ଦଣ୍ଡାୟମାନ । ତା'ର ପ୍ରଶସ୍ତ ବକ୍ଷରେ ଭକ୍ତ-ଭଗବାନ, ଧନୀ-ଦରିଦ୍ର, ମ୍ଳେଛ, ପତିତ, ଅସ୍ପୃଶ୍ୟ ସମସ୍ତେ ଏକାକାର । ବଡଦାଣ୍ଡରେ ପଦାର୍ପଣ, ଶ୍ରୀମନ୍ଦିର ସହିତ ନୀଳଚକ୍ର ଓ ପତିତପାବନ ବାନା ଦର୍ଶନରେ ଯେକୌଣସି ଜଗନ୍ନାଥ ପ୍ରେମୀ ଭାବବିହ୍ୱଳିତ ହୋଇଉଠେ । ରତ୍ନ ସିଂହାସନାରୂଢ ଜୀଉମାନଙ୍କୁ ଦର୍ଶନଠାରୁ ଅଧିକ ମନେକରି ବଡ ଦାଣ୍ଡର ଧୂଳିକୁ ମସ୍ତକରେ ଧାରଣ କରି କୃତାର୍ଥ ହୋଇଥାଏ । ଏହି ଧୂଳି ସାମାଜିକ ଶୁଭ ସଂସ୍କାର କାର୍ଯ୍ୟରେ ବିନିଯୋଗ କରି ନିଜକୁ ଭାଗ୍ୟବାନ ମନେକରେ । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ଆବିର୍ଭାବ ସମୟରୁ ଜଗନ୍ନାଥ ଚେତନାର ଏକାତ୍ମ ବୋଧ, ନିରହଂକାରିତା, ଉଦାରତା, ବିଶ୍ୱମୈତ୍ରୀ ଭାବନା ଓ ବସୁଧୈବ କୁଟୁମ୍ବକଂ ଆଦର୍ଶକୁ ଚରିତାର୍ଥ କରିବାରେ ବଡଦାଣ୍ଡ ହିଁ ମୁଖ୍ୟ ଭୂମିକା ଗ୍ରହଣ କରି ଆସିଅଛି କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁ ଆଦର୍ଶୀୟ ଚିନ୍ତା ଓ ଚେତନା ବିଶ୍ୱ ସମୁଦାୟକୁ ଜଗନ୍ନାଥ ସଂସ୍କୃତି ପ୍ରତି ଆକର୍ଷିତ କରିପାରିଅଛି, ତାହାର ଉତ୍ପତ୍ତି ସ୍ଥଳ ହେଉଛି ବଡଦାଣ୍ଡ । ସୁତରାଂ ଜଗନ୍ନାଥ ସଂସ୍କୃତିର ସାର୍ଥକତା ଯଥାର୍ଥରେ ବଡଦାଣ୍ଡ ହିଁ ଚରିତାର୍ଥ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଆସିଅଛି ଏଥିରେ ଦ୍ୱିମତ ନାହିଁ ।

ପିଏମ୍‌ବି-୬୪
ସଂଧ୍ୟାନିଳୟ, ହାଉସିଂ ବୋର୍ଡ କଲୋନୀ,
ବଳିଆପଣ୍ଡା, ପୁରୀ-୭୫୨୦୦୧







# ମାଦଳାପାଞ୍ଜିରେ ଶ୍ରୀଜଗନ୍ନାଥଙ୍କ ଇତିବୃତ୍ତ

ସୁରେଶ କୁମାର ପ୍ରଧାନ

ଅବର୍ଣ୍ଣନୀୟ, ଅବ୍ୟକ୍ତ, ଅଚିନ୍ତ୍ୟ, ଅପ୍ରକାଶ୍ୟ ଓ ଅସରନ୍ତି ରହସ୍ୟର ଘନୀଭୂତ ବିଗ୍ରହ ହିଁ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ । ଅବ୍ୟକ୍ତ ତତ୍ତ୍ୱ ଓ ଦର୍ଶନର ବ୍ୟାଖ୍ୟା ବେଦ ଓ ପୁରାଣ ସମୂହରେ ହୋଇଥିବାବେଳେ, ଯେଉଁଥିରେ ଜଗନ୍ନାଥଙ୍କ ଶ୍ରୀମନ୍ଦିରର ଦୈନନ୍ଦିନ ଧାରାବାହିକ ତଥ୍ୟ ଉପଲବ୍ଧ, ତାହା ହେଉଛି 'ମାଦଳାପାଞ୍ଜି' । ଜଗନ୍ନାଥ ସଂସ୍କୃତି, ଐତିହ୍ୟ ଓ ପରମ୍ପରା ସମ୍ପର୍କରେ ଅନେକ କିଛି ମାଦଳାପାଞ୍ଜିରୁ ହିଁ ଜଣାପଡେ । ତେଣୁ ମାଦଳାପାଞ୍ଜି ହିଁ 'ଶ୍ରୀଜଗନ୍ନାଥଙ୍କ ପାଞ୍ଜି' । ଯଥାର୍ଥରେ କହିଲେ ମାଦଳାପାଞ୍ଜି ହେଉଛି ଶ୍ରୀଧାମ, ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କ ଡାଏରୀ ବା ମୌଳିକ ଡକୁମେଣ୍ଟ ।

'ମାଦଳା' କହିଲେ ଅପୂର୍ଣ୍ଣ ବା ଖଣ୍ଡିଆକୁ ବୁଝାଇଥାଏ । ତେଣୁ ଏହି ଅର୍ଥରେ ଶ୍ରୀଜଗନ୍ନାଥ ଅସମ୍ପୂର୍ଣ୍ଣ ହୋଇଥିବାରୁ ତାଙ୍କର ଅନ୍ୟତମ ସ୍ୱରୂପ ହିଁ 'ମାଦଳା' । ଯେଉଁ ପାଞ୍ଜିରେ ମାଦଳା ଦେବତାଙ୍କ କଥା ବର୍ଣ୍ଣିତ, ତାହା ହିଁ 'ମାଦଳାପାଞ୍ଜି' । ତତ୍ତ୍ୱଦର୍ଶୀ ଗବେଷକବୃନ୍ଦ ମାଦଳାପାଞ୍ଜିକୁ ବିଭିନ୍ନ ଅର୍ଥରେ ବୁଝାଇଛନ୍ତି । ଐତିହାସିକ ସତ୍ୟନାରାୟଣ ରାଜଗୁରୁଙ୍କ ମତାନୁଯାୟୀ– 'ମାଦଳା' ଶବ୍ଦ 'ମୋଦଳ' ଓ 'ମୋଦୁଲୁଗାଁ'ରୁ ଆନୀତ । ଯାହାର ଅର୍ଥ 'ପ୍ରଥମ' ଓ 'ଆରମ୍ଭ'ରୁ । ଏହି ଦୃଷ୍ଟିରେ ବିଚାର କଲେ ମାଦଳାପାଞ୍ଜିର ଅର୍ଥ– ଯେଉଁ ପାଞ୍ଜିରେ ପ୍ରଥମରୁ ସମସ୍ତ ଘଟଣା ସଂକଳନ କରାଯାଇଛି ଅଥବା ଆରମ୍ଭରୁ ଯେଉଁ ପାଞ୍ଜି ଲେଖା ହୋଇଛି । ଐତିହାସିକ ମନମୋହନ ଚକ୍ରବର୍ତ୍ତୀଙ୍କ ମତରେ 'ମୁଦଲ' ଶବ୍ଦରୁ ମାଦଳା ଶବ୍ଦ ଆସିଛି । ଦୈନନ୍ଦିନ ସେବାପୂଜା ପରେ ମନ୍ଦିରର ବନ୍ଦ ଦ୍ୱାରକୁ ମୁଦ ଦେବା ବା ସିଲ୍ କରିବା ନାମ ମୁଦ୍ରସ୍ତ । ଅଭିଲେଖଗୁଡିକରେ 'ମୁଦଲ' ଶବ୍ଦ ବା ତାହାର ରୂପାନ୍ତର ବିଶେଷର ପ୍ରୟୋଗ ଓ 'ମୁଦ୍ରସ୍ତ' ସହିତ ତା'ର ତୁଳନାରୁ ସେ ମୁଦଲ ଶବ୍ଦରୁ ମାଦଳା ଶବ୍ଦ ସୃଷ୍ଟି ହୋଇଥିବା ପ୍ରମାଣ କରିଛନ୍ତି । ସେହିପରି ଗବେଷକ ପଣ୍ଡିତ ସଦାଶିବ ରଥଶର୍ମା, ଉମାପ୍ରସାଦ ଚାନ୍ଦ, ଜଗବନ୍ଧୁ ସିଂହ, ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଐତିହାସିକ ରାଖାଲ ଦାସ ବାନାର୍ଜୀ ପ୍ରଭୃତି 'ମାଦଳା' ଶବ୍ଦର ଅର୍ଥକୁ ବାଦ୍ୟଯନ୍ତ୍ର ବା ଢୋଲ ଭାବରେ ଗ୍ରହଣ କରିଅଛନ୍ତି । ପୂର୍ବକାଳରେ ଯେକୌଣସି ପୁସ୍ତକ ତାଳପତ୍ରରେ ଲୁହାଲେଖନୀ ଦ୍ୱାରା ଲେଖାଯାଉଥିଲା, ତାଳପତ୍ର ଖେଦାଗୁଡିକୁ ମୃଗଛାଲରେ ଗୋଲାକାର ଭାବେ ବାନ୍ଧିକରି ସାଇତି ରଖାଯାଉଥିଲା । ଏହାର ସ୍ୱରୂପ ମାଦଳା ବାଦ୍ୟଯନ୍ତ୍ର ପରି ହୋଇଥିବାରୁ ଏହି ପାଞ୍ଜିର ନାମ ମାଦଳାପାଞ୍ଜି ବୋଲି ଗବେଷକବୃନ୍ଦ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ବିଶିଷ୍ଟ ଗବେଷକ ଷ୍ଟ୍ରିଷ୍ଟନ ସାହେବଙ୍କ ମତ ହେଉଛି– 'ମୁଦେଲ' ବା 'ମାଦଳା' ଏକ ରାଜକୀୟ ଉପାଧି । ଏହି ଉପାଧିଧାରୀମାନେ ରାଜକୀୟ ଘୋଷଣା ଲେଖିବା ସହ ପ୍ରଚାର ମଧ୍ୟ କରୁଥିଲେ । ସେମାନେ ଜଗନ୍ନାଥ ମନ୍ଦିରର ବ୍ୟବସ୍ଥାକୁ ତାଳପତ୍ର ପୋଥିରେ ଲେଖୁଥିବାରୁ ତାହା 'ମାଦଳାପାଞ୍ଜି'ରୂପେ ପରିଚିତ । ତେବେ ଯାହା ହେଉନା କାହିଁକି ଶ୍ରୀଜଗନ୍ନାଥଙ୍କ ପାଞ୍ଜି ହେଉଛି ମାଦଳାପାଞ୍ଜି । ଜନମାନସରେ ଏହା ବିଶ୍ୱାସ ରହିଛି ଯେ, ମହାପ୍ରଭୁଙ୍କ ସମ୍ବନ୍ଧରେ ଜାଣିବାକୁ ହେଲେ ମାଦଳାର ସାହାଯ୍ୟ ନେବାକୁ ହୁଏ । ଯଥାର୍ଥରେ କହିଲେ ହସ୍ତପଦ ବିହୀନ ମାଦଳା ଦେବତାର କଥା ଯେଉଁ ପାଞ୍ଜିରେ ଲିପିବଦ୍ଧ, ତାହା ହିଁ 'ମାଦଳା ପାଞ୍ଜି' । ଏଥିରେ ଜଗନ୍ନାଥ ମନ୍ଦିରର ଇତିବୃତ୍ତ ଓ ବୃତ୍ତାନ୍ତ ସ୍ଥାନିତ ହୋଇଅଛି । ଏ ସମ୍ବନ୍ଧରେ ଉଲ୍ଲେଖ ଅଛି–

ମାଦଳାପାଞ୍ଜିରେ ଶ୍ରୀମନ୍ଦିର କଥା ମୂଳ
ମାନ୍ୟ ଓଡ଼ିଆ ଭାରତ ବିଶ୍ୱକଥା ତୁଳ
ମାଦଳା ଠାକୁର ପରା ପ୍ରଭୁ ଜଗନ୍ନାଥ
ମାଦଳାରେ ପ୍ରଭୁଙ୍କର କଥା ଯେ ବର୍ଣ୍ଣିତ ।





ମାଦଳାପାଞ୍ଜି ଭାରତୀୟ ଗଦ୍ୟ ସାହିତ୍ୟର ଏକ ବିସ୍ମୟ । ଅତୀତର ସୁମହାନ୍ ଜଗନ୍ନାଥ ସଂସ୍କୃତି ଓ ପରମ୍ପରାକୁ ଅକ୍ଷୁଣ୍ଣ ରଖିବାରେ ସକ୍ଷମ ହୋଇଛି । ଶ୍ରୀମନ୍ଦିରର ଦୈନନ୍ଦିନ ନୀତି ପ୍ରତ୍ୟହ ତିନିଜଣ ପାଞ୍ଜିଆ-୧ ଦେଉଳକରଣ, ୨. ତଢାଉକରଣ, ୩.କୋଷ୍ଠକରଣଙ୍କ ଦ୍ୱାରା ତାଳପତ୍ର ଲେଖନୀରେ ଲିପିବଦ୍ଧ କରାଯାଇ ମର୍ଦ୍ଦଳ ଆକାରରେ ବନ୍ଧାହୋଇ ଯତ୍ନ ସହକାରେ ରଖାଯାଉଥିଲା । ଲେଖନୀ ଦ୍ୱାରା ଯେଉଁ ବିବରଣୀ ଲେଖାଯାଉଥିଲା ସାଧାରଣତଃ ଏହା ତିନି ଭାଗରେ ବିଭକ୍ତ । ପ୍ରଥମତଃ- ରାଜାମାନଙ୍କର ରାଜଭୋଗ ବିବରଣୀ, ଦ୍ୱିତୀୟତଃ- ଜଗନ୍ନାଥ ମନ୍ଦିରର ନିର୍ମାଣ ଇତିହାସ, ସେବାପୂଜା, ଆୟବ୍ୟୟ, ବିଧିବ୍ୟବସ୍ଥା ବିବରଣୀ ସହ ସେବକମାନଙ୍କ କର୍ତ୍ତବ୍ୟ ସମ୍ପାଦନା, ତୃତୀୟତଃ- ଶ୍ରୀମନ୍ଦିରକୁ କେନ୍ଦ୍ରକରି ସଂଘଟିତ ଘଟଣାବଳୀର ଇତିହାସ ।

ମାଦଳାପାଞ୍ଜି ହେଉଛି ଶହ ଶହ ବର୍ଷର ଧାରାବାହିକ ବିବରଣୀ ଯାହାକି ଇତିହାସର ଆଦ୍ୟ ପ୍ରୟାସ । ତେଣୁ ଏହାକୁ ଗଦ୍ୟ ସାହିତ୍ୟର ବଡ ବିସ୍ମୟ ବୋଲି କୁହାଯାଇଥାଏ । ଶତାବ୍ଦୀ ଶତାବ୍ଦୀ ଧରି ସଂଘଟିତ ଘଟଣାରାଜିର ଅବିକୃତ କାହାଣୀ ହିଁ ମାଦଳାପାଞ୍ଜିର ନିର୍ଯ୍ୟାସ । ଏଥିରେ କେବଳ ଶ୍ରୀଜଗନ୍ନାଥଙ୍କ ବୃତ୍ତାନ୍ତ ଲିଖିତ ନୁହେଁ, ଅଧିକନ୍ତୁ ପ୍ରାଚୀନ ଉତ୍କଳର ଐତିହ୍ୟ ସଂସ୍କୃତି ଓ ପରମ୍ପରାର ଚିତ୍ର ସୁସ୍ପଷ୍ଟ । ମାଦଳାପାଞ୍ଜିର ଲିଖନ କାଳ ସମ୍ପର୍କରେ ଗବେଷକଙ୍କ ମଧ୍ୟରେ ନାନା ମତ ପାର୍ଥକ୍ୟ ଥିବା ଜଣାଯାଏ । ଏହା ଏକାଦଶ-ଦ୍ୱାଦଶ ଶତାବ୍ଦୀର ରଚନା ବୋଲି କିଛି ଗବେଷକ ଯୁକ୍ତି ଉପସ୍ଥାପନା କରୁଥିବା ବେଳେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତରେ ଚୋଡଗଙ୍ଗଦେବ ୧୦୭୭ ଖ୍ରୀଷ୍ଟାବ୍ଦ କନ୍ୟା ୧୪ଦିନ ଶୁକ୍ଳ ଦଶମୀ ଦଶହରା ଦିନ ପାଞ୍ଜି ଲିଖନ ପାଇଁ ନିର୍ଦ୍ଦେଶ ଦେଇଥିଲେ । 'ପୁରୁଷୋତ୍ତମ ଚନ୍ଦ୍ରିକା'ରେ ଭବାନୀଚରଣ ବନ୍ଦୋପାଧ୍ୟାୟ ଉଲ୍ଲେଖ କରିଛନ୍ତି ଯେ, ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୬ଶ ଉତ୍ତରାର୍ଦ୍ଧ) ବିଶିଷ୍ଟ ପାଞ୍ଜିକାର ବଟକୃଷ୍ଣ ମହାନ୍ତିଙ୍କୁ ପାଞ୍ଜି ଲିଖନ ପାଇଁ ଆଦେଶ ପ୍ରଦାନ କରିଥିଲେ । ସେହିପରି ଐତିହାସିକ କୃପାସିନ୍ଧୁ ମିଶ୍ର ତାଙ୍କ 'ଓଡ଼ିଶା ଇତିହାସ'ରେ ଉଲ୍ଲେଖ କରିଛନ୍ତି- ମାଦଳାପାଞ୍ଜି ଚୋଡଗଙ୍ଗଦେବଙ୍କ ସମୟରୁ ଆରମ୍ଭ ହୋଇଛି । ବିଶିଷ୍ଟ ଗବେଷକ, ଐତିହାସିକ କବି ଡକ୍ଟର ମାୟାଧର ମାନସିଂହ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ଉଲ୍ଲେଖ କରିଛନ୍ତି- ଗଙ୍ଗ ନରପତି ପ୍ରଥମେ ଚୋଡଗଙ୍ଗଦେବ ସମୟରୁ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀରେ ମାଦଳାପାଞ୍ଜି ଲିଖନର ଅୟମାରମ୍ଭ ହୋଇଥିଲା । ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ଡକ୍ଟର ସୁନୀତି କୁମାର ଚାଟାର୍ଜୀଙ୍କ ମତ- ଶ୍ରୀମନ୍ଦିର ପ୍ରତିଷ୍ଠା କାଳରୁ ଅର୍ଥାତ୍ ଖ୍ରୀଷ୍ଟିୟ ଦ୍ୱାଦଶ ଶତାବ୍ଦୀରୁ ପାଞ୍ଜି ଲିଖନର ଶୁଭାରମ୍ଭ ହୋଇଛି । ମାଦଳାପାଞ୍ଜିର କାଳ ନିରୂପଣ ସମ୍ପର୍କରେ ଆଲୋଚନା କଲେ ଗବେଷକ ଡକ୍ଟର ସତ୍ୟନାରାୟଣଙ୍କ ମତ ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଉତ୍କଳ ବିଶ୍ୱବିଦ୍ୟାଳୟ 'ପରିଜା ପାଠାଗାର'ରେ ଥିବା ପୋଥି ଅବଲମ୍ବନରେ ଏହା ସ୍ପଷ୍ଟ ହୁଏକି ରାଜା ଚୋଡଗଙ୍ଗଦେବ ପାଞ୍ଜି ଲିଖନ ନିମିତ୍ତ ପାଞ୍ଚଜଣ କରଣଙ୍କୁ ଆଦେଶ ଦେଇଥିଲେ,- 'ଶ୍ରୀଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଭଣ୍ଡାର ରକ୍ଷକକୁ ତାଗିଦ୍(ଆକଟ) । କନ୍ୟା ୨୫ଦିନ ଶୁକ୍ଳପକ୍ଷ ଦଶମୀରେ ପୁରୁଷୋତ୍ତମ କ୍ଷେତ୍ର ବଡଦେଉଳ ବଡପରିଛ, ଚାରିପରିଛ, ଭୋଗ ବିଶୋଇ, ନାହାକ ସାମନ୍ତମାନଙ୍କୁ ଦେଉଳକରଣ, ବଇଠି କରଣ, ଛାମୁକରଣ, ବେହରକରଣ, ଚାଙ୍ଗଡାକରଣ, ଚାଉଳବଛ ଓ ଗ୍ରେଙ୍କୁ ମହାରାଜାଧିରାଜ ଚୁଡଗଙ୍ଗ ଦେବଙ୍କ ତୁଲେ ଏହି ରାଜାଜ୍ଞା କି ଆଜି ଦିବସରୁ ମହାରାଜାଙ୍କ ସମସ୍ତ ସ୍ରାହି ଅଙ୍କେ ଯାହା ଘଟିବ ପୁତ୍ରପୁତ୍ରାଦି କଳନ୍ତରେ ଯାହା ବା ଜନମ ହେବେ ଯେ ବା ହରି ଛାଡିବେ ସଭିଙ୍କୁ ଗ୍ରହଣ ପୂରୁବ ବିଧିରେ ରହିବ ପାଞ୍ଜିଆ ନିଯୋଗଙ୍କର ହେଳାରୁ ଯାବତ୍ ଚନ୍ଦ୍ର ସୂର୍ଯ୍ୟ ମେଦିନୀ ବାସନ୍ଦ ଭୋଗିବେ । ଏଥିକି ଆକଟ ଛାମୁକରଣ ବିଡାଳସୀରୁ ସମସ୍ତ ଗ୍ରହଣ ସମାଚାର କଳି ବେହରଣରେ ପୁରୁଷୋତ୍ତମଙ୍କ ତୁଲେ କହିବେ । କ୍ଷେୟି ବର୍ତ୍ତନ ଭଣ୍ଡାରରକ୍ଷକ ବଡପରିଛାଠାରୁ ପଇଠ ନେବେ । ରାଜାଜ୍ଞା ଅନ୍ୟଥା ନକରିବେ । ବେହେରକରଣ ତାହା ନରଖି ସବୁ ଲେଖିବେ । ପୋଥିକୁ ଭଣ୍ଡାର ଜଗିବା ପାଇକମାନଙ୍କ ତୁଲେ ଦେବ । କନ୍ୟ ଶୁକଳ ଦଶମୀରେ ଦୁର୍ଗାମାଧବଙ୍କ ତୁଲେ ନନ୍ଦିଭୁଜ ଓ ପାଞ୍ଜିପୂଜା ବନ୍ଦାପନା ସିଦ୍ଧି ମୁଦିରଥେ କରିବେ । ବେହରକରଣ ପୁରୁଷୋତ୍ତମ ସେବାବିଧି ପୂଜାକର୍ମାଣି ଯାନିଯାତ୍ରା ଲେଖିବେ । ଦେଉଳକରଣ ସେବକମାନଙ୍କ ତୁଲେ ସମସ୍ତ ଯୋଗାଣ ଭିଆଣ କରିବେ, ସେବା ପୂଜାବିଧି ପାଞ୍ଜିରେ ଲେଖିବେ, ଏ ରାଜାଜ୍ଞା ଅନ୍ୟଥା ନହେବ । ଯେ ଅନ୍ୟଥା କରିବେ ସେ ବଡଠାକୁରଙ୍କଠାରେ ଦୋରେହା ହେବେ' ।

ମାଦଳ ଦେବତାଙ୍କ ଇତିହାସ ହିଁ ମାଦଳାପାଞ୍ଜିର କାହାଣୀ । ଏଥିରେ ଯେଉଁ ତିନିପ୍ରକାର ବିବରଣୀ ସନ୍ନିବେଶିତ ତନ୍ମଧ୍ୟରୁ ଶ୍ରୀମନ୍ଦିରର ନିର୍ମାଣ ଇତିହାସ, ସେବାପୂଜା, ପର୍ବପର୍ବାଣି ଓ ସେବାୟତ ମୁଖ୍ୟ । ଜଗନ୍ନାଥଙ୍କୁ ନେଇ ପ୍ରାୟ ୮୦୦ବର୍ଷର ଘଟଣା ମାଦଳାରୁ ଜଣାଯାଏ । ଶ୍ରୀମନ୍ଦିରର ନିର୍ମାଣକାଳ ଓ କର୍ତ୍ତାଙ୍କ





ସମ୍ବନ୍ଧରେ ମାଦଳା ପଠନରୁ ସହଜରେ ଜାଣିହୁଏ । ମାଦଳାପାଞ୍ଜିରେ ଲେଖା ଅନୁଯାୟୀ– 'ଶୋଭନଦେବ ଭୋଗ କଲେ ୯୬ବର୍ଷ । ଏହି ମହାରାଜାଙ୍କ ୨ଅଙ୍କେ ଦିଲ୍ଲୀରୁ ରକ୍ତବାହୁ ଆସିବା ବାରତାକୁ ପରମେଶ୍ୱରଙ୍କୁ ସୁନୁପୁର ଗୋପାଳୀ ଘେନିଗଲେ । ସେଠାରେ ମଣ୍ଡପ ଗୋଟିଏ କରି ବିଜେ କରାଇଲେ ୪୫ବର୍ଷ । ଏଥିଉତ୍ତାରେ ମୁଗଲେ ପ୍ରବଳ ହୋଇଲାକୁ ସେବକେ ସେଠାରେ ପରମେଶ୍ୱରଙ୍କୁ ପାତାଳି କରି ଉପରେ ଗଛ ଲଗାଇ ରାଜ୍ୟ ଅନ୍ତର ହୋଇଗଲେ । ପାତିସାଙ୍କ ଅମୁରା ରକ୍ତବାହୁ ଶ୍ରୀପୁରୁଷୋତ୍ତମ ବୋଲି ଆଇଲା । ସମୁଦ୍ର ଥୋକାଏ ଦୂର ମାଡି ଆଇଲା । ଏ ରାଜା ବହୁତ ଯୁଦ୍ଧ କଲେ । ରହିନପାରି ଝାଡଖଣ୍ଡ ଭିତରେ ରହିଲେ ।''

X X X X

ଯବନମାନଙ୍କ ପରେ ଯଯାତି ରାଜା ହେଲେ । ଏ ମହାରାଜାଙ୍କ ୧୧ଅଙ୍କେ ସନ୍ନ୍ୟାସୀ ବ୍ରହ୍ମଚାରୀ ବ୍ରାହ୍ମଣମାନଙ୍କୁ ପାଚାରିଲେ, ଓଡ଼ିଶା ରାଜାର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ, ସେ କାହିଁଛନ୍ତି ? ସେମାନେ କହିଲେ ମୁଗଲ ଗୋଳ ହୋଇଲାକୁ ସୋମୋଦ୍ର ମାଡି ଅଇଲାକୁ ଅପାର ଦିନ ହୋଇଲା । ଶ୍ରୀପର୍ମେସରଙ୍କୁ ପାତାଳୀ କରି ସୁନୁପୁର ଆଡେ କଇଁଠାରେ ବିଜେ କରାଇଲେ ଗାଁତବ ନାହିଁ । ଏହାଶୁଣି ମହାରାଜା ସୁନୁପୁର ଗଲେ । ସେଠାରେ ଖଣ୍ଡାଇତଙ୍କୁ ପଚାରିଲେ । ସେମାନେ କହିଲେ ଆମେ ଗାଁତବ ନୋହୁ । ଆମ ବାପ ଅଜା କହନ୍ତି ଦିଅବର ଏହି । ଏଥିତଳେ ଦିଅଁଙ୍କୁ ପୋତିଥିଲେ । ଏହାଶୁଣି ରାଜା କଟୁରିଆ ବ୍ରାହ୍ମଣଙ୍କୁ ଆଣି ସେ ଗଛ କଟାଇ ଖୋଳାଇଲେ । ପର୍ମେସରଙ୍କୁ ବାହାର କଲେ । ସେ ଦିନେ ସେ ମୂର୍ତ୍ତିମାନ ମାଟିଖାଇ ଛିନ୍ନଭିନ୍ନ ହୋଇଛନ୍ତି । ଦିଅଁମାନଙ୍କୁ ଲୁଗା ଗୁଡିଆଇ ମୁଣାରେ ପୂରାଇ ମୁଦାଇଲେ । ଏ ଉତ୍ତାରୁ ଦଇତାପତିଙ୍କୁ ଲୋଡାଇଲେ । ଦଇତାମାନେ ବିରିବନ୍ଧରେ ଥିଲେ । ପତିମାନେ ରତନପୁର ସୀମାରେ ଥିଲେ । ଏମାନଙ୍କୁ ଅଣାଇ ବିଧିପତ୍ର ପ୍ରମାଣେ ଦାରୁଛେଦନ କରାଇ ପର୍ମେସରଙ୍କୁ ସୁମୂର୍ତ୍ତି କରାଇଲେ । ଏ ଘଟଣା ବେଳେ ରାଜା ଅଧିକ ସେବକ ତାଟି ଭିତରେ ଚିଲେ । X X ଶ୍ରୀପୁରୁଷୋତ୍ତମ ଶଙ୍ଖନାଭି ମଣ୍ଡଳେ ୩୮ହାତ କରି ପଟୋଳ ଗୋଟାଏ ତୋଳି ପ୍ରତିଷ୍ଠା କରି ପରମେସରଙ୍କୁ ବିଜେ କରାଇଲେ ।

X X X X

ମାଦଳାପାଞ୍ଜିର ତଥ୍ୟ ଅନୁଯାୟୀ ଅନଙ୍ଗଭୀମ ଦେବ–୩ୟ (ଖ୍ରୀ ୧୨୧୧–୧୨୩୮) ପୁରୀ ଜଗନ୍ନାଥ ମନ୍ଦିରକୁ ପୂର୍ଣ୍ଣାଙ୍ଗ କରିଥିଲେ, ଯାହାକି ଚୋଡଗଙ୍ଗଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । କୀର୍ତ୍ତିଶାଳୀ ରାଜା ଅନଙ୍ଗଭୀମ ରାଜ୍ୟ ଆୟର ମୁଖ୍ୟାଂଶକୁ ଶ୍ରୀମନ୍ଦିର ନିର୍ମାଣ ଓ ତାହାର ଦୈନନ୍ଦିନ ନୀତି ପାଇଁ ବ୍ୟୟ କରୁଥିଲେ । ଅନଙ୍ଗଭୀମଦେବ ଶହେ ହାତ ବିଶିଷ୍ଟ ଶ୍ରୀବତ୍ସ ଖଣ୍ଡଶାଳ ବିଷ୍ଣୁମନ୍ଦିର ନିର୍ମାଣ କରିଅଛନ୍ତି । ମାଦଳାପାଞ୍ଜିରେ ଏ ସମ୍ବନ୍ଧରେ ଉଲ୍ଲିଖିତ ଯେ– 'ଏନଗର କଟକେ ଥାଇ ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦେବଙ୍କୁ ସମସ୍ତ ସମର୍ପି ରାଉତପଣେ ଥାଆନ୍ତି । ଭୋ ଭବିଷ ମହାରାଜାମାନେ ଦେବତା ବ୍ରାହ୍ମଣ ବଳଭଣ୍ଡାରକୁ, ରାଜନୀତି ଚୟେକୁ ମଧକରି ମୁଁ ଯେମନ୍ତ ପ୍ରକାରେ ଭିଆଣ କରି ଦେଉଅଛି ଏଥିକି ତୁମ୍ଭେମାନେ ନପୁଣି ବୋଲ ସେ ଦେଇଗଲେ ଆମ୍ଭରକି ହୋଇଲା ? ଆମ୍ଭେ କିମ୍ବା ଦେବୁ ? ଏମନ୍ତ ନବୋଲିବ, ଏଥିକୁ ତୁମ୍ଭେମାନେ ଯେବେ ବଳିଆର ପଣ କରି ଲୋଭବଶରେ ହରିବ ତେବେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣକୁ ଦ୍ରୋହ କଲାରୁ ଯେ ପାପ ତାହା ପାଇବ ।''

ଅନଙ୍ଗଭୀମଦେବଙ୍କ ଶ୍ରୀମନ୍ଦିର ନିର୍ମାଣ ସମ୍ବନ୍ଧରେ ମାଦଳାପାଞ୍ଜି କହେ– ''ଏ ଆମ୍ଭର ଅରଜିତ ପଦାର୍ଥ । ଏଥୁଂ ଆମ୍ଭେ ଥୋକାଏ ପ୍ରମେଶ୍ୱରଙ୍କ ଆଡତିରେ ଲଗାଇବାକୁ ଏଥକୁ ଆମ୍ଭେମାନେ ଏମନ୍ତ କଳ୍ପନା କରୁଅଛୁଁ । ଯଯାତି ରାଜା ଯେଉଁ ପାଟଳ ତୋଳାଇ ପ୍ରମେଶ୍ୱରଙ୍କୁ ବିଜେ କରାଇ ଅଛନ୍ତି ସେ ପାଟଳ ଗୋଟି ଅତି ବଇଷମ ହୋଇଲା । ଏହା ଭାଙ୍ଗି ଶହେ ହାଥ ଉଚେ ପ୍ରାସାଦ ଗୋଟିଏ ତୋଳାଇବା, ପ୍ରମେଶ୍ୱରଙ୍କୁ । ଆୟତନ ଭିତର ଦେବତାମାନଙ୍କର ଦେଉଳ ଗୋଟାମାନ ଆନ କରି ତୋଳାଇବା । ଏଥକୁ ଥୋକାଏ ସୁନାଦବା ।

X X X X

ମାଦଳାପାଞ୍ଜି ୨ୟରେ ଉଲ୍ଲିଖିତ– ' ଏ ଉତ୍ତାରୁ ଅନଙ୍ଗ ଭୀମଦେବ ରାଜା ରାଜ୍ୟ କଲେ । ଏ ରାଜା ବଡ ଧାର୍ମିକ । ରାଜା ବଡ ଦେଉଳ ତୋଳାଇଲେ । ଏଥିରେ ମଧ ଉଚାସିଙ୍ଗ ବଙ୍କା ହୋଇବସିଲା । ଏଥିକି ବିନ୍ଧାଣି ସଳଖି ନପାରିଲେ । ଏ ରାଜା ବଡ ବିସ୍ମୟ ହୋଇ ନିରାହର କରି ଶୋଇଲା । ଏ ଦିନ ମହାପ୍ରଭୁଙ୍କର ମଶାଣିଆ ହନୁମନ୍ତଙ୍କୁ ଆଖ୍ୟା ହୋଇଲା । ସେ ଆସି ସିଙ୍ଗକୁ ସଳଖି ବସାଇଲେ । ଏ ରାଜା ଦେଖି ବଡ ଆନନ୍ଦ ହୋଇଲେ । ଏ ଉତ୍ତାରୁ ଶଏହାତ ପ୍ରମାଣେ ବଡଦେଉଳ କଲେ । ମୁଖଶିଆଳ କଲେ । ପରମହଂସ ବାଜପେୟୀ ଆଉ ଭଟ୍ଟ ଶ୍ରମିକମାନେ ଥାଇ ଦେଉଳ ପ୍ରତିଷ୍ଠା କଲେ । ଏଦିନ ଏ ରାଜାଙ୍କ ୧୮ଅଙ୍କ କୁମ୍ଭ ୨ଦିନେ ଏ ଦେଉଳ ଶ୍ରୀବତ୍ସ ଖଣ୍ଡଶାଳ ଘଟଣା



ଶୁକ୍ଳପକ୍ଷ ଦଶମୀ ଗୁରୁବାର ଦିନ ବଡଦେଉଳକୁ ମଧୁପୁର ପାଟଣା ଚୁଡଙ୍ଗ ସାହିରୁ ବିଜେ କରାଇଲେ । ମହାପ୍ରଭୁଙ୍କୁ ରତ୍ନସିଂହାସନେ ବିଜେ କରାଇଲା ଉତ୍ତାରୁ ୮୪ ମଢଫୁଲ ସଖୁଡି ଭୋଗ ହେଲା ।''

ଗଜପତି ପୁରୁଷୋତ୍ତମ ଦେବଙ୍କ 'କାଞ୍ଚି ଅଭିଯାନ'ରେ ପ୍ରଭୁ ଜଗନ୍ନାଥ ବଳଭଦ୍ର ଧଳାଘୋଡା ଓ କଳାଘୋଡାରେ ଚଢି କିପରି ସାହାର୍ଯ୍ୟ କରିଥିଲେ ତାହା ପାଞ୍ଜି ଅବଲମ୍ବନରେ ଜ୍ଞାତ ହୋଇଥାଏ । ଦ୍ୱିତୀୟ ପାଞ୍ଜି ଅବଲମ୍ବନରେ ଉଲ୍ଲିଖିତ–

'ଦଶଅଙ୍କରେ ରାଜା ଶୁଣିଲେ କାଞ୍ଚନଗରରେ ପଦ୍ମିନୀ...

ତହିଁକି ରାଜା ମଧ୍ୟସ୍ଥ ପଠିଆଇ... ନକଲା । ରାଜା ଶୁଣି କୋପ କରି ତୁମ୍ଭେ ଆମ୍ଭ ପାଇଁ ଥରେ ଶ୍ରୀଛାମୁରେ ଜଣାଇବ । ସେହିଦିନ ରାତ୍ରରେ ମହାସ୍ୱାର ବହୁତ କାକୁସ୍ଥ ହୋଇ ମହାପ୍ରଭୁଙ୍କ ଶ୍ରୀଛାମୁରେ ଜଣାଇଲେ । ପ୍ରଭୁଙ୍କର ସେହି ରାତ୍ରେ ଆଜ୍ଞା ହୋଇଲା । ସେ ତନ ମରିବ । ଆମ୍ଭେ ବିଜେ କଲେ ସେ ଗଡ ମରିବ । ଆମ୍ଭେ କଳାବାରୁ ଧଳାବାରୁ ଚଢି ଆଗେ ବିଜେକଲୁ, ତୁ ଯାଇ ରାଜାଙ୍କୁ କହ । ଆମ୍ଭେ ଦକ୍ଷିଣ ପାଚେରୀ କଣରେ ଦୁର୍ଗାମାଧବ ମୂର୍ତ୍ତି ଦରଶନ କରି ଆମ୍ଭେ ପଛେଯିବୁ । ଏହି ରୂପେ ମହାସ୍ୱାର କହିଲେ ।

**xx xx**

ମାଦଳାପାଞ୍ଜିର ତୃତୀୟ ବିବରଣୀ ହେଉଛି ମନ୍ଦିରକୁ କେନ୍ଦ୍ରକରି ସଂଘଟିତ କାହାଣୀ, ବିଭିନ୍ନ ସମୟରେ ଶ୍ରୀମନ୍ଦିର ଆକ୍ରମଣ ଘଟଣା ପାଞ୍ଜିରୁ ଜଣାପଡେ । ୧୫୬୮ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବଙ୍କ ଶାସନର ଅବସାନ ପରେ ବାହ୍ୟ ଆକ୍ରମଣ ବୃଦ୍ଧି ପାଇଲା । ବିଶେଷତଃ ମୁସଲମାନ– ମୋଗଲ ରାଜତ୍ୱରେ ଓଡ଼ିଶା ଆକ୍ରମଣ ଦୈନନ୍ଦିନ ଘଟଣାରେ ପରିଣତ ହେଲା । ଧନଦୌଲତ ଲୋଭରେ ଶ୍ରୀମନ୍ଦିର ବାର ବାର ଲୁଣ୍ଠିତ ହେଲା । କଳାପାହାଡ ଏକ୍ରାମ ଖାଁ, କେଶୋଦାସ ଓ ମୁକ୍ରାମ ଖାଁ ପ୍ରଭୃତି ଲୁଣ୍ଠନ କରି ଶ୍ରୀମନ୍ଦିରକୁ ଶ୍ରୀହୀନ କଲେ । ଐତିହାସିକ ବିବରଣୀରୁ ଜଣାଯାଏ, କଳାପାହାଡ ୩୦ ମହଣ ସୁନା ନିର୍ମିତ ଏକ ମୂର୍ତ୍ତିକୁ ଲୁଣ୍ଠନ କରି ନେଇଯାଇଥିଲା । ଏଥିସହ ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ନେଇ ଗଙ୍ଗାନଦୀ କୂଳରେ ପୋଡି ଦେଇଥିଲା । ଏ ସମ୍ପର୍କରେ ମାଦଳାପାଞ୍ଜିରେ ଉଲ୍ଲେଖ ରହିଛି– ''ସେହିଦିନୁ କଟକରେ କେହି ରାଜା ରହିନପାରିଲେ । ମୋଗଲ ପୀଢ କରି ମାଡି ବସିଲେ । ପରୀକ୍ଷା ଦିବ୍ୟସିଂହ ପଟ୍ଟନାୟକ ଠାକୁରଙ୍କୁ ଘେନିଗଲେ । ଏ ଗୋଳରେ ପରମେଶ୍ୱରଙ୍କୁ ଛପଲୀ ହାତୀପଡାରେ ପାତାଳି କରିଥିଲେ । ତହିଁକି ବୋଲି କଳାପାହାଡ ଯାଇ ଠାବ କଲା, ମୁହାଣ ପାର ହୋଇଗଲା । ଭେଉଁଆ କଢାଇ ଅଣ୍ଟାକ ପାଣିରେ ନେଲା । ବାଉନକୋଟି ଭଣ୍ଡାର ଜୁର କଲା । ବଡଦେଉଳ ଅଏଁଳା ସରିଯାଏ ଭଙ୍ଗାଇଲା । ଯେତେ ଦେବତାମାନ, ପିତୃଳାମାନ ସବୁକୁ ହିଁ ଖୁଣ କଲା । କଳପବଟ ଖୋଳାଇ ପକାଇଲା । ଘୋଡାନଣ୍ଡି ପୂରେଇ ନିଆଁ ଲଗାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ତଣ୍ଡା ଯାଏ ନେଲା, କାଠକୁଢାଇ ଅଗ୍ନିରେ ପୂରେଇ ଜାଳିଦେଲା, ତେଣେ ପଠାଣର ଦେହ ଖଣ୍ଡ ଖଣ୍ଡ ହୋଇ ଫାଟିଲା, କାଜି କହିଲା ଓଡ଼ିଶାର ଦେବତା ଜଳାଇ ଦେଲୁ ତେଣୁ କରି ତୋହର ଦେହ ଫାଟିଲା । ଏହା ଶୁଣି ତାହାର ପୁଅ ପରମେଶ୍ୱରଙ୍କୁ ଗଙ୍ଗାରେ ମେଲିଦେଲା । ସେ ଦାରୁ ଭାସିଆଆନ୍ତେ ଅମୁରା ଗୋଟିଏ ଜାଳି କାଠ ବୋଲି ଧରି ତାହା ବାରିରେ ପକାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବଶର ମହାନ୍ତି ଯାଇଥିଲା, ବୈଷ୍ଣବ ହୋଇ ସାଙ୍ଗେ ଗୋଡାଇଥିଲା । ଆଠମାସ ରହି ବାଦ୍ୟପଣ କରି ଦାରୁମାଗିଲା । ବ୍ରହ୍ମଖୋଳ କରି ମୃଦଙ୍ଗେ ପୂରେଇ ଘେନି ଆଇଲା, କୁଜଙ୍ଗଗଡରେ ଆଣି ପ୍ରବେଶ କଲା । ଖଣ୍ଡାଇତ ଓଳିଆ ଉପରେ ଦୁଇ ଠାକୁର ରହିଲେ'' ।

ଧର୍ମପ୍ରାଣ ଗଜପତି ରାମଚନ୍ଦ୍ର ଦେବ– ୧ମ କୁଜଙ୍ଗଗଡରୁ ବ୍ରହ୍ମ ଅଣାଇ ଖୋର୍ଦ୍ଧାଗଡରେ ପ୍ରତିଷ୍ଠା କରି ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବା 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ଉପାଧିରେ ଭୂଷିତ ହୋଇଥିଲେ । ଏ ସମ୍ପର୍କରେ ମାଦଳାପାଞ୍ଜି– '୯ଅଙ୍କେ ରାଜା କୁଜଙ୍ଗଗଡରୁ ବ୍ରହ୍ମ ଅଣାଇଲେ । ଖୁରୁଧା କଟକେ ବନଯାଗ କରି ସୁମୁରୁତି କରାଇଲେ । ୧୧ଅଙ୍କ କକଡା ୧୮ଦିନ ଶ୍ରାବଣ ଶୁକ୍ଳ ଦଶମୀ ଦିନ ଶ୍ରୀପୁରୁଷୋତ୍ତମ ବଡଦେଉଳ ରତ୍ନ ସିଂହାସନେ ବିଜେ କରାଇଲେ । ବ୍ରହ୍ମ ଆଣିଲା ବିଶର ମହାନ୍ତିଙ୍କ ପୋରନା ଏକ କଲେ । ଏ ଦାରୁବ୍ରହ୍ମ ଘେନି ଅଇଲା । ଏ ତାଟି ଭିତରେ ପଶିବ ବୋଲି ଶାଢୀ ଦେଲେ ।''

ମାଦଳାପାଞ୍ଜିର ପ୍ରଥମ ବିବରଣୀ ହେଉଛି ରାଜଭୋଗ । ଏଥିରେ ବିଭିନ୍ନ ନରପତିମାନଙ୍କ ଶ୍ରୀମନ୍ଦିର ସହ ସମ୍ପୃକ୍ତି ଓ ଶାସନକାଳ ସମ୍ପର୍କରେ ଧାରାବାହିକ ତଥା ଲିଖିତ ରହିଛି । ଚାରିଯୁଗର ବର୍ଣ୍ଣନା ସହ ଅବଧି ସମ୍ପର୍କରେ ବହୁ ବ୍ୟାଖ୍ୟା ରାଜଭୋଗ ବିବରଣୀକୁ ଅଧିକ ସ୍ପଷ୍ଟ କରିଛି । ରାଜଭୋଗ ଇତିହାସ ସମ୍ବନ୍ଧରେ ମାଦଳା ପାଞ୍ଜି କହେ–

'କୋଟି ବ୍ରହ୍ମା ପ୍ରଳୟ ଯେବେ ହୋଇ ତେବେ ହେଁ ଶ୍ରୀପୁରୁଷୋତ୍ତମ ନ ତେଜନ୍ତି ଦେବରାଏ । ବ୍ରହ୍ମାଙ୍କୁ ଦିବସକେ ବିଷ୍ଣୁ ଦ୍ୱାଦସ ଅବତାର । ସଂସାର ଯେ ଭିଆଇଲେ ବେଦବର ସତ୍ୟ,





ତ୍ରେତୟା, ଦ୍ୱାପର, କଳି ଏ ରୂପେ ଚାରିଯୁଗରେ ଗଣ୍ଡାଏ ହୋଅଇ । ଏରୂପେ ସହସ୍ର ଗଣ୍ଡାରେ ବ୍ରହ୍ମାଙ୍କୁ ଦିବସେ ହୋଅଇ । ଏହି ଦିବସେ ପ୍ରମାଣେ ରାତ୍ର ହିଁ ହୋଅଇ । ଏ ମାସରେ ବାରମାସରେ ବରଷେ ବୋଲାଇ । ଏହି ବରଷ ଶଏ ଅଷ୍ଟଉତ୍ତର ବରଷରେ ବ୍ରହ୍ମା ନାଶଯାଇ । ଯେତେବେଳେ ବ୍ରହ୍ମାନାଶ ଯାଇ ତେତେବେଳେ ପ୍ରଳୟ ହୋଅଇ । ଜଳ ଦିଶଦିସ ଘୋଟଇ । ଏରୂପେ ଇତପତି ପ୍ରଳୟ ହୋଇଲେ ତହୁଁ ବିଷ୍ଣୁ ଅନନ୍ତ ସେଜ୍ଜାରେ ଶୋଇଲେ । ଦିବସେ ଯାଇ ଏ ବରଷରେ ସତ୍ୟଯୁଗ- ବରଷ ୧୭,୨୮,୦୦୦ ଏଯୁଗ ଭୋଗକଲେ ଛଅରାଜା । XXX ତ୍ରେତୟାଯୁଗ-ବରଷ ୧୨୯୬,୦୦୦ । ଏ ଯୁଗ ଭୋଗକଲେ ରାଜା ୨୫ । ତ୍ରେତୟାଯୁଗ । ଦ୍ୱାପରଯୁଗ- ବରଷ ୮୬୪.୦୦୦ । ଏଯୁଗ ଭୋଗକଲେ ରାଜା ୩୦ । କଳିଯୁଗ-ବରସ ୪୩୨.୦୦ । ବହୁତ ରାଜା ହେଁ ଭୋଗକଲେ । ପାପ ଆଚରି ଅଳପେ ନାଶ ଗଲେ । ପ୍ରଥମପାଟ କଳିଯୁଗକୁ ବାନ୍ଧ ଯୁଜେଷ୍ଟି ଦେବ ଭୋଗ କଲେ ବ ୧୧୨ । ଏ ସ୍ୱଦେହ ଘେନି ସ୍ୱର୍ଗକୁ ଗଲେ । ଏହାଙ୍କ ନାତି ପରୀକ୍ଷିତ ରାଜା ଭୋଗକଲେ ବ୭୫୭ । ଏ ରାଜାଙ୍କୁ ବ୍ରାହ୍ମଣର ସାପେ ତକ୍ଷକ ଡଂଶିଲା । ଏହାଙ୍କ ପୁଅ ଜନମେଜୟ ଭୋଗ କଲେ ବ ୫୮୨ । ଏ ରାଜା ବାପଙ୍କ ଛଳେ ସର୍ପଯଜ୍ଞ କଲେ । ତକ୍ଷକର ବହୁତ ବଂଶ ନାଶ କଲେ ।

X X X

ଶ୍ରୀ ଚନ୍ଦ୍ରକର ଦେବ ଭୋଗ କଲେ ବ୧୩ରସ । ଏ ଉତ୍ତାରୁ ହତପାଟ ହୋଇ ମୁଗଲେ ଭୋଗ କଲେ ବ ୩୫ । ଗାଏ ପରମେସର ପାତାଳି ହୋଇ ରହିଲେ ବା ୧୪୪( ୯୬ +୧୩ +୩୫) । ଗାଏ ସୋମବଂଶ ରାଜାପାଟ ୧୮ରେ ଭୋଗକଲେ ବ୩୭୮୩ । ଏହିଦିନଠାରୁ ଦିଲିରେ ପାତିସା ହୋଇଲେ ।

ଓଡ଼ିଶା ଇଂରେଜ ଶାସନାଧୀନ ହେବାପରେ ପାଞ୍ଜିଲିଖନରେ ନାନା ସମସ୍ୟା ଦେଖାଦେଲା । ଗଜପତିମାନେ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ଥିଲେ ମଧ୍ୟ ପାଞ୍ଜି ଲିଖନର ଗୁରୁତ୍ୱ ହ୍ରାସ ହେବାକୁ ଲାଗିଲା । ୧୮୭୬ ପରେ ମାଦଳାପାଞ୍ଜିର ରୂପ ବଦଳି ଯାଇ ଏହା ଶ୍ରୀମନ୍ଦିର ଦୈନିକ ଡାଏରୀ ଭାବେ ବିବେଚିତ ହେଲା ।

ସର୍ବଧର୍ମ ଓ ଦର୍ଶନର ମୂର୍ତ୍ତିମନ୍ତ ପ୍ରତୀକ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ବେଦ, ଉପନିଷଦ, ପୁରାଣଶାସ୍ତ୍ର ଆଦିରେ ବହୁ ତତ୍ତ୍ୱ ଓ ତଥ୍ୟ ଆଲୋଚନା ହୋଇଥିଲେ ହେଁ ସେ ଏସବୁର ବହୁ ଊର୍ଦ୍ଧ୍ୱରେ । ତାଙ୍କ ସମ୍ବନ୍ଧରେ ଯଦି କେହି କହେ ସେ ସବୁକିଛି ଜାଣିଛି, ତେବେ ବୁଝିବାକୁ ହେବ ସେ ଜଗନ୍ନାଥଙ୍କ ସମ୍ପର୍କରେ ବିନ୍ଦୁଟିଏ ଜାଣିବାକୁ ସକ୍ଷମ ହୋଇନାହିଁ । ତଦ୍‌ପରି ଯଦି କେହି କହେ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ମୁଁ କିଛି ଜାଣିନାହିଁ, ଅଥବା ତାଙ୍କ ସମ୍ବନ୍ଧରେ କିଛି ଜଣାଯାଇ ପାରିବନାହିଁ, ତେବେ ବୁଝିବାକୁ ହେବ ସେହି ଜଗନ୍ନାଥଙ୍କ ସମ୍ପର୍କରେ କିଛିଟା ଜାଣିବାକୁ ସକ୍ଷମ ହୋଇଛି । ଅତଏବ ଜଗନ୍ନାଥ ହେଉଛନ୍ତି ଦେବ ଓ ମାନବେ ଅଗୋଚର । ଯୋଗୀ-ଋଷି ଉଇହୁଙ୍କା ପାଲଟି ଯାଇଛନ୍ତି ଧ୍ୟାନ କରି ତାଙ୍କୁ ଜାଣିବା ପାଇଁ । ଏପରିସ୍ଥଳେ ଆଧୁନିକ ମଣିଷ ସର୍ବନ୍ତର୍ଯ୍ୟାମୀଙ୍କ ଅଲୌକିକତା ଜାଣିବାକୁ କ'ଣ ସକ୍ଷମ । ଏ ସମ୍ବନ୍ଧରେ 'କପିଳ ସଂହିତା'ରେ କୁହାଯାଇଛି-

'ସର୍ବଂ ରହସ୍ୟଂ ପୁରୁଷୋତ୍ତମସ୍ୟ
ଦେବାଃ ନଜାନନ୍ତି କୁତଃ ମନୁଷ୍ୟ ।

ମୋଟ ଉପରେ ଉଲ୍ଲେଖ କଲେ ମାଦଳାପାଞ୍ଜି ଓ ଶ୍ରୀଜଗନ୍ନାଥଙ୍କ ଇତିବୃତ୍ତ ହେଉଛି ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଯଥାର୍ଥରେ କହିଲେ ମାଦଳାପାଞ୍ଜି ହିଁ ମହାପ୍ରଭୁଙ୍କ ସ୍ୱରୂପ । ତେଣୁ ପ୍ରତିବର୍ଷ ପାଞ୍ଜିକୁ ବ୍ରହ୍ମଜ୍ଞାନରେ ପୂଜା କରାଯାଇଥାଏ । ପରିଶେଷରେ ଏତିକି କୁହାଯାଇପାରେ, ସମନ୍ୱୟ ଓ ବିସ୍ମୟର ସେ ହେଉଛନ୍ତି ଶ୍ରେଷ୍ଠ ସନ୍ତକ । ତଦ୍‌ପରି ତାଙ୍କପାଞ୍ଜି ଇତିହାସ ଓ ସାଂସ୍କୃତିକ ପରମ୍ପରା ଏକ ଅତ୍ୟାଶ୍ଚର୍ଯ୍ୟ, ଏହା ହିଁ କହିଲେ ବୋଧହୁଏ ଠିକ୍ ହେବ ।

ଖୁଣ୍ଟୁଣୀ, ଆଠଗଡ଼

ସହାୟକ ଗ୍ରନ୍ଥସୂଚୀ:-

୧. ମାଦଳାପାଞ୍ଜି- ସମ୍ପାଦନା- ମୃତ୍ୟୁଞ୍ଜୟ ନାୟକ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ କଟକ, ପ୍ରକାଶକାଳ-୧୯୯୭

୨. ମାଦଳାପାଞ୍ଜି- ସଂପାଦନା- ଆର୍ତ୍ତବଲ୍ଲଭ ମହାନ୍ତି
ଉତ୍କଳ ବିଦ୍ୟାଳୟ ପ୍ରାଚୀ ସମିତି, ପ୍ରକାଶକାଳ-୨୦୦୧






# ବାଇଶି ପାହାଚ

**ଡକ୍ଟର ଶରତ ଚନ୍ଦ୍ର ପରିଡ଼ା**

ଏ ଜଗତରେ ଯାହାର ରହସ୍ୟ ଯେତେ ଅଧିକ ଲୋକ ଦୃଷ୍ଟିରେ ତାହା ସେତେ ଆକର୍ଷଣୀୟ । ବିଜ୍ଞାନ ପକ୍ଷରେ ଏ ରହସ୍ୟକୁ ସମ୍ପୂର୍ଣ୍ଣ ଭେଦ କରିବା ସମ୍ଭବ ହୋଇନାହିଁ । ଶ୍ରୀମନ୍ଦିରର ବାଇଶି ପାହାଚ ସର୍ବଜନବିଦିତ । ଏହା ପରମ ପବିତ୍ର । ଆମ ସଂସ୍କୃତିର ବାର୍ତ୍ତାବହ । କିନ୍ତୁ ଏହାର ସଂଖ୍ୟା କାହିଁକି ବାଇଶି ଏ ପ୍ରଶ୍ନ ପଚାରି ଦେଲେ ଜଣେ ଦଣ୍ଡେ ନୀରବ ହୋଇଯାଏ । ଉତ୍ତର ଦେବାକୁ ଯାଇ ଆଧ୍ୟାତ୍ମିକ ଦିଗକୁ ଇଙ୍ଗିତ କରେ । ମଣିଷର ଦେହ ହେଉଛି ଦେବାଳୟ । ତେଣୁ ପିଣ୍ଡ-ବ୍ରହ୍ମାଣ୍ଡ ମଧ୍ୟରେ ଥିବା ସାଦୃଶ୍ୟ ଉଦ୍‌ଘାଟନ କଲେ ବାଇଶି ପାହାଚର ତତ୍ତ୍ୱ କିଛି ପରିମାଣରେ ଉନ୍ମୋଚିତ ହୋଇଥାଏ । ଶ୍ରୀମନ୍ଦିରର ଗର୍ଭ ଗୃହସ୍ଥ ରତ୍ନ ସିଂହାସନରେ ଅଧିଷ୍ଠିତ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ହେଲେ ଯେପରି ବାଇଶି ପାହାଚ ଆରୋହଣ କରିବାକୁ ପଡେ ସେହିଭଳି ଦେହ ଭିତରେ ଥିବା ବାଇଶିଟି ସୋପାନ ଗୋଟିଏ ପରେ ଗୋଟିଏ ଅତିକ୍ରମ କଲେ ମଣିଷ ଭିତରେ ଥିବା ଆତ୍ମା ସହିତ ସାକ୍ଷାତ୍‌କାର ସମ୍ଭବ ହୁଏ । ତେଣୁ ଜଗନ୍ନାଥ ସଂସ୍କୃତିର ଗବେଷକମାନେ ମୁଖ୍ୟତଃ ଯେଉଁ ଆଧ୍ୟାତ୍ମିକ ପାହାଚ ନିର୍ଦ୍ଦେଶ କରିଥାନ୍ତି, ତାହା ଉପରେ ଏକ ମୌଳିକ ଧାରଣା ସୃଷ୍ଟି କରିବା ପ୍ରସ୍ତୁତ ପ୍ରବନ୍ଧର ଲକ୍ଷ୍ୟ ।



'ଶୃ' ଧାତୁରୁ ଶରୀର ଶବ୍ଦ ଉତ୍ପନ୍ନ । 'ଶୃ' ଧାତୁର ଅର୍ଥ କ୍ଷୟ ଓ ଧ୍ୱଂସ । କ୍ଷୟିଷ୍ଣୁ ଧ୍ୱଂସଶୀଳ ଶରୀର ପଞ୍ଚ ମହାଭାରତରେ ଗଠିତ । ଅର୍ଥାତ୍ ଏହି ଦେହ ପାଞ୍ଚଟି ମୁଖ୍ୟ ଉପାଦାନରେ ଗଢା । ଏହି ପ୍ରସଙ୍ଗରେ ଶଙ୍କରାଚାର୍ଯ୍ୟଙ୍କ ତତ୍ତ୍ୱବୋଧରେ ଉଲ୍ଲେଖ ରହିଛି । 'ଅପଞ୍ଚିକୃତ- ପଞ୍ଚ ମହାଭୂତୈଃ କୃତଂ ସତ୍‌କର୍ମଜନ୍ୟଂ ସୁଖ ଦୁଃଖାଦି- ଭୋଗସାଧନଂ ପଞ୍ଚଜ୍ଞାନେ ନ୍ଦ୍ରିୟାଣ ପଞ୍ଚକ୍ରର୍ମେ ନ୍ଦ୍ରିୟାଣି ପଞ୍ଚପ୍ରାଣାଦୟଃ ମନଶ୍ଚୈକଂ ବୁଦ୍ଧିଶ୍ଚୈକା ଏବଂ ସପ୍ତଦଶ କଳାଭିଃ ସହ ଯତ ତିଷ୍ଠତି ତତ୍ ସୂକ୍ଷ୍ମ ଶରୀରମ୍ । ସେହି ପଞ୍ଚମହାଭୂତଗୁଡିକ ହେଲେ କ୍ଷିତି ଅପ ତେଜ ମରୁତ ବ୍ୟୋମ । ଈଶ୍ୱରଙ୍କ ମାୟାରୁ ଆକାଶ ସୃଷ୍ଟି । ଆପ୍ନୋତି ଇତି ଆକାଶଃ । ଯାହାସବୁ ସ୍ଥାନରେ ବ୍ୟାପ୍ତ ତାହା ଆକାଶ । ଆକାଶର ଗୁଣ ହେଉଛି ଶବ୍ଦ । ଏହି ଆକାଶକୁ ଦେଖି ହୁଏନାହିଁ କିମ୍ବା ଆଘ୍ରାଣ କରିହୁଏ ନାହିଁ । ଏହା କେବଳ ଶୁଣି ହୁଏ । ଆକାଶ ଥିବାରୁ ଆମେ ଅନ୍ୟର କଥା ଶୁଣିପାରୁଛୁ । ଏହା ସବୁଠାରୁ ସୂକ୍ଷ୍ମ ।

ଶରୀରର ଆୟତନ କିଛି ଆକାଶ ଅଧିକାର କରି ତିଷ୍ଠି ରହେ । ଘଟ ଭାଙ୍ଗିଗଲେ ଘଟର ଆକାଶ ମହାକାଶ ସହିତ ମିଶିଲା ପରି ଶରୀର ଧ୍ୱଂସ ପରେ ଶରୀର ଆକାଶ ମହାକାଶ ସହିତ ଏକାକାର ହୋଇଯାଏ । ଆକାଶାତ୍ ବାୟୁଃ । ଏହାକୁ ଶୁଣି ହୁଏ




ଓ ସ୍ପର୍ଶ ଦ୍ୱାରା ଅନୁଭବ କରି ହୁଏ । ଏହାର ଶବ୍ଦ ଓ ସ୍ପର୍ଶ ରୂପକ ଦୁଇଟି ଗୁଣ ଅଛି । କିନ୍ତୁ ଏହାକୁ ଆଘ୍ରାଣ କରି ହୁଏନାହିଁ ଦେଖିହୁଏ ନାହିଁ କିମ୍ବା ଏହାର ସ୍ୱାଦ ଅନୁଭବ କରି ହୁଏନାହିଁ । ପବନର ନିଜର ଗନ୍ଧ ନାହିଁ । ସେ କେବଳ ଗନ୍ଧ ବହନକାରୀ, ବାୟୁ ଯୋଗୁଁ ଶରୀରର ନିଃଶ୍ୱାସ ପ୍ରଶ୍ୱାସ ରୂପକ କ୍ରିୟା ସଂପାଦିତ ହେଉଛି । ଶରୀର ଜୀବିତ ରହିପାରୁଛି ।

ବାୟୋଃ ତେଜଃ । ଏହାକୁ ଦେଖିହୁଏ । ଶୁଣିହୁଏ । ଅନୁଭବ କରିହୁଏ । ସୃଷ୍ଟିର କ୍ରମବିକାଶରେ ଅଗ୍ନି ହେଉଛି ପ୍ରଥମ ମହାଭୂତ ଯାହାକୁ ଦେଖିହୁଏ । ତେଣୁ ଅଗ୍ନି ହେଉଛି ସ୍ରଷ୍ଟାଙ୍କର ନିକଟତମ ଦୃଶ୍ୟମାନ ସ୍ୱରୂପ । ସେଥିପାଇଁ ସମସ୍ତ କର୍ମରେ ପରମେଶ୍ୱରଙ୍କୁ ଆବାହନ କଲାବେଳେ ଅଗ୍ନି ହିଁ ବ୍ୟବହୃତ ହୋଇଥାଏ । 'ଅଗ୍ନିଃ ବୈ ଦେବାନାଂ ମୁଖମ୍' ବୋଲି ବୈଦିକ ପ୍ରସିଦ୍ଧି ରହିଛି । ଅଗ୍ନିରେ ତେଜ ଯୋଗୁଁ ଶରୀରର ପାକକ୍ରିୟା ସଂପନ୍ନ ହେଉଛି । ଶରୀରରେ ଉଷ୍ମତା ରହୁଛି ।

ତେଜସଃ ଆପଃ । ଜଳକୁ ଦେଖିହୁଏ । ଶୁଣିହୁଏ । ସ୍ପର୍ଶଦ୍ୱାରା ଅନୁଭବ କରିହୁଏ । ସ୍ୱାଦ ବାରିହୁଏ । ଜଳ ସ୍ୱାଦହୀନ ବୋଲି ବିବେଚନା କରାଯାଇଥାଏ । କିନ୍ତୁ ସବୁ ତୁଳନା କରି ସ୍ୱାଦ ଜାଣିବାର ଭିତ୍ତିଭୂମି ଜଳ ହିଁ ଯୋଗାଇଥାଏ । ଶରୀରର ଏକଦଶମାଂଶ ଜଳ । ଜଳ ହିଁ ଜୀବନ । ଅଦ୍‌ଭ୍ୟଃ ପୃଥିବୀ । ମାଟି ବା ଖଣିଜ ପଦାର୍ଥରୁ ସବୁ ସ୍ଥୂଳ ପଦାର୍ଥର ସୃଷ୍ଟି । ଏଗୁଡିକ ଦେଖିହୁଏ । ସ୍ୱାଦ ବାରି ହୁଏ । ଅନୁଭବ କରିହୁଏ । ଶୁଣି ହୁଏ । ଆଘ୍ରାଣ କରି ହୁଏ । ଗନ୍ଧବତୀ ପୃଥିବୀ ବୋଲି କୁହାଯାଇଛି । ଏହା ଏକମାତ୍ର ମହାଭୂତ ଯାହାକୁ ଶୁଂଘି ହୁଏ । ଶରୀରର ଯେଉଁ ରସ ତାହା ନାନା ଧାତବ ପଦାର୍ଥର ନିର୍ଯ୍ୟାସ ।

ଈଶ୍ୱର ହେଉଛନ୍ତି ଏକ କୁମ୍ଭକାର ସଦୃଶ । କିନ୍ତୁ ଜଗତ କୁମ୍ଭକାରର ସୃଷ୍ଟିଠାରୁ ଅଲଗା । କୁମ୍ଭକାର ବିନା ମାଟିରୁ ହାଣ୍ଡି ଗଢିହୁଏ ନାହିଁ । ଏଣୁ ହାଣ୍ଡି ନିର୍ମାଣରେ ସେ ନିମିତ୍ତ କାରଣ । କିନ୍ତୁ କୁମ୍ଭକାର ମାଟି ତିଆରି କରିନଥାଏ । ଅତଏବ ସେ ଉପାଦାନ କାରଣ ନୁହେଁ । ଅନ୍ୟପକ୍ଷରେ ବ୍ରହ୍ମମାୟଯୁକ୍ତ ହେଲେ ଈଶ୍ୱର ପାଲଟିଯା'ନ୍ତି । ଯଦି ଜଗତର ନିର୍ମାଣ କର୍ତ୍ତା ଈଶ୍ୱର ତେବେ କେଉଁ ପଦାର୍ଥରୁ ଜଗତର ସୃଷ୍ଟି । ଉତ୍ତରରେ କୁହାଯାଇଛି ଯେପରି ବୁଡିଆଣୀ (ଉର୍ଣ୍ଣନାଭ) ନିଜ ନାଭିରୁ ସୂତା ବାହାର କରି ଜାଲବୁଣେ ଈଶ୍ୱର ମାୟା ଶକ୍ତି ବଳରେ ନିଜଠାରୁ ହିଁ ଜଗତ ସୃଷ୍ଟି କରିଛନ୍ତି । ସୁତରାଂ ଈଶ୍ୱର ଏ ସୃଷ୍ଟିର ଉଭୟ ନିମିତ୍ତ କାରଣ ଓ ଉପାଦାନ କାରଣ । ଏ ଦୃଶ୍ୟମାନ ଜଗତ ତାଙ୍କରି ଦେହ । ଅର୍ଥାତ୍ ଏ ଜଗତ ଜଗତ୍‌କର୍ତ୍ତାଙ୍କଠାରୁ ଅଲଗା ନୁହେଁ । ଏ ଦେହ ମଧ୍ୟ ଈଶ୍ୱରଙ୍କ ଦେହ ।

ଦେବାଳୟରେ ଯେପରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମ୍ଭବ ହେଉଛି, ଠିକ୍ ସେହିପରି ବ୍ରହ୍ମଙ୍କୁ ଉପଲବ୍ଧି କରିବାକୁ ହେଲେ ଶରୀରରୂପୀ ଆୟତନ ଅନିବାର୍ଯ୍ୟ । ଆକାଶ ସବୁଠାରୁ ସୂକ୍ଷ୍ମ ଓ ପୃଥିବୀ ସବୁଠାରୁ ସ୍ଥୂଳ । ଏହି ଶରୀର ସତ୍ କର୍ମର ପୁଣ୍ୟଫଳରୁ ଜାତ । ବହୁ ସୁକୃତିର ଫଳ । ସୁଖ ଦୁଃଖାଦି ଭୋଗର ଅନୁଭବ କ୍ଷେତ୍ର । ଏହା ଜାତ ହୁଏ, ବୃଦ୍ଧି ପାଏ ବଦଳେ କ୍ଷୟ ହୁଏ ଓ ନାଶ ଯାଏ । ଏହା ଷଡବିକାର ଯୁକ୍ତ । ବାଇଶି ପାହାଚର ପ୍ରଥମ ପାଞ୍ଚ ପାହାଚ ।

ଇନ୍ଦ୍ରିୟଗୁଡିକ ବିନା ଶରୀର ସ୍ଥାଣୁ । ଅଚଳ ତତ୍ତ୍ୱବୋଧ ଅନୁସାରେ:

''ଶ୍ରୋତ୍ରଂ ତ୍ୱକ୍‌ଚକ୍ଷୁଃ ରସନା ଘ୍ରାଣମ୍ ଇତି ପଞ୍ଚ ଜ୍ଞାନେନ୍ଦ୍ରିୟାଣି ।'' ଏଗୁଡିକୁ ବୁଦ୍ଧୀନ୍ଦ୍ରିୟ ମଧ୍ୟ କୁହାଯାଏ । ଏହି ଇନ୍ଦ୍ରିୟଗୁଡିକର ବିଷୟ ଓ ଦେବତା ଅଲଗା ଅଲଗା :

| **ଜ୍ଞାନେନ୍ଦ୍ରିୟର ନାମ** | **ବିଷୟ/କାର୍ଯ୍ୟ** | **ଦେବତା** |
|---|---|---|
| ଶ୍ରୋତ୍ର(କାନ) | ଶବ୍ଦଗ୍ରହଣ | ଦିଗ |
| ତ୍ୱକ୍(ଚର୍ମ) | ସ୍ପର୍ଶଗ୍ରହଣ | ବାୟୁ |
| ଚକ୍ଷୁ(ନୟନ) | ରୂପଗ୍ରହଣ | ସୂର୍ଯ୍ୟ |
| ରସନା(ଜିହ୍ୱା) | ରସଗ୍ରହଣ | ବରୁଣ |
| ଘ୍ରାଣ(ନାସିକା) | ଗନ୍ଧଗ୍ରହଣ | ଅଶ୍ୱିନୀ କୁମାର |

କାନ ଗୋଟିଏ ଇନ୍ଦ୍ରିୟ । ଏହାର ନିଜର ବୃତ୍ତି ବା ଶକ୍ତି ରହିଛି । ଏହାକୁ ମାତ୍ରା କୁହାଯାଏ । କାରଣ ମୀୟନ୍ତେ(ଜ୍ଞାୟନ୍ତେ) ବିଷୟାଃ ଆଭିଃ ଇତି । ଅର୍ଥାତ୍ ଇନ୍ଦ୍ରିୟ ବୃତ୍ତି ଦ୍ୱାରା ମଣିଷ ଜ୍ଞାନ ଆହରଣ କରିଥାଏ ବୋଲି ଏହି ଇନ୍ଦ୍ରିୟ ବୃତ୍ତିକୁ ମାତ୍ରା କୁହାଯାଏ । ଯେତେବେଳେ କାନ ଏହି ଇନ୍ଦ୍ରିୟ ବୃତ୍ତିର ତା'ର ବିଷୟ 'ଶବ୍ଦ' ସହିତ ସ୍ପର୍ଶ ବା ସଂଯୋଗ ହୁଏ ତାହାକୁ ମାତ୍ରା ସ୍ପର୍ଶ କୁହାଯାଏ । ଶବ୍ଦ ସହିତ କାନ-ଇନ୍ଦ୍ରିୟ ସଂଯୋଗ ହେଲେ ଯେଉଁ ଜ୍ଞାନ ଉତ୍ପନ୍ନ ହୁଏ ତାହା ଦିଗ ଏହି ଅଧିଷ୍ଠାତା ଦେବତାର ଉପସ୍ଥିତି ହେତୁ ସମ୍ଭବ ହୋଇପାରୁଛି । ଏହି ମାତ୍ରା ସ୍ପର୍ଶ ଯୋଗୁଁ ସୁଖଦୁଃଖ ଉତ୍ପନ୍ନ ହୁଏ । ସୁଖଦୁଃଖ ରୂପକ ମାନସିକ ଅବସ୍ଥାର ଆରମ୍ଭ ଅଛି ବିନାଶ ବି ଅଛି । ଏଣୁ ଏଥିରେ ବିଚଳିତ ନହୋଇ ଏହାକୁ ସହନ କରିବା ମଣିଷର କର୍ତ୍ତବ୍ୟ ଅଟେ । ଶରୀରରୂପୀ ଆୟତନରେ ଢେଉ ଆକାରରେ ଏଗୁଡିକ ଆସନ୍ତି ପୁଣି ଲୀନ ହୋଇଯାନ୍ତି । ଏମାନେ



ଅଶାଶ୍ୱତ । ଏହି ପଞ୍ଚ ଜ୍ଞାନେନ୍ଦ୍ରିୟଠାରୁ ଅଧିକ ସ୍ଥୂଳ ହେଉଛି ପାଞ୍ଚ କର୍ମେନ୍ଦ୍ରିୟ: ବାକ୍-ପାଣି-ପାଦ-ପାୟୁ ଉପସ୍ଥାକୀତି ପଞ୍ଚ କର୍ମେନ୍ଦ୍ରିୟାଣୀ । ଏମାନଙ୍କ ବିଷୟ ଓ ଦେବତା ମଧ୍ୟ ପରସ୍ପରଠାରୁ ପୃଥକ୍ ।

| କର୍ମେନ୍ଦ୍ରିୟର ନାମ | ବିଷୟ ବା କାର୍ଯ୍ୟ | ଅଧିଷ୍ଠାତା ଦେବତା |
|---|---|---|
| ବାକ୍ | ଭାଷଣ | ବହ୍ନି |
| ହସ୍ତ | ବସ୍ତ୍ରଗ୍ରହଣ | ଇନ୍ଦ୍ର |
| ପାଦ | ଗମନ | ବିଷ୍ଣୁ |
| ପାୟୁ | ମଳତ୍ୟାଗ | ମୃତ୍ୟୁ |
| ଉପାସ୍ଥ | ଆନନ୍ଦ(ପ୍ରଜନନ) | ପ୍ରଜାପତି |

ଇନ୍ଦ୍ର ପ୍ରଥମେ ଜାଣି ପାରିଥିଲେ ମୋର ଚକ୍ଷୁ, ମୋର ଶ୍ରୋତ୍ର... ତେଣୁ ଇନ୍ଦ୍ରଙ୍କ ଦ୍ୱାରା ସୃଷ୍ଟି ହୋଇଥିବାରୁ ଏଗୁଡିକର ନାମ ଇନ୍ଦ୍ରିୟ । ପୁନଶ୍ଚ ଇନ୍ଦ୍ରଃ ରାତି (ଦଦାତି ଇତି) ଇତି ଇନ୍ଦ୍ରିୟ । ଇନ୍ଦ୍ର ଯାହାଙ୍କୁ ବଳ ଯୋଗାଇଥାଆନ୍ତି, ସେମାନେ ହେଲେ ଇନ୍ଦ୍ରିୟ । ପ୍ରବଳ ଶକ୍ତିଶାଳୀ । ଜ୍ଞାନେନ୍ଦ୍ରିୟ ବାହାର ଦୁନିଆରୁ ଯେଉଁ ଉଦ୍ଦୀପନା ଗ୍ରହଣ କରେ ମନ ମାଧ୍ୟମରେ ତାହା ବୁଦ୍ଧି ପାଖରେ ବିଚାର ପାଇଁ ପହଞ୍ଚି ଯାଏ । ବୁଦ୍ଧି ଅତୀତ ବର୍ତ୍ତମାନ ଭବିଷ୍ୟତ ଆଦିକୁ ଦୃଷ୍ଟିରେ ରଖି ଯେଉଁ ଉତ୍ତର ପ୍ରସ୍ତୁତ କରେ ତାକୁ କର୍ମେନ୍ଦ୍ରିୟମାନେ କାର୍ଯ୍ୟରେ ପରିଣତ କରନ୍ତି । ଦଶ ଇନ୍ଦ୍ରିୟର ମିଳିତ ଉଦ୍ୟୋଗରେ ଶରୀର ରୂପୀ ରଥ ଚାଲିବାକୁ ସମର୍ଥ ହୋଇଥାଏ । ତେଣୁ ଶରୀରକୁ ଦଶରଥ ବୋଲି କୁହାଯାଇଥାଏ । କଠୋପନିଷଦରେ ଶରୀରକୁ ରଥ ସହିତ ତୁଳନା କରି ଇନ୍ଦ୍ରିୟମାନଙ୍କୁ ଘୋଡା, ମନକୁ ଲଗାମ, ବୁଦ୍ଧିକୁ ସାରଥି ଓ ଆତ୍ମାକୁ ରଥୀର କଳ୍ପନା କରି ଯେଉଁ ବର୍ଣ୍ଣନା କରାଯାଇଛି, ତାହା ବାସ୍ତବିକ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ଇନ୍ଦ୍ରିୟମାନଙ୍କର ସଂଯମ ସବୁ ଆଧ୍ୟାତ୍ମିକ ଶାସ୍ତ୍ରମାନଙ୍କର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ସାଧୁ, ସନ୍ଥ ଓ ସାଧକମାନେ ଏହା ଉପରେ ସର୍ବାଧିକ ଗୁରୁତ୍ୱ ଦେଇଥାନ୍ତି । ଇନ୍ଦ୍ରିୟମାନଙ୍କ କର୍ମବାଣୀ ସାରିଲାପରେ ସାଧକ ସେମାନଙ୍କ ସ୍ୱଭାବ ବିଷୟରେ ଜାଣିବା ଆବଶ୍ୟକ । ଇନ୍ଦ୍ରିୟମାନେ ଅତ୍ୟନ୍ତ ଶକ୍ତିଶାଳୀ । ବିଭ୍ରମକାରୀ ମୁନିଋଷିମାନଙ୍କର ମନକୁ ମଧ୍ୟ ଏମାନେ ଅଜାଣତରେ ଆପଣା ଆପଣା ଆଡିକୁ ହରଣ କରିନିଅନ୍ତି । ବିଭିନ୍ନ ଲୋଭନୀୟ ପଦାର୍ଥ ଦେଖି, ଶୁଣି, ସ୍ପର୍ଶ କରି ସ୍ୱାଦଚାଖି ଶୁଂଘି ତା'ର ଉପଭୋଗ ପାଇଁ ଜୀବ ଚଞ୍ଚଳ ହୋଇ ଉଠେ । ଏମାନଙ୍କର ଆକର୍ଷଣରେ ପଡି ଜୀବ କିପରି ମୋହିତ ହୁଏ ଓ ଶେଷରେ ବିନାଶ ମୁହଁକୁ ଟାଣି ହୋଇଯାଏ, ସେ ସମ୍ପର୍କରେ ଗୋଟିଏ ସୁନ୍ଦର ଶ୍ଳୋକଟିଏ ଅଛି:

କୁରଙ୍ଗ ମାତଙ୍ଗ ପତଙ୍ଗ ଭୃଙ୍ଗ ମୀନା ହତାଃ ପଞ୍ଚଭିରେବ ପଞ୍ଚ ।
ଏକଃ ପ୍ରମାଦୀ ସ କଥଂ ନହନ୍ୟତେ ଯଃ ସେବତେ ପଞ୍ଚଭିରେବ ପଞ୍ଚ ॥

ଅର୍ଥାତ୍ କୁରଙ୍ଗ(ହରିଣୀ) ଶ୍ରୋତ୍ର ଇନ୍ଦ୍ରିୟଦ୍ୱାରା ସଂଗୀତ(ଶବ୍ଦ) ଶ୍ରବଣ କରି ବ୍ୟାଧ ହସ୍ତରେ ହତ ହୁଏ, ହସ୍ତିନୀର ସ୍ପର୍ଶଜନିତ ସୁଖ ପାଇଁ ବ୍ୟାକୁଳ ହୋଇ ହସ୍ତୀ ବନ୍ଧନ ଦଶାପ୍ରାପ୍ତ ହୁଏ । ପତଙ୍ଗ ରୂପରେ ମୋହିତ ହୋଇ ପ୍ରଜ୍ୱଳିତ ଅଗ୍ନିରେ ପ୍ରାଣତ୍ୟାଗ କରେ, ଭଅଁର କାଷ୍ଠାଦି ଛେଦନରେ ସମର୍ଥ ହେଲେ ସୁଦ୍ଧା ପଦ୍ମର ସୁଗନ୍ଧ ଲୋଭରେ ବନ୍ଦୀ ହୁଏ ଓ ମୀନ ରସ ଆସ୍ୱାଦନ ଲୋଭରେ ପଡି ବଡିଶରେ ପ୍ରାଣ ହରାଏ । ଏ ପାଞ୍ଚଟି ଜୀବ ଗୋଟିଏ ଗୋଟିଏ ଇନ୍ଦ୍ରିୟର ବିଷୟ ଉପଭୋଗ କଲାବେଳେ ଲୋଭାସକ୍ତ ହୋଇ ପ୍ରାଣ ହରାନ୍ତି । ଏହା ସମସ୍ତେ ଦେଖୁଛନ୍ତି । ଯେଉଁ ପ୍ରମର ହୋଇ ପଞ୍ଚ ଜ୍ଞାନେନ୍ଦ୍ରିୟ ଦ୍ୱାରା ଶବ୍ଦ, ସ୍ପର୍ଶ, ରୂପ ରସ, ଗନ୍ଧ ବିଷୟ ଗ୍ରହଣ କଲାବେଳେ ବନ୍ଧନ ଦଶା ପ୍ରାପ୍ତ ହେବ, ଏଥିରେ ଆଶ୍ଚର୍ଯ୍ୟ ହେବାରେ କ'ଣ ଅଛି ?

ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯଦି ଗୋଟିଏ ସ୍ଖଳିତ ହୁଏ ତେବେ ପାତ୍ରରେ ଛିଦ୍ରଟିଏ ଥିଲେ ସମୁଦାୟ ପାଣି ବୋହିଗଲା ପରି ମାନବର ବୁଦ୍ଧି ନଷ୍ଟ ହୋଇଯାଇଥାଏ । ତେଣୁ ଭକ୍ତ ନିନ୍ଦା ବା ସ୍ତୁତି ଶୁଣି କୋମଳ ବା କଠିନ ବସ୍ତୁ ସ୍ପର୍ଶ କରି, ସୁନ୍ଦର ବା ଅସୁନ୍ଦର ବସ୍ତୁ ଦେଖି ପୂର୍ଣ୍ଣ ବା ସାମାନ୍ୟ ଆହାର କରି, ସୁଗନ୍ଧ ବା ଦୁର୍ଗନ୍ଧ ଶୁଂଘି ଆନନ୍ଦ ବା ବିଷାଦଗ୍ରସ୍ତ ହେବା ଉଚିତ୍ ନୁହେଁ । ଏଭଳି ଆଚରଣ କରୁଥିବା ବ୍ୟକ୍ତି ଜିତେନ୍ଦ୍ରିୟ ଅଟନ୍ତି । କୂର୍ମ ଆପଣା ଇଚ୍ଛାରେ ହସ୍ତପାଦ ପ୍ରଭୃତିକୁ ସଂକୁଚିତ କଲାପରି ବିଷୟ ବାସନା ପ୍ରତି ଢଳି ପଡୁଥିବା ଇନ୍ଦ୍ରିୟଗୁଡିକୁ ଫେରାଇ ପାରିଲେ ମନୁଷ୍ୟ ଅନ୍ତର୍ମୁଖୀ ହୋଇଥାଏ । ଚକ୍ଷୁ-ଆଦି-ବାହ୍ୟ ଇନ୍ଦ୍ରିୟ ନିଗ୍ରହକୁ ଦମ କୁହାଯାଏ । ଏହା ଚିତ୍ତଶୁଦ୍ଧି ଆଣିବାରେ ସହାୟକ ହୋଇଥାଏ । ପଞ୍ଚ ମହାଭୂତ ସହିତ ଦଶ ଇନ୍ଦ୍ରିୟ ମିଶିଲେ ପନ୍ଦରଟି ପାହାଚ ସାଧକ ଅତିକ୍ରମ କରେ ।

ପ୍ରାଣ ହିଁ ବିଭିନ୍ନ ଜ୍ଞାନେନ୍ଦ୍ରିୟଗୁଡିକୁ ନିୟନ୍ତ୍ରଣ କରେ । ପ୍ରାଣ ହେଉଛି ଶରୀରରେ ଚଳପ୍ରଚଳ ହେଉଥିବା ବାୟୁ । ଏହି ବ୍ୟବସ୍ଥା ପାଞ୍ଚ ପ୍ରକାରରେ କାମ କରିଥାଏ:

| ପ୍ରାଣର ନାମ | ପ୍ରବାହିତ ହେଉଥିବା ସ୍ଥାନର ନାମ |
|---|---|
| ପ୍ରାଣ | ହୃଦୟ |
| ଅପାନ | ମଳଦ୍ୱାର |
| ସମାନ | ନାଭିମଣ୍ଡଳ |
| ଉଦାନ | କଣ୍ଠ |
| ବ୍ୟାନ | ସମସ୍ତ ଶରୀର |




ପ୍ରାଣବାୟୁ ହେଉଛି ନିଃଶ୍ୱାସ ପ୍ରଶ୍ୱାସ ରୂପୀ ଜୀବନୀ ଶକ୍ତି । ଆମ ଇନ୍ଦ୍ରିୟମାନଙ୍କର କାର୍ଯ୍ୟକଳାପକୁ ଏହା ନିୟନ୍ତ୍ରଣ ଓ ନିୟମିତ କରେ। ଏହି ବାୟୁ ସକ୍ରିୟ ଥିବାରୁ ପ୍ରାଣୀ ପ୍ରାଣବନ୍ତ ହୋଇ ରହିଥାଏ । ପ୍ରାଣସତ୍ତା ଜ୍ଞାନେନ୍ଦ୍ରିୟମାନଙ୍କଠାରେ ସ୍ପଷ୍ଟଭାବେ ବାରି ହୋଇପଡେ । ଯେପରି ସରକାର ମନ୍ତ୍ରିମଣ୍ଡଳର ବିଭିନ୍ନ ମନ୍ତ୍ରୀମାନଙ୍କ ଦ୍ୱାରା କାର୍ଯ୍ୟ ସମ୍ପାଦନ କରିଥାନ୍ତି, ସେହିପରି ହୃଦୟ ହେଉଛି ପଞ୍ଚ ବାୟୁର କେନ୍ଦ୍ର । ଏହା ବିଭିନ୍ନ ପ୍ରାଣ ଉପରେ ତା'ର ପ୍ରଭାବ ବିସ୍ତାର କରେ ।

ଅପାନବାୟୁ ଏକ ସୁସ୍ଥ ଶରୀରରୁ ଅଲୋଡା ଅଦରକାରୀ ବିଷାକ୍ତ ପଦାର୍ଥକୁ ବହିଷ୍କାର କରାଇଥାଏ । ସ୍ୱେଦ, ଝାଡା, ପରିସ୍ରା ଆଦିକୁ ଶରୀରରୁ ବାହାର କରି ହୋଇଥାଏ । ସମାନବାୟୁ ଖାଦ୍ୟ ହଜମ କରିବାରେ ମୁଖ୍ୟ ସହାୟକ ହୋଇଥାଏ । ଖାଦ୍ୟ ହଜମ ହେଲାପରେ ଏହା ଶରୀରରେ କିପରି ଗୃହୀତ ହେବ, ତାହା ମଧ୍ୟ ଏହି ବାୟୁର କ୍ରିୟା ଉଦାନବାୟୁ ଉନ୍ନତ ଚିନ୍ତା ଓ ଚେତନାର ଦ୍ୟୋତକ । ଏହା ଏଭଳି ଏକ ସାମର୍ଥ୍ୟ ଯାହା ଉର୍ଦ୍ଧ୍ୱକୁ ଉଠିବାକୁ ଚେଷ୍ଟା କରୁଥାଏ । ପୁରୁଣା ଭୁଲ୍ ଧାରଣାଗୁଡିକୁ ବର୍ଜନ କରେ । ନୂଆ ଅନୁଭବ ଆଣେ । ନୂତନ ଆତ୍ମବିଶ୍ୱାସ ସୃଷ୍ଟି କରେ । ପରିବର୍ତ୍ତନକୁ ସ୍ୱାଗତ କରେ । ଉନ୍ନତିର ବାଟ ଦେଖାଏ ।

ବ୍ୟାନବାୟୁ ହଜମ ହୋଇଥିବା ଖାଦ୍ୟକୁ ଆବଶ୍ୟକତା ଅନୁସାରେ ଶରୀରର ବିଭିନ୍ନ ଅଂଶକୁ ପଠାଏ । ମଣିଷ ଯେତେବେଳେ କାଠ ହାଣେ, ପଥର ଭାଙ୍ଗେ, ସେତେବେଳେ ହାତକୁ ବେଶୀ ବଳ ଯୋଗାଏ ।

ସ୍ୱାଭାବିକ ଢଙ୍ଗରେ ଚାଲିଥିବା ପ୍ରାଣବାୟୁକୁ ନିଜ ଇଚ୍ଛା ଅନୁସାରେ ଚାଳିତ କରିବା ହେଉଛି ପ୍ରାଣାୟମ । ଏହା ଶରୀରକୁ ନିରୋଗ ରଖେ । ଭାବନାକୁ ଶୁଦ୍ଧ କରେ । 'ସଂକଳ୍ପ ବିକଳ୍ପାତ୍ମକଂ ମନଃ ।' ମନର ସଂଜ୍ଞା ହେଉଛି ଏହା ସଂକଳ୍ପ-ବିକଳ୍ପାତ୍ମକ ଅଟେ । ଉଦାହରଣ ସ୍ୱରୂପ ଘରୁ ବାହାରକୁ କିଛିବାଟ ଗଲାପରେ ପ୍ରଶ୍ନ ଆସେ- ଘରେ ତାଲା ପକାଇଛି ତ ? ଏହା ବିକଳ୍ପର ଉଦାହରଣ । ଉତ୍ତର ହୋଇପାରେ ହଁ(ସଂକଳ୍ପ) ଯଦି ବେଶୀ ସନ୍ଦେହ ହୁଏ ଲୋକଟି ଫେରି ନିଜେ ତନଖି କରିପାରେ । ଅନ୍ତଃକରଣର ଏହି କାର୍ଯ୍ୟଟିର ନାମ ମନ । ମନ ଏକ ସମୟରେ ଦୁଇଟି କାର୍ଯ୍ୟ କରିପାରେ ନାହିଁ । ଏହା ଭାବନାର ସ୍ରୋତ । ଏହାର ଦେବତା ଚନ୍ଦ୍ର । ଚନ୍ଦ୍ର ସହିତ ମନର ନିବିଡ ସମ୍ପର୍କ । ଅମାବାସ୍ୟାରେ ମନ ଅସ୍ଥିର ହୁଏ । ପାଗଳର ପ୍ରଳାପ ବଢେ ।

ମହର୍ଷି ମନୁ ମନକୁ ଏକାଦଶ ଇନ୍ଦ୍ରିୟ ବୋଲି ଅଭିହିତ କରିଛନ୍ତି । ଏହା ସ୍ୱଭାବରେ ଜ୍ଞାନ ଓ କର୍ମ ଉଭୟ ଗୁଣଯୁକ୍ତ। ମନ ବଶ ହେଲେ ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟ ସମସ୍ତେ ବଶ ହୋଇଯାଆନ୍ତି । ଇନ୍ଦ୍ରିୟମାନେ ମନକୁ ଆଧାର କରି ନିଜ ନିଜର ବିଷୟ ଭୋଗ କରନ୍ତି । ଦର୍ଶନେନ୍ଦ୍ରିୟ ଦେଖିଲାବେଳେ ତା' ମୂଳରେ ଯଦି ମନ ନଥାଏ, ତେବେ ଆଖି ବୋଲି ଦେଖିବା ହିଁ ସାର ହୋଇଥାଏ । ଦେଖୁଥିବା ରୂପକୁ ଆଖି ଗ୍ରହଣ କରିନଥାଏ । ତେଣୁ ମନ ହେଉଛି ଇନ୍ଦ୍ରିୟମାନଙ୍କର ରାଜା ।

ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ମନର ସ୍ୱଭାବ ବିଷୟରେ କହିଛନ୍ତି, ମନ ସ୍ୱଭାବରେ ଚଞ୍ଚଳ । ଦେହ ଓ ଇନ୍ଦ୍ରିୟର କ୍ଷୋଭକାରକ । ମନ ଏପରି ବଳଶାଳୀ ଯେ ସେ ଯେଉଁ ଆଡକୁ ଧାବିତ ହୋଇଥାଏ, ସେ ଆଡୁ ତାକୁ ଫେରାଇ ଆଣିବା ସହଜସାଧ୍ୟ ନୁହେଁ । ଆହୁରି ଜନ୍ମ ଜନ୍ମାନ୍ତରର ବାସନାମାନ ସଂସ୍କାର ରୂପରେ ଏକତ୍ରିତ ହୋଇ ସେ ମନକୁ ଏପରି ବଶୀଭୂତ କରିଅଛି ତାକୁ ଭେଦ କରିବା କାଠିକର ପାଠ । ପ୍ରବଳ ବେଗରେ ବହୁଥିବା ବତାସକୁ ଧରି ରଖିବା ଯେପରି ଅସାଧ୍ୟ ମନକୁ ନିରୋଧ କରିବା ସେହିପରି ମୁସ୍କିଲ୍ । ଉତ୍ତରରେ ଶ୍ରୀକୃଷ୍ଣ କହୁଛନ୍ତି: ମନ ଯୁଆଡେ ଯୁଆଡେ ଧାଇଁ ଯାଉଥାଏ ତାକୁ ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଫେରାଇ ଆଣି ଆତ୍ମଚିନ୍ତନରେ ନିବିଷ୍ଟ ରଖିବାକୁ ହେବ । ମନର ଏହି ନିୟମକୁ ଶମ କୁହାଯାଏ ।

ବାଇଶି ପାହାଚର ଶେଷ ପାହାଚ ହେଉଛି ବୁଦ୍ଧି । ତତ୍ତ୍ୱବୋଧରେ କୁହାଯାଇଛି ନିଶ୍ଚୟାତ୍ମିକା ବୁଦ୍ଧି । ସନ୍ଦେହରେ ଦୋଳାୟମାନ ହେଉଥିବା ସ୍ଥିର ନିଷ୍ପତ୍ତିରେ ପହଞ୍ଚି ଗଲେ, ତାହା ବୁଦ୍ଧିରେ ପରିଣତ ହୋଇଯାଏ । ଏହା କୌଣସି ଘଟଣାର ଅନୁଶୀଳନ କରେ ଓ ସମସ୍ୟାର ଅନୁସନ୍ଧାନ କରେ । ମନ ହେଉଛି କିରାଣୀ, ବୁଦ୍ଧି ହେଉଛି ଅଧିକାରୀ । ମନ ହେଉଛି ଭାବନାର ସ୍ରୋତ । ବୁଦ୍ଧି ହେଉଛି ସ୍ରୋତର ବନ୍ଧ । ପଞ୍ଚମହାଭୂତରେ ଗଢା ସ୍ଥୂଳ ଶରୀରଠାରୁ, ଇନ୍ଦ୍ରିୟ ଇନ୍ଦ୍ରିୟଠାରୁ ମନ, ମନଠାରୁ ବୁଦ୍ଧି ଶ୍ରେଷ୍ଠ ଅଟେ । ସଂସାରରେ ନର ଯେଉଁ କର୍ମ ସମ୍ପାଦନ କରେ ତା'ର ଉଦ୍ଦେଶ୍ୟ ହେଉଛି ଚିତ୍ତଶୁଦ୍ଧି । ପଦ୍ମପତ୍ରରେ ଜଳପରି ସେ ନିର୍ଲିପ୍ତ ଭାବରେ କର୍ମକରି ଚାଲିଲେ ବାସନାର କ୍ଷୟ ହୁଏ । ଆତ୍ମ ସମର୍ପଣ ଦ୍ୱାରା ନୂତନ ବାସନା ମନରେ ସ୍ଥାନପାଏ ନାହିଁ । ଧୀରେ ଧୀରେ ସେ ଦେହାସକ୍ତ ଓ ଇନ୍ଦ୍ରିୟ ପ୍ରବଣତାକୁ ଅତିକ୍ରମ କରେ । କାମ୍ୟ କର୍ମରେ ଫଳ ସ୍ପୃହା ନରଖିଥିବାରୁ ଜନ୍ମମରଣ ରୂପକ ଚକ୍ରରେ ପଡି ନାନା ଦୁଃଖ ଭୋଗ କରେନାହିଁ । ମଣିଷ ସତ୍ତ୍ୱଗୁଣ ସଂପନ୍ନ ହେଲେ ଅଜ୍ଞାନକୁ ବର୍ଜନ କରି ଜ୍ଞାନାଭିମୁଖୀ



ହୋଇଥାଏ । ଏହା ଫଳରେ ନିଷ୍କାମ ଚେତନା ଜାଗ୍ରତ ହୁଏ । ମଣିଷ ମନରେ ଈଶ୍ୱର ଭକ୍ତିର ଉଦ୍ରେକ ଘଟେ । ପରମାତ୍ମାକୁ ଜାଣିନଥିବାରୁ ସେମାନେ 'କୃପଣ' ନାମରେ ଅଭିହିତ ହୁଅନ୍ତି । ଶ୍ରୁତିରେ ପ୍ରମାଣ ଅଛି–

ଯୋ ବା ଏତଦ୍ ଅକ୍ଷରଂ ଗାର୍ଗ୍ୟ ବିଦିତ୍ୱାସ୍ମାଦ୍ ଲୋକାଦ୍ ପ୍ରୈତିଃ ସଃ କୃପଣଃ ॥ ଅର୍ଥାତ୍ ହେ ଗାର୍ଗୀ ! ଯେଉଁ ଲୋକ ଇହଲୋକରେ ଜନ୍ମଗ୍ରହଣ କରି ଅକ୍ଷୟ ପରମାତ୍ମାକୁ ନଜାଣି ଇହଲୋକରୁ ଲୋକାନ୍ତରକୁ ଗମନ କରେ ସେ କୃପଣ ।

ଆତ୍ମା କ'ଣ ? ଆତ୍ମା ବୁଦ୍ଧିଠାରୁ ଶ୍ରେଷ୍ଠ । ଯେଉଁ ପାହାଚ ଗୋଟିଏ ପରେ ଗୋଟିଏ ଚଢି ସାଧକ ଆସିଲା ସେ ଦେହ ଆତ୍ମା ନୁହେଁ, ସେ ଇନ୍ଦ୍ରିୟ ଆତ୍ମା ନୁହେଁ । ଆତ୍ମା ମନଠାରୁ ଅଲଗା ବୁଦ୍ଧିଠାରୁ ଶ୍ରେଷ୍ଠ । ସ୍ଥୂଳ ଶରୀର ଓ ସୂକ୍ଷ୍ମ ଶରୀର ଦ୍ୱାରା ବିଷୟଭୋଗ ନୁହେଁ ବରଂ ଏଗୁଡିକ ଉପଯୋଗ କରି ବ୍ରହ୍ମୋପଲବ୍ଧି କରିବା ନିମନ୍ତେ ସାଧକ ସତତ ଚେଷ୍ଟିତ ଥାଏ । ସେଥିପାଇଁ ନିର୍ବାଣ ଷ୍ଟକମ୍'ରେ କୁହାଯାଇଛି –

ମନୋବୁଦ୍ଧି ଅହଂକାର ଚିତ୍ତାନି ନାହମ୍  
ନଚ ଶ୍ରୋତ୍ରଜିହ୍ୱେ ନଚ ଘ୍ରାଣ ନେତ୍ରେ  
ନଚ ବ୍ୟୋମଭୂମିଃ ନ ତେଜଃ ନ ବାୟୁଃ  
ଚିଦାନନ୍ଦ ରୂପଃ ଶିବୋଽହଂଶିବୋଽହମ୍ ॥

ତେଣୁ ଭକ୍ତ ବାଇଶି ପାହାଚକୁ ଭୁଲି ନିଜକୁ ଆତ୍ମମୟ ବୋଲି ଉପଲବ୍ଧି କରେ । ଜଗନ୍ନାଥ ହେଉଛନ୍ତି ପରମବ୍ରହ୍ମ । ନିଜ ଭିତରେ ଥିବା ଆତ୍ମା ସେହି ପରମ ଚୈତନ୍ୟଙ୍କ ଅଂଶ ବିଶେଷ । ଜଗତ ମଧ୍ୟ ଜଗନ୍ନାଥମୟ । ତେଣୁ ଜଗନ୍ନାଥ ପୁରାଣର ଉକ୍ତି ଯଥାର୍ଥ–

ଏ ଅପେକ୍ଷା ବିଶ୍ୱଯାକ ପରଂବ୍ରହ୍ମ ଦିଶେ ।  
ଆତ୍ମଜ୍ଞାନୀମାନଙ୍କୁ ଯେ ଯଥା ଆତ୍ମ ବସେ ।  
ଭକ୍ତ ଜନ ନିଜ ହୃଦେ ଦାରୁବ୍ରହ୍ମ  
ଦେଖି ସର୍ବଜନ ଜଗନ୍ନାଥ ବିଶ୍ୱ ପୂରିଛି କି ?  
ତପସ୍ୱୀମାନଙ୍କୁ ସ୍ୱୟଂ ଦାରୁ ପରଂବ୍ରହ୍ମ  
ଅଶେଷ ବିଶ୍ୱ ପୂରିଛି ପୁରୁଷ ଉତ୍ତମ ॥

ସି–୨୨/୧, ନାଲ୍କୋ  
ଦାମନଯୋଡି, କୋରାପୁଟ–୭୬୩୦୦୮

# ରହିଛି ମୁଁ ଆଶ୍ରାକରି

ଗୋପାଳ ଚନ୍ଦ୍ର ବାରିକ

ବସିଛି ଦେଖୁଛି ହସୁଛି ମନକୁ ହରି  
ମରୁଛି କାନ୍ଦୁଛି ନିନ୍ଦୁଛି (ମୁଁ) କର୍ମ ଆଦରି  
ସତେକି ନିଦା–ପଥର  
କିଛି ବୁଝୁନାହିଁ କିଛି ଶୁଣୁନାହିଁ  
କଷୁଛି ଶକତି ମୋର  
ଲଗାଇ ନିଜେ ହୁନ୍ଦର  
ଦହୁଛି–ବାଛୁଛି–ନାଚୁଛି ନିଜେ ଦେଖି ମୋ ଶିରି ।



ସହୁଛି କହୁଛି ପାତୁଛି(ହାତ) ଭିକାରୀ ପରି  
ବାଧୁଛି ଜଳୁଛି ଯାଉଛି (ମୋ) ପ୍ରାଣ ବାହାରି  
ପଡୁନାହିଁ କି ଜଣା  
ତୁ ଜମିଦାର ମୁଁ ତୋ ଚାକର  
ସହୁଥିବି ତୋ ଗଞ୍ଜଣା  
ତଥାପି ହୋଇନି ବଣା  
ଗାଉଛି ନାଚୁଛି ଶୁଣୁଛି ନାମ ତୋହରି ।

ଜାଣିଛି ପାଉଛି ଅର୍ଜିଛି ଦୋଷ ମୋହରି  
ମାଗୁଛି ଡାକୁଛି ଯୋଡୁଛି ହାତ ପ୍ରସାରି  
ତୁ ନାଥ ହେଲେ ସଦୟ  
ଚାଲିଯିବ ଦୁଃଖ ରହିବନି ଶୋକ  
ଥିଲେ ମଥାରେ ତୋ ଅଭୟ  
ମୋର ହଟିବ ମୋହ  
ନଥିବ କୋହ  
ଗୁଣୁଛି, ସହୁଛି, ବସିଛି  
ଚାହିଁ ତୋ ଆଶ୍ରାକରି ।

ଶ୍ରୀରାମ ନଗର, ମଧୁପାଟଣା  
କଟକ–୭୫୩୦୧୦





# ହାଫିଜ୍ କାଦର ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ଓ ଶ୍ରୀଜଗନ୍ନାଥ

ଡକ୍ଟର ଜନ୍ମେଜୟ ଚୌଧୁରୀ

ଭୋଇ ରାଜବଂଶର ପ୍ରତିଷ୍ଠାତା ପ୍ରଥମ ରାମଚନ୍ଦ୍ର ଦେବ (୧୫୭୧-୧୬୦୦)ଙ୍କ ଦ୍ୱାରା ଶ୍ରୀଜଗନ୍ନାଥଙ୍କର ପୁନଃ ପ୍ରତିଷ୍ଠା ଓଡ଼ିଶାର ଇତିହାସ ଓ ସଂସ୍କୃତିରେ ଏକ ମହନୀୟ ଘଟଣା ଥିଲା । ବ୍ରହ୍ମ ପଦାର୍ଥ କୁଜଙ୍ଗରେ ସୁରକ୍ଷିତ ଥିବା କଥା ଶ୍ରୀଜଗନ୍ନାଥଙ୍କର ସ୍ୱପ୍ନାଦେଶରୁ ସେ ଜାଣିଥିଲେ ବୋଲି ପ୍ରକାଶ କରିବା ଦ୍ୱାରା ଏହା ଜନସାଧାରଣଙ୍କର ଅଭିନନ୍ଦନୀୟ ହେଲା ଏବଂ ଶ୍ରୀଜଗନ୍ନାଥ ଧର୍ମର ନିରବଚ୍ଛିନ୍ନ ଧାରା ଅବ୍ୟାହତ ହୋଇରହିଲା । ଏହା ଗଜପତି ରାମଚନ୍ଦ୍ର ଦେବଙ୍କର ବିଚକ୍ଷଣ ବୁଦ୍ଧିର ପ୍ରମାଣ ଦିଏ । ଏହି ରାଜାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ନାମରେ ଅଭିହିତ ଏଥିପାଇଁ କରାଯାଇଛି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଯେଉଁସବୁ ବିଧିବିଧାନ, ପୂଜାପଦ୍ଧତି, ଭୋଗ ନିୟୋଗ ଆଦି ଆଗରୁ ପ୍ରଚଳିତ ରହି ଆସିଥିଲା, ରାମଚନ୍ଦ୍ର ଦେବ ସେସବୁର ପୁନଃ ସମ୍ପାଦନ କଲେ । ପ୍ରଥମ ରାମଚନ୍ଦ୍ର ଦେବଙ୍କ ପୁତ୍ର ଗଜପତି ପୁରୁଷୋତ୍ତମ ଦେବ (୧୬୦୦-୧୬୨୧)ଙ୍କ ସମୟରେ ଶ୍ରୀମନ୍ଦିର ଉପରେ ତିନିଥର ଆକ୍ରମଣ ଓ ଲୁଣ୍ଠନ ହୋଇଥିଲା । ତନ୍ମଧ୍ୟରୁ ଦୁଇଟି ଆକ୍ରମଣର ନେତୃତ୍ୱ ନେଇଥିଲେ ମୁସଲମାନ ସୁବେଦାରଙ୍କର ଦୁଇଜଣ ରାଜପୁତ୍ ସେନାପତି କେଶୋଦାସ ମାରୁ ଓ କଲ୍ୟାଣ ମଲ୍ଲ ଏବଂ ତୃତୀୟ ଥରର ଆକ୍ରମଣକାରୀ ଥିଲେ ସୁବେଦାର ମକରମ୍ ଖାଁ । ଗଜପତି ପୁରୁଷୋତ୍ତମ ଦେବ ୧୬୨୧ରେ ପ୍ରାଣତ୍ୟାଗ କଲେ । ତାଙ୍କର ପୁତ୍ର ଗଜପତି ନରସିଂହ ଦେବ(୧୬୨୧-୧୬୪୭)ଙ୍କ ସମୟରେ ସୁବେଦାର ମୀର୍ଜା ଅହମ୍ମଦ ବେଗ୍ ୧୬୨୩-୨୪ରେ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ । ଏହିପରି ଶ୍ରୀମନ୍ଦିର ଉପରେ ବାରମ୍ବାର ଆକ୍ରମଣ ଯୋଗୁଁ ବ୍ରାହ୍ମଣ ପଣ୍ଡିତ ଓ ପୁରୋହିତଗଣ ବିଚଳିତ ହୋଇପଡିଥିଲେ । ରାଜପୁତ ସେନାପତି କେଶୋଦାସ ଓ କଲ୍ୟାଣ ମଲ୍ଲଙ୍କ ଆକ୍ରମଣ ସେମାନଙ୍କୁ ବ୍ୟଥିତ କରିଥିଲା । ସେପର୍ଯ୍ୟନ୍ତ ଶ୍ରୀମନ୍ଦିର ଜାତିଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ମୁକ୍ତ ଥିଲା । ମାତ୍ର ଏହାପରେ ମୁକ୍ତି ମଣ୍ଡପ ପଣ୍ଡିତ ସଭାରେ ବିଧର୍ମୀ ଓ ପତିତମାନଙ୍କୁ ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ ନିଷେଧ କରିବା ପାଇଁ ନିଷ୍ପତ୍ତି ନିଆଗଲା । ପତିତପାବନ ନାମରେ ଶ୍ରୀଜଗନ୍ନାଥଙ୍କର ଏକ ତୈଳଚିତ୍ର ସିଂହଦ୍ୱାର ନିକଟରେ ଅଙ୍କିତ କରାଯାଇ କୁହାଗଲା ଯେ ପତିତମାନଙ୍କ ମଧ୍ୟରୁ ଯେଉଁମାନେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଆଗ୍ରହୀ ଥିବେ, ସେମାନେ ସିଂହଦ୍ୱାର ନିକଟରେ ପତିତପାବନ ପ୍ରତିଛବିରେ ପୂଜାର୍ଚ୍ଚନା କରିପାରିବେ । ସପ୍ତଦଶ ଶତକର ମଧ୍ୟଭାଗରେ କବି ଦିବାକର ଦାସ ତାଙ୍କର 'ଜଗନ୍ନାଥ ଚରିତାମୃତ'ରେ ଲେଖିଛନ୍ତି:

ଆଦ୍ୟେତା ସିଂହଦ୍ୱାର ସ୍ଥାନ
ପତିତପାବନ ଦର୍ଶନ (୨୦/୩)

ସେତେବେଳେ କେହି ଚିନ୍ତା କରିନଥିଲେ ଯେ ଦିନେ ଜଣେ ଗଜପତି ରାଜା ଏହି ନିଷ୍ପତ୍ତିର ଶରବ୍ୟ ହେବେ । ଏହି ଗଜପତି ରାଜା ଥିଲେ ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୭୨୭-୧୭୩୭) । ସେ କିପରି ଏହି ପରିସ୍ଥିତିରେ ପଡିଲେ ତା'ର ଏକ ଐତିହାସିକ ବିବରଣୀ ରହିଛି ।

ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ୧୭୨୬ରେ ଖୋର୍ଦ୍ଧା ସିଂହାସନରେ ଯେଉଁବର୍ଷ ଅଭିଷିକ୍ତ ହେଲେ, ସେହିବର୍ଷ ପରମଲକ୍ଷ୍ମୀ ମହାପାତ୍ର ହେଲେ ତାଙ୍କର ରାଜଗୁରୁ । ରାଜଗୁରୁ କହିଲେ ରାଜାଙ୍କର ପ୍ରଧାନମନ୍ତ୍ରୀ ଓ ଶ୍ରୀମନ୍ଦିରର ମୁଖ୍ୟ ଅଟନ୍ତି । ରାଜଗୁରୁ ପରମଲକ୍ଷ୍ମୀ ଥିଲେ ଜଣେ ଉଚ୍ଚକୋଟୀର ଶାସ୍ତ୍ରଜ୍ଞ । ସଂସ୍କୃତ, ଆରବୀ ଓ ପାର୍ସୀ ଭାଷାରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ମଧ୍ୟ ଅଶ୍ୱାରୋହଣରେ ପାରଙ୍ଗମ ଥିଲେ । ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ଓ ରାଜଗୁରୁ ପରମଲକ୍ଷ୍ମୀ ଦୁହେଁ ବାଲ୍ୟକାଳରେ ଜଣେ ଗୁରୁଙ୍କ ନିକଟରେ ଏକ ସମୟରେ ସମରଶିକ୍ଷା କରିଥିଲେ । ଉଭୟ ସମବୟସ୍କ ଥିଲେ ଏବଂ ଉଭୟଙ୍କ ମଧ୍ୟରେ ନିବିଡ଼ ବନ୍ଧୁତା ମଧ୍ୟ ଥିଲା । ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କର ପାଟରାଣୀ କଳାବତୀ ଦେବୀ ଆତ୍ମାଭିମାନୀ ଥିବାରୁ ରାଜାଙ୍କ ସହିତ ତାଙ୍କର ଅନେକ ସମୟରେ ମନମାଳିନ୍ୟ ହେଉଥିଲା । ମାତ୍ର ରାଜାଙ୍କର



ଦ୍ୱିତୀୟ ପତ୍ନୀ ଲଳିତା ଦେବୀ ପତିବ୍ରତା ନାରୀ ଥିଲେ । ପାଟରାଣୀଙ୍କର ତିନିପୁତ୍ର- କୃଷ୍ଣ ରାୟ, ମୁକୁନ୍ଦ ରାୟ ଓ ମଧୁସୂଦନ ଥିଲେ ଏବଂ ଲଳିତାଙ୍କର ଭାଗୀରଥି କୁମାର ନାମରେ ଏକମାତ୍ର ପୁତ୍ର ଥିଲେ ।

ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ଅଷ୍ଟମ ଅଙ୍କରେ ୧୭୩୫ ଖ୍ରୀ:ଅରେ ତକି ଖାଁ ଖୋର୍ଦ୍ଧା ଆକ୍ରମଣ କଲେ । ପରମଗୁରୁ ଓ ରାଜାଙ୍କ ଆପ୍ରାଣ ଉଦ୍ୟମ ସତ୍ତ୍ୱେ ଶତ୍ରୁ ପକ୍ଷର ପ୍ରତିରୋଧ କରିପାରିଲେ ନାହିଁ । ଆସନ୍ନ ବିପଦରୁ ରକ୍ଷା ପାଇଁ ଶ୍ରୀଜଗନ୍ନାଥଙ୍କୁ ବାଣପୁର ନିକଟରେ ଲୁଚାଇ ରଖାଗଲା । ଶେଷରେ ରାଜା ରାମଚନ୍ଦ୍ର ଦେବ ସନ୍ଧି ପ୍ରସ୍ତାବ ନେଇ ତକି ଖାଁଙ୍କୁ ସାକ୍ଷାତ୍ କଲେ । ମାତ୍ର ତକି ଖାଁ ବିଶ୍ୱାସଘାତକତା କରି ରାଜାଙ୍କୁ ବନ୍ଦୀ କଲେ । ରାଜା ୧୮ମାସ କାଳ ଶତ୍ରୁ ହାତରେ ବନ୍ଦୀ ହୋଇ ରହିଲେ । ଇତିମଧ୍ୟରେ ତକି ଖାଁ ଜଣେ ଆତତାୟୀର ହାତରେ ମୃତ୍ୟୁବରଣ କଲେ ଏବଂ ତାଙ୍କ ପରେ ମୁର୍ଶିଦ୍ କୁଲି ଖାଁ ଦ୍ୱିତୀୟ ଓଡ଼ିଶାର ନାଏବ ନାଜିମ୍ ହେଲେ । ମୀର ହବିବ୍ ହେଲେ ମୁର୍ଶିଦ୍‌ଙ୍କର ଦେୱାନ୍ । ମୁର୍ଶିଦ ଅତ୍ୟନ୍ତ ଉଦାରମନା ଥିଲେ । ତେଣୁ ପରମଗୁରୁ ତାଙ୍କୁ ସାକ୍ଷାତ କରି ରାଜାଙ୍କୁ ମୁକ୍ତ କରାଇ ନେଲେ । ଏତଦ୍‌ବ୍ୟତୀତ ମୁର୍ଶିଦ୍ ଖାଁ ହବିବ୍‌ଙ୍କ ପରାମର୍ଶରେ ଶ୍ରୀଜଗନ୍ନାଥଙ୍କୁ ପୁରୀରେ ପୁନଃ ପ୍ରତିଷ୍ଠା କରି ରଥଯାତ୍ରା ସମେତ ସବୁ ବିଧି ବିଧାନର ପୁନଃ ପ୍ରଚଳନ କରିବା ପାଇଁ ଅନୁମତି ଦେଲେ । ଏହି ଦିନଠାରୁ ଆଉ ଶ୍ରୀମନ୍ଦିର ଉପରେ ମୁସଲମାନମାନଙ୍କର ଆକ୍ରମଣ ହୋଇନଥିଲା ।

ଏହାପରେ ରାଜଗୁରୁ ପରମଲକ୍ଷ୍ମୀଙ୍କର ଏକମାତ୍ର ଦୁହିତା ଚନ୍ଦ୍ରପ୍ରଭାର ବିବାହ ଅନୁଷ୍ଠିତ ହେଲା। ଏହି ବିବାହ ଉତ୍ସବରେ ମୁର୍ଶିଦ୍ କୁଲି ଖାଁ ଓ ମୀର ହବିବ୍‌ଙ୍କୁ ଅତିଥି ରୂପେ ନିମନ୍ତ୍ରଣ କରିବା ପାଇଁ ରାଜା ରାଜଗୁରୁ ପରମଲକ୍ଷ୍ମୀଙ୍କୁ ଅନୁରୋଧ କଲେ । ଏହାଦ୍ୱାରା କିଛି ଅସୁବିଧାର ସମ୍ଭାବନା ଭବିଷ୍ୟତରେ ଅଛି ବୋଲି ରାଜଗୁରୁ ମହାରାଜାଙ୍କୁ ବୁଝାଇଲେ ମଧ୍ୟ ମହାରାଜା ବୁଝିଲେ ନାହିଁ । ଶେଷରେ ପରମଲକ୍ଷ୍ମୀ ରାଜଗୁରୁ ରାଜାଙ୍କ କଥାରେ ରାଜି ହେଲେ । ମୁର୍ଶିଦ ଓ ମୀର ହବିବଙ୍କ ଉଦାରତା ରାଜଗୁରୁଙ୍କୁ ମଧ୍ୟ ସ୍ପର୍ଶ କରିଥିଲା ଏବଂ ସେମାନଙ୍କ ପ୍ରତି ତାଙ୍କର ଓ ରାଜାଙ୍କର ସମ୍ମାନ ଥିଲା । ରାଜା ନିଜେ ନିମନ୍ତ୍ରଣ ନେଇ ହବିବ୍ ଓ ମୁର୍ଶିଦଙ୍କୁ ଭେଟିଲେ । ମୁର୍ଶିଦଙ୍କ ଘରେ ରାଜାଙ୍କର ବିଶେଷ ଆଦର ଥିଲା । ମୁର୍ଶିଦଙ୍କର ଲାବଣ୍ୟମୟୀ କନ୍ୟା ରେଜିଆର ମଧୁର ବ୍ୟବହାରରେ ସେ ପ୍ରୀତ ଥିଲେ । ରେଜିଆ ରାଜାଙ୍କୁ ବହୁତ ସମ୍ମାନ ଦେଉଥିଲେ । ମୁର୍ଶିଦ ଓ ହବିବଙ୍କ ସହିତ ରେଜିଆ ମଧ୍ୟ ବିବାହକୁ ଆସିଥିଲେ । ସେମାନେ ସମସ୍ତେ ବିବାହ ମଣ୍ଡପରେ ଅନେକ ସମୟ ବସି ରହିଲେ । ରେଜିଆ ଅତି ଆଗ୍ରହର ସହିତ ହିନ୍ଦୁ ବିଧିବିଧାନର ବିବାହ ଲକ୍ଷ୍ୟ କରୁଥିଲେ । ମାତ୍ର ହିନ୍ଦୁ ବିବାହ ସ୍ଥଳୀରେ ମୁସଲମାନଙ୍କ ଉପସ୍ଥିତ ବ୍ରାହ୍ମଣ ପଣ୍ଡିତମାନଙ୍କ ମଧ୍ୟରେ ଗୁଞ୍ଜରଣ ସୃଷ୍ଟି କଲା । ଏହାଦ୍ୱାରା ରାଜଗୁରୁ ହିନ୍ଦୁ ଧର୍ମର ବିରୁଦ୍ଧାଚରଣ କଲେ ବୋଲି ସେମାନେ ସମାଲୋଚନା କଲେ । ଏହିପରି ଭାବରେ ଚନ୍ଦ୍ରପ୍ରଭାର ବିବାହ କାର୍ଯ୍ୟ ସମାପନ ହେଲା ।

ଏହି ବିବାହ ପରେ ରାଜା ରାମଚନ୍ଦ୍ର ଦେବ ବାରମ୍ବାର କଟକ ଯାଇ ମୁର୍ଶିଦଙ୍କ ଘରେ ରେଜିଆଙ୍କୁ ସାକ୍ଷାତ କରୁଥିଲେ । ରେଜିଆଙ୍କର ଚର୍ଚ୍ଚାରେ ମୁଗ୍ଧ ହେଉଥିଲେ । ଉଭୟେ ଉଭୟଙ୍କୁ ବହୁତ ଭଲ ପାଉଥିଲେ ଏବଂ ଶେଷରେ ସେମାନେ ବିବାହ କରିବା ପାଇଁ ସ୍ଥିର କଲେ । ରେଜିଆ ହିନ୍ଦୁ ବିଧିବିଧାନକୁ ଲକ୍ଷ୍ୟ କରି ଏପରି ଖୁସି ହୋଇଥିଲେ ଯେ ହିନ୍ଦୁ ବିଧିବିଧାନରେ ବିବାହ ପାଇଁ ବହୁତ ଆଗ୍ରହୀ ଥିଲେ । ଉଦାରମନା ମୁର୍ଶିଦ ମଧ୍ୟ ଏଥିରେ ରାଜି ହେଲେ । ଏହାସବୁ ଘଟିଗଲା ପରେ ରାଜା ରାମଚନ୍ଦ୍ର ଦେବ ରାଜଗୁରୁଙ୍କ ନିକଟରେ ଗୁହାରି କଲେ । ଏହା ବର୍ଣ୍ଣନା କଲାବେଳେ ରାଜା ରାଜଗୁରୁଙ୍କ ସମ୍ମୁଖରେ କାନ୍ଦି ପକାଉଥିଲେ । ରାଜା କହିଲେ ଯେ ଏହି ବିବାହ ସମ୍ଭବ ନହେଲେ ସେ ଆତ୍ମହତ୍ୟା କରିବେ। ରାଜଗୁରୁ ପ୍ରମାଦ ଗଣିଲେ । ସେ ଦେଖିଲେ ଯେ ତାଙ୍କ ଅଜାଣତରେ ଘଟଣା ଅନେକ ଦୂର ଆଗେଇ ସାରିଛି ଏବଂ ଏଥିରୁ ଓହରି ଆସିବାର ଆଉ ଉପାୟ ନାହିଁ । ରାଜଗୁରୁ ଏକ କୌଶଳ କରି ଏହି ବିବାହ ହିନ୍ଦୁ ଧର୍ମର ବିଧିବିଧାନରେ କରିବା ପାଇଁ ମୁକ୍ତି ମଣ୍ଡପର ଅନୁମତି ନେଇ ଆସିଲେ । ଯଥା ସମୟରେ ବିବାହ କଟକରେ ଅନୁଷ୍ଠିତ ହେଲା । ଏହାପରେ ରେଜିଆଙ୍କ ନାମ ରହିଲା ସୂର୍ଯ୍ୟମଣି ଦେବୀ । ରାଜା ଯବନୀ ରାଣୀଙ୍କୁ ନେଇ ରଥିପୁରରେ ରହିଲେ ।

ଇତିମଧ୍ୟରେ ଏକ ଜନରବ ସୃଷ୍ଟି ହେଲା ଯେ ରାଜା ରାମଚନ୍ଦ୍ର ଦେବ ମୁସଲମାନ ଧର୍ମ ଗ୍ରହଣ କରି ରେଜିଆ ନାମ୍ନୀ ଏକ ମୁସଲମାନ କନ୍ୟାକୁ ବିବାହ କରିଛନ୍ତି ଏବଂ ସେ ମୁସଲିମ୍ ନାମ ହାଫିଜ୍ କାଦରରେ ପରିଚିତ ଅଛନ୍ତି । ଜୀବନ ଦାସଙ୍କ ନେତୃତ୍ୱରେ ଏକ ମେଳିଆ ଦଳ ଏହି ଅପପ୍ରଚାର କରିଥିଲେ । ମହାରାଣୀ କଳାବତୀ ମଧ୍ୟ ଏହି ମେଳିଆମାନଙ୍କ ସହିତ ଯୋଗ ଦେଇ ଏହା ସତ୍ୟ ବୋଲି ପ୍ରକାଶ କରିଥିଲେ । ଘଟଣାପ୍ରବାହ ଏହିପରି ଅନିଶ୍ଚିତ ରହିଥିବା ବେଳେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଓ ଆରାଧନା ପାଇଁ ରାଜା ଓ ରାଣୀ ଆଗ୍ରହୀ ହୋଇ ରାଜଗୁରୁଙ୍କୁ ଜଣାଇଲେ । ମୁକ୍ତିମଣ୍ଡପରେ ନିଷ୍ପତ୍ତି ନିଆଗଲା ଯେ ରାଜଦମ୍ପତି ସିଂହଦ୍ୱାର ନିକଟରେ ପତିତପାବନ ଜଗନ୍ନାଥଙ୍କ ମୂର୍ତ୍ତି ଦର୍ଶନ ଓ ଯଥାବିଧି ଆରାଧନା କରିପାରିବେ । ଆଗରୁ ସେଠାରେ





ପତିତପାବନଙ୍କର ଯେଉଁ ଏକ ତୈଳଚିତ୍ର ପତିତମାନଙ୍କ ପାଇଁ ଅଙ୍କିତ ହୋଇଥିଲା, ତାହା ବର୍ତ୍ତମାନ ଗଜପତି ରାଜାଙ୍କ ପାଇଁ ଏକ ଚିତ୍ରର ଉପାସନା ଅସୁନ୍ଦର ହୋଇପାରେ ଭାବି କେବଳ ତାଙ୍କ ପାଇଁ ଏକ ମୂର୍ତ୍ତି ସ୍ଥାପନର ବ୍ୟବସ୍ଥା ହେଲା । ଯାହା ଅଦ୍ୟାବଧି ବାହାର ଗୁମୁଟ ମଧ୍ୟରେ ରହିଛି । ଇତିମଧ୍ୟରେ ଜୀବନ ଦାସ ତାର ପୂର୍ବ ଅପକର୍ମ ପାଇଁ ରାଜାଙ୍କଠାରେ କ୍ଷମା ମାଗିଲା ଏବଂ ଯଜ୍ଞ ଦ୍ୱାରା ରାଜା ଓ ରାଣୀଙ୍କୁ ଶୁଦ୍ଧ କରାଇ ଦର୍ଶନ ସୁବିଧା କରାଇ ଦେବ ବୋଲି ପ୍ରତିଶ୍ରୁତି ଦେଲା । ରାଜା ରାଜଗୁରୁଙ୍କ ସହିତ ପରାମର୍ଶ ନକରି ଜୀବନ ଦାସର ପ୍ରବର୍ତ୍ତନାରେ ରାଣୀଙ୍କ ସହିତ ଦର୍ଶନ ପାଇଁ ଶ୍ରୀମନ୍ଦିରରେ ଉପନୀତ ହେଲେ । ସେହି ସମୟରେ ଶ୍ରୀମନ୍ଦିର ସମ୍ମୁଖରେ ପ୍ରବଳ ଲୋକ ଭିଡ ଥିଲା । ରାଜାଙ୍କ ବିରୋଧୀ ମେଳିଆମାନେ ଲୋକଙ୍କୁ ଉତ୍ତେଜିତ କରୁଥିଲେ । ରାଜା ସିଂହଦ୍ୱାର ଅତିକ୍ରମ କରି ପତିତପାବନ ମୂର୍ତ୍ତି ନିକଟରେ ପ୍ରଣତି ଜଣାଇଲା ପରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ବାଇଶି ପାହାଚ ଅଭିମୁଖେ ଅଗ୍ରସର ହେଲେ । ତେଣୁ ଉତ୍ତେଜନା ବୃଦ୍ଧି ପାଇଲା । ପୁରୋହିତମାନେ ରାଜାଙ୍କୁ ରାଜଗୁରୁ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବା ପାଇଁ ଅନୁରୋଧ କଲେ । ଖବର ପାଇ ରାଜଗୁରୁ ହଠାତ୍ ସେଠାରେ ପହଞ୍ଚିଲେ । ସେ ଦେଖିଲେ ଯେ ସେ ସମୟର ପରିସ୍ଥିତି ରାଜାଙ୍କ ସପକ୍ଷରେ ନାହିଁ । ତେଣୁ ସେ ରାଜାଙ୍କୁ ରୋକ୍‌ଠୋକ୍ ନିର୍ଦ୍ଦେଶ ଦେଲେ ଯେ 'ବିବାହ ପରେ ସେ ପତିତ ହୋଇଛନ୍ତି ଏବଂ ମନ୍ଦିରରେ ପ୍ରବେଶ କରିବା ତାଙ୍କର ଅଧିକାର ନାହିଁ । ତେଣୁ ସେ ସେଠାରୁ ଫେରିଯା'ନ୍ତୁ । ରାଜଗୁରୁଙ୍କର ଏହି କଠୋର ନିର୍ଦ୍ଦେଶ ରାଜାଙ୍କୁ ବାଧିଲା । ରାଜା ସେଠାରୁ ଫେରିଗଲେ । ସେତେବେଳେ ପୂର୍ବଦ୍ୱାରରେ ଉତ୍ତେଜନା ଲାଗି ରହିଥିବାରୁ ରାଜଗୁରୁ ରାଜ ଦମ୍ପତିଙ୍କୁ ମନ୍ଦିରର ପଶ୍ଚିମ ଦ୍ୱାର ଦେଇ ଗୋପନରେ ପଠାଇ ଦେଲେ । ଏହାପରେ ରାମଚନ୍ଦ୍ର ଦେବ ଯବନୀ ରାଣୀଙ୍କୁ ନେଇ ରଥିପୁର କଟକକୁ ଚାଲିଗଲେ ।

ରାଜା ହୃଦୟଙ୍ଗମ କଲେ ଯେ ତାଙ୍କ ପାଇଁ ରାଜ୍ୟରେ ବିଶୃଙ୍ଖଳା ଓ ଅଶାନ୍ତି ବୃଦ୍ଧି ପାଉଛି ଏବଂ ବିଦ୍ରୋହ ଓ ରକ୍ତପାତର ଆଶଙ୍କା ମଧ୍ୟ ରହିଛି । ତେଣୁ ସେ ରାଜ୍ୟର ମଙ୍ଗଳ ଉଦ୍ଦେଶ୍ୟରେ ସିଂହାସନ ପରିତ୍ୟାଗ ପାଇଁ ନିଷ୍ପତ୍ତି ନେଲେ । ଏଥିପାଇଁ ମଧ୍ୟ ରାଜଗୁରୁଙ୍କର ପରାମର୍ଶ ନନେଇ କେବଳ ରାଜଗୁରୁଙ୍କ ନିକଟକୁ ଏକ ପତ୍ର ଲେଖି ଜଣାଇଦେଲେ ଯେ ସେ ଦ୍ୱିତୀୟ ରାଣୀ ଲଳିତା ଦେବୀଙ୍କ ପୁତ୍ର ଭାଗିରଥୀ କୁମାରଙ୍କୁ ସିଂହାସନ ପାଇଁ ମନୋନୀତ କରି ଚିରଦିନ ପାଇଁ ରାଜ୍ୟ ଛାଡି ଚାଲିଯାଉଛନ୍ତି । ଧୈର୍ଯ୍ୟର ସହିତ ପରିସ୍ଥିତିର ମୁକାବିଲା କରି ରାଜ୍ୟରେ ଶାନ୍ତି ଶୃଙ୍ଖଳା ଫେରାଇ ଆଣିବା ପାଇଁ ସେ ରାଜଗୁରୁଙ୍କୁ ସେହି ପତ୍ରରେ ମଧ୍ୟ ନିବେଦନ କରିଥିଲେ । ପତ୍ରଟି ରାଜଗୁରୁଙ୍କ ହସ୍ତଗତ ହେଲାବେଳକୁ ରାଜା ଚାଲିଯାଇଥିଲେ । ରାଜଗୁରୁ ରାଜାଙ୍କର ପତ୍ରର ନିବେଦନ ମତେ କାଳ ବିଳମ୍ୱ ନକରି କୁମାର ଭାଗିରଥୀଙ୍କ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ନେଇ ଆସିଲେ । ଭାଗିରଥୀ ବୀରକେଶରୀ ଦେବ ନାମରେ ଅଭିହିତ ହୋଇ ଓଡ଼ିଶାର ପରବର୍ତ୍ତୀ ଗଜପତି ହେଲେ । ମାତ୍ର ବିପକ୍ଷ ମେଳିଆ ଦଳ ଏହାର ପ୍ରତିବାଦ କରି ଗଣ୍ଡଗୋଳ ଆରମ୍ଭ କରିଦେଲେ । ଚତୁଃପାର୍ଶ୍ୱରେ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ ହେଲା । ରାଜା ଓ ରାଜମାତାଙ୍କୁ ରାଜଗୁରୁ ଅନ୍ୟତ୍ର ପଠାଇ ଦେଇ ବିଦ୍ରୋହର ମୁକାବିଲା ପାଇଁ ଯଥାଶକ୍ତି ଉଦ୍ୟମ କଲେ । କ୍ରମେ ଅନେକ ବିଦ୍ରୋହୀ ସେମାନଙ୍କର ଭୁଲ୍ ବୁଝି ପାରିଲେ । ରାଣୀ କଳାବତୀ ଅନୁତାପ କଲେ ଏବଂ ତାଙ୍କର ଜ୍ୟେଷ୍ଠପୁତ୍ର କୃଷ୍ଣ ରାୟ ପିତାଙ୍କର ଇଚ୍ଛାପତ୍ରକୁ ସମ୍ମାନ ଜଣାଇ ସିଂହାସନ ପାଇଁ ଦାବି କଲେ ନାହିଁ । ବିଦ୍ରୋହ କ୍ରମେ ପ୍ରଶମିତ ହେଲା । ଗଜପତି ବୀରକେଶରୀ ଦେବ ଖୋର୍ଦ୍ଧା ସିଂହାସନରେ ଅଭିଷିକ୍ତ ହେଲେ ।

ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ନରସିଂହପୁରର ରାଜା ମନ୍ଦର ଧର ମାନସିଂହ ହରିଚନ୍ଦନଙ୍କର ରାଜକୀୟ ଆତିଥ୍ୟ ଲାଭ କରି ସେଠାରେ ପ୍ରାୟ ଏକବର୍ଷ ଦଶମାସ କଟାଇଥିଲେ । ପରମଲକ୍ଷ୍ମୀଙ୍କ ବିନା ସେ ନିଃସଙ୍ଗ ଅନୁଭବ କରୁଥିଲେ ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିନା ତାଙ୍କର ଜୀବନ ଦୁର୍ବିସହ ହୋଇ ଉଠୁଥିଲା । ଶେଷରେ ରାଜା ଓ ତାଙ୍କର ଯବନୀ ରାଣୀ ରେଜିଆ ଜହର ପାନ କରି ମୃତ୍ୟୁବରଣ କଲେ ।

ଉକ୍ତ ଐତିହାସିକ କଥାବସ୍ତୁରୁ ଜଣାଯାଏ ଯେ ଅଷ୍ଟାଦଶ ଶତକରେ ବିଧର୍ମୀ ଓ ପତିତମାନଙ୍କ ପାଇଁ ଶ୍ରୀମନ୍ଦିରରେ ପ୍ରବେଶ ନିଷେଧ ଥିଲା । ରାଜଗୁରୁଙ୍କ ନେତୃତ୍ୱରେ ବ୍ରାହ୍ମଣ ପଣ୍ଡିତ ଓ ପୁରୋହିତଗଣ ଶ୍ରୀମନ୍ଦିରର ପ୍ରଶାସନରେ ସର୍ବଶକ୍ତିମାନ ଥିଲେ ଏବଂ ସେମାନଙ୍କ ନିକଟରେ ଗଜପତି ମହାରାଜା ମଧ୍ୟ ଅସହାୟ ହୋଇପଡୁଥିଲେ । ବାଇଶିପାହାଚରୁ ଗଜପତି ରାମଚନ୍ଦ୍ର ଦେବଙ୍କ ଭଳି ରାଜାଙ୍କୁ ଫେରାଇ ଦେବା ଶ୍ରୀମନ୍ଦିର ଇତିହାସରେ ଏକ ଅଭୂତପୂର୍ବ ଘଟଣା ଥିଲା । ଶ୍ରୀଜଗନ୍ନାଥ ଆଦିବାସୀଙ୍କର ଦେବତା ଥିବା ସମୟରେ ତାଙ୍କର ଦର୍ଶନ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥିଲା । ଶ୍ରୀଜଗନ୍ନାଥଙ୍କ ଆର୍ଯ୍ୟୀକରଣ ପରେ ଏହି ମୁକ୍ତ ପରମ୍ପରାକୁ ଭାଙ୍ଗିବା ପାଇଁ ବ୍ରାହ୍ମଣ ପୁରୋହିତମାନେ ସକ୍ଷମ ହୋଇପାରୁ ନଥିଲେ । ଶ୍ରୀମନ୍ଦିରରେ ସାମ୍ୟ ମୈତ୍ରୀର ଭାବ ମୂଳରୁ ଥିଲା ଏବଂ ଆଜି ବି ତାହା ରହିଛି, ମାତ୍ର ସେସବୁର ରଙ୍ଗରସ ବଦଳି ଯାଇଛି ।

ଅଧ୍ୟାପକ, ଇତିହାସ ବିଭାଗ,
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ,କାଇପଦର, ଖୋର୍ଦ୍ଧା



# ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଏକ ତାତ୍ତ୍ୱିକ ଅନୁଶୀଳନ

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ଦୋଳଯାତ୍ରା, ଚନ୍ଦନଯାତ୍ରା, ସ୍ନାନଯାତ୍ରା, ରଥଯାତ୍ରା ଓ ଝୁଲଣଯାତ୍ରା ପ୍ରଧାନ । ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ କେବଳ ସ୍ନାନଯାତ୍ରା ଓ ରଥଯାତ୍ରାରେ ଚତୁର୍ଦ୍ଧାମୂର୍ତ୍ତି ରତ୍ନସିଂହାସନରୁ ଆସି ସାଧାରଣ ଜନତାଙ୍କୁ ଦର୍ଶନ ଦେଉଥିବା ବେଳେ ଅନ୍ୟସବୁ ଯାତ୍ରାରେ ଶ୍ରୀଜୀଉଙ୍କର ଚଳନ୍ତି ପ୍ରତିମା ବିଜେ କରନ୍ତି । ଏକଥା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଶ୍ରୀଜଗନ୍ନାଥ ହେଉଛନ୍ତି ହିନ୍ଦୁ ଜଗତର ଏକମାତ୍ର ଠାକୁର, ଯିଏ ନିଜ ବଡଭାଇ ବଳଭଦ୍ର, ଭଉଣୀ ଦେବୀ ସୁଭଦ୍ରା ଏବଂ ସୁଦର୍ଶନଙ୍କ ସହ ନଅ ଦିନ ଧରି ଶ୍ରୀମନ୍ଦିରରୁ ବାହାରି ନିଜ ଜନ୍ମସ୍ଥାନ ଜନକପୁରୀ ବା ଗୁଣ୍ଡିଚା ମନ୍ଦିରରେ ଅବସ୍ଥାନ କରନ୍ତି ।



ଅନେକଙ୍କ ଧାରଣା ଯେ ଆଷାଢମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ହେଉଥିବା ରଥଯାତ୍ରା ହିଁ ଶ୍ରୀଜଗନ୍ନାଥଙ୍କ ଏକମାତ୍ର ରଥଯାତ୍ରା । ଏଠାରେ ସ୍ପଷ୍ଟ କରିଦେବାକୁ ଉଚିତ ମନେକରୁଛି ଯେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଉଭୟ ମନ୍ଦିର ଭିତରେ ଓ ମନ୍ଦିର ବାହାରେ ମଧ୍ୟ ଅନୁଷ୍ଠିତ ହୁଏ । ଏହା ଆମକୁ ଆଶ୍ଚର୍ଯ୍ୟ ଲାଗିଲେ ମଧ୍ୟ ସତ୍ୟ ଅଟେ । ଶ୍ରୀମନ୍ଦିରର କୂର୍ମବେଢା ଭିତରେ ଅନୁଷ୍ଠିତ ରଥଯାତ୍ରା ବ୍ରହ୍ମପେଟିକା ରଥଯାତ୍ରା ନାମରେ ପରିଚିତ । ଏହା ସବୁବର୍ଷ ହୁଏନାହିଁ । କେବଳ ନବକଳେବର ସମୟରେ ଆଷାଢ ମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ବ୍ରହ୍ମପେଟିକା ଚାରିଚକ ବିଶିଷ୍ଟ ଗୋଟିଏ ରଥରେ ରଖାଯାଇ ଅନୁଷ୍ଠିତ ହୁଏ । କିନ୍ତୁ ପ୍ରତିବର୍ଷ ଆଷାଢମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ରଥଯାତ୍ରା ବିଶ୍ୱପ୍ରସିଦ୍ଧ ଅଟେ । ଏହିଦିନ ଚତୁର୍ଦ୍ଧାମୂର୍ତ୍ତି ତିନିଗୋଟି ରଥରେ ବିରାଜମାନ କରି ଶ୍ରୀମନ୍ଦିରରୁ ଗୁଣ୍ଡିଚାଘରକୁ ଯାତ୍ରା କରନ୍ତି । ଏହି ମନୋଜ୍ଞ ଯାତ୍ରାକୁ ଉପଭୋଗ କରିବା ପାଇଁ ତଥା ରଥାରୂଢ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରିବା ସହ ରଥ ଦଉଡିକୁ ଟାଣିବା ନିମନ୍ତେ ଶ୍ରୀକ୍ଷେତ୍ରରେ ଲକ୍ଷାଧିକ ଶ୍ରଦ୍ଧାଳୁଙ୍କ ଭିଡ ଜମିଥାଏ ।

କେବଳ ସେତିକି ନୁହେଁ, ପାଠକ/ପାଠିକାଙ୍କ ଅବଗତି ନିମନ୍ତେ ଏକଥା ସୂଚାଇଦେବାକୁ ଉଚିତ ମନେକରୁଛି ଯେ, ଶ୍ରୀଗୁଣ୍ଡିଚାଙ୍କ ସହ ଜଗନ୍ନାଥ ସଂସ୍କୃତି ବା ଧର୍ମରେ ସୌର ଗୁଣ୍ଡିଚା, ଶୈବ ଗୁଣ୍ଡିଚା ଏବଂ ଶାକ୍ତଗୁଣ୍ଡିଚା ମଧ୍ୟ ପାଳିତ ହୁଏ । ବସନ୍ତ ମାଘ ସପ୍ତମୀଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ସୂର୍ଯ୍ୟନାରାୟଣଙ୍କ ରଥଯାତ୍ରାକୁ ସୌରଗୁଣ୍ଡିଚା, ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଅନୁଷ୍ଠିତ ଈଶାନେଶ୍ୱର ମହାଦେବଙ୍କ ରଥଯାତ୍ରାକୁ





ଶୈବଗୁଣ୍ଡିଚା, ଆଶ୍ୱିନମାସ ଶୁକ୍ଳପକ୍ଷ ପ୍ରତିପଦାଠାରୁ ନବମୀ ପର୍ଯ୍ୟନ୍ତ ଦୁର୍ଗାମାଧବଙ୍କ ରଥଯାତ୍ରାକୁ ଶାକ୍ତ ଗୁଣ୍ଡିଚା କୁହାଯାଉଥିବା ବେଳେ ଆଷାଢ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିଠାରୁ ଦଶମୀ ତିଥି ପର୍ଯ୍ୟନ୍ତ ନଅଦିନ ବ୍ୟାପୀ ରଥଯାତ୍ରା ଶ୍ରୀଗୁଣ୍ଡିଚା ନାମରେ ଅଭିହିତ । ଏହି ଚାରିଗୋଟି ଗୁଣ୍ଡିଚା ମଧ୍ୟରେ ଶ୍ରୀଗୁଣ୍ଡିଚା ସର୍ବଶ୍ରେଷ୍ଠ ଏବଂ ବିଶ୍ୱବିଖ୍ୟାତ । ଏହି ଶ୍ରୀଗୁଣ୍ଡିଚା ଯାତ୍ରାକୁ କେହି କେହି ଘୋଷଯାତ୍ରା, ଦକ୍ଷିଣାଭିମୁଖୀ ଯାତ୍ରା, ନବଦିନ ଯାତ୍ରା ଓ ଆଡପ ଯାତ୍ରା ମଧ୍ୟ କହିଥାନ୍ତି । ଏହି ରଥାରୂଢ ଜଗନ୍ନାଥଙ୍କ ଦର୍ଶନ କଲେ ମନୁଷ୍ୟ ଜନ୍ମ ସାର୍ଥକ ହୁଏ ବୋଲି ବିଶ୍ୱାସ ଅଛି । ତେଣୁ କୁହାଯାଇଛି–

''ରଥସ୍ଥଂ ଚ ଜଗନ୍ନାଥଂ ପ୍ରସ୍ଥାନଂ ଗୁଣ୍ଡିଚାଗୃହମ୍
ଯ ପଶ୍ୟନ୍ତି ନରଶ୍ରେଷ୍ଠସ୍ତେ ଧନ୍ୟା ଭୁବନତ୍ରୟୋ ।''

ଏହି ରଥଯାତ୍ରାକୁ ତିନିଭାଗରେ ବିଭକ୍ତ କରାଯାଇପାରେ । ରଥାରୋହଣ ପୂର୍ବକ ଗୁଣ୍ଡିଚା ମନ୍ଦିରକୁ ବିଜେ (ପ୍ରଥମଭାଗ), ଗୁଣ୍ଡିଚା ମନ୍ଦିରରେ ଅବସ୍ଥାନ(ଦ୍ୱିତୀୟଭାଗ) ଓ ଫେରନ୍ତି ଯାତ୍ରା ବା ବାହୁଡା ଯାତ୍ରା (ତୃତୀୟଭାଗ) ।

ତିନିରଥର ନିର୍ମାଣ କାର୍ଯ୍ୟ ଆନୁଷ୍ଠାନିକଭାବେ ଅକ୍ଷୟ ତୃତୀୟା ଦିନ ଆରମ୍ଭ ହୁଏ । ଏହିଦିନ ମନ୍ଦିର ପୁରୋହିତ ବନଯୋଗ ବିଧିରେ ରଥ ଅନୁକୂଳ ହୋମ କରନ୍ତି । ବିଘ୍ନବିନାଶକ ଶ୍ରୀଗଣେଶଙ୍କ ପୂଜା ପରେ ରଥ କାର୍ଯ୍ୟ ଆରମ୍ଭ ହୁଏ । ବଢେଇମାନଙ୍କ ଶାଢୀବନ୍ଧା କାର୍ଯ୍ୟ ପଡିଆକରଣ ସମ୍ପନ୍ନ କରିବା ପରେ ପଣ୍ଡାମାନେ ତିନିରଥକୁ ଅନୁକୂଳ କରିବା ଉଦ୍ଦେଶ୍ୟରେ ଆଜ୍ଞାମାଳ ଦେଇ ଭୋଗମଣ୍ଡପକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ତାଳବନରେ ଦେବତାମାନଙ୍କ ଦ୍ୱାରା ପ୍ରଦତ୍ତ ଶ୍ରୀବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ । ଏହାକୁ ଲଙ୍ଗଳଧ୍ୱଜ ବା ହଳଧ୍ୱଜ ବୋଲି ମଧ୍ୟ କୁହାଯାଏ । ଇନ୍ଦ୍ରଙ୍କ ପ୍ରଦତ୍ତ ଶ୍ରୀଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ । ଏହାର ଅନ୍ୟନାମ ଚକ୍ରଧ୍ୱଜ ବା ଗରୁଡ ଧ୍ୱଜ ଅଟେ । ସେହିପରି ମଧ୍ୟ ଦେବତାମାନଙ୍କ ଦ୍ୱାରା ପ୍ରଦତ୍ତ ଦେବୀ ସୁଭଦ୍ରାଙ୍କ ରଥର ନାମ ଦର୍ପଦଳନ ଅଟେ । ଏହାର ଅନ୍ୟନାମ ଦେବଦଳନ ବା ପଦ୍ମଧ୍ୱଜ ।

ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ରଥତ୍ରୟ ପାଞ୍ଚଗୋଟି ଉପାଦାନରେ ଗଠିତ । ସେଗୁଡିକ ହେଲା– କାଠ, ରଙ୍ଗ, କନା, ଜମ୍ଫୁରା ଏବଂ ଧାତୁ । କିନ୍ତୁ ଏଠାରେ ସ୍ପଷ୍ଟ କରିଦେବାକୁ ଉଚିତ ମନେକରୁଛି ଯେ ରଥ ନିର୍ମାଣ ପାଇଁ କାଠ ହିଁ ହେଉଛି ମୁଖ୍ୟ ଉପାଦାନ ଏବଂ ଅନ୍ୟ ଉପାଦାନ ସବୁ ଗୌଣ ଅଟେ ।

ଶ୍ରୀବଳଭଦ୍ରଙ୍କ ରଥର ଉଚ୍ଚତା ବତିଶ ହାତ ଓ ଦଶଆଙ୍ଗୁଳି ଅଟେ । ୭୬୩ ଖଣ୍ଡ କାଠରେ ନିର୍ମିତ ଏହି ରଥରେ ଚତୁର୍ଦ୍ଦଶ ଭୁବନର ପ୍ରତୀକଭାବେ ଚଉଦଟି ଚକ ଥାଏ । ଏହି ରଥରେ ସବୁଜ ଓ ଲାଲ୍ ରଙ୍ଗର କନା ମଣ୍ଡଣି କରାଯାଇଥିବା ବେଳେ ଏହି ରଥର ଅଧିଶ୍ୱର ଦେବତା ହେଉଛନ୍ତି ଶ୍ରୀବଳଭଦ୍ର ଓ ରାମକୃଷ୍ଣ । ତାଳଧ୍ୱଜ ରଥର ସାରଥୀ ହେଉଛନ୍ତି ମାତଳୀ ଏବଂ ରଥର ରକ୍ଷକ ଭାବେ ଭାସ୍କର ଓ ବାସୁଦେବ ବିରାଜମାନ । ଏହି ରଥରେ ଶଙ୍ଖ ସୁଚିତ ଅଙ୍ଗଦ ଓ ମେଘନାଦ ନାମରେ ଚାରିଗୋଟି କୃଷ୍ଣ ବର୍ଣ୍ଣର ଅଶ୍ୱ ଯୋଚା ହୁଅନ୍ତି । ଏହି ରଥର ପାର୍ଶ୍ୱଦେବତା ହେଲେ ପ୍ରଳମ୍ବାରୀ, ମହାଦେବ, ଗଣେଶ, ବାଇଶଭୁଜ, ନୃସିଂହ, ବଳରାମ, ନଟବର, ଅଙ୍ଗଦ, ବସୁଦେବ, ନାଚାମ୍ବର, ମଧୁକୈଟଭ, କାର୍ତ୍ତିକେଶ୍ୱର ଓ ଷଡାନନ । ରଥର ଧ୍ୱଜର ନାମ ଉନ୍ନନି ଏବଂ ରଥରେ ଦେବତାରୂପେ ବ୍ରହ୍ମା ଓ ମହେଶ୍ୱର ବିରାଜମାନ କରିଥାନ୍ତି । ରଥର ଓଲଟ ଶୁଆର ନାମ ଶ୍ରଦ୍ଧା ଓ ବିଶ୍ୱାସ । ରଥର ଅଧିଶ୍ୱରୀ ଦେବୀଭାବେ ବନଦୁର୍ଗାଙ୍କୁ ସ୍ଥାପନ କରାଯାଇଥିବା ବେଳେ ରଥର ଶିର ଦେଶରେ ଅନନ୍ତ ନାଗ ବିରାଜମାନ କରିଛନ୍ତି । ଏହି ରଥରେ ବାସୁକି ନାମକ ଦଉଡିକୁ ବ୍ୟବହାର କରାଯାଇଥାଏ ।

ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥର ଉଚ୍ଚତା ୩୩ହାତ ପାଞ୍ଚ ଆଙ୍ଗୁଳି ଅଟେ । ୧୬କଳାର ପ୍ରତୀକଭାବେ ଏହି ରଥରେ ୧୬ଟି ଚକଥାଏ । ଅଗ୍ରଭାଗରେ ଚକ୍ର ଓ ଗରୁଡ ଥିବାରୁ ଏହା ଚକ୍ରଧ୍ୱଜ ବା ଗରୁଡଧ୍ୱଜ ନାମରେ ପରିଚିତ । ଏହି ରଥର ରକ୍ଷକ ନୃସିଂହ ଓ ସାରଥୀ ମାତଳି । ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦାସ ନାମରେ ଚାରିଗୋଟି ଶ୍ୱେତ ଅଶ୍ୱ ଏହି ରଥରେ ବନ୍ଧା ହୁଅନ୍ତି । ଏହି ରଥକୁ ହଳଦିଆ ଓ ଲାଲ୍ କନାରେ ମଣ୍ଡଣି କରାଯାଇଥିବା ବେଳେ ରଥର ନେତର ନାମ ତ୍ରୈଲୋକ୍ୟମୋହିନୀ ଅଟେ । ଏହି ରଥର ପାର୍ଶ୍ୱଦେବତା ହେଲେ– ପଞ୍ଚମୁଖୀ ମହାବୀର, ମଧୁସୂଦନ, ଲକ୍ଷ୍ମଣ, ଚିନ୍ତାମଣି କୃଷ୍ଣ, ରାବଣ ଛତ୍ରଭଙ୍ଗ, ହରିହର, ପଣ୍ଡୁନୃସିଂହ ଓ ଗିରିଗୋବର୍ଦ୍ଧନ । ଏହି ରଥରେ ଶଙ୍ଖଚୂଡା ନାମକ ଚାରିଗୋଟି ଦଉଡି ଲାଗୁଥିବା ବେଳେ ଜୟବିଜୟ ଏହାର ଦ୍ୱାରପାଳ ଦାୟିତ୍ୱ ନିର୍ବାହ କରିଥାନ୍ତି । ରଥାଧିଶ୍ୱରଭାବେ ଶ୍ରୀଜଗନ୍ନାଥ ଓ ମଦନମୋହନ ବିରାଜମାନ କରିଥାନ୍ତି । ଏହି ରଥର ଚକ୍ରର ନାମ



ହେଲା ବିଷ୍ଣୁସିଦ୍ଧ, ବିଭୁତ, ଅଣିମା, ପ୍ରଦଧା, ଧୃ, ଜ୍ଞାନ, ପ୍ରେମ, ଆସକ୍ତ, ରତି, କେଳି, ସତ୍ୟ, ସୁସ୍ୱସ୍ତି, ଜାଗୃତି, ତୁରୀୟ, ଆମ ଏବଂ ନିର୍ବାଣ ।

ଦେବୀ ସୁଭଦ୍ରାଙ୍କ ଦର୍ପଦଳନ ରଥର ଉଚ୍ଚତା ୩୧ ହାତ ଓ ଏହା ୫୯୩ଖଣ୍ଡ କାଠରେ ନିର୍ମିତ । ଏହି ରଥରେ ଦ୍ୱାଦଶ ଯୋଗ ବା ଦ୍ୱାଦଶ ଦିବାକରଙ୍କ ପ୍ରତୀକଭାବେ ୧୨ଟି ଚକଥାଏ । କୃଷ୍ଣ ବସ୍ତ୍ର ଅଥବା ପୀତବସ୍ତ୍ରାବୃତ ଏହି ରଥର ରକ୍ଷକ ଜୟଦୁର୍ଗା ଏବଂ ସାରଥୀ ଅର୍ଜୁନ ଅଟନ୍ତି । ରୋଚିକା, ମୋଚିକା, ଜିତା ଓ ଅପରାଜିତା ନାମରେ ଚାରିଗୋଟି ଗେରୁଆ ରଙ୍ଗର ଅଶ୍ୱ ଏହି ରଥରେ ବନ୍ଧା ହୁଅନ୍ତି । ଏହି ରଥର ପାର୍ଶ୍ୱଦେବୀ ହେଉଛନ୍ତି– ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ଉମା, ହରଚଣ୍ଡୀ, ରାମଚଣ୍ଡୀ, ମଙ୍ଗଳା, ବରାହୀ, କାତ୍ୟାୟିନୀ ଓ ଅଘୋରା । ଏହି ରଥର ରକ୍ଷୟତ୍ରୀ ରୂପେ ଉଗ୍ରଚଣ୍ଡୀ ବିଜେ ହୋଇଥାନ୍ତି । ରଥର ଅଧିଶ୍ୱରୀ ଦେବୀରୂପେ ସୁଭଦ୍ରା ବିଜେ କରନ୍ତି । ଏହି ରଥରେ ସ୍ୱର୍ଣ୍ଣଚୂଡା ନାମରେ ଚାରିଗୋଟି ଦଉଡି ଲଗାଯାଇଥାଏ । ରଥରେ ଶୋଭାପାଉଥିବା ଦୁଇଟି ଓଲଟ ଶୁଆଙ୍କ ନାମ ସୁପର୍ଣ୍ଣ ଓ ଦ୍ୱାସୁପର୍ଣ୍ଣ ଅଟେ । ରଥର ଦେବୀ ରୂପେ ଶ୍ରୀ ଓ ଭୂ ବିଜେ ହୋଇଥାନ୍ତି ।

ଏକଥା ମଧ କୁହାଯାଇଛି ଯେ, ତିନିରଥର ଚକସଂଖ୍ୟା ୪୨ ଅର୍ଥାତ୍ ୧୬+୧୪+୧୨= ୪୨ । ଗୁଣ୍ଡିଚା ଦିନ ୪୨ ଚକ ଯିବ ଓ ବାହୁଡା ଦିନ ୪୨ଚକ ଆସିବ । ଏହାର ଅର୍ଥ ହେଲା ୪୨+୪୨= ୮୪ । ସୁତରାଂ ହେ ଜୀବ ! ଯଦି ଉଭୟ ଗୁଣ୍ଡିଚା ଓ ବାହୁଡା ଦିନ ୪୨ ଓ ୪୨ ଏହିପରି ୮୪ଚକ ଗଡୁଥିବାର ଏ ଯାତ୍ରା ଦେଖିବୁ, ତେବେ ତୁ ନିଶ୍ଚୟ ୮୪ଲକ୍ଷ ଯୋନି ଜନ୍ମରୁ ମୁକ୍ତି ପାଇବୁ ଏବଂ ତୋର ନିର୍ବାଣ ହେବ ।

ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀସୁଭଦ୍ରାଙ୍କ ରଥର ସାରଥୀ ଯଥାକ୍ରମେ– ହରିଦ୍ରାବର୍ଣ୍ଣ, ସବୁଜବର୍ଣ୍ଣ ଓ କୃଷ୍ଣବର୍ଣ୍ଣର ପୋଷାକ ପରିଧାନ କରିଥାନ୍ତି ।

ବର୍ତ୍ତମାନ ଏକ କଥା ଉପରେ ସୂଚନା ଦେବାକୁ ଉଚିତ ମନେକରୁଛି । ସମସ୍ତେ ଜାଣନ୍ତି ଯେ, ମା' ମଙ୍ଗଳାଙ୍କଠାରୁ ସ୍ୱପ୍ନାଦେଶ ପାଇଲା ପରେ ନବକଳେବର ପାଇଁ ଦାରୁ ସଂଗ୍ରହ ହୋଇଥାଏ । ଚତୁର୍ଦ୍ଧାମୂର୍ତ୍ତି ପାଇଁ ଚାରିଗୋଟି ଦାରୁ ବ୍ୟତୀତ ୧୨୮ଖଣ୍ଡ ନିମକାଠ ସଂଗ୍ରହ କରାଯାଇ ସେଥିରେ ଦ୍ୱାରପାଳ, ସାରଥୀ, ପାର୍ଶ୍ୱଦେବତା, ବାଡ, ଅଶ୍ୱ, ଶୁଆ ପ୍ରଭୃତି ନିର୍ମାଣ କରାଯାଏ ଏବଂ ଏହା ସେହି ବର୍ଷ ରଥ ତ୍ରୟରେ ବ୍ୟବହୃତ ହେଉଥିଲେ ମଧ ଆଗାମୀ ନବକଳେବର ପର୍ଯ୍ୟନ୍ତ ସଂରକ୍ଷିତ ହୋଇ ପ୍ରତିବର୍ଷ ରଥରେ ବ୍ୟବହୃତ ହୋଇଥାଏ ।

ତିନିଗୋଟି ରଥର ନିର୍ମାଣ ପାଇଁ ପ୍ରଥମେ ଶ୍ରୀପଞ୍ଚମୀ ଦିନ କାଠକଟା ଅନୁକୂଳ ହୁଏ । ଶ୍ରୀପଞ୍ଚମୀଦିନ କାଠଗୁଡିକର ଚିରାକାର୍ଯ୍ୟ ଆରମ୍ଭ ହୁଏ ଏବଂ ଅକ୍ଷୟ ତୃତୀୟା ଦିନ ବଢେଇମାନେ ତିନି ରଥର ନିର୍ମାଣ କାର୍ଯ୍ୟ ଆରମ୍ଭ କରନ୍ତି । ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ପୂର୍ବରୁ ଶ୍ରୀଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ଆସେ । ମାତ୍ର ରଥଖଳା ନିକଟରେ ମା' ଚର୍ଚ୍ଚିକାଙ୍କୁ ପୂଜା କରାଯାଇ ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ନୃସିଂହ ଚତୁର୍ଦ୍ଦଶୀ ଦିନ ରାଜ ଅନୁକୂଳ, ଶ୍ରୀକ୍ଷେତ୍ର ଭଉଁରୀ ଦିନ ଚକ ନିର୍ମାଣ ଓ ଦେବସ୍ନାନ ପୂର୍ଣ୍ଣମୀ ଦିନ ପୂର୍ଣ୍ଣାଙ୍ଗ ତିନିରଥ ସୁସଜ୍ଜିତ ହୋଇ ତତା ପଛୁଆଭାବେ ଟଣାହୋଇ ଆସି ଅରୁଣସ୍ତମ୍ଭ ନିକଟରେ ଯଥାକ୍ରମେ ନନ୍ଦିଘୋଷ, ଦେବଦଳନ ଓ ତାଳଧ୍ୱଜ ରଥକୁ ଉତ୍ତରାଭିମୁଖୀ କରି ଅବସ୍ଥାପିତ କରାଯାଏ । ରଥ ନିର୍ମାଣ କାର୍ଯ୍ୟରେ ଦୁଇପ୍ରକାର କାଠର ଆବଶ୍ୟକତା ପଡିଥାଏ । ଧଉରା, ଫାସି ଆଦି ଶକ୍ତ ଓ ନିଦାକାଠରେ ରଥଚକ, ଦଣ୍ଡା ଓ ଅନ୍ୟାନ୍ୟ ମୁଖ୍ୟଅଂଶ ନିର୍ମିତ ହେଉଥିବା ବେଳେ ମହି, ଶିମିଳି ଓ ପାଳଧୁଆ ଆଦି ହାଲୁକା କାଠରେ ଶୁଆ, ରଥଦେବୀ, ପାରାଭାଡି ଆଦି ନିର୍ମିତ ହୋଇଥାଏ ।

ରଥ ନିର୍ମାଣ ସମୟରେ ଦଶଜଣ ମହାରଣାଙ୍କୁ ପୂଜାଶାଢୀ ଦିଆଯାଏ । ଏହି ଶାଢୀବନ୍ଧା ମହାରଣାଙ୍କ ନିର୍ଦ୍ଦେଶରେ ଅନ୍ୟ ମହାରଣାମାନେ ରଥ ନିର୍ମାଣ କାର୍ଯ୍ୟ କରନ୍ତି । ପ୍ରତି ରଥ ପାଇଁ ତିନିଜଣ ଶାଢୀବନ୍ଧା ମହାରଣା ଏବଂ ସେମାନଙ୍କ ମଧ୍ୟରୁ ଜଣେ ମୁଖ୍ୟ ମହାରଣା ଅଟନ୍ତି । ଏତଦ୍‌ବ୍ୟତୀତ ଆଉ ଜଣେ ମହାରଣା ଅଛନ୍ତି ଯେ ସବୁ କାମ କରିପାରନ୍ତି । ମୁଖ୍ୟ ମହାରଣା ରଥତ୍ରୟରେ କାର୍ଯ୍ୟ ତଦାରଖ କରିବା ସହ କମାର ଓ ଭୋଇଙ୍କ କାର୍ଯ୍ୟ ମଧ ତଦାରଖ କରନ୍ତି ।

ସେତେବେଳେ ଶ୍ରୀମନ୍ଦିର ଓ ଗୁଣ୍ଡିଚା ମନ୍ଦିର ମଧ ଭାଗରେ ଥିବା ବଡଶଙ୍ଖଠାରେ ମାଳିନୀ ନଦୀ ପ୍ରବାହିତ ହେଉଥିଲା । ତେଣୁ ଶ୍ରୀମନ୍ଦିରରୁ ଶ୍ରୀଜୀଉମାନେ ପହଣ୍ଡିରେ ଆସି ରଥାରୂଢ ହୋଇ ଏହି ନଦୀକୂଳରେ ପହଞ୍ଚୁଥିଲେ । ତା'ପରେ ନଦୀ ପାର ହୋଇ ଅନ୍ୟ ତିନୋଟି ରଥରେ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରୁଥିଲେ । ଇତିହାସରୁ ଜଣାଯାଏ ଯେ, ଗଙ୍ଗବଂଶର ପ୍ରଥମ ଭାନୁଦେବ

(୧୨୬୪-୧୨୭୮) ଏ ଅସୁବିଧାକୁ ଦୂର କରିବା ପାଇଁ ମାଳିନୀ ନଦୀକୁ ପୋତି ଛଅରଥ ପରିବର୍ତ୍ତେ ତିନିଗୋଟି ରଥରେ ରଥଯାତ୍ରା ପ୍ରଚଳନ କରିଥିଲେ ।

ଶ୍ରୀଜୀଉଙ୍କୁ ଦୁଇ ପ୍ରକାରରେ ପହଣ୍ଡି କରାଯାଏ । ସେଗୁଡ଼ିକ ହେଲା ଧାଡ଼ି ପହଣ୍ଡି ଓ ଗୋଟି ପହଣ୍ଡି । ଶ୍ରୀଜୀଉଙ୍କ ରଥ ଉପରକୁ ବିଜେ ସମୟରେ ଧାଡ଼ିପହଣ୍ଡି ଓ ବାହୁଡ଼ା ବିଜେ ସମୟରେ ଗୋଟି ପହଣ୍ଡି ହୋଇଥାଏ । ଧାଡ଼ି ପହଣ୍ଡିରେ ଠାକୁରମାନେ ଜଣକ ପରେ ଜଣେ ରଥାରୂଢ଼ ହୋଇଥିବା ବେଳେ ଗୋଟି ପହଣ୍ଡିରେ ଗୋଟିଏ ଠାକୁର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପରେ ଅନ୍ୟ ଠାକୁରଙ୍କ ପହଣ୍ଡି ହୋଇଥାଏ । ଏଠାରେ ଏକ ପ୍ରଶ୍ନ ଉଠେ ଯେ, ଶ୍ରୀଜୀଉଙ୍କ ପହଣ୍ଡି କେବଳ କ'ଣ ଉଭୟ ରଥଯାତ୍ରା ଓ ବାହୁଡ଼ାଯାତ୍ରା ସମୟରେ ଅନୁଷ୍ଠିତ ହୋଇଥାଏ ? ଏହା ସ୍ପଷ୍ଟ କରିଦେବା ଉଚିତମନେ କରୁଛି ଯେ ବର୍ଷକ ମଧ୍ୟରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ପହଣ୍ଡି ସର୍ବମୋଟ ଛଅଥର ହୋଇଥାଏ । ଏଥିମଧ୍ୟରୁ ତିନିଥର ଧାଡ଼ିପହଣ୍ଡି ଓ ତିନିଥର ଗୋଟି ପହଣ୍ଡି ଅନୁଷ୍ଠିତ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ସ୍ନାନ ଯାତ୍ରାରେ ସ୍ନାନବେଦୀକୁ, ଶ୍ରୀଗୁଣ୍ଡିଚା ଦିନ ରଥକୁ ଏବଂ ବାହୁଡ଼ା ଦଶମୀ ଦିନ ଗୁଣ୍ଡିଚା ମନ୍ଦିରରୁ ରଥକୁ ଆସିଲା ବେଳେ ଧାଡ଼ି ପହଣ୍ଡିରେ ଠାକୁରମାନେ ବିଜେ କରିଥିବା ବେଳେ ସ୍ନାନବେଦୀରୁ ଅଣସର ପିଣ୍ଡିକୁ, ଶ୍ରୀଗୁଣ୍ଡିଚା ଯାତ୍ରାରେ ରଥରୁ ଗୁଣ୍ଡିଚା ମନ୍ଦିରକୁ ଏବଂ ନୀଳାଦ୍ରିବିଜେ ଦିନ ଠାକୁରମାନେ ରତ୍ନସିଂହାସନକୁ ବିଜେ କରିବା ଅବସରରେ ଗୋଟି ପହଣ୍ଡି ହୋଇଥାଏ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାକୁ ଅଧିକ ସୁସଂଗଠିତ କରିବା ପାଇଁ ଗଜପତି ଅନଙ୍ଗ ଭୀମଦେବ ୩୬ ପ୍ରକାର ସେବକ ନିଯୁକ୍ତ କରିଥିଲେ । ସେମାନେ ହେଲେ (୧) ରଥାକାର ନାୟକ, (୨)ତଳ ବଢ଼େଇ, (୩) ଭାଇ ବଢ଼େଇ, (୪) ରୂପ ଖଞ୍ଜା ବଢ଼େଇ, (୫) ମୁଣ୍ଡିମରା ମହାରଣା, (୬) ତାମ୍ବରା, (୭)କରତିଆ, (୮) ଗରଗରିଆ, (୯) ଦିହୁଡ଼ିଆ, (୧୦)ଖୁଣ୍ଟିଆ, (୧୧) ଉଶାଳିଆ, (୧୨) ପିଣ୍ଡିକାଆ, (୧୩)ଦୋଳିଆ, (୧୪) ପହଣ୍ଡିଆ, (୧୫) ରଥଜଗିଆ, (୧୬)ଜଗିଆ, (୧୭) ବଡ କାଠିଆ, (୧୮) ରଥ ମୁହୁଲି, (୧୯) ରଥ ଘଣ୍ଟୁଆ, (୨୦) ରଥ ବଜନ୍ତ୍ରୀ, (୨୧) ରଥ ଖରକା, (୨୨) ରଥ ଦଳାଇ, (୨୩) ରଥ ଭୋଇ, (୨୪) ରଥ ପାଇକ, (୨୫) ଚୋପଦାର, (୨୬) ଛତ୍ରକାର, (୨୭)ଚିତ୍ରକାର, (୨୮) ଧ୍ୱଜକାର, (୨୯) ଚକାଅପସର ଯୋଗାଣିଆ, (୩୦)ଦରଜୀ, (୩୧) କମାର କଣ୍ଟା, (୩୨) ସୁତଲି, (୩୩)ଦଉଡ଼ି ବାଳା, (୩୪) ଚାପଦଳାଇ, (୩୫) ବଇଗୁରୁ ଓ (୩୬) ଡାହୁକ । କହିବା ବାହୁଲ୍ୟ ଯେ, ରଥଯାତ୍ରାରେ ଦଇତାପତି, ପତି ମହାପାତ୍ର, ଖୁଣ୍ଟିଆ, ମେକାପ, ସୁପକାର, ସୁଆର, ମହାସୁଆର ଓ ପ୍ରତିହାରୀ ସେବକମାନଙ୍କ ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ।

ପ୍ରଥମେ ଚକ୍ର ସୁଦର୍ଶନ ଓ ଦେବୀ ସୁଭଦ୍ରା ଧାଡ଼ି ପହଣ୍ଡିରେ ଆସୁଥିଲେ ମଧ୍ୟ ଏହି ମୂର୍ତ୍ତି ଦ୍ୱୟଙ୍କୁ ଦଇତାମାନେ ପହଣ୍ଡି ବିଜେ ନକରି ପ୍ରଥମେ ସୁଦର୍ଶନଙ୍କୁ କାନ୍ଧରେ ଟେକିନେଇ କୁଣ୍ଡଳି ସଦୃଶ ଗୋଟିକ ପରେ ଗୋଟିଏ କ୍ରମରେ ତିନିରଥର ଚତୁଃପାର୍ଶ୍ୱରେ ବୁଲାଇ ନେଇ ଦେବୀ ସୁଭଦ୍ରାଙ୍କ ରଥରେ ବିଜେ କରାନ୍ତି । ଏହାପରେ ଦେବୀ ସୁଭଦ୍ରା ୩ରଥକୁ ପ୍ରଦକ୍ଷିଣ କରି ଦେବଦଳନ ରଥରେ ରଥାରୂଢ଼ା ହୁଅନ୍ତି । ଦେବୀ ସୁଭଦ୍ରାଙ୍କ ପରେ ଶ୍ରୀବଳଭଦ୍ର ନନ୍ଦିଘୋଷ ଓ ତାଳଧ୍ୱଜ ରଥ ପଶ୍ଚାତ୍ ପାର୍ଶ୍ୱଦେଇ ତାଳଧ୍ୱଜ ରଥ ସମ୍ମୁଖକୁ ଆସି ରଥାସୀନ ହୁଅନ୍ତି ଏବଂ ସର୍ବଶେଷରେ ଶ୍ରୀଜଗନ୍ନାଥ ନନ୍ଦିଘୋଷ ସମ୍ମୁଖ ଅରୁଣସ୍ତମ୍ଭ ପାର୍ଶ୍ୱଦେଇ ସ୍ୱୀୟ ରଥରେ ବିଜେ କରନ୍ତି ।

କଠୋପନିଷଦରେ ଆମ୍ଭମାନଙ୍କ ଶରୀରକୁ ରଥ ସହିତ ତୁଳନା କରାଯାଇଛି । ଶରୀର ଭିତରେ ବିରାଜିତ ଆତ୍ମା ପୁରୁଷଙ୍କୁ ରଥୀ ଏବଂ ବୁଦ୍ଧିକୁ ସାରଥୀ ଆଖ୍ୟା ଦିଆଯାଇଛି । ଏମାନେ ମନ ଅଶ୍ୱମାନଙ୍କୁ ଆୟତ୍ତ କରିପାରିବେ ବୋଲି କୁହାଯାଇଛି । ସୂକ୍ଷ୍ମ ଦୃଷ୍ଟିରୁ ବିବେଚନା କଲେ ଯିଏ ରଥ, ସିଏ ପଥ ଓ ସେହିଁ ହେଉଛନ୍ତି ଜଗନ୍ନାଥ । ବର୍ଷକରେ ଥରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଭାବଗତ ଐକ୍ୟ ପ୍ରତିଷ୍ଠା ପାଇଁ ବୋଧହୁଏ ଏ ରଥଯାତ୍ରାର ସୃଷ୍ଟି । ସେଥିପାଇଁ ଏହି କଥାକୁ ମର୍ମେ ମର୍ମେ ଅନୁଭବ କରି ସେଦିନ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କ କଣ୍ଠରୁ ଏହି କଥାହିଁ ଝରି ଉଠିଥିଲା –

''ରଥ ବୋଲେ ଆମିଦେବ ପଥବୋଲେ ଆମି
ମୂର୍ତ୍ତିବୋଲେ ଆମିଦେବ ହଁ । ସେ ଅନ୍ତର୍ଯ୍ୟାମୀ ।''

ଯୁଗାବତାର ଶ୍ରୀକୃଷ୍ଣ ଚୈତନ୍ୟ ମଧ୍ୟ ରଥଯାତ୍ରା ସମୟରେ ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆତ୍ମହରା ହୋଇ ଏକଥା କହିଛନ୍ତି–

''ବିଶ୍ୱମ୍ଭର ଜଗନ୍ନାଥକେ ଚଲାଇତେପାରେ

ଆପନଇଛାଏ ଚଲେ କରିତେ ବିହାର ।''

ବାଇଶି ପାହାଚ ଅତିକ୍ରମ କରି ଶ୍ରୀଜଗନ୍ନାଥ ଆଜି ରଥାରୂଢ଼, କିନ୍ତୁ ପଣ୍ଡିତମାନଙ୍କ ମତରେ ଏହା ବାଇଶି ପାହାଚ ନୁହେଁ ।



''ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ ହେ ନାଥ ନାରାୟଣ ବାସୁଦେବ''– ଏହା ବାଇଶି ଅକ୍ଷର ପ୍ରହଲ୍ଲାଦକୃତ ମନ୍ତ୍ର ।

ରଥଯାତ୍ରା ଦିନ ବଡ଼ିଭୋରରୁ ଆଳତି ଅବକାଶ ବଢ଼ିବା ପରେ ତିନିବାଡରେ ଠାକୁରମାନେ ଦୈନନ୍ଦିନ ବେଶ ହୁଅନ୍ତି । ସେଦିନ ସକାଳେ ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ଏବଂ ଠାକୁରମାନଙ୍କର ଅନ୍ୟାନ୍ୟ ନୀତି ସରିବା ପରେ ପାଳିଆ ଖୁଣ୍ଟିଆ ମଣିମା ଡାକ ଦିଅନ୍ତି । ଏହାପରେ ପହଣ୍ଡି ବିଜେ ଆରମ୍ଭ ହୁଏ । ପ୍ରଥମେ ଧାଡି ପହଣ୍ଡିରେ ଚକ୍ରରାଜ ସୁଦର୍ଶନ ବିଜେ ହୁଅନ୍ତି । ସେ ଜଗମୋହନ ସାତ ପାହାଚରେ ପହଞ୍ଚିଲେ ବଡଠାକୁରଙ୍କ ରୁନ୍ଧା ଫିଟାଯାଏ । ବଡଠାକୁର ସାତ ପାହାଚ ଅତିକ୍ରମ କଲେ ସୁଭଦ୍ରାଙ୍କ ରୁନ୍ଧା ଫିଟାଯାଏ । ସୁଭଦ୍ରା ସାତ ପାହାଚ ଅତିକ୍ରମ କଲେ ଶ୍ରୀଜଗନ୍ନାଥଙ୍କ ରୁନ୍ଧା ଫିଟାଯାଏ । ସାତ ପାହାଚ ଠାରେ ପ୍ରତ୍ୟେକ ଠାକୁର ରାଘବ ଦାସ ମଠ ତରଫରୁ ଯୋଗାଇ ଦିଆଯାଇଥିବା ଟାହିଆ ଲାଗି ହୁଅନ୍ତି ।

ଠାକୁରମାନେ ରଥରେ ବିଜେ ହେଲା ପରେ ଗଜପତି ମହାରାଜା ସୁବର୍ଣ୍ଣ ସମ୍ମାର୍ଜନୀରେ ଛେରା ପହଁରା କାର୍ଯ୍ୟ ସମ୍ପନ୍ନ କରନ୍ତି । ଏହାପରେ ରଥଯାତ୍ରା ଆରମ୍ଭ ହୁଏ । ଗୋଟିକ ପରେ ଗୋଟିଏ ରଥ ବଡ ଦାଣ୍ଡରେ ଯାଉଥିବା ବେଳେ ବାଟରେ ବିଭିନ୍ନ ମଠବାଡ଼ିରେ ପନ୍ତିଭୋଗ (ପଥଭୋଗ) ହୋଇଥାଏ । ଭକ୍ତମାନେ ପ୍ରବଳ ଆନନ୍ଦ ଓ ଉତ୍ସାହ ମଧ୍ୟରେ ଏହି ରଥ ତ୍ରୟଙ୍କୁ ଟାଣିଥାନ୍ତି ।

ଶ୍ରୀଗୁଣ୍ଡିଚାର ଚତୁର୍ଥ ଦିନ ଲକ୍ଷ୍ମୀ ବିଜୟୋତ୍ସବ, ସପ୍ତମଦିନ ସନ୍ଧ୍ୟା ଦର୍ଶନ, ଅଷ୍ଟମୀଦିନ ଦକ୍ଷିଣ ମୋଡ, ନବମୀ ଦିନ ତଥା ଦଶମୀ ତିଥିରେ ବାହୁଡା ଯାତ୍ରା ଓ ଲକ୍ଷ୍ମୀନାରାୟଣ ଭେଟ ଅନୁଷ୍ଠିତ ହୁଏ । ଏକାଦଶୀ ଦିନ ରଥରେ ତିନି ଠାକୁରଙ୍କର ସୁନାବେଶ ଓ ଦ୍ୱାଦଶୀ ଦିନ ନୀଳାଦ୍ରି ଉତ୍ସବ, ଲକ୍ଷ୍ମୀନାରାୟଣ କଳି ଓ ବନ୍ଦାପନାଦି ବିଧି ଦ୍ୱାରା ରଥଯାତ୍ରା କାର୍ଯ୍ୟ ସମ୍ପନ୍ନ ହୁଏ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଗଭୀର ତତ୍ତ୍ୱ ମଧ୍ୟରେ ପ୍ରବେଶ କରି ତର୍ଜମା କରିବାର ଶକ୍ତି ଆମର ନାହିଁ । ଶ୍ରୀକ୍ଷେତ୍ରର ରଥଯାତ୍ରା ଆଜି ବିଶ୍ୱବିଦିତ । ଏହି ଯାତ୍ରାର ଅନ୍ୟ ନାମ ହେଉଛି ପତିତପାବନ ଯାତ୍ରା । ଏଠି ଭାବର ଡୋରିରେ ବନ୍ଧାହୋଇ ଲୀଳାମୟ ଠାକୁର ଓହ୍ଲାଇ ଆସିଛନ୍ତି ରତ୍ନ ସିଂହାସନରୁ ବଡଦାଣ୍ଡକୁ । ଏଠି ନାହିଁ ଜାତି, ଧର୍ମ ଅଥବା ବର୍ଣ୍ଣର ଭେଦଭାବ । ସମୁଦ୍ର ଲହଡି ପରି ସମବେତ ଜନତାର ଚକ୍ଷୁରୁ ବୋହିଯାଉଥିବା ଆନନ୍ଦାଶ୍ରୁ ଦାରୁବ୍ରହ୍ମଙ୍କ ପାଦପଦ୍ମକୁ ଚୁମିଯାଉଛି । ଅପୂର୍ବ ଏ କ୍ଷେତ୍ର । ଅପୂର୍ବ ଏହାର ସଂସ୍କୃତି ଓ ବୈଚିତ୍ର୍ୟ । ଏହି ସଂସ୍କୃତିର ବୈଜୟନ୍ତୀ ସାରା ବିଶ୍ୱରେ ଉଡାଇ ଆମେରିକା ସମେତ ବିଶ୍ୱର ପ୍ରାୟ ୧୬୬ଟି ସ୍ଥାନରେ ଅନୁଷ୍ଠିତ ଏହି ଘୋଷଯାତ୍ରା ତା'ର ନାମକୁ ସାର୍ଥକ କରୁଛି ।

ଉପ ଶାସନ ସଚିବ
ଅର୍ଥ ବିଭାଗ, ଭୁବନେଶ୍ୱର

# ଜଗବନ୍ଧୁ

**ବିଜୟଲକ୍ଷ୍ମୀ ରାୟ**

ତୋହପରି ବନ୍ଧୁ ମୋର ଆଉ କେହି ନାହିଁ
ଏ ଭବ ସାଗରୁ ମୋତେ କର ପ୍ରଭୁ ! ତ୍ରାହି ॥
ମୁଁ ବୋଲି କିଛି ନାହିଁ ମୋର କେହି ନାହିଁ
ତୁହି ମୋ ସର୍ବସ୍ୱ ଅଟୁ ଜଗବନ୍ଧୁ ତୁହି ॥
କିପରି ପୂଜିବି ପ୍ରଭୁ ପଦ୍ମପାଦ ତୋର
କେଉଁ ଫୁଲେ ଗୁନ୍ଥିବି ମୁଁ ବିନା ଗଣ୍ଠି ହାର ॥



ମୋ ହୃଦ ମନ୍ଦିରେ ବିଜେ କର ବ୍ରହ୍ମରାସି
ଭକ୍ତି ପୁଷ୍ପେ ପଦ୍ମପାଦ ପୂଜୁଥିବି ନିତି ॥
ଅନ୍ତକାଳେ ଦେଖୁଥିବି ତୋ ଚକା ନୟନ
ଏତିକି ମାଗୁଣି ମୋର ହେ ମଧୁସୂଦନ ॥

ପ୍ଲଟ୍.ନଂ– ୬ କେ
ଚିନ୍ତାମଣିଶ୍ୱର, ଭୁବନେଶ୍ୱର







# ଶ୍ରୀଜୀଉଙ୍କ ବାହନ ଗରୁଡ଼ ଓ ଗରୁଡ଼ ସ୍ତମ୍ଭର ରହସ୍ୟ

ପଣ୍ଡିତ ଚକ୍ରଧର ଦାଶ

ଅନନ୍ତକୋଟି ବ୍ରହ୍ମାଣ୍ଡର ଅଧିପତି ପରଂବ୍ରହ୍ମପରମେଶ୍ୱର ଶ୍ରୀଜଗନ୍ନାଥ ବିଶ୍ୱ ମାନବ ଜାତିର ଆରାଧ୍ୟ ଦେବତା ରୂପେ ସ୍ୱୀକୃତ । କାରଣ, ସେ ବିଷ୍ଣୁ । ''ବେବେଷ୍ଟି ସର୍ବଂ ବିଶ୍ୱ ଇତି ବିଷ୍ଣୁ'' । ପଟ୍ଟରେ ତନ୍ତୁ ପରି ଯିଏ ସମସ୍ତ ବିଶ୍ୱରେ ବ୍ୟାପ୍ତ ଅଟନ୍ତି, ସେ ହିଁ ବିଷ୍ଣୁ । ସମସ୍ତ ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶ, ବୈଭବ, ଜ୍ଞାନ ଓ ବୈରାଗ୍ୟାଦି ଷଡ଼ଗୁଣ ଯୁକ୍ତ ହୋଇଥିବାରୁ ସେ ଭଗବାନ । 'ଈଶାନଶୀଳ ଇଚ୍ଛାମାତ୍ରେଣ ସକଳ ଜଗଦୁଦ୍ଧରଣ କ୍ଷମଃ ଈଶ୍ୱରଃ'' । ଇଚ୍ଛା ମାତ୍ରକେ ଯିଏ ସମଗ୍ର ଜଗତକୁ ଉଦ୍ଧାର କରିପାରନ୍ତି, ସେ ହିଁ ଈଶ୍ୱର । ଶ୍ରୀ ଏବଂ ଶ୍ରୀମାନ୍ ଅଭିନ୍ନ ଏବଂ ଏକତତ୍ତ୍ୱ ହୋଇଥିବାରୁ ଭଗବାନ୍ ଭକ୍ତାନୁଗ୍ରହ ବିଗ୍ରହରୂପେ ବିରାଜମାନ । ବିଶ୍ୱ ମାନବଜାତିର ହର୍ତ୍ତା, କର୍ତ୍ତା, ଗତିମୁକ୍ତିଦାତା ଶ୍ରୀଜଗନ୍ନାଥ ଯେଉଁ ପବିତ୍ର ଧାମକୁ ମହିମାମଣ୍ଡିତ କରିଆସିଛନ୍ତି– ସେହି ଧାମ ମର୍ତ୍ତ୍ୟ ବୈକୁଣ୍ଠ, ଭୂସ୍ୱର୍ଗ, ଶ୍ରୀକ୍ଷେତ୍ର, ଶ୍ରୀଧାମ, ଶ୍ରୀବିହାର, ଶଙ୍ଖକ୍ଷେତ୍ର ଏବଂ ପୁରୀ ଆଦି ଅନେକ ନାମରେ ସୁପରିଚିତ ।

ଚିତ୍ତାକର୍ଷକ ପ୍ରାକୃତିକ ଶୋଭା ସମ୍ପଦରେ ଭରା ରାଜାଧିରାଜ ଶ୍ରୀଜଗନ୍ନାଥଙ୍କ ନିବାସସ୍ଥଳ ଦିବ୍ୟ ଶ୍ରୀମନ୍ଦିର । ମହୋଦଧିର ଉତ୍ତାଳ ଢେଉର ସଂସ୍ପର୍ଶରେ ଆସୁଥିବା ସୁଶୀତଳ ସମୀର ଆମ୍ର, ନାରୀକେଳ, ଗୁବାକ, ବକୁଳ, କଦମ୍ବ, ଚମ୍ପକ, ମାଳତୀ, ଅଶୋକ, ମଲ୍ଲୀ, ଅଶ୍ୱସ୍ତ ଏବଂ ବଟାଦି ବୃକ୍ଷଲତାର ଅପୂର୍ବ ଶୋଭା ଶ୍ରୀକ୍ଷେତ୍ରକୁ କରିଛି ଅତୀବ ମନୋହର । ଅନେକ ମଠ ମନ୍ଦିର, ଆଶ୍ରମକୁ ନେଇ ଏ ପବିତ୍ର ପୀଠ ସଦାସର୍ବଦା ଚଳଚଞ୍ଚଳ । ବହୁ ଭକ୍ତ ସାଧୁ ସନ୍ଥଙ୍କ ଆଗମନରେ ଏ ଭୂମିର ପ୍ରତିଟି ଧୂଳିକଣା ପବିତ୍ର ।

ଉତ୍କଳୀୟ କଳା ଭାସ୍କର୍ଯ୍ୟ ଓ ସ୍ଥାପତ୍ୟର ବିସ୍ମୟକାରୀ ପ୍ରତୀକରୂପେ ଦଣ୍ଡାୟମାନ ଶ୍ରୀଜଗନ୍ନାଥ ମନ୍ଦିର ଅଗଣିତ ଭକ୍ତଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ । ଦୂରରୁ ଦେଖିଲେ ଶ୍ରୀମନ୍ଦିର ଏବଂ ନୀଳଚକ୍ରର ଧ୍ୱଜା ଭକ୍ତରସରେ ଆକର୍ଷିତ କରିଥାଏ ।

ରତ୍ନ ସିଂହାସନରେ ବିରାଜମାନ ଶ୍ରୀଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରାଙ୍କୁ ଦର୍ଶନ କରିବା ପାଇଁ ଯେଉଁ ପବିତ୍ର ସ୍ତମ୍ଭ ଦୁଇଟିକୁ ଭକ୍ତଗଣ ଭକ୍ତିସହକାରେ ପ୍ରଥମେ ଦର୍ଶନ ଏବଂ ସ୍ପର୍ଶ କରିଥାନ୍ତି, ତନ୍ମଧ୍ୟରୁ ପ୍ରଥମ ସ୍ତମ୍ଭଟିର ନାମ ଅରୁଣସ୍ତମ୍ଭ । ଯାହାକି ଶ୍ରୀମନ୍ଦିରର ପୂର୍ବ ଦିଗରେ ସିଂହଦ୍ୱାର ସମ୍ମୁଖରେ ଅବସ୍ଥିତ । ପ୍ରଶ୍ନଉଠେ ଅରୁଣତ ସୂର୍ଯ୍ୟଙ୍କ ସାରଥି, ସେ ଏଠାରେ ସ୍ଥାନ ପାଇଲେ କିପରି ? ସେ ତ ବିଷ୍ଣୁଙ୍କ ବାହନ ନୁହନ୍ତି ? ବିଷ୍ଣୁଙ୍କ ବାହନ ଗରୁଡ । ଐତିହାସିକଙ୍କ ମତରେ ଓଡ଼ିଶାର ମରହଟ୍ଟା ରାଜତ୍ୱ ସମୟରେ ଏହି ସ୍ତମ୍ଭକୁ କୋଣାର୍କରୁ ଆଣି ପୁରୀରେ ସ୍ଥାପନ କରାଇଥିଲେ । କଳା ମୁଗୁନି ପଥରରେ ନିର୍ମିତ ସ୍ତମ୍ଭଟିର ଉଚ୍ଚତା ୩୩ ଫୁଟ ୮ଇଞ୍ଚ, ଦୈର୍ଘ୍ୟ ୨୫ଫୁଟ ୨ଇଞ୍ଚ ଭୂମି ଉପରେ ଯେଉଁ ଚତୁଷ୍କୋଣୀ ପଥରପୀଠ ସ୍ତମ୍ଭଟିକୁ ଧରି ରଖିଛି, ତାର ଉଚ୍ଚତା ୪ଫୁଟ ୩ଇଞ୍ଚ ସ୍ତମ୍ଭଟି ଆକୃତିରେ ୧୬କୋଣିଆ । ସ୍ତମ୍ଭର ଉପରେ ପ୍ରଣାମ ମୁଦ୍ରାରେ ଅରୁଣ ଦେବ ଆସୀନ । ଅରୁଣ ହେଉଛନ୍ତି କଶ୍ୟପ ଏବଂ ବିନିତାଙ୍କ ପୁତ୍ର ଏବଂ ବିଷ୍ଣୁଙ୍କ ବାହନ ଗରୁଡଙ୍କ ଅଗ୍ରଜ । ଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପୂର୍ବରୁ ଭକ୍ତିର ଅର୍ଘ୍ୟ ପ୍ରଥମେ ଏହିଠାରେ ପ୍ରଦାନ କରି ମନ୍ଦିରକୁ ପ୍ରବେଶ କରିଥାନ୍ତି ।

ଶ୍ରୀମନ୍ଦିରରେ ଅନ୍ୟ ଏକ ବିସ୍ମୟକାରୀ, ପବିତ୍ର ଏବଂ ଦର୍ଶନୀୟ ସ୍ତମ୍ଭ ହେଲା– ଗରୁଡ ସ୍ତମ୍ଭ । ଏହାର ଅବସ୍ଥିତି ରତ୍ନସିଂହାସନ ସମ୍ମୁଖରେ । ବଡ ଦେଉଳ, ଜଗମୋହନ ଏବଂ ଭୋଗମଣ୍ଡପକୁ ନେଇ ଶ୍ରୀମନ୍ଦିର ନିର୍ମିତ । ଜଗମୋହନ ବା ନାଟମନ୍ଦିର ୧୬ଟି ଚାରିକୋଣିଆ ଖମ୍ବଦ୍ୱାରା ନିର୍ମିତ । ଖମ୍ବଗୁଡିକର ଚାରିପଟେ କେତେକ ଦେବାଦେବୀଙ୍କ ମୂର୍ତ୍ତି ଚିତ୍ର ଦୃଷ୍ଟିଗୋଚର



ହୁଏ । ସେମାନଙ୍କ ମଧ୍ୟରୁ ଗଣେଶ, କାଳିକା, ବିମଳା, ମଙ୍ଗଳା, ଗାୟତ୍ରୀ, ଚକ୍ର ନାରାୟଣ ନୃସିଂହ ଏବଂ ଚୈତନ୍ୟ ପ୍ରଭୃତି ପ୍ରଧାନ । ଛାତ ପାଖକୁ ଶ୍ରୀରାମଲୀଳା ତଥା ଶ୍ରୀକୃଷ୍ଣ ଲୀଳାର ଭିନ୍ନ ଭିନ୍ନ ଦୃଶ୍ୟର ଚିତ୍ର ଧାଡି ଧାଡି ହୋଇରହିଛି । ପୂର୍ବପଟେ ବିଷ୍ଣୁଙ୍କର ଅନନ୍ତ ଶୟନ ମୂର୍ତ୍ତି, କାଞ୍ଚି ବିଜୟ ଯାତ୍ରା, ତଥା ଦଶଅବତାର ମୂର୍ତ୍ତି ଚିତ୍ର ରହିଛି । ଜଗମୋହନ ମଧ୍ୟରେ ବିସ୍ମୟକାରୀ ଗରୁଡସ୍ତମ୍ଭ ବିଦ୍ୟମାନ । ଗରୁଡ ବିଷ୍ଣୁଙ୍କର ବାହନ ହୋଇଥିବାରୁ ଶ୍ରୀଜଗନ୍ନାଥଙ୍କର ମଧ୍ୟ ବାହନ । ଗରୁଡସ୍ତମ୍ଭ ବିଷୟରେ ଜାଣିବା ପୂର୍ବରୁ ଗରୁଡଙ୍କ ସ୍ୱରୂପ ଏବଂ ସେ କିପରି ବିଷ୍ଣୁଙ୍କ ବାହନ ହେଲେ- ତାହା ପ୍ରଥମେ ଜାଣିବା ଉଚିତ୍ । ପୌରାଣିକ କିମ୍ବଦନ୍ତୀ ଅନୁସାରେ ସତ୍ୟଯୁଗରେ ଦକ୍ଷ ପ୍ରଜାପତିଙ୍କର କଦ୍ରୁ ଓ ବିନତା ନାମରେ ଦୁଇ କନ୍ୟା ଥିଲେ । ପିତା କନ୍ୟାଦ୍ୱୟଙ୍କୁ ମହର୍ଷି କଶ୍ୟପଙ୍କୁ ବିବାହ କରାଇଥିଲେ । କାଳକ୍ରମେ କଦ୍ରୁଙ୍କଠାରୁ ଏକହଜାର ନାଗପୁତ୍ର ଜନ୍ମ ଲାଭ କଲେ । ବିନତା ଦେଇଥିବା ଅଣ୍ଡା ଦୁଇଟିରୁ ସନ୍ତାନ ଜନ୍ମ ନହେବାର ସେ ବ୍ୟାକୁଳ ହୋଇ ଗୋଟିଏ ଅଣ୍ଡା ଭାଙ୍ଗି ଦେବାରୁ ସେଥିରୁ ଅର୍ଦ୍ଧ ବିକଶିତ ଅରୁଣ ଜନ୍ମ ହୋଇଥିଲେ, ତାହାପରେ ସେ ଆକାଶକୁ ଉଡି ଯାଇ ସୂର୍ଯ୍ୟଙ୍କ ରଥର ସାରଥି ହୋଇଥିଲେ । କିଛିଦିନ ପରେ ଅନ୍ୟ ଅଣ୍ଡାରୁ ସର୍ପ ବିନାଶକାରୀ ଗରୁଡ ଜନ୍ମ ହେଲେ । ଜନ୍ମରୁ ଗରୁଡ ଥିଲେ ତେଜମୟ କାନ୍ତିଯୁକ୍ତ ଏବଂ ପ୍ରବଳ ପରାକ୍ରମୀ । ସେ ପ୍ରଜ୍ୱଳିତ ଅଗ୍ନିଙ୍କ ପରି ପ୍ରଜ୍ୱଳିତ ହୋଇ ଦଶଦିଗକୁ ପ୍ରକାଶିତ କରୁଥିଲେ । ସ୍ୱଇଚ୍ଛାରେ ନାନାଦିରୂପ ଧାରଣ କରିବାର କ୍ଷମତା ଲାଭ କରିଥିଲେ । ସେ ବିଶାଳ ଆକାର ଧାରଣ କରି ଭୟଙ୍କର ଶବ୍ଦ ପୂର୍ବକ ଆକାଶ ମାର୍ଗକୁ ଉଡିଯାଉଥିଲେ । ତାଙ୍କୁ ଦେବଗଣ ଭଗବାନଙ୍କ ଲୀଳା ଅବତାର ଭାବରେ ସ୍ତୁତି କରିବାକୁ ଲାଗିଲେ ।

ତ୍ୱଂ ପ୍ରଭୁସ୍ତପନଃସୂର୍ଯ୍ୟଃ ପରମେଷ୍ଠୀ ପ୍ରଜାପତିଃ
ତ୍ୱମିନ୍ଦ୍ରସ୍ତ୍ୱଂ ହୟମୁଖସ୍ତ୍ୱଂ ସର୍ବସ୍ତ୍ୱଂ ଜଗତ୍ପତିଃ
ତ୍ୱଂ ମୁଖୋ ପଦ୍ମଜୋ ବିପ୍ର ସ୍ତ୍ୱମଗ୍ନିଃ ପବନ ସ୍ତଥା
ତ୍ୱଂ ହିଧାତା ବିଧାତାଚ ତ୍ୱଂ ବିଷ୍ଣୁଃ ସୁର ସତ୍ତମଃ ।

ମହାଭା- ଆପ-୨୩-୧୬/୧୭

ଆପଣ ପ୍ରଭୁ ! ତପନ, ସୂର୍ଯ୍ୟ ଏବଂ ପ୍ରଜାପତି ଅଟନ୍ତି । ଆପଣ ଚନ୍ଦ୍ର, ହୟଗ୍ରୀବ, ଶିବ ତଥା ଜଗତ୍ପତି ଅଟନ୍ତି । ଆପଣ ଭଗବାନଙ୍କ ମୁଖ ସ୍ୱରୂପ ବ୍ରାହ୍ମଣ, ପଦ୍ମଯୋନି ବ୍ରହ୍ମା ଏବଂ ଜ୍ଞାନବାନ ବିପ୍ର ଅଟନ୍ତି । ଆପଣ ଅଗ୍ନି, ବାୟୁ, ଧାତା, ବିଧାତା ତଥା ଦେବ ଶ୍ରେଷ୍ଠ ଶ୍ରୀବିଷ୍ଣୁ ଅଟନ୍ତି । ବଳ, ବୁଦ୍ଧି ଓ ଜ୍ଞାନ ସମ୍ପନ୍ନ ଗରୁଡଙ୍କ ବିଗ୍ରହ ସର୍ବ ବେଦମୟ । ବୃହତ୍ ଏବଂ ରଥନ୍ତର ତାଙ୍କର ପକ୍ଷୀ ଅଟେ । ଉଡିବା ସମୟରେ ଯେଉଁଥିରୁ ସାମ ବେଦର ଧ୍ୱନି ନିର୍ଗତ ହୁଏ । ଦେବଗଣ ଗରୁଡଙ୍କ ପରମାତ୍ମା ସ୍ୱରୂପର ସ୍ତୁତି କରି କହନ୍ତି-

ଖଗେଶ୍ୱରଂ ଶରଣମୁପାଗତା ବୟଂ
ମହୌଜସଂ ଜ୍ୱଳନ ସମାନ ବର୍ଚସମ୍
ତଡିତ୍ ପ୍ରଭଂ ବିତିମିର ମଭ୍ରଗୋଚରଂ
ମହାବଳଂ ଗରୁଡ ମୁପେତ୍ୟ ଖେଚରମ୍

ମହାଭା. ଆ.ପ.ଅ. ୨୩/୨୨ ଶ୍ଳୋକ

ଆପଣ ସମସ୍ତ ପକ୍ଷୀ ଏବଂ ଜୀବଙ୍କର ଈଶ୍ୱର ଅଟନ୍ତି । ଆପଣଙ୍କ ତେଜ ମହାନ୍, ଆପଣ ଅଗ୍ନିଙ୍କ ପରି ତେଜସ୍ୱୀ ଅଟନ୍ତି । ଆପଣ ବିଦ୍ୟୁତ୍ ପରି ଜାଜ୍ୱଲ୍ୟମାନ । ଆପଣଙ୍କ ଦ୍ୱାରା ଆବିଦ୍ୟାର ନା ହୋଇଥାଏ । ଆପଣ ମେଘଖଣ୍ଡ ପରି ଆକାଶରେ ସ୍ୱଚ୍ଛନ୍ଦରେ ବିଚରଣ କରିବାରେ ମହା ପରାକ୍ରମୀ ଗରୁଡ ଅଟନ୍ତି । ମନ୍ତ୍ର ଦ୍ରଷ୍ଟା ମହର୍ଷି ଦୀର୍ଘତମାଙ୍କ ଦ୍ୱାରା ଉପଦିଷ୍ଟ ଏକ ଋଚାରୁ ଗରୁଡଙ୍କ ସୂଚନା ମିଳେ ।

ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁ ରଥୋ ଦିବ୍ୟସଃ ସୁପର୍ଣୋ ଗରୁତ୍ମାନ।
ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱା ନ ମାହୁଃ ॥

ଋକ୍- ୧/୧୬୪/୪୬

ପରମାର୍ଥତଃ ତତ୍ତ୍ୱ ଏକ ଅଟେ । ଏହି ଏକତତ୍ତ୍ୱକୁ ଜ୍ଞାନବାନ୍ ଲୋକ ଅନେକ ପ୍ରକାରରେ କହିଥାନ୍ତି । କେହି ତାଙ୍କୁ ଇନ୍ଦ୍ର, ମିତ୍ର, ବରୁଣ, ଅଥବା ଗରତ୍ମାନ୍ ସୁପର୍ଣ(ଗରୁଡ) କହିଥାନ୍ତି । କେହି କେହି ତାଙ୍କୁ ଅଗ୍ନି, ଯମ ଏବଂ ବାୟୁ କହି ସ୍ମରଣ କରିଥାନ୍ତି । ବେଦରେ ଗରୁଡଙ୍କର ଅନେକ ନାମ ରହିଥିବାର ପ୍ରମାଣ ମିଳେ । ଯଥା- ସୁପର୍ଣ୍ଣ, ଗରୁତ୍ମାନ୍, ଶ୍ୱେନ, ତାକ୍ଷ୍ୟ ଏବଂ ଅରିଷ୍ଟ ନେମି ଆଦି । ସେ ତାକ୍ଷ୍ୟ ଯେ କି ବିସ୍ତୀର୍ଣ୍ଣ ଅନ୍ତରୀକ୍ଷବାସୀ ଅଟନ୍ତି ଏବଂ ଯିଏ ଶୀଘ୍ର କାର୍ଯ୍ୟ କରିପାରନ୍ତି । ଅରିଷ୍ଟ ନେମି ଅର୍ଥ ଯିଏ ସମସ୍ତ ବିପଦର ବିନାଶକ । ଗରୁଡଙ୍କର ଦ୍ୱାଦଶ ନାମ ଏହିପରି ।

ସୁପର୍ଣ୍ଣଂ ବୈନତେୟଞ୍ଚ ନାଗାରିଂ ନାଗଭୀଷଣମ୍
ଜିତାମ୍ତକଂ ବିଷାରିଞ୍ଚ ଅଜିତଂ ବିଶ୍ୱ ରୂପୀଣମ୍ ।
ଗଗୁରୁତ୍ମନ୍ତଂ ଖଗଶ୍ରେଷ୍ଠଂ ତାକ୍ଷ୍ୟଂହ କଶ୍ୟପ ନନ୍ଦନମ୍
ଦ୍ୱାଦଶୈତାନି ନାମାନି ଗରୁଡସ୍ୟ ମହାତ୍ମନଃ ।

ସୁପର୍ଣ୍ଣ-ସୁନ୍ଦର ପକ୍ଷଯୁକ୍ତ, ବୈନତେୟ-ବିନତାଙ୍କ ପୁତ୍ର ନାଗାରିଂ- ନାଗମାନଙ୍କ ଶତ୍ରୁ । ନାଗଭୀଷଣ-ନାଗଙ୍କ ପାଇଁ





ଭୟଙ୍କର, ଜତାତ୍ମକ-କାଳଜୟୀ, ବିଷାରି-ବିଷର ଶତ୍ରୁ । ଅଜିତ- ଅପରାଜେୟ, ବିଶ୍ୱରୂପୀ- ସର୍ବସ୍ୱରୂପ, ଗରୁତ୍ମାନ୍ ଅତିଶୟ ପରାକ୍ରମୀ, ଖଗଶ୍ରେଷ୍ଠ ପକ୍ଷୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ତାକ୍ଷ୍ୟ- ଗରୁଡ, କଶ୍ୟପନନ୍ଦନ ମହର୍ଷି କଶ୍ୟପଙ୍କ ପୁତ୍ର । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ବେଦ, ପୁରାଣ ଏବଂ ଉପନିଷଦ ଗରୁଡଙ୍କ ମହିମା ଗାନରେ ଶତମୁଖରିତ ।

ଘଟଣାକ୍ରମେ ମହର୍ଷି କଶ୍ୟପଙ୍କ ପତ୍ନୀ କଦ୍ରୂ ଓ ବିନତାଙ୍କ ମଧ୍ୟରେ ସୂର୍ଯ୍ୟଙ୍କ ଅଶ୍ୱ ଉଚ୍ଚୈଃ ଶ୍ରବାର ପୁଚ୍ଛ କୃଷ୍ଣବର୍ଣ୍ଣ କି ଶ୍ୱେତ ବର୍ଣ୍ଣ ତାହା ନିର୍ଣ୍ଣୟ କରିବାରେ ବିବାଦ ବଢି ଚାଲିଲା । ସର୍ତ୍ତ ରହିଲା ଏଥିରେ ଯିଏ ହାରିବ ସେ ବିଜେତାର ଦାସୀ ହେବ । ବିନତା କହିଲେ ଅଶ୍ୱର ପୁଚ୍ଛ ଶ୍ୱେତବର୍ଣ୍ଣ । କଦ୍ରୂ ପ୍ରକୃତ ସତ୍ୟ ଜାଣିବା ପରେ କପଟତା କରି ନିଜରପୁତ୍ର ନାଗମାନଙ୍କୁ ଆଦେଶ ଦେଲେ ସୂର୍ଯ୍ୟଙ୍କ ଅଶ୍ୱର ପୁଚ୍ଛରେ ଗୁଡାଇ ହୋଇ କୃଷ୍ଣ ବର୍ଣ୍ଣ କରିଦେବା ପାଇଁ । ନାଗମାନେ ତାହାହିଁ କରିଲେ । ବିନତା ଓ କଦ୍ରୂ ଯେତେବେଳେ ଦେଖିଲେ ଅଶ୍ୱର ପୁଚ୍ଛକଳା- ସର୍ତ୍ତଅନୁଯାୟୀ ବିନତା କଦ୍ରୂଙ୍କର ଦାସତ୍ୱ ସ୍ୱୀକାର କଲେ । ନାଗପୁତ୍ର ଓ କଦ୍ରୂଙ୍କର ଛଳନା ଏବଂ ଅତ୍ୟାଚାର ମାତୃବସଳ ଗରୁଡଙ୍କ ହୃଦୟକୁ ବିଦୀର୍ଣ୍ଣ କଲା । ଥରେ ସେ ନାଗମାନଙ୍କୁ ମାତାଙ୍କୁ ଦାସତ୍ୱରୁ ମୁକୁଳାଇବାର ଉପାୟ ପଚାରିଲେ । ନାଗମାନେ କହିଲେ- ସ୍ୱର୍ଗରୁ ଯଦି ଅମୃତ କଳସ ଅଣାଯାଏ ତେବେ ତୁମର ମାତା ଦାସତ୍ୱରୁ ମୁକ୍ତ ହେବେ । ବିନତା ପୁତ୍ର ଗରୁଡ ବିନା ଦ୍ୱିଧାରେ ସର୍ତ୍ତକୁ ସ୍ୱୀକାର କଲେ । ପ୍ରତିଜ୍ଞାବଦ୍ଧ ଗରୁଡ ଅମୃତକଳସ ଆଣିବା ପାଇଁ ସ୍ୱର୍ଗକୁ ପ୍ରସ୍ଥାନ କଲେ । ଦେବରାଜ ଇନ୍ଦ୍ର ଏବଂ ଅନ୍ୟ ଦେବଗଣ ଅମୃତ କଳସକୁ ରକ୍ଷା କରୁଥିଲେ । ଦେବଗୁରୁ ବୃହସ୍ପତି ପ୍ରବଳ ପ୍ରତାପୀ ପକ୍ଷୀରାଜ ଗରୁଡ ଅମୃତ କଳସ ହରଣ କରିବା ପାଇଁ ଆସୁଥିବାର ସତର୍କ ସୂଚନା ଦେବଗଣଙ୍କୁ ପ୍ରଦାନ କରିଥିଲେ । ଦେବଗୁରୁଙ୍କ କଥାଶୁଣି ଦେବଗଣ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ପକ୍ଷୀରାଜ ଗରୁଡ ସ୍ୱର୍ଗରେ ପହଞ୍ଚି ଦେବଗଣଙ୍କୁ ପରାସ୍ତ କରି ଅମୃତକଳସ ଧରି ପ୍ରସ୍ଥାନ କରୁଥିବା ସମୟରେ ଅକସ୍ମାତ ଭଗବାନ ବିଷ୍ଣୁଙ୍କର ଆବିର୍ଭାବ ଘଟିଲା । ଗରୁଡଙ୍କ ତୀକ୍ଷ୍ଣବୁଦ୍ଧି ଓ ପରାକ୍ରମରେ ସନ୍ତୁଷ୍ଟ ହୋଇ ଭଗବାନ୍ ବିଷ୍ଣୁ ଗରୁଡଙ୍କୁ ବରମାଗିବା ପାଇଁ କହିଲେ । ସୂକ୍ଷ୍ମ ବୁଦ୍ଧି ସମ୍ପର୍ଣ୍ଣ ଗରୁଡ ଭକ୍ତି ଗଦ୍‌ଗଦ୍ କଣ୍ଠରେ କହିଥିଲେ- ପ୍ରଭୁ ! ମୋତେ ଆପଣଙ୍କର ବାହନ କରନ୍ତୁ, ଧ୍ୱଜାରେ ସ୍ଥାନ ଦିଅନ୍ତୁ ଏବଂ ଅମୃତ ପାନ କରି ଅଜର ଅମର ହେବା ପାଇଁ ବର ପ୍ରଦାନ କରନ୍ତୁ । ଭଗବାନ୍ ଗରୁଡଙ୍କ ଉପରେ ସନ୍ତୁଷ୍ଟ ହୋଇ କହିଥିଲେ- ହେ ପକ୍ଷୀରାଜ ! ତୁମେ ଅତ୍ୟନ୍ତ ଶକ୍ତି ସମ୍ପର୍ଣ୍ଣ ହୋଇ ମୋର ବାହନ ହେବ, ଧ୍ୱଜାରେ ସ୍ଥାନ ପାଇବ, ବିଷର ବିନାଶ ଶକ୍ତି ଲାଭ କରିବ ଏବଂ ମୋର ମାହାତ୍ମ୍ୟ ପ୍ରଚାର କରିବା ପାଇଁ ପୁରାଣ ସଂହିତା ରଚନା କରିବାର କ୍ଷମତା ପ୍ରାପ୍ତ ହେବ । ବରପ୍ରାପ୍ତ କରି ଗରୁଡ ଆନନ୍ଦମନରେ ଅମୃତକଳସ ଆଣି ସର୍ପମାନଙ୍କ ସମ୍ମୁଖରେ ରଖିଦେଲେ ଏବଂ ନାଗମାନଙ୍କ କବଳରୁ ନିଜର ମାତା ବିନତାଙ୍କୁ ଦାସତ୍ୱ କବଳରୁ ସବୁଦିନ ପାଇଁ ମୁକ୍ତ କଲେ ।

ବିଷ୍ଣୁଭକ୍ତ ଗରୁଡ ବିଷ୍ଣୁଙ୍କ ମହିମା ଗାନକରି ଗରୁଡ ମହାପୁରାଣ ରଚନା କଲେ । ମହର୍ଷି କଶ୍ୟପ ଗାରୁଡି ବିଦ୍ୟା ଏହି ପୁରାଣରୁ ଶିକ୍ଷା କରି ହସ୍ତୀନାପୁର ରାଜା ପରୀକ୍ଷିତଙ୍କୁ ତକ୍ଷକ ସର୍ପ ଦଂଶନରୁ ବଞ୍ଚାଇବାକୁ ଗଲାବେଳେ ତକ୍ଷକ ତାଙ୍କର ପଥ ଅବରୋଧ କରି ପରୀକ୍ଷା ସ୍ୱରୂପ ଏକ ବୃକ୍ଷକୁ ଦଂଶନ କଲେ । ବୃକ୍ଷଟି ଜଳି ପାଉଁଶରେ ପରିଣତ ହେଲା । କଶ୍ୟପ ଗାରୁଡି ବିଦ୍ୟା ବଳରେ ତାହାକୁ ବଞ୍ଚାଇ ଦେଲେ । ଏହାପରେ ତକ୍ଷକ ମହର୍ଷି କଶ୍ୟପଙ୍କୁ ଅର୍ଥ ଦ୍ୱାରା ସନ୍ତୁଷ୍ଟ କରାଇ ଫେରାଇ ନେଇଥିଲେ । ଏହାପରେ ଗରୁଡ ଭଗବାନଙ୍କ ବାହନ ହୋଇ ନିଜକୁ ଧନ୍ୟ ମନେକଲେ, ସମସ୍ତ ବିଷ୍ଣୁ ମନ୍ଦିରରେ ସେଥିପାଇଁ ଗରୁଡଙ୍କ ସ୍ଥାନ ସଂରକ୍ଷିତ । ମନ୍ଦିର ସମ୍ମୁଖରେ ସେ ବାହାନ ରୂପେ ସ୍ଥାନ ପାଇଛନ୍ତି ।

ଅଭିଧାନ ଅନୁସାରେ ହସ୍ତୀ, ଅଶ୍ୱ, ନୌକାଦି ଯାନକୁ ବାହନ କୁହାଯାଏ । ଜଳ, ସ୍ଥଳ ଏବଂ ଆକାଶ ମାର୍ଗରେ ଗମନାଗମନ ପାଇଁ ବିଭିନ୍ନ ପଶୁ, ପକ୍ଷୀ ଏବଂ ରଥାଦି ଯାନ ବ୍ୟବହାର ଦୃଷ୍ଟାନ୍ତ ପୁରାଣ ପୃଷ୍ଠାରେ ବର୍ଣ୍ଣିତ । ପ୍ରତ୍ୟେକ ଦେବାଦେବୀଙ୍କର ନିର୍ଦ୍ଦିଷ୍ଟ ବାହନ ରହିଛି । ବ୍ରହ୍ମାଙ୍କର ପଦ୍ମ, ଇନ୍ଦ୍ରଙ୍କର ଐରାବତ, ସୂର୍ଯ୍ୟଙ୍କର ଉଚ୍ଚୈଃଶ୍ରବା ଅଶ୍ୱ । ଗଣେଶଙ୍କର ମୂଷିକ, କାର୍ତ୍ତିକେୟଙ୍କର ମୟୂର, ଶିବଙ୍କର ବୃଷଭ ଏବଂ ଦୁର୍ଗାଙ୍କର ସିଂହ ଇତ୍ୟାଦି ।

ଗରୁଡ ବିଷ୍ଣୁଙ୍କର ବାହନ ହୋଇଥିବାରୁ ଶ୍ରୀଜଗନ୍ନାଥଙ୍କର ମଧ୍ୟ ବାହନ ଅଟନ୍ତି । ଜଗମୋହନସ୍ଥିତ ଗରୁଡସ୍ତମ୍ଭଟି ମନ୍ଦିର ନିର୍ମାଣ ପ୍ରାରମ୍ଭରୁ ବିଦ୍ୟମାନ । ୧୦ଫୁଟ ଉଚ୍ଚର ଗରୁଡସ୍ତମ୍ଭଟି କାଠ କିମ୍ବା ପଥରରେ ନିର୍ମିତ ହୋଇଥିବାର ସଠିକ୍ ପ୍ରମାଣ ମିଳିନାହିଁ, ସ୍ତମ୍ଭର ବର୍ଣ୍ଣ ପ୍ରାୟତଃ ଧଳା । ଏକ ପ୍ରସ୍ଫୁଟିତ ପଦ୍ମ ଫୁଲକୁ ଲମ୍ବା ବୃନ୍ତ ସହ ଓଲଟାଇ ରଖିଲେ ଯେପରି ଦେଖାଯିବ ସ୍ତମ୍ଭର ଆକୃତିଟି ପ୍ରାୟ ସେହିପରି । ଏହି ସ୍ତମ୍ଭଟିକୁ ଧରିରଖିଥିବା ନିମ୍ନାଂଶଟି ଅଧିକ ଆୟତନ ବିଶିଷ୍ଟ । ସ୍ତମ୍ଭଟି ଶୀର୍ଷରେ ଏକ ପିଢା ଆକୃତି ପୀଠରେ ପାଷାଣ ନିର୍ମିତ ଗରୁଡ ପ୍ରଣାମ୍ ମୁଦ୍ରାରେ ଆସୀନ । ଗରୁଡଙ୍କର ଆଖି ଦୁଇଟି ସର୍ବଦା ଜଗନ୍ନାଥଙ୍କ ପାଦଦେଶକୁ ଲକ୍ଷ୍ୟ କରି ରହିଛି ।



ରତ୍ନବେଦୀର ଉଚ୍ଚତା ଅନୁସାରେ ସ୍ତମ୍ଭଉପରେ ଗରୁଡଙ୍କର ଅବସ୍ଥିତିର ସମତା ରକ୍ଷା କରାଯାଇଛି, ଶ୍ରୀଚୈତନ୍ୟ ଏହି ଗରୁଡସ୍ତମ୍ଭର ପଛଭାଗରୁ ଜଗନ୍ନାଥଙ୍କୁ ଦର୍ଶନ କରିଥିଲେ । ଗବେଷକଙ୍କ ମତରେ ମୂଲ୍ୟବାନ୍ ରତ୍ନଖଚିତ ମଣି ଏହି ସ୍ତମ୍ଭରେ ନିହିତ । ଯାହାକୁ ସ୍ପର୍ଶକଲେ ଅଶେଷ ମଙ୍ଗଳ ସାଧିତ ହେବା ସହିତ ଶ୍ରୀଜୀଉଙ୍କ କୃପା ମିଳିଥାଏ । ସେଥିପାଇଁ ଶ୍ରୀଜୀଉଙ୍କ ଦର୍ଶନ ପୂର୍ବରୁ ଭକ୍ତଗଣ ପ୍ରଥମେ ଗରୁଡସ୍ତମ୍ଭ ନିକଟରେ ଦୀପଜାଳି ସ୍ତମ୍ଭକୁ ଭକ୍ତିର ସହିତ ଛାତିରେ ଲଗାଇଥାନ୍ତି । ଅମାବାସ୍ୟା, ସଂକ୍ରାନ୍ତି, ମଙ୍ଗଳବାର ଏବଂ ଶନିବାର ଆଦି ତିଥିମାନଙ୍କରେ ଗରୁଡଙ୍କ ସ୍ନାନଜଳ ସେବନ କଲେ ରୋଗ ନିବାରଣ ଶକ୍ତି ମିଳିଥାଏ ।

ଗରୁଡସ୍ତମ୍ଭ ପାଇଁ ଯେଉଁ ସେବାୟତମାନେ ସେବାକରନ୍ତି ସେମାନେ ଗରୁଡସେବକ ଏବଂ ଚୂନରା ସେବକ ରୂପେ ପରିଚିତ । ଏମାନଙ୍କ କାମ ହେଲା ଗରୁଡଙ୍କ ସେବା କରିବା, ନୀଳଚକ୍ରରେ ବାନା ବାନ୍ଧିବା ଏବଂ ମନ୍ଦିରକୁ ଚୂନ ଦ୍ୱାରା ଧୂଳେଇ କରିବା । ତିନିଠାକୁରଙ୍କ ସ୍ନାନ ପରେ ଗରୁଡଙ୍କର ସ୍ନାନ ହୁଏ । ଗରୁଡ ସେବକ ଏକ କାଠ ଘଡାର ସାହାଯ୍ୟରେ ଗରୁଡକୁ ସ୍ନାନ କରାଇଥାନ୍ତି, ଅଗ୍ନିପୁରାଣ ଅନୁସାରେ ଗରୁଡଙ୍କର ମନ୍ତ୍ର–

କଂଟଂପଂଶଂ ବୈନତେୟାୟ ନମଃ ।

ଗରୁଡ ଗାୟତ୍ରୀ ଓଁ ଗରୁଡାୟ ବିଦ୍ମହେଁ ବିଷ୍ଣୁବାହନାୟ ଧୀମହି ତନ୍ନୋସ୍ତାର୍କ୍ଷ୍ୟଃ ପ୍ରଚୋଦୟାତ୍, ଶ୍ରୀମନ୍ଦିରର ଉତ୍ତର ଦ୍ୱାରରେ ଦାରୁ ଘର ନିକଟରେ ଗରୁଡଙ୍କର ମୂର୍ତ୍ତି ବିଦ୍ୟମାନ । ରଥଯାତ୍ରା ସମୟରେ ଶ୍ରୀଜୀଉଙ୍କ ନନ୍ଦିଘୋଷ ରଥର ରଥାଧିପ ବୈନତେୟ (ଗରୁଡ) ବିଦ୍ୟମାନ । ଭଗବାନଙ୍କ ନିକଟରେ ସେବ୍ୟ ଅପେକ୍ଷା ସେବକ ଶ୍ରେଷ୍ଠ । ଗରୁଡ ସେଥିପାଇଁ ଶ୍ରୀଜୀଉଙ୍କ ପ୍ରିୟ ବାହନ ହୋଇଥିବାରୁ ସେ ଭକ୍ତମାନଙ୍କର ପୂଜ୍ୟ । ସେଥିପାଇଁ ଗରୁଡ ନିଜର ଗୁଣ, ବୁଦ୍ଧି, ବଳ ଓ ସେବା ପାଇଁ ଭକ୍ତଙ୍କ ଦ୍ୱାରା ପୂଜା ପାଉଛନ୍ତି ।

ପ୍ଲଟ ନଂ– ୫୯୭
କଳିଙ୍ଗନଗର–୭, ଭୁବନେଶ୍ୱର

# କହ୍ନେଇ ଆସିଛି ପୁରୀ

ସ୍ନେହଲତା ମହାନ୍ତି



ବଉଳଲୋ ବୁଲିଯିବା ପୁରୀ ସହର
ପୁରୀରେ କହ୍ନେଇ ପରା ତୋଳିଛି ଘର ।
ବଉଳଲୋ.....

ଯମୁନା କରିଛି ସିଏ ମହୋଦଧିକୁ
କଦମ୍ବ କରିଛି ସିଏ କଳ୍ପ ବଟକୁ
କୁଞ୍ଜବନ କରିଛି ସେ ଶିରିମନ୍ଦିର
କହ୍ନେଇରୁ ଜଗନ୍ନାଥ ଅବତାର
ବୁଝିକି ପାରିବ କିଏ ମାୟାକୁ ତା'ର ।
ବଉଳଲୋ.....

ଲକ୍ଷ୍ମୀ ସାଆନ୍ତାଣୀ ନିଜେ ରାଧିକାରାଣୀ
ମନଜାଣି ବାଢୁଛନ୍ତି ଟଙ୍କ ତୋରାଣୀ
ଛପନ ଭୋଗୀ ସେ ଖାଏ ଛପନ ଭୋଗ
ଷାଠିଏ ପଉଟି ତାର ରନ୍ଧାଟି ଆଗ
ଯେତେ ପଣ୍ଡା ପଡିହାରୀ
ସତେ ଅବା ଗୋପ ନାରୀ
ବଳରାମ ଭାଇ ସାଥେ ଅଛନ୍ତି ତା'ର ।
ବଉଳଲୋ....

ଶିକ୍ଷୟିତ୍ରୀ, ରାଘବପୁର ଉ.ପ୍ରା. ସ୍କୁଲ
ସାଲେପୁର, କଟକ





# ଶ୍ରୀଭେଙ୍କଟେଶ୍ୱର ଓ ଶ୍ରୀଜଗନ୍ନାଥ

ମଧୁସୂଦନ ପଟ୍ଟନାୟକ

ଇତରେୟା ଉପନିଷେଦାନୁସାରେ ସୃଷ୍ଟିକର୍ତ୍ତା ସଂସାର ସୃଷ୍ଟି କରି ତନ୍ମଧ୍ୟରେ ବାକ୍‌ଶକ୍ତିହୀନ ଜୀବଜନ୍ତୁ ସୃଷ୍ଟିରେ ସନ୍ତୁଷ୍ଟ ନରହି ଚିନ୍ତାଶୀଳ ଭାବ ଉଦ୍ରେକକାରୀ ମନୁଷ୍ୟ ସୃଷ୍ଟିକଲେ । ସେ ପଞ୍ଚଇନ୍ଦ୍ରିୟ ମାଧ୍ୟମରେ ବାହ୍ୟଜଗତ ସମ୍ପର୍କରେ ଗଭୀର ଜ୍ଞାନାରୋହଣ କଲେ ମଧ୍ୟ ସ୍ୱଶରୀର ମଧ୍ୟରେ ବିଦ୍ୟମାନ ଆତ୍ମା ବା ବ୍ରହ୍ମକୁ ସହଜରେ ହୃଦୟଙ୍ଗମ କରି ପାରିଲାନାହିଁ । 'ନର' ମଧ୍ୟରେ ନାରାୟଣଙ୍କ ସତ୍ତା ଉପଲବ୍ଧ କଲେ ମଧ୍ୟ ମନୁଷ୍ୟ ସତ୍‌କର୍ମ ଓ କୁକର୍ମ କରିବାକୁ ଦ୍ୱିଧା ମନେକଲାନାହିଁ । ସତ୍‌କର୍ମର ସୁପରିଣାମ ଓ କୁକର୍ମର କୁପରିଣାମ ଲାଭ କରି ବହୁ ବିପଦଆପଦର ସମ୍ମୁଖୀନ ହୋଇ ଦୈବଶକ୍ତିର କୃପା ଭିକ୍ଷାକଲା ବିଭିନ୍ନ ଉପାୟରେ ଏହାକୁ ଧର୍ମ ନାମରେ ନାମିତ କରି ।



ପ୍ରତ୍ୟେକ ଧର୍ମରେ ଉପାସିତ ଦେବଦେବୀମାନଙ୍କ ସମ୍ବନ୍ଧରେ ନାନା କିମ୍ବଦନ୍ତୀ ଲିପିବଦ୍ଧ ହୋଇଅଛି । ଇସ୍‌ଲାମ ଧର୍ମରେ ମହମ୍ମଦ, ଖ୍ରୀଷ୍ଟିଆନ ଧର୍ମରେ ଯୀଶୁଖ୍ରୀଷ୍ଟ, ବୌଦ୍ଧ ଧର୍ମରେ ବୁଦ୍ଧଦେବ ଓ ଜୈନ ଧର୍ମରେ ମହାବୀରଙ୍କ ପରି ହିନ୍ଦୁ ଧର୍ମରେ ରାଧାକୃଷ୍ଣ, ସୀତାରାମ, ଓ ହରପାର୍ବତୀଙ୍କୁ କେନ୍ଦ୍ରକରି ବହୁ କଥାକାହାଣୀ ରଚିତ ହୋଇଅଛି । ତିରୁପତିର ଶ୍ରୀଭେଙ୍କଟେଶ୍ୱର ଓ ପୁରୁଷୋତ୍ତମ କ୍ଷେତ୍ର ପୁରୀର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ପର୍କରେ ଏକ ତୁଳନାତ୍ମକ ବିବରଣୀ ପ୍ରଦାନ କରାଯାଇପାରେ ।

ଭଗବାନ ବରାହ ଅବତାର ଗ୍ରହଣ କରି ଦାନବ ହିରଣ୍ୟାକ୍ଷକୁ ନିଧନ କରିବା ପରେ କାଶ୍ୟପଙ୍କ ନେତୃତ୍ୱରେ ସମସ୍ତ ମୁନିଋଷି ଏକତ୍ରିତ ହୋଇ ନୈମିଷାରଣ୍ୟରେ ଏକ ଯଜ୍ଞର ଆୟୋଜନ କରନ୍ତି । ଦେବର୍ଷି ନାରଦ ସେଠାରେ ଉପସ୍ଥିତ ହୋଇ ଯଜ୍ଞରେ ପ୍ରଥମ ଅର୍ଘ୍ୟ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ କିମ୍ବା ପାଳନକର୍ତ୍ତା ବିଷ୍ଣୁଙ୍କୁ କିମ୍ବା ସଂହାରକର୍ତ୍ତା ମହେଶ୍ୱରଙ୍କୁ ଅର୍ପଣ କରାଯିବ ?– ଉତ୍ତର ପାଇବା ଭାର ମହାଗର୍ବୀ ତୃତୀୟନୟନ ଧାରୀ ଭୃଗୁଙ୍କୁ ଦେଇ ଅନ୍ତର୍ଦ୍ଧାନ ହୁଅନ୍ତି । କିଂକର୍ତ୍ତବ୍ୟବିମୂଢ ହୋଇ ଭୃଗୁ ବ୍ରହ୍ମାଙ୍କଠାରୁ ଉତ୍ତର ପାଇବା ପାଇଁ ବ୍ରହ୍ମଲୋକ ଗମନ କରି ଦେଖନ୍ତି ଯେ ବ୍ରହ୍ମା ସରସ୍ୱତୀଙ୍କ ବୀଣାବାଦନରେ ନିମଜ୍ଜିତ ଅଛନ୍ତି । ବ୍ରହ୍ମା ଭୃଗୁଙ୍କ ଉପସ୍ଥିତି ଜାଣିନପାରିବାରୁ ଭୃଗୁ ଏହାକୁ ଅପମାନ ମନେକରି ବ୍ରହ୍ମାଙ୍କୁ ଅଭିଶାପ ଦିଅନ୍ତି ଯେ ମର୍ତ୍ତ୍ୟରେ ସେ କେବଳ ଲିଙ୍ଗ ରୂପେ ପୂଜା ପାଇବେ ।

କ୍ରୋଧ ଜର୍ଜ୍ଜରିତ ଭୃଗୁ ଉତ୍ତର ପାଇବା ଆଶାରେ ବିଷ୍ଣୁଙ୍କ ପାଖକୁ ବୈକୁଣ୍ଠ ଗମନ କଲେ । ଦେଖିଲେ– ବିଷ୍ଣୁ ମହାଲକ୍ଷ୍ମୀଙ୍କ ଗହଣରେ ଉପବିଷ୍ଟ ହୋଇ ପ୍ରେମାଳାପରେ ନିୟୋଜିତ ଅଛନ୍ତି । ଭୃଗୁ ତାଙ୍କର ଦୃଷ୍ଟିପଥକୁ ନଆସିବାରୁ ବିଷ୍ଣୁଙ୍କର ଏହା ଏକ ଅକ୍ଷମଣୀୟ ଅପରାଧ ମନେ କରି କ୍ରୋଧ ଶାନ୍ତ ପାଇଁ ବିଷ୍ଣୁଙ୍କର ବକ୍ଷ ପଦାଘାତ କରନ୍ତି । କିନ୍ତୁ ଦୟାବତାର ବିଷ୍ଣୁ ଆତ୍ମ ସଂଯମ ପୂର୍ବକ ଭୃଗୁଙ୍କର ପଦପ୍ରକ୍ଷାଳନ ସମୟରେ ଭୃଗୁଙ୍କ ପଦରେ ଲାଗିଥିବା ତୃତୀୟ ନୟନଟି କାଢିନେଲେ ଓ ଆଗମନର କାରଣ ପୁଚ୍ଛିଲେ । ପଦାଘାତକୁ ଅପମାନ ମନେକରି ଲକ୍ଷ୍ମୀ ସ୍ୱାମୀ ବିଷ୍ଣୁଙ୍କୁ କହନ୍ତି, 'ପ୍ରଭୋ ! ସ୍ୱାମୀଙ୍କର ଯେଉଁ ବକ୍ଷ ମୋର ବାସସ୍ଥଳ, ସେହି ବକ୍ଷକୁ ଭୃଗୁ ପଦାଘାତ କଲେ ! ମୁଁ ରହିବି କେଉଁଠି ? ଏଣୁ ଚାଲିଲି ।' ଲକ୍ଷ୍ମୀ ବୈକୁଣ୍ଠ ତ୍ୟାଗ କରି ତଳକୁ ଖସି ଆସିଲେ ।

ମହାଲକ୍ଷ୍ମୀଙ୍କୁ ଖୋଜି ଖୋଜି ନିରାଶ ହୋଇ ବିଷ୍ଣୁ ଯଜ୍ଞସ୍ଥଳରେ ପହଞ୍ଚିଲେ । ହିରଣ୍ୟାକ୍ଷ ବିଧ୍ୱଂସୀ ମହାବିଷ୍ଣୁଙ୍କୁ ଦେଖି




ମୁନିରଷିଗଣ ମହା ଉଲ୍ଲାସରେ ଅଭ୍ୟର୍ଥନା କଲେ । ବିଷ୍ଣୁଙ୍କ ପରାମର୍ଶରେ ମହାଲକ୍ଷ୍ମୀଙ୍କୁ ଖୋଜିଲେ ଓ ମୁନିରଷିଗଣ ନିରାଶ ହେଲେ । ବିଷ୍ଣୁ ମନଦୁଃଖରେ ବରାହକ୍ଷେତ୍ରର ଏକ ଉଇହୁଙ୍କାରେ ଆତ୍ମଗୋପନ କଲେ । ବିଷ୍ଣୁଙ୍କର ଦୁରବସ୍ଥା ଦେଖି ବ୍ରହ୍ମା ଓ ମହେଶ୍ୱର ଗାଈବାଛୁରୀ ରୂପ ଧାରଣ କରି ଲକ୍ଷ୍ମୀଙ୍କୁ ଗୋପାଳିକା ହେବାକୁ ଅନୁରୋଧ କଲେ । ସେୟା ହେଲା । ଗୋପାଳିକା ଗାଈବାଛୁରୀ ନେଇ ଚୋଳରାଜା ଚନ୍ଦ୍ରଗିରିଙ୍କୁ ବିକ୍ରୟ କରି ଚାଲିଗଲେ । ଦେଖାଗଲା–ଗାଈ ଟୋପାଏ ହେଲେ କ୍ଷୀର ଦେଲା ନାହିଁ । ରାଜା ଜଣେ ଗୋପାଳକ ଦାୟିତ୍ୱରେ ଗାଈବାଛୁରୀ ଛାଡିଲେ । ଗାଈଆଳ ଦେଖିଲା ସବୁଦିନ ଗାଈ ଉଇହୁଙ୍କାରେ କ୍ଷୀରତକ ନିଗାଡି ଦେଉଛି । ସେ କ୍ରୋଧରେ ଉଇହୁଙ୍କା ଉପରେ କୁଠାର ଘାତ କରନ୍ତେ ବ୍ରହ୍ମ ବିଷ୍ଣୁ ଆତ୍ମପ୍ରକାଶ କରନ୍ତି ଓ ମସ୍ତକରୁ ରକ୍ତସ୍ରାବ ହେଉଛି । ଗାଈଆଳ ଅଚେତ ହୋଇପଡିଛି । ରାଜା ଏହା ପ୍ରତ୍ୟକ୍ଷରେ ଦେଖନ୍ତି । କ୍ଷତବିକ୍ଷତ ବିଷ୍ଣୁ ରାଜାଙ୍କୁ ଅଭିଶାପ ଦିଅନ୍ତି– ଭୃତ୍ୟ ଦୋଷରେ ରାଜା ଦୋଷୀ । ତୁ ପିଶାଚ ହୋଇ ଏହି ଘୋର ଅରଣ୍ୟରେ ଘୂରି ବୁଲିବୁ । ରାଜାଙ୍କର ଭକ୍ତି ଭରା ପ୍ରାର୍ଥନାରେ ପ୍ରୀତ ହୋଇ ବିଷ୍ଣୁ ପ୍ରସନ୍ନ ହେଲେ– ଯେତେବେଳେ ଆକାଶ ରାଜକନ୍ୟା ପଦ୍ମାବତୀ ସହ ମୋର ବିବାହ ହେବ, ତୁ ତାହା ଦେଖି ଅଭିଶାପମୁକ୍ତ ହେବୁ ।

ବୃହସ୍ପତିଙ୍କ ପରାମର୍ଶରେ ଚିକିତ୍ସା ପାଇଁ ବିଷ୍ଣୁ ଆଶ୍ରମରେ ରହିଲେ । ସେଠାରେ ଜଣେ ସନ୍ନ୍ୟାସିନୀଙ୍କ ସହ ସାକ୍ଷାତ ହୁଏ । ଏଣେ ଶୁକ ମହର୍ଷିଙ୍କ ପରାମର୍ଶରେ ଅପୁତ୍ରିକ ଆକାଶରାଜା ପୁତ୍ରେଷ୍ଟିଯାଗର ଆୟୋଜନ କରି ଭୂମିକର୍ଷଣ ସମୟରେ ଶିଶୁକନ୍ୟାଥିବା ଏକ ପେଡି ପ୍ରାପ୍ତ ହୁଅନ୍ତି । ରାଜା ମହା ଆନନ୍ଦରେ ଶିଶୁକନ୍ୟା ପାଳନ କରନ୍ତି । କନ୍ୟାର ନାମ ରଖନ୍ତି ପଦ୍ମାବଦୀ । ପଦ୍ମାବତୀ ବିବାହଯୋଗ୍ୟ ବୟସ ପ୍ରାପ୍ତ ହେବାପରେ ଏକଦା ବନ ମଧ୍ୟରେ ଦନ୍ତାହାତୀର ଆକ୍ରମଣର ସମ୍ମୁଖୀନ ହୁଅନ୍ତେ ବିଷ୍ଣୁଙ୍କ ଦ୍ୱାରା ଉଦ୍ଧାର ପାଆନ୍ତି ଏବଂ ଅନିନ୍ଦ୍ୟସୁନ୍ଦରୀ ପଦ୍ମାବତୀର ପାଣିଗ୍ରହଣ କରିବାକୁ ଇଚ୍ଛାପ୍ରକଟ କରନ୍ତି । ଶୁକ ଓ ବୃହସ୍ପତିଙ୍କ ପରାମର୍ଶରେ ବିବାହ କାର୍ଯ୍ୟ ସମାପନ ହୁଏ । ଏହି ବିବାହ ପାଇଁ ଧନଦେବତା କୁବେର ଅର୍ଥ ଋଣ ଦିଅନ୍ତି । ଅଭିଶପ୍ତ ଚୋଳରାଜା ଚନ୍ଦ୍ରଗିରି ପଦ୍ମାବତୀର ବିବାହ ଦେଖି ଅଭିଶାପମୁକ୍ତ ହୁଅନ୍ତି । ବିଷ୍ଣୁ ପଦ୍ମାବତୀ ସହ ଆଶ୍ରମବାସୀ ହୁଅନ୍ତି । ପରେ ପରେ ଆକାଶରାଜାଙ୍କର ମୃତ୍ୟୁହୁଏ । ତାଙ୍କ ପୁତ୍ର ବାସୁଦନ 'ଆନନ୍ଦ ନିଳୟ' ନିର୍ମାଣକରି ବିଷ୍ଣୁଙ୍କୁ ପଦ୍ମାବତୀଙ୍କ ସହିତ ଅବସ୍ଥାପିତ କରନ୍ତି । ଇତ୍ୟବସରରେ ବ୍ରହ୍ମା ଆସି ବିଷ୍ଣୁଙ୍କୁ ପ୍ରାର୍ଥନା କରି କଳିଯୁଗ ଶେଷ ପର୍ଯ୍ୟନ୍ତ ଭକ୍ତମାନଙ୍କୁ ବିପତ୍ତିରୁ ରକ୍ଷା କରିବାକୁ ଏଠାରେ ପୂଜିତ ହୁଅନ୍ତୁ ବୋଲି ଇଚ୍ଛା ପ୍ରକଟ କରନ୍ତି । ଏଥିରେ ବିଷ୍ଣୁ ସମ୍ମତି ଜଣାନ୍ତି ।

ଏତେସବୁ ଘଟିଗଲେ ମଧ୍ୟ ବିଷ୍ଣୁ ମହାଲକ୍ଷ୍ମୀଙ୍କୁ ପାଇନାହାନ୍ତି । ହତଲକ୍ଷ୍ମୀଭାବେ କେତେଦିନ କାଳ କାଟିବେ ! ଦିନେ ବିଷ୍ଣୁଙ୍କର ଲକ୍ଷ୍ମୀପ୍ରୀତିସ୍ମୃତି ଉଦ୍ରେକ ହୁଅନ୍ତେ କୁବେରଙ୍କ ଋଣ ପରିଶୋଧ ନିମିତ୍ତ ଗରୁଡ ଉପରେ ଲକ୍ଷ୍ମୀଙ୍କର ଆବାସସ୍ଥଳୀ କୋହ୍ଲାପୁର ବିଜେ କରନ୍ତି । ଅଭିମାନିନୀ ଲକ୍ଷ୍ମୀ ବିଷ୍ଣୁଙ୍କର ଆଗମନ ଜାଣିପାରି ଆତ୍ମଗୋପନ କରନ୍ତି । ଲକ୍ଷ୍ମୀଙ୍କୁ ନପାଇ ଭାରାକ୍ରାନ୍ତ ହୃଦୟରେ ବାସୁଦେବଙ୍କୁ ସ୍ମରଣକରି ଦେବଲୋକରୁ ସହସ୍ରାର ପଦ୍ମଆଣି ପଦ୍ମ ସରୋବରରେ ସ୍ଥାପନ କରି ଧ୍ୟାନ କରନ୍ତି । ଏତିକିରେ ମହାଲକ୍ଷ୍ମୀ ପ୍ରସନ୍ନା ହୋଇ ମହାବିଷ୍ଣୁଙ୍କ ସମ୍ମୁଖରେ ଆବିର୍ଭୂତା ହୁଅନ୍ତି । ଭୃଗୁଙ୍କ ଉପସ୍ଥିତିରେ ପୂର୍ବକୃତ ଅପରାଧ ମାର୍ଜିତ ହୁଏ । ମହାଲକ୍ଷ୍ମୀ ସନ୍ତୁଷ୍ଟ ହୋଇ ବିଷ୍ଣୁଙ୍କୁ ପ୍ରଦକ୍ଷିଣ କଲେ ।ଏହା କାର୍ତ୍ତିକ ମାସର ପଞ୍ଚମୀ ତିଥି । ଏହିଦିନ ଭେଙ୍କଟାଚଳରେ ପଦ୍ମ ମହୋତ୍ସବ ହୁଏ । ଏହି ଶୁଭ ଅବସରରେ ବ୍ରହ୍ମା ଓ ଶଙ୍କରଙ୍କର ପ୍ରାର୍ଥନାନୁସାରେ ଏଠାରେ ଅବସ୍ଥାନ କରନ୍ତି । ଯେଉଁ ଭକ୍ତମାନେ ଏଠାକୁ ଆସିବେ, ସେମାନେ ସମସ୍ତ ସୁଖ, ସମ୍ପଦ, ଧନ, ମାନର ଅଧିକାରୀ ହେବେ । ବିବାହ ବେଳେ କୁବେରଙ୍କ ଠାରୁ ଆଣିଥିବା ଋଣ ପରିଶୋଧ ହୋଇଯିବ । ସେହିଦିନଠାରୁ ମହାବିଷ୍ଣୁ ମହାଲକ୍ଷ୍ମୀଙ୍କ ସହ ତିରୁପତି ଭେଙ୍କଟେଶ୍ୱର ନାମରେ ଅଭିହିତ ହୋଇ ଉପାସିତ ହୋଇଆସୁଛନ୍ତି । ଭେନ୍‌ର ଅର୍ଥ ପାପ । କାଟାର ଅର୍ଥ ଦହନ କରିବା ବା ପୋଡିବା । ତେଣୁ ଭେଙ୍କଟାଚଳମ୍ ପାହାଡର ନାମ ଅର୍ଥାତ୍ ଭେଙ୍କଟାଚଳମ୍ ଉଚ୍ଚାରଣ ମାତ୍ରେ ପାପ ଧୌତ ହୋଇଯାଏ ।

ବର୍ତ୍ତମାନ ପୁରୁଷୋତ୍ତମ କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ବିଭିନ୍ନ କିମ୍ବଦନ୍ତୀ ଓ କଥାକାହାଣୀ ଆଲୋଚନା କରାଯାଇପାରେ ।

ମହାବିଷ୍ଣୁ ମହାପ୍ରଳୟରୁ ପୃଥିବୀକୁ ଉଦ୍ଧାରକଲେ ବରାହରୂପ ଧାରଣ କରି । ଦିନେ ବ୍ରହ୍ମା ବିଷ୍ଣୁଙ୍କୁ ପଚାରିଲେ ଯେ ଜୀବଜଗତର ମୋକ୍ଷ କିପରି ହେବ ? ବିଷ୍ଣୁ ଉତ୍ତରରେ କହିଲେ– ମୁଁ 'ନୀଳମାଧବ' ରୂପରେ ନୀଳଗିରିଠାରେ ପୂଜା ପାଇଆସୁଅଛି । ମୋତେ ଦର୍ଶନ କଲେ ଜୀବକୁଳ ମୋକ୍ଷ ପ୍ରାପ୍ତ ହେବେ । ଏଥିରେ ଯମରାଜାଙ୍କର କର୍ତ୍ତବ୍ୟ ପାଳନରେ ବ୍ୟାଘାତ ହେଲା । ଏହାର ପ୍ରତିକାର ପାଇଁ ଯମରାଜ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ଫଳରେ





ନୀଳମାଧବରୂପୀ ବିଷ୍ଣୁ ସେଠାରୁ ଅନ୍ତର୍ଦ୍ଧାନ ହେବା ପ୍ରତିଶ୍ରୁତି ଦେଲେ ।

ନୀଳଗିରି ଉପରେ ଏକକ୍ରୋଶ ପରିବ୍ୟାପ୍ତ କଳ୍ପବୃକ୍ଷ ବିଦ୍ୟମାନ । ଏହାର ପଶ୍ଚିମରେ ଥିବା ରୋହିଣୀକୁଣ୍ଡର ଉତ୍ତରକୁ ନୀଳମାଧବ ମୂର୍ତ୍ତିକୁ ଶବର ପୂଜା କରୁଥିଲେ । ସେତେବେଳକୁ କ୍ଷେତ୍ରର ମହିମା କେହି ଜାଣି ନଥିଲେ । ବ୍ରହ୍ମାଙ୍କ ପଞ୍ଚମପୁରୁଷ ଇନ୍ଦ୍ରଦ୍ୟୁମ୍ନ ଅବନ୍ତୀଦେଶରେ ରାଜୁତି କରୁଥିଲେ । ସେ ଥିଲେ ପରମ ବୈଷ୍ଣବ । ସେ ବିଷ୍ଣୁଙ୍କ ଦର୍ଶନ କରିବାକୁ ପ୍ରବଳ ଇଚ୍ଛା ପ୍ରକଟ କଲେ । ଏକାଗ୍ର ଚିତ୍ତରେ ଧ୍ୟାନରତ ରହିବା ପରେ ଦିନେ ଆକସ୍ମିକଭାବେ ଜନୈକ ତୀର୍ଥପର୍ଯ୍ୟଟକ ତପସ୍ୱୀଙ୍କ ସହିତ ତାଙ୍କର ଦେଖା ହେଲା । ସେ କିପରି ଓ କେଉଁଠାରେ ବିଷ୍ଣୁଙ୍କ ଦର୍ଶନ କରିପାରିବେ ପଚାରିଲେ । ପର୍ଯ୍ୟଟକ କହିଲେ– ସ୍ୱୟଂ ଭଗବାନ ଉତ୍ତ୍ରଦେଶର ନୀଳଗିରିରେ ପୁରୁଷୋତ୍ତମ ରୂପେ ପୂଜା ପାଉଛନ୍ତି । ପ୍ରଭୁଙ୍କ ଦର୍ଶନରେ ମନୁଷ୍ୟ ମୋକ୍ଷଲାଭ କରେ । ରାଜାଙ୍କର ମନ ଅଧିର ହେଲା । ରାଜା ଇନ୍ଦ୍ରଦ୍ୟୁମ୍ନ କୁଳପୁରୋହିତଙ୍କ ଭାଇ ବିଦ୍ୟାପତିଙ୍କୁ ଚାରି ରୂପରେ ଚାରିଦିଗକୁ ଏହାର ସତ୍ୟାସତ୍ୟ ଜାଣିବା ପାଇଁ ପଠାଇଲେ । ବିଦ୍ୟାପତି ଭ୍ରମି ଭ୍ରମି ନୀଳଗିରିର ପଶ୍ଚିମରେ ଥିବା ଏକ ଶବର ପଲ୍ଲୀରେ ଉପନୀତ ହେଲେ । ଦେଖିଲେ– ବିଶ୍ୱାବସୁ ନାମକ ଶବର ପ୍ରତ୍ୟହ ଶୁଦ୍ଧପୂତ ଭାବରେ ନୀଳମାଧବଙ୍କୁ ପୂଜା ଆରାଧନା କରୁଛନ୍ତି । ସେ କିଛିଦିନ ବିଶ୍ୱାବସୁଙ୍କ ସହିତ ଆଳାପ ପୂର୍ବକ ବନ୍ଧୁତା ସ୍ଥାପନ କରି ବିଶ୍ୱାସଭାଜନ ହେବା ପରେ ନୀଳମାଧବଙ୍କ ଦର୍ଶନ ପାଇବାକୁ ଅନୁମତି ଲାଭ କଲେ । ଦର୍ଶନ ପାଇ ଅବନ୍ତୀ ରାଜ୍ୟକୁ ଫେରିଆସି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଜଣାଇଲେ । ଏ ମଧ୍ୟରେ ଭଗବାନ୍ ଯମରାଜାଙ୍କୁ ଦେଇଥିବା ପ୍ରତିଶ୍ରୁତି ଅନୁସାରେ ନୀଳମାଧବ ମୂର୍ତ୍ତିକୁ ବାଲୁକାରାଶିରେ ଆଚ୍ଛାଦନ କରି ଅଦୃଶ୍ୟ ହେଲେ ।

ରାଜାଇନ୍ଦ୍ରଦ୍ୟୁମ୍ନ ସଦଳବଳେ ଉତ୍ତ୍ରସୀମାରେ ପହଞ୍ଚିଲେ । ଉତ୍କଳରାଜା ତାଙ୍କୁ ନୀଳମାଧବ ଅନ୍ତର୍ହିତ ହୋଇଥିବା ଖବର ଶୁଣାଇ ଦେଇଥିଲେ । ରାଜା ଦୁଃଖରେ ଭାଙ୍ଗିପଡିଲେ । ନାରଦଙ୍କ ଆଶ୍ୱାସନା ବାଣୀରେ ଉତ୍‌ଫୁଲ୍ଲିତ ହୋଇ ତାଙ୍କଠାରୁ ଶୁଣିବାକୁ ପାଇଲେ ଯେ ଭଗବାନ୍ ଚତୁର୍ଦ୍ଧାମୂର୍ତ୍ତି ହୋଇ ଦାରୁ ରୂପରେ ଦର୍ଶନ ଦେବେ । ନୀଳଗିରି ଦର୍ଶନ କରି ସମସ୍ତେ ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ଯଜ୍ଞବେଦୀ ନିର୍ମିତ ହେଲା । ନୀଳମାଧବ ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନରେ ଦର୍ଶନ ଦେଲେ । ଇତ୍ୟବସରରେ ସେବକମାନେ ସମୁଦ୍ରରେ ମହାଦାରୁ ଭାସୁଥିବାର ଖବର ରାଜାଙ୍କୁ ଜଣାଇଲେ ।

ରାଜା ମହାସମାରୋହରେ ମହାଦାରୁ ଆଣି ବେଦୀ ଉପରେ ସ୍ଥାପନ କଲେ । ନାରଦଙ୍କସହ ମୂର୍ତ୍ତିଗଠନ ସମ୍ପର୍କରେ ରାଜା ଆଲୋଚନା କଲାବେଳେ ଆକାଶରୁ ଦୈବବାଣୀ ଶୁଣିଲେ– ସ୍ୱୟଂ ଜଗନ୍ନାଥ ନିଜର ପ୍ରତିମା ଗଠନ କରି ମହାବେଦୀ ଉପରେ ବିଜେ ହେବେ । ମହାବେଦୀ ପନ୍ଦର ଦିନ ପର୍ଯ୍ୟନ୍ତ ଆଚ୍ଛାଦିତ ହୋଇ ଗୁପ୍ତ ରହିବ । ବୃଦ୍ଧ ବଢେଇ ହାତରେ ଧରିଥିବା ଉପକରଣ ନେଇ ତାକୁ ଭିତରେ ପୂରାଇ ଦ୍ୱାର ବନ୍ଦ କରିବ । ମୂର୍ତ୍ତି ଗଠନ ସମୟରେ ଭିତରକୁ ଯିବା ମନା ଓ ଭିତରୁ ଶବ୍ଦ ମଧ୍ୟ ବାହାରକୁ ଶୁଣାଯିବ ନାହିଁ । ଦୈବବାଣୀ ଅନୁସାରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ଚତୁର୍ଦ୍ଧାମୂର୍ତ୍ତି ଗଠନ ସମାପ୍ତ ହେଲା । ଶୁଣାଗଲା ନୀଳାଚଳ ଉପରେ ମନ୍ଦିର ନିର୍ମାଣ କରି ପାଟବସ୍ତ୍ରରେ ଆଚ୍ଛାଦନ ପୂର୍ବକ ମୂର୍ତ୍ତିମାନଙ୍କୁ ସେଠାରେ ପ୍ରତିଷ୍ଠା କର । ଅଶ୍ୱମେଧ ଯଜ୍ଞ ସମୟରେ ଯେଉଁ ଗୋଦାନ ଦିଆଯାଇଥିଲା, ସେମାନଙ୍କ ଖୁରା ବାଜି ବିଶାଳଗର୍ତ୍ତ ସୃଷ୍ଟି ହୋଇଥିଲା । ଦାନକାଳୀନ ଶଙ୍ଖ ଜଳରେ ଗର୍ତ୍ତ ପରିପୂର୍ଣ୍ଣ ହୋଇ ପୁଷ୍କରିଣୀରେ ପରିଣତ ହେବାରୁ ପରକାଳରେ ଇନ୍ଦ୍ରଦ୍ୟୁମ୍ନ-ସରୋବର ନାମରେ ନାମିତ ହେଲା ।

ଏହାପରେ ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିବାକୁ ମନସ୍ଥ କଲେ । ଭାରତବର୍ଷର ସମସ୍ତ ରାଜା ଦେଉଳତୋଳା କାର୍ଯ୍ୟରେ ସାହାଯ୍ୟ ସହଯୋଗ କଲେ । ମନ୍ଦିରର ନିର୍ମାଣ କାର୍ଯ୍ୟ ଶେଷ ହେବା ପୂର୍ବରୁ ନାରଦଙ୍କ ପରାମର୍ଶାନୁସାରେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବା ପାଇଁ ବ୍ରହ୍ମଲୋକ ଗମନ କଲେ । ସେଠାରେ ବହୁତ ବିଳମ୍ୱ ହେବାରୁ ବହୁକାଳ ଅତୀତ ହୋଇଗଲା । 'ଏ ଭିତରେ ମନ୍ଦିରର ଅବସ୍ଥା କ'ଣ ଥିବ କେହି ଜାଣିନାହାନ୍ତି । 'ଯଦି ମନ୍ଦିର ଅନ୍ୟ ହାତକୁ ଚାଲିଯାଇଥିବ, ତାହା ନିଜ ଅଧୀନକୁ ଆଣ । ମୁଁ ପଛେ ପଛେ ଯାଉଛି' ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ ।'

ବୃହସ୍ପତି, ନାରଦ, ଦେବବୃନ୍ଦଙ୍କ ସହ ଇନ୍ଦ୍ରଦ୍ୟୁମ୍ନ ମର୍ତ୍ତ୍ୟକୁ ଆସି ଦେଖନ୍ତି– ଗାଲ ନାମକ ରାଜା ମନ୍ଦିର ନିର୍ମାଣ କରି ମାଧବ ମୂର୍ତ୍ତି ସ୍ଥାପନ କରି ପୂଜା କରୁଛନ୍ତି । ଇନ୍ଦ୍ରଦ୍ୟୁମ୍ନ ମାଧବ ମୂର୍ତ୍ତିକୁ ସେଠାରୁ ଆଣି ଛୋଟ ମନ୍ଦିରରେ ରଖିଲେ । 'ଗାଲ' ସୈନ୍ୟସାମନ୍ତମାନଙ୍କ ସହ ଆସି ପୁରୁଷୋତ୍ତମରେ ପହଞ୍ଚିଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କ ବ୍ରହ୍ମଲୋକ ଯାତ୍ରା, ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଓ ମନ୍ଦିର ନିର୍ମାଣର ପ୍ରତ୍ୟକ୍ଷ ପ୍ରମାଣ ନାରଦ ଓ ବୃହସ୍ପତିଙ୍କଠାରୁ ଗାଲ ପାଇ ବିବାଦ ନକରି ଇନ୍ଦ୍ରଦ୍ୟୁମ୍ନଙ୍କୁ ସାହାଯ୍ୟ କଲେ । ବ୍ରହ୍ମା ମନ୍ଦିର ମଧ୍ୟରେ ଦେବତା ପ୍ରତିଷ୍ଠା କଲେ । ସମସ୍ତେ ଯୋଡହସ୍ତରେ ପ୍ରଣତି ନିବେଦନ କଲେ ।

◆◆◆




ଜଗନ୍ନାଥ ମହାପ୍ରଭୁ ସ୍ୱପ୍ନରେ ରାଜାଙ୍କ ଉପରେ ପ୍ରସନ୍ନ ହୋଇ ପଚାରିଲେ– 'ରାଜା ଇନ୍ଦ୍ରଦ୍ୟୁମ୍ନ ! ତୁମେ ଏଡେବଡ କାର୍ଯ୍ୟ କଲ । ମୁଁ ତୁମ ଉପରେ ପ୍ରସନ୍ନ ଅଛି । ଏହାର ପ୍ରତିବଦଳରେ ଗୋଟିଏ ବରଦାନ କରିବି । କି ବର ମାଗିବ, ମାଗ। ଇନ୍ଦ୍ରଦ୍ୟୁମ୍ନ ମଥାନତ କରି କୃତଜ୍ଞତା ଜଣାଇ କହିଲେ– 'ପ୍ରଭୋ ! ମୋର ବର ଦରକାର ନାହିଁ । ଯଦି ବର ଦେବେ, ତେବେ ଏହି ବର ପ୍ରଦାନ କରନ୍ତୁ ଯେପରିକି ମୋ ବଂଶରେ କେହି ଭବିଷ୍ୟତକୁ ନରହନ୍ତୁ । ଯଦି କେହି ରହେ, କହିବେ– ଏ ଦେଉଳ ମୋ ବାପ ଗୋସାଇଁ ବାପାଙ୍କ କୀର୍ତ୍ତି । ଦେଉଳ ଆମର କହିଲେ ସବୁଗଲା ।' ଏହା ଶୁଣି ସମସ୍ତେ ଧନ୍ୟ ଧନ୍ୟ ରାଜା କହିଲେ । ଗାଲ ରାଜାଙ୍କ ହସ୍ତରେ ମନ୍ଦିର ଭାର ଅର୍ପଣ କଲେ ଓ ବ୍ରହ୍ମଲୋକ ଗମନ କଲେ । ଏହା ହେଲା ଜଗନ୍ନାଥ ମନ୍ଦିର ଓ ଦେବଦେବୀଙ୍କର କଥା ଓ କାହାଣୀ ।

ବର୍ତ୍ତମାନ ତିରୁପତିର ଭେଙ୍କଟେଶ୍ୱର ମନ୍ଦିର ଓ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ମଧ୍ୟରେ ଏକ ତୁଳନାତ୍ମକ ବିଶ୍ଳେଷଣ କଲେ ଅନୁମିତ ହୁଏ ଯେ ଉଭୟ ଦେବତା ପ୍ରତିଷ୍ଠାର ପୃଷ୍ଠଭୂମି ଉପରେ ଦଣ୍ଡାୟମାନ । ମାତ୍ର ତତ୍ତ୍ୱ, ଚେତନା, ଉଦ୍ଦେଶ୍ୟ ଓ ରହସ୍ୟ ଦୃଷ୍ଟିରୁ ଉଭୟେ ସମ୍ପୂର୍ଣ୍ଣ ଭିନ୍ନ । ଭେଙ୍କଟେଶ୍ୱରର ପୂଜା ଉପାସନା ଐଶ୍ୱର୍ଯ୍ୟ ଉପରେ ଆଧାରିତ । ଐଶ୍ୱର୍ଯ୍ୟବାନ୍ କେବଳ ଦେବଦର୍ଶନର ଅଧିକାରୀ କିନ୍ତୁ ଜଗନ୍ନାଥ ମନ୍ଦିରକୁ ଭକ୍ତ ଯାଏ ଦିଅଁ ଦେଖିବାକୁ । ମନଖୋଲି ଗୁହାରି କରିବ । ମନଃକାମନା ପୂର୍ଣ୍ଣ କରିବ । ସେଠାରେ ଦେବାନେବାର କିଛିନାହିଁ । କିନ୍ତୁ ଭେଙ୍କଟେଶ୍ୱର ଦର୍ଶନ କରିବାକୁ ଗଲେ କିଛି ଅର୍ଥ ଦେବାକୁ ପଡେ ।

ଦ୍ୱିତୀୟତଃ ଧର୍ମ ସକାଶେ ଜଗନ୍ନାଥ ଦର୍ଶନ କରିବାକୁ ଲୋକମାନେ ଯାଆନ୍ତି, ମୋକ୍ଷ ପ୍ରାପ୍ତି ଆଶାରେ । ଲୋକେ ମନାସି କରି ସହଣୀ ରଖି ଭେଙ୍କଟେଶ୍ୱର ଦର୍ଶନକୁ ଯାଆନ୍ତି । ମୋର ଅମୁକ ହେଲେ ବିପତ୍ତି କଟିଲେ ତିରୁପତି ଯିବି । ଏହା ମୋର ଶପଥ ରହିଲା । ଧର୍ମ, ଅର୍ଥ, କାମ, ମୋକ୍ଷ ଭିତରୁ ଜଗନ୍ନାଥ ଉପାସନା ଧର୍ମ ଓ ମୋକ୍ଷ ଉପରେ ପର୍ଯ୍ୟବସିତ । ଅର୍ଥ ଓ କାମ ଉପରେ ପ୍ରତିଷ୍ଠିତ ଭେଙ୍କଟେଶ୍ୱର ଉପାସନା ।

ତୃତୀୟତଃ ଜଗନ୍ନାଥ ସ୍ୱର୍ଗ ବା ବୈକୁଣ୍ଠବାସୀ ଦେବତା ନୁହନ୍ତି । ପ୍ରଥମ ଉପାସକ ଶବର । ଦେବତା ତା ଘରର ଲୋକ । ରୋଗହୁଏ । ଦେହ ଛାଡେ । ଏସବୁ ମାନବଧର୍ମ । ଭେଙ୍କଟେଶ୍ୱର ମାନବୀୟ ନୁହନ୍ତି । ସାଧାରଣ ଲୋକର ସ୍ପର୍ଶ କରିବାର ଅଧିକାର ନାହିଁ । ଈଶ୍ୱର ପରମାତ୍ମା । ସବୁଠାରୁ ଉଚ୍ଚରେ ସେ ।

ଉଭୟେ ଭକ୍ତିଦୃଷ୍ଟିରୁ ସ୍ୱତନ୍ତ୍ର । ଭଗବାନ୍ ଭାବ ଦ୍ୱାରା ଅଧିକ ବଶ ହୁଅନ୍ତି । ଦାସିଆବାଉରୀ, ସାଲବେଗ, ବନ୍ଧୁମାହାନ୍ତି ଇତ୍ୟାଦି ବହୁ ଭକ୍ତଙ୍କର ଦୃଷ୍ଟାନ୍ତରୁ ଏହା ପ୍ରମାଣିତ । ମାତ୍ର ଭେଙ୍କଟେଶ୍ୱର ଭାବ ଅପେକ୍ଷା ବିଭବ ଦ୍ୱାରା ବଶୀଭୂତ ।

ପଞ୍ଚମତଃ ଜଗନ୍ନାଥ ଦର୍ଶନରେ ଐହିକ ଜୀବନରେ ପାରତ୍ରିକ ସୁଖଲାଭ ହୁଏ । ଆମେ ତାକୁ ମୁକ୍ତି କହୁ, କୈବଲ୍ୟ କହୁ, ମୋକ୍ଷ କହୁ । ପ୍ରସାଦ ସେବନରେ ମୁକ୍ତି, କୈବଲ୍ୟ ପ୍ରାପ୍ତି । ମନ୍ଦିର ଭିତରେ ଏଇ ଜନ୍ମରେ, ଇହଲୋକରେ ପାରତ୍ରିକ ସୁଖ । ଏହାହିଁ ଗୂଢତତ୍ତ୍ୱ । ମାତ୍ର ଭେଙ୍କଟେଶ୍ୱର ଉପାସନାର ଗୂଢତତ୍ତ୍ୱ ସ୍ୱତନ୍ତ୍ର । ମଣିଷ ସୁଖ ଭୋଗ କରେ– ମହାଲକ୍ଷ୍ମୀ ଯୋଗୁଁ, ଧନ ଯୋଗୁଁ । ଯାହାର ତାହା ନାହିଁ, ତାର ଜୀବନ ବ୍ୟର୍ଥ ହୀନୀମାନ । ତିରୁପତିରେ ଐହିକ ସୁଖଲାଭ ବେଳେ ଶ୍ରୀକ୍ଷେତ୍ରରୁ କୈବଲ୍ୟ ଲାଭ ପାରତ୍ରିକ ସୁଖର ଦୃଷ୍ଟାନ୍ତ ।

ଜଗନ୍ନାଥ ଉପାସନା ସାର୍ବକାଳୀନ । ପାହାନ୍ତାରୁ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ଛତିଶା ନିଯୋଗରେ ଛପନ ପ୍ରକାର ଭୋଗ ଲାଗିହୁଏ । ଆଉ ବିଶ୍ରାମ କାହିଁ ? ଏହା ସାର୍ବକାଳିକ ।

ଜଗନ୍ନାଥ ବ୍ରାହ୍ମଣଚାଣ୍ଡାଳ, ପାପୀପୁଣ୍ୟାତ୍ମା, ଧନୀଗରିବ– ସମସ୍ତଙ୍କର ଦେବତା ସେ । ଶୁଦ୍ଧପୂତ ହେଉ ବା ଅଗାଧୁଆ ଅପାଧୁଆ ହେଉ ବା ଶୂନ୍ୟହସ୍ତରେ ହେଉ ବା ଉପହାର ହସ୍ତରେ ହେଉ– ତାଙ୍କଠାରେ କିଛି ବିଧି ନିଷେଧ ନାହିଁ, ଏହାକୁ ସାର୍ବଜନିକ କୁହାଯାଏ ।

ସବୁ ଧର୍ମର ଦେବତା ସେ । କି ବୌଦ୍ଧ କି ଜୈନ କି ଶାକ୍ତ କି ବୈଷ୍ଣବ–ସମସ୍ତେ ସମସ୍ୱରରେ ଗୁହାରି କରନ୍ତି । ସବୁବେଳେ ଉଦାର ସେ । ଉନ୍ମୁକ୍ତ ସେ । ଏହା ଉପାସନାର ସାର୍ବଧର୍ମିକତା । କିନ୍ତୁ ଭେଙ୍କଟେଶ୍ୱର ଉପାସନାରେ ଐକଧର୍ମିକତା ବା ଐକାନ୍ତିକ ପ୍ରାଧାନ୍ୟ ଲାଭ କରିଛି । ସେ ବୈକୁଣ୍ଠାଧିପତି ମହାବିଷ୍ଣୁ । ବ୍ରାହ୍ମଣ୍ୟ ଧର୍ମର ଦେବତା ସେ । ଏହାଙ୍କୁ ଅନ୍ୟ କୌଣସି ଧର୍ମର ଉପାସକ ପୂଜା କରିବା ଦେଖାଯାଏ ନାହିଁ । ମନ୍ତ୍ର ଉଚ୍ଚାରଣ ବିନା ପୂଜା ଅଚଳ ହୁଏ । ଭକ୍ତ ଚାହେଁ– ଉଭୟ ଉପାସନା ନିଜନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖି ସମଗ୍ର ଦେଶର ଜୀବଜଗତର ମଙ୍ଗଳ କରନ୍ତୁ । ଜୟ ଜଗନ୍ନାଥ । ଜୟ ଭେଙ୍କଟେଶ୍ୱର ।

କୈବଲ୍ୟ, ଦଉତୋଟା, ପୁରୀ








# ଶିଶୁ କବିତାରେ ଶ୍ରୀଜଗନ୍ନାଥ

ରଘୁନନ୍ଦନ ମହାପାତ୍ର

ଲୀଳାମୟ ଶ୍ରୀଜଗନ୍ନାଥଙ୍କ ଦିବ୍ୟଲୀଳାର କଥା, ବହୁ ଭାବରେ ବିଭିନ୍ନ ଭାଷା ସାହିତ୍ୟରେ ବର୍ଣ୍ଣନା କରାଯାଇଛି । କେତେବେଳେ ତାହା ଧର୍ମଗ୍ରନ୍ଥର ସ୍ୱରୂପ ନେଇଛି ତ, କେତେବେଳେ ତାହା କାବ୍ୟ କବିତାର ସ୍ୱରୂପ ନେଇଛି । ଆମ ଓଡ଼ିଆ ଭାଷା ସାହିତ୍ୟର ଏକ ଆକର୍ଷଣୀୟ ତଥା ସାର୍ବଜନୀନ ବିଭାଗ ଶିଶୁ ସାହିତ୍ୟରେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ଯୁଗଯୁଗର ଲୀଳାକୁ ନେଇ ରଚନା କରାଯାଇଛି ଅନେକ କଥା ଓ କବିତା । ଶ୍ରୀଜଗନ୍ନାଥଙ୍କ ବଡ ଦେଉଳ, ବଡ ପତାକା, ବଡ ଦାଣ୍ଡ ଓ ବଡ ରଥ ଇତ୍ୟାଦିକୁ ନେଇ ଶିଶୁକବିତାରେ ସୃଷ୍ଟି କରାଯାଇଛି କବିତାର ମାଳା । ଯେଉଁ ମାଳା, ଶବ୍ଦ ବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରି କବି ଆନନ୍ଦିତ ହୋଇଛି ।

ପରଂବ୍ରହ୍ମ ଶ୍ରୀଜଗନ୍ନାଥ, ତାଙ୍କର ସୃଷ୍ଟିରେ ଆମେ ଅନୁଭବ କରୁ ଅମୃତମୟ ସଂସାର । ମାଟି, ପାଣି, ଆକାଶ, ପବନ, ବୃକ୍ଷଲତା ଓ ଜୀବଜଗତରେ ତାଙ୍କର ଦିବ୍ୟସତ୍ତା ବିଦ୍ୟମାନ । ସେହି ଅମୃତ ଅନୁଭବକୁ ପାଇ ଏକ ଶିଶୁ କବିତାରେ ଉଲ୍ଲେଖ କରିଛନ୍ତି କବି ଏପରି–

''ଆହେ ଦୟାମୟ ବିଶ୍ୱ ବିହାରୀ
ଘେନ ଦୟାବହି ମୋର ଗୁହାରି
ଜଳ ସ୍ଥଳ ବନ ଗିରି ଆକାଶ
ତୁମ ଲୀଳା ସବୁ ଠାରେ ପ୍ରକାଶ''

(କବିତା– ''ଆହେ ଦୟାମୟ ବିଶ୍ୱ ବିହାରୀ'' ଲେଖକ ରାମକୃଷ୍ଣ ନନ୍ଦ)

ଏକ ଶିଶୁ କବିତାରେ ଆଉ ଜଣେ ଶିଶୁ କବି ଉଲ୍ଲେଖ କରିଛନ୍ତି ଏପରି–

'' ତୁମେ ଅଛ ବୋଲି ସୁନ୍ଦର ସକାଳ
ଧରାକୁ ଆସୁଛି ଧାଇଁ
ତୁମେ ପିତାମାତା ଜଗତ କରତା
ପ୍ରଣାମ ଜଗତ ସାଇଁ''

(କବିତା– ତୁମେ ଅଛ ବୋଲି–ଲେଖକ ଗୋଲୋକ ବିହାରୀ ବିଶୋଇ– ଜହ୍ନ ତା'ର ନାଆଁରେ)

ଶ୍ରୀଜଗନ୍ନାଥଙ୍କ ଚରଣରେ ଆପଣାର ସମସ୍ତ ଇଚ୍ଛାକୁ ସମର୍ପି ଦେଇ 'ସଳିତା' ହୋଇ ଜଳି ଆଲୋକ ଦେବାକୁ ଇଚ୍ଛା କରିଛି କବି । ଏପରି ଏକ ସମର୍ପଣ ଭାବର ଶିଶୁକବିତାର କିଛି ଭାବ ଏଠାରେ ଉଲ୍ଲେଖ କରାଯାଇଛି–

''କାଳିଆ ପାଖେ ମୁହିଁ
'ସଳିତା'ଟିଏ ହୋଇ ଜଳିବି
ଜୀବନ ମୋର ଧନ୍ୟ କରିବି
ଶବ୍ଦର ଚକାଡୋଳା
ନାଆଁଟି ମୋର ତୂଳା ।''

(କବିତା– 'ନାଁଟି ମୋର ତୂଳା'–ଲେଖକ ମଂଜୁ ଦାସ– ଇକିଲି ମିକିଲି ଚିକିଲି ଚିକା)

ପ୍ରଭୁଙ୍କୁ ଆମେ କହୁ ବଳିଆର ଭୁଜ । ଭକ୍ତ ମନ ଭିତରେ ଭାବନାରେ ଲୀନ ହୋଇ ଭାବେ ଆହା ଫୁଲଟିଏ ହୋଇ ସେଇ ବଳିଆର ଭୁଜରେ ଝୁଲି ପଡି ଜୀବନକୁ ଧନ୍ୟ ମନେ କରନ୍ତି କି ! ଏପରି ଭାବନାକୁ ନେଇ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି, ସେହି ମହାବାହୁଙ୍କ ଉଦ୍ଦେଶ୍ୟରେ–




''ଫୁଲଟିଏ ମୋତେ କର ମହାବାହୁ
ଫୁଲଟିଏ ମୋତେ କର
ତବ ଚରଣରେ ସ୍ଥାନ ଦେବ ମୋତେ
ନ କଲେ ଗଳାର ହାର ।''

(କବିତା- ମହାବାହୁ-ଲେଖକ ବିଜୟ କୁମାର ଦାଶ- ଶାମୁକା- ୨୦୧୧)

ବାସ୍ତବରେ ଶରଧାବାଲିରୁ ସିଂହଦ୍ୱାରର ଦୂରତା ଯାହା ହେଉନା କାହିଁକି, 'ଜୟ ଜଗନ୍ନାଥ' ନାମ ମୁଖରେ ଉଚ୍ଚାରଣ କରି ବଡଦାଣ୍ଡରେ ଆଗେଇ ଗଲେ ବାଟ ଜଣାପଡେନା । ପାଦ ଥକି ପଡେନା, ଶ୍ରୀମନ୍ଦିର ନିକଟ ହୋଇଯାଏ । ଏପରି ଏକ ଭାବନାକୁ ନେଇ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ଶରଧା ବାଲିରୁ ସିଂହ ଦୁଆରକୁ
ଯେତେ ବାଟ ଥାଏ ବାକି
'ଜଗନ୍ନାଥ'ପଦ ମୁଖେ ଧରିଥିଲେ
ପାଦ ପଡେ ନାହିଁ ଥକି ।''

(କବିତା- 'ଚକାଆଖି'-ଲେଖକ ପ୍ରଦୀପ୍ତ କୁମାର ମହାନ୍ତି- ଜଙ୍ଗଲ ରାଜା ବାଘମାମୁ-୨୦୧୧)

ଶ୍ରୀଜଗନ୍ନାଥଙ୍କ ଚକାଆଖିର ଆକର୍ଷଣ ଭକ୍ତର ମନକୁ ଟାଣେ । ସେହି ଗୋଲ ଗୋଲ ଆଖିର ପବିତ୍ର ଅନୁଭବକୁ ମନରେ ଆଣି ପାଦ ନଥିବା ଓ ଅଧା ହାତ ଥିବା ବିଗ୍ରହମାନଙ୍କୁ ଦେଖି ଆତ୍ମହରା ହୋଇଯାଆନ୍ତି ଭକ୍ତ । ସେହି ଭାବଧାରାର ଅମୃତ ଅନୁଭବ ଶିଶୁ କବିଙ୍କ କଲମରେ ପ୍ରକାଶ ପାଇଛି ଏକ ଶିଶୁ କବିତାରେ-

''ଚକା ଚକା ତା'ର ଦୁଇଗୋଟି ଆଖି
କଳାମେଘ ପରି ଦିହ
ପାଦ ନାହିଁ, ହାତ ଦୁଇଗୋଟି ଅଧା
ସଦା ହସ ହସ ମୁହଁ
ସେ'ତ ଏମିତିକା ଦିଅଁ
ଦେଖି ଦେଲେ ତାକୁ ମନ ପରାଣରେ
ଛୁଟେ ଆନନ୍ଦର ସୁଅ ।''

(କବିତା- ''ସେ ତ ଏମିତିକା ଦିଅଁ''-ଲେଖକ- ଦେବେନ୍ଦ୍ର ଚୌଧୁରୀ- ନନ୍ଦନକାନନ, ଜୁଲାଇ,୨୦୦୬)

ଶ୍ରୀଜଗନ୍ନାଥଙ୍କ 'ମହାପ୍ରସାଦ' ପାଇବା ମହାଭାଗ୍ୟ । ସେହି 'ମହାପ୍ରସାଦ'କି ଧନୀ କି ମାନୀ କି ଗରିବ, ଭେଦ ଭାବ ଭୁଲି ଏକାଠି ବସି ଗ୍ରହଣ କରନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତି ଏବଂ ଧାର୍ମିକ ପରମ୍ପରାର ଏକ ମହନୀୟ ସନ୍ଦେଶ ମହାପ୍ରସାଦ ସେବା ବହନ କରେ । ଏପରି ଭାବନାକୁ ନେଇ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ବଡ ଦେଉଳ ମହାପ୍ରସାଦ
ଆଉ ବା ଅଛି କାହିଁ
ଧନୀ ଗରିବ ଖାଆନ୍ତି ବସି
ଭେଦ ଭାବଟି ନାହିଁ ।''

(କବିତା-''ମୋ' ଓଡ଼ିଶା-ଲେଖକ-ରବୀନ୍ଦ୍ର ବିଶ୍ୱାଳ- ନନ୍ଦନକାନନ- ମଇ-୨୦୧୧)

ସମସ୍ତେ ଅନୁଭବ କରନ୍ତି ଜଗନ୍ନାଥଙ୍କ ଡୋରି ନଲାଗିଲେ ଶ୍ରୀକ୍ଷେତ୍ରକୁ ଯାଇ ହୁଏନା । ଶ୍ରୀକ୍ଷେତ୍ର ମାଟିରେ ପାଦ ପଡିଗଲେ ବଡ ଦେଉଳର ବାନା ଉପରେ ଆଖି ପଡେ । ଶ୍ରୀଜଗନ୍ନାଥ ପତିତପାବନ ବାନା ଉଡାଇ ଭକ୍ତଙ୍କୁ ଦର୍ଶନ ଦେଉଛନ୍ତି । ଏପରି ଏକ ଭାବନାକୁ ନେଇ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ପତିତବାନାଟି ଉଡିଲାଣି
ଆସ ଆସ ବୋଲି ଡାକିଲାଣି
ଭକତର ଆଖି ଯାଉଥିଲା ଲାଖି
ସବୁରି ମନକୁ କିଣିଲାଣି ।''

(କବିତା-''କାଳିଆର ଡୋରି ଟାଣିଲାଣି-''ଲେଖକ- ଅରୁଣ ଚନ୍ଦ୍ର ମହାନ୍ତି- ଏ ଘର ଆମର- ସରଗପୁର)

ଭାବରେ ଯୁଗେ ଯୁଗେ ଶ୍ରୀଜଗନ୍ନାଥ ଭକ୍ତର ଅଧୀନ ହୋଇଛନ୍ତି । ତାଙ୍କ ନିକଟରେ ଅଭାବ ନାହିଁ । ଅଛି ଭାବର ଅମୃତ । ମନଖୋଲି ଡାକିଲେ ସେ ଶୁଣନ୍ତି । ଭକ୍ତ ପାଇଁ ଅପେକ୍ଷା କରନ୍ତି । ଆଉ ସେଇ ଅମୃତ ଭକ୍ତକୁ ପ୍ରଦାନ କରନ୍ତି । ଜଗନ୍ନାଥ କଥା କାହାଣୀରେ ଅନେକ ଭକ୍ତଙ୍କର କଥା ରହିଛି । ଏପରି ଭାବଗ୍ରାହୀଙ୍କର ଭାବକୁ ନେଇ 'କାଳିଆ' ପାଇଁ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ଦାସିଆ ବାଉରି ନଡିଆ ଯାଚିଲା
ଶୂନେ ଶୂନେ ତାହା ନେଲା
ଯବନର ପୁଅ ସାଲବେଗ ପାଇଁ




ରଥ ତା' ଅଟକି ଗଲା
ବଳରାମ ଦାସ ପାଇଁ ତା'ର ରଥ
ବଡଦାଣ୍ଡେ ଅଟକିଲା
ଗଜପତି ରାଜା ଭକତ ଡାକରେ
ରଥେ ''କାଳିଆ'' ବସିଲା ।''

(କବିତା-''ଶ୍ରୀକ୍ଷେତ୍ରକୁ ଆସ ଯିବା''-ଲେଖକ-ରଘୁନନ୍ଦନ ମହାପାତ୍ର-ଉତ୍କଳିକା-୧୯୯୮)

ଶ୍ରୀଜଗନ୍ନାଥଙ୍କ ଐତିହାସିକ କାଞ୍ଚି ଅଭିଯାନ ଇତିହାସର ସ୍ମରଣୀୟ ଘଟଣା । ଗଜପତି ରାଜାଙ୍କୁ ଆବଶ୍ୟକୀୟ ସହାୟତା ପାଇଁ ଧଳା ଓ କଳା ଘୋଡାରେ ବସି ପ୍ରଭୁ ବଡଠାକୁର ଓ ଶ୍ରୀଜଗନ୍ନାଥ ସ୍ୱୟଂ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ଥିବାର କିମ୍ବଦନ୍ତୀ ରହିଛି । ଏହି ଘଟଣାକୁ ନେଇ ରଚିତ କବିତାରେ ଉଲ୍ଲେଖ କରାଯାଇଛି-

''କଳାଧଳା ଘୋଡା ଚଢି ବେନିଭାଇ
ଯୁଦ୍ଧ ଅଭିମୁଖେ ଯାଇ
ଶ୍ରୀକ୍ଷେତ୍ରର ରାଜା ପୁରୁଷୋତ୍ତମଙ୍କୁ
କାଞ୍ଚି ଯୁଦ୍ଧେ କଲ ଜୟୀ ।''

(କବିତା- 'ଉତ୍କଳର ପ୍ରଭୁ ଜଗତ ବିଖ୍ୟାତ''- ଲେଖକ-କାଞ୍ଚନ ମିଶ୍ର- ଉତ୍କଳ ପ୍ରସଙ୍ଗ-ଜୁଲାଇ -୨୦୧୧)

ଶ୍ରୀଜଗନ୍ନାଥଙ୍କ ସମସ୍ତ ପର୍ବ ଓ ଯାତ୍ରା ମଧ୍ୟରେ 'ଦୋଳଯାତ୍ରା' ରଙ୍ଗର ପର୍ବ ବିଶେଷ ଆକର୍ଷଣୀୟ । ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ, ଶ୍ରୀରାଧା ଓ ଗୋପୀମାନଙ୍କ ସହିତ ଖେଳିଥିଲେ ରଙ୍ଗ ଅବିର । ସେହି ସ୍ମୃତିକୁ ସ୍ମରଣ କରି ଶ୍ରୀମନ୍ଦିରରେ ପାଳିତ ହୋଇଆସୁଛି ପବିତ୍ର ଦୋଳପର୍ବ । ଶ୍ରୀରାଧା ଗୋବିନ୍ଦଙ୍କ ଉଦ୍ଦେଶ୍ୟରେ ଦୋଳଯାତ୍ରା ପର୍ବକୁ ନେଇ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ବରଷକ ପରେ ଆସୁଛି ଦୋଳ
ରଙ୍ଗ ଅବିରରେ ଲାଗିବ ଖେଳ
ଆସିଗଲା ପଞ୍ଚୁଦୋଳ
ଶ୍ରୀରାଧା-ଗୋବିନ୍ଦ ବିମାନେ ବୁଲିବେ
ବାଜିବ ମୃଦଙ୍ଗ ତାଳ ।''

(କବିତା-''ଆସୁଛି ଦୋଳ''-ଲେଖକ-ରଘୁନନ୍ଦନ ମହାପାତ୍ର-ପ୍ରଜାତନ୍ତ୍ର ସାପ୍ତାହିକୀ-ମାର୍ଚ୍ଚ୧୨/୧୯୯୫)

ଶ୍ରୀଜଗନ୍ନାଥଙ୍କ ପର୍ବ ଓ ଯାତ୍ରା ମଧ୍ୟରେ ''ଚନ୍ଦନ ଯାତ୍ରା'' ଏକ ବିଶେଷ ଯାତ୍ରା । ଏହି ଏକୋଇଶି ଦିନ ବ୍ୟାପୀ ଯାତ୍ରାରେ ଠାକୁରଙ୍କ ଚଳନ୍ତି ପ୍ରତିମାମାନ ଚାପ ଡଙ୍ଗାରେ ବସି ନରେନ୍ଦ୍ର ପୋଖରୀରେ ଚନ୍ଦନ ଉତ୍ସବ ପାଳନ କରିଥାଆନ୍ତି । ଏହି ବିଶେଷ ଯାତ୍ରାର ଭାବକୁ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ଚନ୍ଦନ ପୋଖରୀ ଉଠଇ ହସି
ଚାପ ଡଙ୍ଗା ହଂସ ଭାସେ
କାଳିଆ ଠାକୁର ଭଉଁରୀ ଖେଳନ୍ତି
ସୁନା ମୁଖ୍ ମୁହଁ ଦିଶେ ।''

(କବିତା- ''ଆସିଛି ଚନ୍ଦନ ଯାତ''- ଲେଖକ-ରଘୁନନ୍ଦନ ମହାପାତ୍ର-ଫଲଝରି-ମଇ/୧୯୯୬)

ଶ୍ରୀଜଗନ୍ନାଥଙ୍କ ପବିତ୍ର ରଥଯାତ୍ରା ବିଶ୍ୱପ୍ରସିଦ୍ଧ । ଏହି ଯାତ୍ରାରେ ସ୍ୱୟଂ ଚତୁର୍ଦ୍ଧାମୂର୍ତ୍ତି ତିନିରଥରେ ବିଜେ ହୋଇ ମାଉସୀ ମା' ବା ଗୁଣ୍ଡିଚା ମନ୍ଦିରକୁ ବଡଦାଣ୍ଡରେ ଯାଆନ୍ତି । ରଥ ଉପରେ ବିଜେ ପୂର୍ବରୁ ଠାକୁରଙ୍କ 'ପହଣ୍ଡି ବିଜେ' ଦୃଶ୍ୟ ଅତ୍ୟନ୍ତ ମନଛୁଆଁ ଲାଗେ । ସେହି ଅପୂର୍ବ ଦୃଶ୍ୟକୁ ସ୍ୱଚକ୍ଷୁରେ ଦେଖିବା ପାଇଁ ବଡଦାଣ୍ଡ ଲୋକାରଣ୍ୟ ହୋଇଉଠେ । ଏକ ଶିଶୁ କବିତାରେ ସେଇ ଅନୁଭବର କଥାକୁ ଉଲ୍ଲେଖ କରାଯାଇଛି-

''ଅଜା ହାତଧରି ବଡ ଦାଣ୍ଡେ ଯିବା
ଗହଳି ଆଡେଇ ଦେଇ
ଜଗାବଳିଆଙ୍କ ପହଣ୍ଡି ଦେଖିବା
ଆଖି ଲାଖିଯିବ ତହିଁ ।''

(କବିତା-''ଆସ ଦେଖିଯିବା ରଥ ଯାତରା''- ଲେଖକ-ରଘୁନନ୍ଦନ ମହାପାତ୍ର - ଫୁଲଝରି- ୧୯୯୭)

ରଥଯାତ୍ରାର ମହନୀୟ ସନ୍ଦେଶ ହେଉଛି ଶ୍ରୀଜଗନ୍ନାଥ ନିଜ ଇଚ୍ଛାରେ ଏହି ଯାତ୍ରା ସୃଷ୍ଟି କରିଛନ୍ତି କେବଳ ବଡଦାଣ୍ଡର ଦୁଃଖୀଦୀନଙ୍କୁ ଦେଖିବା ପାଇଁ । ବଡଦାଣ୍ଡରୁ ତାଙ୍କୁ ଅଗଣିତ ଭକ୍ତ ଦେଖିବାର ସୁଯୋଗ ପାଆନ୍ତି । ଏପରି ଭାବନାରେ ରଚିତ ଶିଶୁ କବିତାରେ ଉଲ୍ଲେଖ କରାଯାଇଛି-

''ଏମିତି ଯାତରା ଜଗତେ ନାହିଁ
ଆପଣା ଜନଙ୍କୁ ଦେଖିବା ପାଇଁ
ଠାକୁର ଆସନ୍ତି ଦାଣ୍ଡକୁ ଧାଇଁ
ଦୀନ ଦୁଃଖୀ କଥା ଶୁଣିବା ପାଇଁ ।''



(କବିତା–''ରଥ ଯାତରା–'' ଲେଖକ– ରଘୁନନ୍ଦନ ମହାପାତ୍ର– ମୀନାବଜାର–୧୯୯୫)

ପବିତ୍ର ରଥଯାତ୍ରାର ବିଶେଷ ଆକର୍ଷଣ ଠାକୁରଙ୍କ ତିନିରଥ । ବଡଦାଣ୍ଡରେ ଥାଇ ସମସ୍ତେ ଇଚ୍ଛା କରନ୍ତି ରଥ ଛୁଇଁବେ ଓ ରଥର ଦଉଡି ହାତ ଲଗାଇ ଭିଡିବେ । ଏପରି ଭାବନାକୁ ଆଣି ଶିଶୁ କବିତାରେ ଉଲ୍ଲେଖ କରାଯାଇଛି ।

''ତିନିରଥେ ତିନି ଠାକୁର ବିଜେରେ
ଯିବାକୁ ଗୁଣ୍ଡିଚା ବାଡିକି
ଲକ୍ଷ ଲକ୍ଷ ଭକ୍ତ ଭୁଲି ଜାତିଭେଦ
ରଥନେବେ ଭିଡି ଭିଡିକି ।''

(କବିତା–''ଆଜିପରା ରଥଯାତରା''–ଲେଖକ– ବୀରେନ୍ଦ୍ର ମହାନ୍ତି– ଶିଶୁ ପ୍ରତିଭା, ଜୁଲାଇ ୨୦୧୧)

ପବିତ୍ର ରଥଯାତ୍ରାର ଆକର୍ଷଣୀୟ ରାଜସେବା ହେଉଛି ଗଜପତି ମହାରାଜାଙ୍କ ରଥ ଛେରା ପହଁରା ସେବା । ରାଜପଦରେ ଥାଇ ରାଜା ଠାକୁରଙ୍କ ରଥକୁ ଝାଡୁପହଁରା କରିଥାନ୍ତି ଆପଣାର ବଡପଣ ଭୁଲି । ଏପରି ସମାନତା ଭାବର ନିଦର୍ଶନ ବିରଳ । ଶିଶୁ କବିତାରେ ଏହି ଭାବର ଉଲ୍ଲେଖ କରାଯାଇଛି–

''ଛେରା ପହଁରାରେ ରାଜାଙ୍କୁ ଦେଖିବା
ହାତେ ସୁନା ଝାଡୁ ଧରି
ବଡପଣ ଭୁଲି ପହଁରା କରିବେ
ବାଜୁଥିବ ଭେରୀ ତୂରୀ ।''

(କବିତା–''ଆସ ଦେଖିଯିବା ରଥ ଯାତରା''–ଲେଖକ– ରଘୁନନ୍ଦନ ମହାପାତ୍ର–ପିଲାଙ୍କ ଧରିତ୍ରୀ–୨୦୦୭)

ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଲୀଳାକୁ ବର୍ଣ୍ଣନା କରିବା ପାଇଁ ସେହି ସ୍ୱୟଂ ଭାବ ଓ ଶବ୍ଦ ପ୍ରଦାନ କରିଥାନ୍ତି । ଯେତେଯେତେ ଭାବ ଓ ଶବ୍ଦ ସୃଷ୍ଟି ହୁଏ ତାହା କବିତା ହେଉକି, କଥା ହେଉ ତାହା ତାଙ୍କ ନିକଟରେ ସମର୍ପିତ । ଶ୍ରୀଜଗନ୍ନାଥଙ୍କୁ ନେଇ ଶିଶୁ କବିତାରେ ଯେତେଯେତେ ଭାବ ଓ ଶବ୍ଦ ପ୍ରକାଶ ପାଇଛି ତାହା ଶେଷ ଭାବ ନୁହେଁ କି ଶେଷ ଶବ୍ଦ ନୁହେଁ, ଏହା ଶୁଭାରମ୍ଭ ମାତ୍ର ।

ହରଚଣ୍ଡୀ ସାହି,
ପୁରୁଣା ଭୁବନେଶ୍ୱର–୨

# ଅନ୍ତିମ ଆଶା

**କୃଷ୍ଣଚନ୍ଦ୍ର ରଥ**

ନିତି ଦେଖୁଥିବି ତୁମ୍ଭ ପଦ୍ମମୁଖ
ଗରୁଡସ୍ତମ୍ଭ ପାଖରେ
ଆଶ୍ରୟ କରିଛି ତୁମ୍ଭଙ୍କୁ ପ୍ରଭୁ ହେ
ନିରାଶ ନକର ବାରେ ।

ଯେତେ ଦେଖୁଥିଲେ ସୁନ୍ଦର ଦିଶଇ
ମନ ତ ବୁଝଇ ନାହିଁ
ଡାକିଡାକି ପ୍ରଭୁ ଥକି ପଡିଲିଣି
କୃପା ପାଉ ନାହିଁ କାହିଁ
ପହଣ୍ଡି ବେଳରେ ଟାହିଆ ହଲାଇ
ନାଚୁଥିବା ଦୃଶ୍ୟ ଦେଖି



ନୟନରୁ ମୋର ବହି ଯାଏ ଅଶ୍ରୁ
ଦେଖି ତୁମ୍ଭ ଚକାଆଖି ।
ଦର୍ଶନ ମିଳିଥାଉ ରଥ ଉପରୁ
ମୁଁ ପରା ତୁମ୍ଭର ଭକ୍ତ
ମନୋବାଞ୍ଛା ମୋର ପୂରଣ କରିଲେ
ହୋଇବି ଜୀବନ ମୁକ୍ତ
ପରିଣତ ବୟସେ ତୁମ୍ଭେ ଶ୍ରୀହରି
ହୋଇବ ମୋର ଭରସା
ନୀଳାଚଳେ ରହି ଦର୍ଶନ କରିବି
ଏତିକି ଅନ୍ତିମ ଆଶା ।

ଖୁଣ୍ଟିଆ ସାହି, ପୁରୀ





# ଯୁଗେ ଯୁଗେ ଶ୍ରୀଜଗନ୍ନାଥ

**ଲାଲମୋହନ ପଟ୍ଟନାୟକ**

ଶ୍ରୀଜଗନ୍ନାଥ ବେଦାନ୍ତୀର ପରଂବ୍ରହ୍ମ, ଯୋଗୀର ପରମେଶ୍ୱର, ଭକ୍ତର ଭଗବାନ । ନିରାକାର ସର୍ବବ୍ୟାପି ପରଂବ୍ରହ୍ମଙ୍କର ସାକାର ଉପାସନା ହେଉଛି ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଉପାସନା । ସତ୍, ଚିତ୍, ଆନନ୍ଦର ସ୍ୱରୂପ ଶ୍ରୀଜଗନ୍ନାଥ ଅରୂପର ରୂପ । ସେ ସକଳ ରୂପର ରୂପ ଜଗତର ନାଥ ଜଗନ୍ନାଥ । ସେ ଅନାଦି, ଅନନ୍ତ, ଆଦିମୂଳ, ସ୍ୱୟଂପ୍ରକାଶ । ଜଗନ୍ନାଥ ବହୁନାମ, ବହୁରୂପରେ ପ୍ରକାଶିତ ବିଶ୍ୱରୂପ । ସାଧାରଣ ମଣିଷର ସେ ହିଁ ଭଗବାନ– ପରମାରାଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁ ।

ନିରାକାର ପରଂବ୍ରହ୍ମ ସାକାର ରୂପରେ ଶ୍ରୀକ୍ଷେତ୍ରରେ କେବେ ସ୍ୱୟଂ ପ୍ରକାଶିତ ହେଲେ ତାହା ନିର୍ଣ୍ଣୟ କରିବା ଦୁଃସାଧ୍ୟ । ଭକ୍ତର ବିଶ୍ୱାସ, ମହାପ୍ରଭୁ ଚିରନ୍ତନ କାଳରୁ ଶାଶ୍ୱତ କ୍ଷେତ୍ର ଶ୍ରୀକ୍ଷେତ୍ରରେ ନିତ୍ୟ ନୂତନ ସ୍ୱରୂପରେ ପ୍ରକାଶିତ ହୋଇ ସଂସାରର ସମସ୍ତ ଧର୍ମବିଶ୍ୱାସ ଓ ଦର୍ଶନର ପ୍ରତିଭୂ ଭାବରେ ଉପାସିତ ।

'ବେଦ' ମନୁଷ୍ୟକୃତ ନୁହେଁ । ଏହା ଅପୌରୁଷେୟ । ମଣିଷର ସ୍ମୃତିରେ ଥିବା ପ୍ରାଚୀନତମ ସାହିତ୍ୟ ହେଉଛି 'ବେଦ' । ଋଗବେଦ ସଂହିତାରେ ବର୍ଣ୍ଣନାକାଳରୁ ଆରମ୍ଭ କରି ଏବେ ମଧ୍ୟ ଶ୍ରୀକ୍ଷେତ୍ରରେ ଅପୌରୁଷ ଦାରୁବ୍ରହ୍ମ ଉପାସିତ ହେଉଛନ୍ତି । ତତ୍ତ୍ୱବିତମାନଙ୍କ ମତରେ ପ୍ରାୟ ସାତହଜାର ବର୍ଷ ପୂର୍ବେ ରାଜା ଇନ୍ଦ୍ରଦ୍ୟୁମ୍ନ ପଂରବ୍ରହ୍ମଙ୍କ ସ୍ୱରୂପ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ବୈଦିକ ଉପାସନା ଆରମ୍ଭ କରିଥିଲେ । ବୈଦିକ ସାହିତ୍ୟରେ ଜଗନ୍ନାଥଙ୍କୁ ପୁରୁଷ ରୂପରେ ବର୍ଣ୍ଣନା କରାଯାଇଛି । ଉପନିଷଦରେ ପରଂବ୍ରହ୍ମ ଭଗବାନଙ୍କର ଯେଉଁ ବର୍ଣ୍ଣନା ରହିଛି, ତାହା ଶ୍ରୀଜଗନ୍ନାଥଙ୍କଠାରେ ରୂପାୟିତ । ଶ୍ରୀଜଗନ୍ନାଥ ସ୍ୱୟଂ ଓଁକାର ରୂପୀ ହେତୁ ସବୁ ଦେବ ଦେବୀଙ୍କର ସ୍ରଷ୍ଟା ବ୍ରହ୍ମଭାବରେ ଉପାସିତ । ଶ୍ରୀଜଗନ୍ନାଥ ଦିବ୍ୟ ଅମୂର୍ତ୍ତ ପୁରୁଷ ପୁରୁଷୋତ୍ତମ ।



ଖ୍ରୀଷ୍ଟପୂର୍ବ ୩୦୦୦ବର୍ଷ ପୂର୍ବରୁ ମହାଭାରତ ରଚନା । ତା' ପୂର୍ବରୁ ରାମାୟଣ ରଚନା । ରାମାୟଣ ପୂର୍ବରୁ ବୈଦିକ କାଳ । କଳିଯୁଗର ଆରମ୍ଭ ଖ୍ରୀ.ପୂ ୩୧୦୦ରୁ । ଏହା ମହାଭାରତ ପରବର୍ତ୍ତୀ ସମୟ । ଅତଏବ ଖ୍ରୀ.ପୂ. ୫୦୦୦ହେଉଛି ବୈଦିକକାଳ, ଯେଉଁ ସମୟରେ ଦ୍ରାବିଡମାନେ ଦାରୁ ଉପାସନା କରୁଥିଲେ ଭାରତର ପୂର୍ବ ଉପକୂଳରେ ।

'ବେଦ' ପରବର୍ତ୍ତୀ ପୁରାଣ ସାହିତ୍ୟରେ ପୁରୁଷୋତ୍ତମ ଜଗନ୍ନାଥ ଉପାସନାର ପ୍ରମାଣ ରହିଛି । ପରଂବ୍ରହ୍ମ ଭଗବାନ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ମହର୍ଷି ବାଲ୍ମୀକି ତାଙ୍କର ଆର୍ଷ ରାମାୟଣରେ ବର୍ଣ୍ଣନା କରିଛନ୍ତି–





ପ୍ରୋଦ୍ୟମାନେ ଜଗନ୍ନାଥଂ ସର୍ବଲୋକ ନମସ୍କୃତମ୍
କୌଶଲ୍ୟା ଜନୟଦ ରାମଂ ଦିବ୍ୟ ଲକ୍ଷଣ ସଂଜୁତମ୍ ॥

(ଆର୍ଷ ରାମାୟଣ-ବାଳକାଣ୍ଡ)

ବାଲ୍ମୀକି ରାମାୟଣରେ ପ୍ରଭୁ ରାମଚନ୍ଦ୍ର ରାକ୍ଷସ ରାଜା ବିଭୀଷଣଙ୍କୁ ଜଗନ୍ନାଥଙ୍କ ଆରାଧନା ନିମନ୍ତେ ନିର୍ଦ୍ଦେଶ ଦେଇଛନ୍ତି ।

କିଂ ଚାନ୍ୟତ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାବଳଃ
ଆରାଧୟା ଜଗନ୍ନାଥଂ ଇକ୍ଷାକୁକୁଳ ଦୈବତମ୍ ।

(ବାଲ୍ମୀକି ରାମାୟଣ-ଉତ୍ତରାକାଣ୍ଡ-୧୦୮/୨୮)

ଆରାଧୟ ଜଗନ୍ନାଥଂ ଇକ୍ଷାକୁକୁଳ ଦୈବତମ୍
ଆରାଧନାୟ ଅନିଶଂ ସର୍ବଦେବଃ ସଦା ।

(ବାଲ୍ମୀକି ରାମାୟଣ-ଉତ୍ତରାକାଣ୍ଡ-୧୦୮/୩୧)

ସ୍ନାନଯାତ୍ରା ସମୟରେ ସ୍ନାନବେଦୀରୁ ଅନବସର ଗୃହକୁ ଏବଂ ନୀଳାଦ୍ରିବିଜେରେ ରଥଉପରୁ ରତ୍ନ ସିଂହାସନ ଉପରକୁ ଶ୍ରୀଜଗନ୍ନାଥଙ୍କ ପହଣ୍ଡିବିଜେ ବେଳେ ଶ୍ରୀମନ୍ଦିର ନାଟମଣ୍ଡପରେ 'ବିଭୀଷଣ ବନ୍ଦାପନା'ରୁ ଏହାର ସୂଚନା ମିଳେ ।

ରାମାୟଣ ଯୁଗ ପରେ ମହାଭାରତ ଯୁଗରେ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ଉପାସନା ପ୍ରତିଷ୍ଠିତ ଥିଲା । ମହାଭାରତ କାଳରେ ଜଗନ୍ନାଥ ଧର୍ମ ଥିଲା ଭାରତର ରାଷ୍ଟ୍ରଧର୍ମ । ମହାଭାରତ ଶାନ୍ତିପର୍ବରେ ବର୍ଣ୍ଣନା ଅଛି-

ଏଷୋଧର୍ମ ଜଗନ୍ନାଥାତ ସାକ୍ଷାତ ନାରାୟଣାତ ନୃପଃ
ଏବମେଷ ମହାଧର୍ମ ସତେପୂର୍ବେ ନୃପୋତମଃ ।

(ମହାଭାରତ-ଶାନ୍ତିପର୍ବ-୧୧)

କୃଷ୍ଣଦ୍ୱୈପାୟନ ପରଂବ୍ରହ୍ମଙ୍କ ପ୍ରତିନାମ 'ଜଗନ୍ନାଥ' ଭାବେ ମହାଭାରତରେ ଉଲ୍ଲେଖ କରିଛନ୍ତି ।

ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ
ବିଷ୍ଣୋର୍ନାମ ସହସ୍ରଂମେ ଶୃଣୁ ପାପଭୟା ପହମ୍ ।

(ଭୀଷ୍ମପର୍ବ)

ଶ୍ରୀମଦ୍ ଭାଗବଦ୍ ଗୀତାରେ ଜଗନ୍ନାଥଙ୍କୁ କ୍ଷର ପୁରୁଷଠାରୁ ଭିନ୍ନ ଏବଂ ଅକ୍ଷର ପୁରୁଷଠାରୁ ଶ୍ରେଷ୍ଠ ଭାବରେ ପ୍ରତିପାଦିତ କରାଯାଇଛି ।

ଯସ୍ମାତ୍ କ୍ଷୀରମତା ତୋ ହମ୍ କ୍ଷରାଦପିଚୋତମଃ
ଅତୋଃସ୍ମି ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ ।

(ଶ୍ରୀମଦ୍ ଭଗବଦ୍ ଗୀତା-୧୫/୧୮)

ଶ୍ରୀଜଗନ୍ନାଥ ଅସୀମ, ଅନନ୍ତ, ସର୍ବବ୍ୟାପି । ଶ୍ରୀମଦ୍ ଭଗବଦ୍ ଗୀତାରେ ଅର୍ଜୁନ ଦର୍ଶନ କରିଥିବା ବିଶ୍ୱରୂପ ହିଁ ଶ୍ରୀଜଗନ୍ନାଥଙ୍କର ପ୍ରକୃତ ସ୍ୱରୂପ ।

ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ: ''ଗୀତାରେ ପୁରୁଷୋତ୍ତମ ତତ୍ତ୍ୱର ଯେଉଁ ବ୍ୟାଖ୍ୟା ଦିଆଯାଇଛି ତା' ହେଉଛି ଆଗରୁ ଲୋକରେ ପ୍ରଚଳିତ କୌଣସି ଉପାସ୍ୟ ଦେବ । ମନେହୁଏ ଗୀତାରେ ଏ ପରମ ସମାଧାନର ତତ୍ତ୍ୱଟି ପ୍ରକାଶିତ ଓ ପ୍ରଚାରିତ ହେବା ବେଳକୁ ଏଇ ଦର୍ଶନର ସଙ୍କେତ ରୂପେ ପୁରୁଷୋତ୍ତମ ଉପାସନା ପ୍ରତିଷ୍ଠିତ ହୋଇସାରିଲାଣି । ଏହି ପୁରୁଷୋତ୍ତମଙ୍କ ତତ୍ତ୍ୱର ସଂକେତ ନୀଳାଚଳ ପ୍ରତିଷ୍ଠିତ ଦାରୁଦେବତାଙ୍କ ବିନା ଅନ୍ୟ କେହି ନୁହନ୍ତି ଏହା ନିଶ୍ଚିତ ବୋଲି ମନେହୁଏ । ଏଣୁ କହିପାରୁ ଭାରତ ଯୁଦ୍ଧ ବେଳକୁ ଦାରୁଦେବତା ପୁରୁଷୋତ୍ତମ ନାମରେ ଖ୍ୟାତି ଲାଭ କରି ସାରିଲେଣି, ଯେହେତୁ ଲୋକରେ ଉପାସ୍ୟ ଦେବରୂପେ ପୁରୁଷୋତ୍ତମ ହେଉଛନ୍ତି ପ୍ରାଚୀନ କଳିଙ୍ଗ ବା ବର୍ତ୍ତମାନ ଓଡ଼ିଶାର ପୁରୁଷୋତ୍ତମ ପୁରୀ ବା ପୁରୀର ଜଗନ୍ନାଥ । ଆଉ କୁତ୍ରାପି ଭକ୍ତର ଉପାସ୍ୟ ଦେବରୂପେ ପୁରୁଷୋତ୍ତମ ନାହାନ୍ତି ।''

(ଓଡ଼ିଆ ସାହିତ୍ୟର କ୍ରମ ପରିଣାମ- ପଣ୍ଡିତ ନୀଳକଣ୍ଠ ଦାସ- ୧ମଭାଗ- ପୃଷ୍ଠା-୧୭୮-୧୭୯)

ମହାଭାରତ ଯୁଗ ପରେ ଜୈନ ଓ ବୌଦ୍ଧ ଯୁଗ । ବୌଦ୍ଧଯୁଗ ପୂର୍ବରୁ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଉପାସନା ପ୍ରତିଷ୍ଠିତ ଥିଲା ବୋଲି ଐତିହାସିକ ମନମୋହନ ଗାଙ୍ଗୁଲି ସ୍ପଷ୍ଟ ମତ ପ୍ରକାଶ କରିଛନ୍ତି -

"There is no doubt that the sanctity of the place (Puri) is dated anterior to the growth and rise of Buddhism, but it must be admitted that Buddhism has brought an immense change in the details of worship and religious rites"-

(Orissa and Her Remains-Manmohan Ganguly-page-399)





ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି– ''ବୁଦ୍ଧଯୁଗ ପୂର୍ବରୁ ଏପରିକି ପ୍ରାଚୀନ ବେବିଲୋନ ସଭ୍ୟତା କାଳରୁ ଜଗନ୍ନାଥଙ୍କ ଅସ୍ତିତ୍ୱ ଥିଲା । ସେତେବେଳେ ଶବର ବିନା ତା'ର ଉପାସକ ଆଉ କେହି ନଥିଲେ ।''(ଗୀତାପ୍ରବେଶ–ପଣ୍ଡିତ ନୀଳକଣ୍ଠ ଦାସ– ପୃ–୨୪)

ଜୈନ ତନ୍ତ୍ରାଚାର୍ଯ୍ୟଙ୍କ ଦିବ୍ୟ ଦୃଷ୍ଟିରେ ଜଗନ୍ନାଥ 'ଜିନ' ସ୍ୱରୂପରେ ପ୍ରତିଭାତ ହୋଇଥିଲେ । ଜୈନମାନେ ଜଗନ୍ନାଥଙ୍କୁ 'ଋଷଭ' ଭାବେ ଉପାସନା କରନ୍ତି । ଶ୍ରୀମନ୍ଦିରରେ ତ୍ରିମୂର୍ତ୍ତିଙ୍କୁ ଜୈନମାନେ ତାଙ୍କର 'ତ୍ରିତତ୍ତ୍ୱ'ରୂପେ ଆରାଧନା କରନ୍ତି । ଜୈନମାନଙ୍କର ପ୍ରଥମ 'ଋଷଭ' ହେଉଛନ୍ତି ଜଗନ୍ନାଥ । ଜୈନମାନେ ପୁରୀ ବଡଦେଉଳର ବାଇଶି ପାହାଚକୁ ତାଙ୍କର ବାଇଶି 'ତୀର୍ଥଙ୍କର' ରୂପେ ପ୍ରଣାମ କରି ଶ୍ରୀମନ୍ଦିରରେ ପ୍ରବେଶ କରନ୍ତି । ଜୈନମାନଙ୍କର କୈବଲ୍ୟ ଜଗନ୍ନାଥଙ୍କ କୈବଲ୍ୟଠାରୁ ଅଭିନ୍ନ ବୋଲି ବିଶ୍ୱାସ କରନ୍ତି । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦକୁ ଅତି ପବିତ୍ରଭାବେ ଜୈନମାନେ ଗ୍ରହଣ କରନ୍ତି ।

ବୌଦ୍ଧମାନେ ଜଗନ୍ନାଥଙ୍କୁ ବୁଦ୍ଧଭାବେ ଉପାସନା କରନ୍ତି । ଶ୍ରୀମନ୍ଦିରରେ 'ତ୍ରିମୂର୍ତ୍ତି'ଙ୍କୁ ବୌଦ୍ଧମାନେ ତାଙ୍କର 'ତ୍ରିରତ୍ନ'ରୂପେ ଆରାଧନା କରନ୍ତି । ବଜ୍ରଯାନୀ ବୌଦ୍ଧମାନେ ଜଗନ୍ନାଥଙ୍କୁ ଶ୍ରେଷ୍ଠ ଆରାଧ୍ୟରୂପେ ବିବେଚନା କରନ୍ତି । ଅନଙ୍ଗବଜ୍ର ସ୍ୱରଚିତ ପ୍ରଜ୍ଞାପାୟୋ ବିନିଶ୍ଚୟ ସିଦ୍ଧିରେ ଜଗନ୍ନାଥଙ୍କୁ ଶ୍ରେଷ୍ଠ ତନ୍ତ୍ର ଦେବତା ରୂପେ ବିବେଚନା କରିଛନ୍ତି । ତାଙ୍କ ଶିଷ୍ୟ ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ବୁଦ୍ଧରୂପେ ଗ୍ରହଣ କରିଛନ୍ତି (ଶ୍ୱେତାଶ୍ୱେତରୋପନିଷଦ– ତୃତୀୟ ଅଧ୍ୟାୟ ମନ୍ତ୍ର ୧୫) । ଜଗନ୍ନାଥ ହେଉଛନ୍ତି ଆଦିବୁଦ୍ଧ । ଐତିହାସିକ ମନମୋହନ ଗାଙ୍ଗୁଲିଙ୍କ ବିଶ୍ୱାସ, ବୌଦ୍ଧମାନଙ୍କର 'ତ୍ରିରତ୍ନ', 'ପ୍ରଣବ'(ଅ.ଉ.ମ.)ଓଁରୁ ନିଆଯାଇଛି ।

ମତ୍ସ୍ୟ ପୁରାଣରେ ପୁରୁଷୋତ୍ତମ ତତ୍ତ୍ୱ ବର୍ଣ୍ଣନାରୁ ପ୍ରତୀୟମାନ ହୁଏ ଯେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଆରାଧନା ପ୍ରଥମ ବା ଦ୍ୱିତୀୟ ଶତାବ୍ଦୀରେ ପ୍ରତିଷ୍ଠିତ ଥିଲା । ସ୍କନ୍ଦପୁରାଣ, ବ୍ରହ୍ମାଣ୍ଡ ପୁରାଣ ଏବଂ ଶିବ ପୁରାଣ ବର୍ଣ୍ଣନା ଅନୁସାରେ ଜଗନ୍ନାଥ ଉପାସନା ସପ୍ତମ ଶତାବ୍ଦୀ ପୂର୍ବରୁ ପ୍ରସିଦ୍ଧି ଲାଭ କରିଥିଲା ।

ଅଷ୍ଟମ ଶତାବ୍ଦୀ ବେଳକୁ ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ର ଦେବତା ରୂପେ ଆରାଧନା କରାଯାଇଛି । ତନ୍ତ୍ରଶାସ୍ତ୍ରରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ଯଥାକ୍ରମେ ଉଗ୍ରତାରା, ଭୁବନେଶ୍ୱରୀ ଓ ଦକ୍ଷିଣ କାଳିକା ରୂପେ ପୂଜା ପାଆନ୍ତି ।

ଅଦ୍ୱୈତ ବେଦାନ୍ତର ପ୍ରବକ୍ତା ଆଦିଶଙ୍କରାଚାର୍ଯ୍ୟ (ଖ୍ରୀ.୭୮୦–୮୨୦)ଙ୍କ ଦିବ୍ୟ ଦୃଷ୍ଟିରେ ଜଗନ୍ନାଥ ହିଁ ପରମବିଷ୍ଣୁ ।

ଜଗତ ପ୍ରଭୁ ଦେବଂ ଦେବଂ ଅନନ୍ତ ପୁରୁଷୋତ୍ତମମ୍
ସ୍ତୁବନ୍ ନାମ ସହସ୍ରେଣ ପୁରୁଷଃ ସତତୋତ୍ଥିତଃ
ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ
ବିଷ୍ଣୋର୍ନାମ ସହସ୍ରଂମେ ଶୃଣୁ ପାପଭୟାପହମ୍ ।

('ବିଷ୍ଣୁସହସ୍ର ନାମ' ଭାଷ୍ୟ–ଶଙ୍କରାଚାର୍ଯ୍ୟ–ଶ୍ଳୋକ–୪.୧୨)

ଆଦି ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରକୁ ଆସି ତାଙ୍କର ମଠ ଭୋଗବର୍ଦ୍ଧନ ବା ଗୋବର୍ଦ୍ଧନ ମଠ ସ୍ଥାପନ କରିଥିଲେ । ଏହି ମଠରେ ପୀଠାଧୀଶମାନେ ଦଣ୍ଡଧାରଣକରି ଶ୍ରୀଜଗନ୍ନାଥଙ୍କୁ ଓଁକାର ରୂପୀ ପରମପୁରୁଷ ଜ୍ଞାନରେ ଉପାସନା କରନ୍ତି ।

ଶଙ୍କରାଚାର୍ଯ୍ୟଙ୍କ ପ୍ରଥମ ଚାରି ଶିଷ୍ୟଙ୍କ ମଧ୍ୟରୁ ପଦ୍ମପାଦାଚାର୍ଯ୍ୟ ପୁରୀ ଗୋବର୍ଦ୍ଧନ ମଠରେ ପ୍ରଥମ ପୀଠାଧୀଶ ଏହି ମଠରେ ମହାବାକ୍ୟ ହେଉଛି 'ପ୍ରଜ୍ଞାନଂ ବ୍ରହ୍ମ'–

(ଋକ୍‌ବେଦ–ଐତରେୟ(୩/୧/୩୬) ।

ଶ୍ରୀଜଗନ୍ନାଥ ଓଁକାର ରୂପୀ ହେତୁ ସବୁ ଦେବଦେବୀଙ୍କର ସ୍ରଷ୍ଟା । ଶ୍ରୀଜଗନ୍ନାଥଙ୍କଠାରୁ ପାଞ୍ଚଗୋଟି ମତବାଦ–ଶୈବ, ଶାକ୍ତ, ସୌର, ଗାଣପତ୍ୟ ଓ ବୈଷ୍ଣବ ସୃଷ୍ଟି ।

'ରମା ଶମ୍ଭୁ ବ୍ରହ୍ମା ସୁରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥସ୍ୱାମୀ ନୟନପଥଗାମୀ ଭବତୁ ମେ' ॥

(ଶ୍ରୀଜଗନ୍ନାଥଷ୍ଟକମ୍–ଆଦିଶଙ୍କରାଚାର୍ଯ୍ୟ)

ନବମ ଶତାବ୍ଦୀର ଶେଷଭାଗ ଓ ଦଶମ ଶତାବ୍ଦୀର ପ୍ରଥମ ଭାଗରେ ମୁରାରି ମିଶ୍ରଙ୍କ ସଂସ୍କୃତ ନାଟକ 'ଅନର୍ଘରାଘବନ୍' ଏବଂ କାଶୀ ମିଶ୍ରଙ୍କ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରସିଦ୍ଧି ବର୍ଣ୍ଣନା କରାଯାଇଛି । ଦଶମ ଓ ଏକାଦଶ ଶତାବ୍ଦୀରେ ରଚିତ 'ରୁଦ୍ରଯାମଳା' ଓ 'ବ୍ରହ୍ମଯାମଳା'ରେ ଜଗନ୍ନାଥଙ୍କ ତାନ୍ତ୍ରିକ ପୂଜାର ସୂଚନା ମିଳେ ।

କେଶରୀ ବଂଶ ରାଜତ୍ୱ କାଳରେ ଉତ୍କଳରେ ଶୈବ ଧର୍ମର ପ୍ରଭାବ ଓ ପ୍ରଚଳନ ଥିଲା । ଗଙ୍ଗବଂଶ ରାଜତ୍ୱ ସମୟରେ ଶୈବଧର୍ମ ଓ ବୈଷ୍ଣବଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ହୋଇଥିଲା । ଦ୍ୱାଦଶ ଶତାବ୍ଦୀରେ 'ପରମ ମହେଶ୍ୱର' ରାଜା ଚୋଡଗଙ୍ଗଦେବ ଦକ୍ଷିଣାତ୍ୟରୁ ଆସି ଉତ୍କଳରେ ଗଙ୍ଗବଂଶ ରାଜତ୍ୱ ପ୍ରତିଷ୍ଠା କରି ନିଜକୁ 'ପରମମହେଶ୍ୱର'ରୁ 'ପରମବୈଷ୍ଣବ'ରେ ରୂପାନ୍ତରିତ କରି ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଶ୍ରୀକ୍ଷେତ୍ରରେ




ଜଗନ୍ନାଥଙ୍କଠାରେ ଶୈବଧର୍ମ ଓ ବୈଷ୍ଣବଧର୍ମ ଏକାକାର ହୋଇଯାଇଥିଲା ।

ବିଶିଷ୍ଟ ଦ୍ୱୈତବାଦର ପ୍ରବର୍ତ୍ତକ ରାମାନୁଜଙ୍କ ବିଚାରରେ ଜଗନ୍ନାଥ ହିଁ ପରମପୁରୁଷ ନାରାୟଣ । ରାମାନୁଜଙ୍କ ସମୟରୁ ଜଗନ୍ନାଥ ବୈଷ୍ଣବମାନଙ୍କ ଦ୍ୱାରା ଆରାଧିତ । ରାମାନୁଜଙ୍କ ଶିଷ୍ୟ ଗୋବିନ୍ଦ ପୁରୀର ସବୁଠାରୁ ବଡ ମଠ ଏମାର ମଠ ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖରେ ପ୍ରତିଷ୍ଠା କରିଥିଲେ ।

ଦ୍ୱୈତବାଦର ପ୍ରବର୍ତ୍ତକ ମାଧ୍ୱାଚାର୍ଯ୍ୟ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ପୁରୀ ଆସି ଶ୍ରୀଜଗନ୍ନାଥଙ୍କ ଶୁଦ୍ଧସତ୍ତା ସ୍ୱୀକାର କରି ଉପାସନା କରିଥିଲେ ।

ଦ୍ୱୈତାଦ୍ୱୈତବାଦର ପ୍ରବର୍ତ୍ତକ ନିମ୍ବକାଚାର୍ଯ୍ୟଙ୍କ ସମୟରୁ ଜଗନ୍ନାଥଙ୍କଠାରେ କୃଷ୍ଣତ୍ୱ ଆରୋପିତ ହୋଇଛି । ତାଙ୍କରି ଭାବଧାରାରେ ଉତ୍କଳର ମହାକବି ଜୟଦେବ ଗୀତଗୋବିନ୍ଦ ରଚନା କରିଥିଲେ ।

ଶୁଦ୍ଧାଦ୍ୱୈତର ପ୍ରଚାରକ ବଲ୍ଲଭାଚାର୍ଯ୍ୟଙ୍କ ଦିବ୍ୟଦୃଷ୍ଟିରେ ପରଂବ୍ରହ୍ମ ଜଗନ୍ନାଥ ହେଉଛନ୍ତି ଶ୍ରୀକୃଷ୍ଣ । ଗୌଡ, ମାଧ୍ୱ, ନିମ୍ବାର୍କ ପନ୍ଥୀମାନେ ଜଗନ୍ନାଥଙ୍କୁ ସଚ୍ଚିଦାନନ୍ଦ ବ୍ରହ୍ମ ସ୍ୱରୂପ ରୂପେ ଆରାଧନା କରିଛନ୍ତି ।

ଶ୍ରୀଚୈତନ୍ୟ ଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ ରୂପେ ଗ୍ରହଣକରି ତାଙ୍କ ଜୀବନର ଶେଷ ଅଠରବର୍ଷ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରି ଜଗନ୍ନାଥଙ୍କ ଆରାଧନା କରିଛନ୍ତି ।

ସେହି ସମୟରେ ଉତ୍କଳରେ ପଞ୍ଚସଖା–ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସଙ୍କ ଆବିର୍ଭାବ । ପଞ୍ଚସଖା ଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ, ପରଂବ୍ରହ୍ମ ବା ସୃଷ୍ଟିକର୍ତ୍ତା ରୂପେ ବିଶ୍ୱାସ କରିଛନ୍ତି । ପଞ୍ଚସଖାଙ୍କ ମତରେ ଓଁକାର ସାକ୍ଷାତ ପରଂବ୍ରହ୍ମ । ତାଙ୍କର ପ୍ରକାଶ ରୂପ ହେଉଛନ୍ତି ଶ୍ରୀଜଗନ୍ନାଥ । ପଞ୍ଚସଖାଙ୍କ ରଚନାରେ ଜଗନ୍ନାଥଙ୍କ ବର୍ଣ୍ଣନା ଜଗନ୍ନାଥ ତତ୍ତ୍ୱକୁ ଉତ୍କଳରେ ଗଣଧର୍ମରେ ପରିଣତ କରିଦେଇଛି । ପଞ୍ଚସଖା ଜଗନ୍ନାଥଙ୍କୁ ଅବତାରୀ ରୂପେ ଗ୍ରହଣ କରି ତାଙ୍କଠାରୁ ସମସ୍ତ ଅବତାରଙ୍କ ସୃଷ୍ଟି ବୋଲି ପ୍ରତିପାଦିତ କରିଛନ୍ତି ।

'ଉତ୍ତରାଷ୍ଟ୍ରରେ ନୀଳଗିରି, ଯହିଁ ବିଜୟେ ନରହରି
ଜଗତ ଈଶ୍ୱର ଠାକୁର, ଲୀଳାୟେ ନାନା ଅବତାର ।''

(ବେଦାନ୍ତସାର ଗୀତା–ବଳରାମ ଦାସ)

''ଯେତେ ବିଷ୍ଣୁ ଅବତାର, ଏହି କ୍ଷେତ୍ରରୁ ସେ ବାହାର
ଏ ଦେବ ଦେବଙ୍କ ଉତ୍ତମ, ଏ କ୍ଷେତ୍ର ଶ୍ରେଷ୍ଠ ପୁରୁଷୋତ୍ତମ ।''

(ଜଗନ୍ନାଥ ଦାସ–ଜନ୍ମ ୧୪୯୦ ମସିହା)

''ଅବତାର ଦଶ ଏହି ଦାରୁରୂପ ଦାରୁରେ ସେ ଲୀନ
ଈଶ୍ୱର ସାକ୍ଷାତ ଲୀଳାର ନିମନ୍ତେ ବିଜେ ରତ୍ନସିଂହାସନ ।''

(ଶୂନ୍ୟ ସଂହିତା– ଅଚ୍ୟୁତାନନ୍ଦ ଦାସ)

ଷୋଡଶ ଶତାବ୍ଦୀରେ ଦିବାକର ଦାସ ଜଗନ୍ନାଥଙ୍କର ଏକ କଳାଭାବେ ଶ୍ରୀକୃଷ୍ଣଙ୍କର ବର୍ଣ୍ଣନା କରିଛନ୍ତି ।

''ଜଗନ୍ନାଥ ଯେ ଷୋଳକଳା, ତହୁଁ କଳାଏ ନନ୍ଦବଳା
କଳାକୁ ଷୋଳ କଳାକରି, ଗୋପେ ବିହରେ ନରହରି ।''

(ଜଗନ୍ନାଥ ଚରିତାମୃତ– ଦିବାକର ଦାସ)

ଗୋସ୍ୱାମୀ ତୁଳସୀ ଦାସ ଜଗନ୍ନାଥଙ୍କୁ ଦର୍ଶନ କରି ଗାଇଛନ୍ତି: ''ଯୋଇରାମ ସୋଇ ଜଗଦିଶା, ଜିନିହିକୋ ଅନ୍ତ ନ ପାଓତ ଶେଷା'' ।

ଆଦିକବି ସାରଳା ଦାସ ମହାଭାରତରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧି ବା ଜ୍ଞାନ (ବ୍ରହ୍ମଜ୍ଞାନ) ଭାବରେ ବର୍ଣ୍ଣନା କରିଛନ୍ତି । ବଳଭଦ୍ର, ସୁଭଦ୍ରା ଏବଂ ଜଗନ୍ନାଥ ଯଥାକ୍ରମେ ଶିବ, ବ୍ରହ୍ମା ଏବଂ ବିଷ୍ଣୁ ଭାବରେ ସାରଳା ମହାଭାରତ ମୂଷଳୀ ପର୍ବରେ ପ୍ରତିପାଦିତ ହୋଇଛନ୍ତି ।

ଶ୍ରୀଜଗନ୍ନାଥ ଉପାସନାର ପୃଷ୍ଠଭୂମି ବିଷୟରେ ବହୁ ବିଶିଷ୍ଟ ବିଦ୍ୱାନ, ଗବେଷକ, ଶାସ୍ତ୍ରଜ୍ଞ ପଣ୍ଡିତ, ଐତିହାସିକ, ପର୍ଯ୍ୟଟକ, ପରିବ୍ରାଜକ, ଧର୍ମପ୍ରଚାରକ, ଶାସକ ଏବଂ ପ୍ରଶାସକ ତାତ୍ତ୍ୱିକ ଆଲୋଚନା ନିଜ ନିଜ ଦୃଷ୍ଟିକୋଣରୁ କରିଛନ୍ତି । ସେମାନଙ୍କ ମଧ୍ୟରେ ମି. ଷ୍ଟିଭେନ୍ସ, ପ୍ରଫେସର ଉଇଲସନ୍, ଜେମସ୍ ଫରଗୁସନ୍, ଜେନେରାଲ କନିଙ୍ଗହାମ, ମନମୋହନ ଗାଙ୍ଗୁଲି, ରାଜେନ୍ଦ୍ର ଲାଲ ମିତ୍ର, ରାଖାଲ ଦାସ ବାନାର୍ଜୀ, ସଦାଶିବ କାବ୍ୟକଣ୍ଠ, ମନମୋହନ ଚକ୍ରବର୍ତ୍ତୀ, ଆର.ପି. ଚନ୍ଦ୍ର, ଗୁରୁଦାସ ସରକାର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପ୍ରଭାତ ମୁଖାର୍ଜୀ, ପଣ୍ଡିତ ନୀଳକଣ୍ଠ ଦାସ, ହରେକୃଷ୍ଣ ମହତାବ, ସୂର୍ଯ୍ୟନାରାୟଣ ଦାସ, ସତ୍ୟନାରାୟଣ ରାଜଗୁରୁ, ଚିନ୍ତାମଣି ଆଚାର୍ଯ୍ୟ, ସଦାଶିବ ରଥ ଶର୍ମା, କାହ୍ନୁଚରଣ ମିଶ୍ର, ବେଣୀମାଧବ ପାଢୀ, ନବୀନକୁମାର ସାହୁ, ଜର୍ମାନ ଗବେଷକ ହରମନ୍ କୁଲକେ, ଖ୍ରୀଷ୍ଟିଆନ ମିସନାରୀ ସ୍ମିଥ୍, ପର୍ଯ୍ୟଟକ ବ୍ରୁଟନ, ହାମିଲଟନ, ହୁଏନସାଙ୍କ ନାମ ଉଲ୍ଲେଖଯୋଗ୍ୟ । କିନ୍ତୁ ଜଗନ୍ନାଥଙ୍କ ଆବିର୍ଭାବ ସମ୍ପର୍କରେ କୌଣସି ନିର୍ଭରଯୋଗ୍ୟ ଐତିହାସିକ ପ୍ରମାଣ ଏପର୍ଯ୍ୟନ୍ତ





ମିଳିପାରିନାହିଁ । ଜଗନ୍ନାଥ ଉପାସନାର ଉଦ୍‌ଭବ ସମ୍ପର୍କରେ କେହି କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ପାରିନାହାନ୍ତି । ଗବେଷକ ଓ ଐତିହାସିକମାନେ ତାଙ୍କର ମତ ମଧ୍ୟ ବିଭିନ୍ନ ସମୟରେ ପରିବର୍ତ୍ତନ କରିଥିବାର ଲକ୍ଷ୍ୟ କରାଯାଏ । ଡ. ହରେକୃଷ୍ଣ ମହତାବ ପ୍ରଥମେ ଜଗନ୍ନାଥ ଉପାସନା ବୌଦ୍ଧ ଯୁଗରୁ ଆରମ୍ଭ ବୋଲି ଉଲ୍ଲେଖ କରିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେ ତାଙ୍କର ମତ ପରିବର୍ତ୍ତନ କରି ଜଗନ୍ନାଥ ଉପାସନା ପ୍ରାଗ୍‌-ଆର୍ଯ୍ୟ କାଳରୁ ବୋଲି ମତ ଦେଇଛନ୍ତି । ଆକାଶବାଣୀ (All India Radio)ରେ ପ୍ରସାରିତ ତାଙ୍କର ଏକ ଇଂରାଜୀ ଭାଷଣରେ ସେ ସ୍ପଷ୍ଟ ଭାବେ କହିଛନ୍ତି:

It is known that the present magnificent temple of Jagannath was built during the reign of Chodaganga Dev in the eleventh century. But it is evident from inscriptions that worship in the temple began much earlier.

Sometime ago I traced the beginning of the temple to the Buddhist period when the worship of images was introduced on a large scale. With more study I am convinced that the worship had begun even during the pre-Aryan period and it has continued till today absorbing in itself various religious movements which have evolved this country.xxx

Today the Jagannath deity has in Him something of Buddhism, something of Jainism, something of Shaivism, something of Tantrism, something of Adwait, Dwait and Vishishtadvaita Philosophies and much of Bhakti cult as it developed in course of time.xxx

It will be interesting to note that many Muslims have also become worshippers of Jagannath. Jaban Haridas and Salabeg are two great devotees of Lord Jagannath and are revered as saints. From some records it is known that Muslims were also allowed to go inside the temple and offer worship. But this no longer obtains.xxx

Jagannath happens to be an epitome of cultural integration of India..

( Harekrushna Mahatab- The Shrine eternal- English Radio Talk, A.I.R Miscellany-1960, page-1, Publication Division, Ministry of Information & Broadcasting.)

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ, ଜଗନ୍ନାଥ ସର୍ବଧର୍ମ ସମନ୍ୱୟର ପ୍ରତୀକ । ସବୁ ଧର୍ମ ଏକାକାର ହୋଇଛନ୍ତି ଜଗନ୍ନାଥଙ୍କଠାରେ । ଓଡ଼ିଶାର ବରିଷ୍ଠ ପ୍ରଶାସକ ନୀଳମଣି ସେନାପତି, ଆଇ.ସି.ଏସ୍. ମୁଖ୍ୟ ସମ୍ପାଦକ, ଓଡ଼ିଶା ଗେଜେଟିୟର (ପୁରୀ) ସ୍ପଷ୍ଟ ଭାବେ ପୁରୀ ଜିଲ୍ଲା ଗେଜେଟିୟରରେ ଉଲ୍ଲେଖ କରିଛନ୍ତି ଯେ ୧୯୫୦ ମସିହାରେ ହୋଇଥିବା ପ୍ରଭୁଙ୍କର ନବକଳେବର ପାଇଁ ବଳଭଦ୍ରଙ୍କ ଦାରୁ ଜଣେ ମୁସଲମାନ ଧର୍ମାବଲମ୍ବୀ ବ୍ୟକ୍ତିଙ୍କ ଜାଗାରୁ ଅଣାଯାଇଥିଲା ।

ଏଥିରୁ ପ୍ରମାଣ ମିଳେ ଶ୍ରୀଜଗନ୍ନାଥ କେବଳ ମୁସଲମାନ ଭକ୍ତଙ୍କ ଦ୍ୱାରା ଉପାସିତ ନୁହନ୍ତି । ଦାରୁବ୍ରହ୍ମଙ୍କ ଶ୍ରୀବିଗ୍ରହ ମଧ୍ୟ ମୁସଲମାନ ବ୍ୟକ୍ତିର ବୃକ୍ଷର ଦାରୁରେ ଗଢା । ଭକ୍ତ କବୀରଙ୍କ ମତରେ ଶ୍ରୀଜଗନ୍ନାଥ ହିଁ ପରମ ଜ୍ୟୋତିସ୍ୱରୂପ ।

''କବୀରନ ସୁନହ ଚିହ୍ନହୁ କଳିଧାମା
ଆଦିପୁରୁଷ ଯହିଁ ଜ୍ୟୋତି ସମାନା ।''

(ଭକ୍ତ କବୀର)

''ଠାକୁର ଭଲେ ବିରାଜୋଜୀ
ଓଡ଼ିଶା ଜଗନ୍ନାଥ ପୁରୀ ମେ ।''

(ଭକ୍ତ କବୀର)

ଶିଖ୍ ଧର୍ମଗୁରୁ ନାନକ ପୁରୀଧାମକୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଆସି ପୁରୀରେ ମଠ ପ୍ରତିଷ୍ଠା କରିଥିଲେ । ଜଗନ୍ନାଥ ମନ୍ଦିର ମେଘନାଦ ପ୍ରାଚୀର ପଶ୍ଚିମ ଦ୍ୱାରରେ ଥିବା ଏକ ଶିଳାଲେଖକୁ ଉଦ୍ଧାର କରି କେତେକ ଗବେଷକ ମତ ଦିଅନ୍ତି ଯେ ବଡ ଦେଉଳର ପଶ୍ଚିମଦ୍ୱାର ଗୁମୁଟ ଶିଖରାଜା ରଣଜିତ ସିଂହ ନିର୍ମାଣ କରାଇଥିଲେ ।

ରୁଷୀୟ ପରିବ୍ରାଜକ ନିକୋଲାସ ନିତୋଭିଚ୍‌ଙ୍କ ଦି ଅନନୋନ ଲାଇଫ ଅଫ କ୍ରାଏଷ୍ଟ, ଫରାସୀ ଐତିହାସିକ ଏମ୍ ସେଲଭେନଙ୍କ ଦି ଏକ୍ୱିରିୟମ ଗୋସପେଲ ଅଫ ଯେଶସ୍ ଦି କ୍ରାଏଷ୍ଟ, ଏଫ୍‌ଏ. ପ୍ଲାଟନଙ୍କ ଖ୍ରୀଷ୍ଟିଆନ ଇଣ୍ଡିଆ, ଡକ୍ଟର ସ୍ପେନ୍ସର ଲୁଇଙ୍କ ଦି ମିଷ୍ଟିକାଲ ଲାଇଫ୍ ଅଫ୍ ଯେଶସ୍ କ୍ରାଏଷ୍ଟ, ଋଷୀୟ ଚିତ୍ରକାର ରୋରିଶନେଙ୍କ



ହାର୍ଟ ଅଫ ଇଣ୍ଡିଆ ଏବଂ ବଙ୍ଗୀୟ ପରିବ୍ରାଜକ ସ୍ୱାମୀ ଅଭେଦାନନ୍ଦ ଓ ବ୍ରହ୍ମଚାରୀ ଭୈରବ ଚୈତନ୍ୟଙ୍କ ଦେବାତ୍ମା ହିମାଳୟ ପୁସ୍ତକରେ ଥିବା ବର୍ଣ୍ଣନାରୁ ସୂଚନା ମିଳେ ଯେ ଯୀଶୁଖ୍ରୀଷ୍ଟ ତାଙ୍କ ଜୀବନର ତେର ବର୍ଷ ବୟସରୁ ଅଣତିରିଶ ବର୍ଷ ବୟସ ମଧ୍ୟରେ ଭାରତକୁ ଆସି ଜଗନ୍ନାଥ ଧାମରେ ବେଦ ଅଧ୍ୟୟନ ଏବଂ ମନ୍ତ୍ରଦ୍ୱାରା ଶରୀର ଆରୋଗ୍ୟ କରିବା ବିଦ୍ୟା ଶିକ୍ଷା କରିଥିଲେ । ଅଧ୍ୟାପକ ଉମେଶ ପତ୍ରୀଙ୍କ 'ଯୀଶୁ ଓ ଜଗନ୍ନାଥ' ପୁସ୍ତକରେ ଏ ସମ୍ପର୍କରେ ବିଶଦ ଆଲୋଚନା କରାଯାଇଛି । (ଯୀଶୁ ଓ ଜଗନ୍ନାଥ, ପ୍ରକାଶକ- ଜ୍ଞାନବିଜ୍ଞାନିକା, କଲ୍ୟାଣୀନଗର, କଟକ) ।

ଶ୍ରୀଜଗନ୍ନାଥ ଚିନ୍ତନର ବିଶିଷ୍ଟ ଗବେଷକ ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର (ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ)ଙ୍କ ନିର୍ଣ୍ଣୟ ଅନୁସାରେ, ମହାପ୍ରଭୁ ଶ୍ରୀଜଗନ୍ନାଥ ମୂଳରୁ ଉପାସିତ ହୋଇ ଆସୁଛନ୍ତି । ବର୍ତ୍ତମାନ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ଉପାସିତ ହେଉଥିବା ଶ୍ରୀମନ୍ଦିର ଦ୍ୱାଦଶ ଶତାବ୍ଦୀରେ ଚୋଡଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ । ଏହା ହେଉଛି ପୁରୁଷୋତ୍ତମ ଜଗନ୍ନାଥଙ୍କର ଅଷ୍ଟମ ମନ୍ଦିର । ଏହା ପୂର୍ବରୁ ସପ୍ତମ ମନ୍ଦିର ହେଲା ନବମ ଶତାବ୍ଦୀରେ ଯଯାତିଙ୍କ ନିର୍ମିତ ୩୮ହାତ ପୋଟଳ ବା ମନ୍ଦିର । ତା ପୂର୍ବରୁ ଷଷ୍ଠ ମନ୍ଦିର ହେଲା ୮ମ ଶତାବ୍ଦୀର କଳ୍କୀ ପୁରାଣ ବର୍ଣ୍ଣିତ ଶ୍ରୀପୁରୁଷୋତ୍ତମ ଆଳୟ ବା ମନ୍ଦିର । ପଞ୍ଚମ ମନ୍ଦିର ହେଲା ଆଲବାର ସମ୍ପ୍ରଦାୟର ମହଦ୍‌ଯୋଗୀ ନୀଳାଦ୍ରି କ୍ଷେତ୍ରରେ ଦେଖିଥିବା ପୁରୁଷୋତ୍ତମ ଆଳୟ ବା ମନ୍ଦିର (୭ମ ଶତାବ୍ଦୀ) । ଚତୁର୍ଥ ମନ୍ଦିର ହେଲା ମହର୍ଷି ଶାଣ୍ଡିଲ୍ୟ ଦେଖିଥିବା ଶ୍ରୀମନ୍ଦିର (୫ମ ଶତାବ୍ଦୀ) । ତୃତୀୟ ମନ୍ଦିର ହେଲା ପଦ୍ମ ପୁରାଣର ପାତାଳ ଖଣ୍ଡରେ ବର୍ଣ୍ଣିତ ମନ୍ଦିର ଖ୍ରୀ.ପୂ. ୧ମ ଶତାବ୍ଦୀର । ଦ୍ୱିତୀୟ ମନ୍ଦିର ହେଲା ମହର୍ଷିକଣ୍ଡୁ ପ୍ରତିଦିନ ଦର୍ଶନ କରୁଥିବା ଶ୍ରୀପୁରୁଷୋତ୍ତମ ଆୟତନ (ଖ୍ରୀ.ପୂ.୫୫୦୦) । ପ୍ରଥମ ମନ୍ଦିର ନିର୍ମାତା ଥିଲେ ମହାରାଜା ଇନ୍ଦ୍ରଦ୍ୟୁମ୍ନ । କାଳର ପ୍ରବାହମାନ ଧାରାରେ ମନ୍ଦିରଜୀର୍ଣ୍ଣ ହୋଇଛି, ନୂତନ ମନ୍ଦିର ନିର୍ମାଣ ହୋଇଛି । (ମାହାରୀ-ନାଚୁଣୀ ସେବାର ପ୍ରାଚୀନତା'- ଡ. ସୁରେନ୍ଦ୍ର କୁମାର ମିଶ୍ର- 'ଜୟ ଶ୍ରୀଜଗନ୍ନାଥ', ଜୟ ଜଗନ୍ନାଥ ପ୍ରଚାର ସମିତି) ।

ଏ ସମସ୍ତ ବୌଦ୍ଧିକ ବିଶ୍ଳେଷଣର ଉର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ ସତ୍ତାର ଉପଲବ୍ଧି । ଜଗନ୍ନାଥ ଚେତନା ହେଉଛି ଏକ ସମନ୍ୱିତ ଚେତନା । ସବୁଧର୍ମର ସବୁଦର୍ଶନର ସମ୍ମିଳିତ ଭାବ ହେଉଛି ଜଗନ୍ନାଥ ଧର୍ମ । ଜଗନ୍ନାଥ ହେଉଛନ୍ତି ସମନ୍ୱୟ ଚେତନାର ଚିରନ୍ତନ ପ୍ରତିଭୂ ।

ଶ୍ରୀଜଗନ୍ନାଥ ମନ୍ଦିର ଉନ୍ନୟନ କମିଟି ରିପୋର୍ଟରେ କୁହାଯାଇଛି-

"In course of time, the various creeds and ideology merged into a composite religion, which absorbed and assimilated the essence of all religions. This religion is Jagannath Dharma or an eternal symbol of a cultural assimilation". (Report of Shree Jagannath Temple Administration Improvement Committee-1980).

ଶ୍ରୀଜଗନ୍ନାଥ ଧର୍ମ ହେଉଛି ସନାତନ ବିଶ୍ୱଧର୍ମ । ଶ୍ରୀଜଗନ୍ନାଥ ସମଗ୍ର ମାନବ ସମାଜର ଉପାସ୍ୟ । ଜଗନ୍ନାଥ ଧର୍ମ ହେଉଛି ଉତ୍ତମ ମାନବ ଧର୍ମ । ଉତ୍ତମ ମାନବୀୟ ଗୁଣର ବିକାଶ ଦ୍ୱାରା ମଣିଷ କିପରି ଦେବତ୍ୱ ଲାଭ କରିପାରେ ତାହା ହିଁ ବିଶ୍ୱ ମାନବ ସମାଜକୁ ଶ୍ରୀଜଗନ୍ନାଥଙ୍କ ଅମୃତ ସନ୍ଦେଶ । ଶ୍ରୀକ୍ଷେତ୍ରରେ ଧର୍ମ କହିଲେ କୌଣସି ନିର୍ଦ୍ଦିଷ୍ଟ ଧର୍ମ ବା ସମ୍ପ୍ରଦାୟକୁ ବୁଝାଇ ନଥାଏ, ବ୍ରହ୍ମୋପଲବଧିକୁ ବୁଝାଇଥାଏ । ଶ୍ରୀଜଗନ୍ନାଥ ଶାନ୍ତି, ମୈତ୍ରୀ, ସଂହତି ଓ ମୁକ୍ତିର ପ୍ରତୀକ । ଯୁଗ ଯୁଗ ଧରି ଜଗନ୍ନାଥ ଚେତନା ବିଶ୍ୱବାସୀଙ୍କୁ ଉଦ୍‌ବୁଦ୍ଧ କରିଛି । ଜଗନ୍ନାଥ ସଂସ୍କୃତି ସମଗ୍ର ମାନବ ସମାଜ ଦ୍ୱାରା ଆଦୃତ ।

ଏନ୍-୧/୧୯୭
ଆଇ.ଆର.ସି.ଭିଲେଜ, ଭୁବନେଶ୍ୱର-୧୫









# ସଂସ୍କୃତି ଓ ଜଗନ୍ନାଥ

ଗୁରୁପ୍ରସାଦ ମହାପାତ୍ର

ଏକଦା ପ୍ରକୃତିରାଣୀର ସବୁଜ ବନାନୀ କୋଳରେ ଇତର ପ୍ରାଣୀଟିଏ ପରି ଜୀବନଯାପନ କରୁଥିବା ମଣିଷଟି, କେତେବେଳେ ଯେ ସାମାଜିକ ହୋଇଗଲା, ତାହା ଠିକ୍ କରି କହିହେବନି । ତେବେ, ଏକୁଟିଆ ବଞ୍ଚିବା କଷ୍ଟକର । ବନ୍ୟଜନ୍ତୁଙ୍କଠାରୁ ସବୁବେଳେ ସୁରକ୍ଷିତ ରହିବା ପ୍ରାୟ ଅସମ୍ଭବ । ଅସହାୟତାର ଘୋଡଣି ତଳେ ଅଣନିଃଶ୍ୱାସୀ ହେବା ଅପେକ୍ଷା, ସାମୂହିକତା ଆଙ୍ଗୁଠି ଧରି ଆଗକୁ ବଢିବା ବେଶ୍ ଭଲ, ଆନନ୍ଦଦାୟକ । ଏହି ଅନୁଭବ ଲବ୍‌ଧ ଜ୍ଞାନ ଟିକକ ମଣିଷକୁ ଏକାଠି ରହିବାକୁ ସାହାଯ୍ୟ କଲା । ସମୟକ୍ରମେ ଏକତ୍ର ସହାବସ୍ଥାନ କରୁଥିବା ବ୍ୟକ୍ତିମାନେ ନିଜ ନିଜର ଦୋଷ-ଗୁଣଗୁଡିକୁ ଆଲୋଚନା ପର୍ଯ୍ୟାଲୋଚନା ମାଧ୍ୟମରେ ମାର୍ଜିତ କରି, ଯେତେବେଳେ ଏକ ସୁସଂଯତ ପରିବେଶଟିଏ ସୃଷ୍ଟି କଲେ, ସେତେବେଳେ ଗୋଷ୍ଠୀ ଜୀବନ ସାମାଜିକ ଜୀବନରେ ରୂପାନ୍ତରିତ ହେଲା । ଏହି ସାମାଜିକ ଜୀବନର ପରିପ୍ରକାଶ ହିଁ ସଭ୍ୟତା ଏବଂ ଏହାର ଅନ୍ତର୍ନିହିତ ଶକ୍ତିଟି ହିଁ ସଂସ୍କୃତି । ଗୋଟିଏ ପାହାଡ ପିଠିରେ କଳକଳ ସ୍ୱର ସୃଷ୍ଟିକରି ଗଡି ଯାଉଥିବା ଝରଣା । ଅନ୍ୟଟି ତାହାର ସ୍ୱାଦ ଓ ସାଙ୍ଗୀତିକତା ।

ସଂସ୍କୃତିର ବ୍ୟାଖ୍ୟା ବଡ ବ୍ୟାପକ । ବ୍ୟୁତ୍ପତ୍ତିଗତ ଦୃଷ୍ଟିକୋଣରୁ ବିଚାର କଲେ- ''ସମ୍+କୃ+କ୍ତିନ୍'' ହିଁ ସଂସ୍କୃତି । ଅର୍ଥାତ୍, ଯେଉଁ କର୍ମ ସମୂହ ମାନବ ସମାଜକୁ ଏକ ଉତ୍ତୀର୍ଣ୍ଣ ସୋପାନରେ ସ୍ଥାନୀତ ହେବାର ପ୍ରେରଣା ଦିଏ ବା ପ୍ରୟାସୀ କରାଏ, ତାହାହିଁ ସଂସ୍କୃତି । ଏହା ଏକ ଅନ୍ତଃଶକ୍ତି । ମାନବକୁ ସାମାଜିକ, ରାଜନୈତିକ, ଆଧ୍ୟାତ୍ମିକ ଆଦି କ୍ଷେତ୍ରରେ ଶୃଙ୍ଖଳିତ, ସଙ୍ଗଠିତ ଏବଂ ପ୍ରତିଷ୍ଠିତ କରାଏ । ସେଥିପାଇଁ ତ କୁହାଯାଏ-

''ଯା ମାନବାନାଂ ସଗୁଣାନ୍ ତନୋତି
ଧର୍ମଂ ପ୍ରବୃତ୍ତିଂଚ ଦୃଢୀ କରୋତି
ସତ୍ୟାନୁରକ୍ତିଂ ବିଦଧାତି ନିତ୍ୟଂ
ସା ସଂସ୍କୃତିଃ ସର୍ବ ଜନୈଃ ସୁସେବ୍ୟା'' ।

ସଂସ୍କୃତିଏକ ଚେତନାଦ୍ୟୋକ ପ୍ରକ୍ରିୟା । ଏହା ମଣିଷ ଭିତରେ ଥିବା ଦିବ୍ୟଗୁଣଗୁଡିକର ପରିପ୍ରକାଶ କରିବା ସହ, ମାନବୀୟ ଧର୍ମବୃତ୍ତିକୁ ଦୃଢକରେ । ବ୍ୟକ୍ତିକୁ ଈଶ୍ୱରାନୁରାଗୀ ହେବାରେ ସାହାଯ୍ୟ କରେ ।

ଆମ ଦୈନନ୍ଦିନ ଜୀବନରେ ବ୍ୟବହାର ବା ଉପଯୋଗ କରୁଥିବା ଭାଷା, ସାହିତ୍ୟ, ଶିଳ୍ପ, ଚଳଣି, ସ୍ଥାପତ୍ୟ, ନୃତ୍ୟ ଓ ସଙ୍ଗୀତ ଆଦି ସଂସ୍କୃତିର ବାହକ ଓ ପରିପ୍ରକାଶ ସତ । କିନ୍ତୁ ସଂସ୍କୃତି ନୁହେଁ । ପ୍ରାଣ ଏବଂ ଶରୀର ମଧ୍ୟରେ ସମ୍ପର୍କ ଯାହା, ସଂସ୍କୃତି ଏବଂ ଏହାର ବାହକମାନଙ୍କ ମଧ୍ୟରେ ସଂପର୍କ ଠିକ୍ ସେଇଆ । ବିଦ୍ୟୁତ୍ ଶକ୍ତିକୁ ସୁଚାରୁ ରୂପେ ପରିବହନ କରୁଥିବା ତାରଟି ଶକ୍ତିର ବାହକ । ଶକ୍ତି ହେବ କେମିତି ? ପାନୀୟ ଧାରଣ କରିଥିବା ଗ୍ଲାସ୍‌ଟି ପାନୀୟ ନୁହେଁ, ଧାରକ ମାତ୍ର ।

ତେବେ ଯୁକ୍ତିତର୍କର ଜଟିଳତାକୁ ଏଡେଇବା ପାଇଁ ଏତିକି କୁହାଯାଇପାରେ, ସାମାଜିକ ପରିଚର୍ଯ୍ୟାର ଅନ୍ତରାଳରେ ସଂସ୍କୃତି ହିଁ ଏକ ଅଦୃଶ୍ୟ ସତ୍ତା । ମନୁଷ୍ୟକୁ ଉନ୍ନତରୁ ଉନ୍ନତର ପାହାଚରେ ପହଞ୍ଚେଇବା ଏହାର ଲକ୍ଷ୍ୟ । ଏହା ବୁଝିବା ପାଇଁ ଲୋଡା ତୀବ୍ର ଅନ୍ତଃଦୃଷ୍ଟି ।

ବିବର୍ତ୍ତନବାଦର ଚକ୍ରତଳେ ଅନେକ ସଂସ୍କୃତି ନିଜର ସତ୍ତା ହରାଇ ସାରିଲେଣି । ଅନେକ ନିଜର ଆଙ୍ଗିକ ପରିବର୍ତ୍ତନ କରି ନବକଳେବର ଧାରଣ କରିଛନ୍ତି । କିନ୍ତୁ ଶ୍ରୀଜଗନ୍ନାଥ ସଂସ୍କୃତି ବିଶ୍ୱର ପ୍ରାଚୀନତମ ସଂସ୍କୃତି ଭାବରେ ପ୍ରତିଷ୍ଠିତ, ଏହା ସ୍ୱୀକାର୍ଯ୍ୟ । ଜଗତକର୍ତ୍ତା ଶ୍ରୀଜଗନ୍ନାଥଙ୍କୁ ଉପଜୀବ୍ୟ କରି ଏ ସଂସ୍କୃତି ହୋଇଉଠିଛି ପରାଣବନ୍ତ । ଏହାର ପ୍ରଗତିରେ ପ୍ରତିବନ୍ଧକ ଥିଲା, ଆଉ ନାହିଁ।





ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ ପରି ସଂକୀର୍ଣ୍ଣ ବନ୍ଧନୀର ଉର୍ଦ୍ଧ୍ୱରେ ଯାହାର ପରିକଳ୍ପନା, ମାନବବାଦ ଯାହାର ପରିଭାଷା, ସେ ସଂସ୍କୃତି ବାଟବଣା ହେବାର ପ୍ରଶ୍ନ ଉଠୁନି ।

ଶ୍ରୀପୁରୁଷୋତ୍ତମ ଚେତନାକୁ ଜଗନ୍ନାଥ ସଂସ୍କୃତିର ମୂଳଉତ୍ସ ବୋଲି ବିଚାର କରାଯାଏ । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ମତରେ ''ଉପାସ୍ୟ ଦେବତା ବା ଈଶ୍ୱରଙ୍କଠାରେ ଗୁଣ ଓ ଶକ୍ତିର ଆରୋପ କରି ଗୁଣଗାନ କରିବାକୁ ଭଜନ, ସ୍ତବ, ଉପାସନା ଇତ୍ୟାଦି କୁହାଯାଏ । ଏସବୁ ପ୍ରାକୃତ ଧର୍ମର ଗୋଟିଏ ଗୋଟିଏ ଅଂଗ । ଜଗନ୍ନାଥ ଧର୍ମ ଏହି ପ୍ରାକୃତ ଧର୍ମଠାରୁ ଢେର ପୃଥକ୍ । ଜଗନ୍ନାଥ ଧର୍ମରେ ଉପାସକ, ଉପାସ୍ୟ ନିକଟରେ ନିଜର ସ୍ଥିତିକୁ ବିଚାର କରି ତନ୍ମୟ ହେବାର ନିରନ୍ତର ପ୍ରଚେଷ୍ଟା ପରିଲକ୍ଷିତ ହୁଏ । ଏ ପ୍ରଚେଷ୍ଟାରେ ଆତ୍ମାର ବନ୍ଧନ କଟିଯାଏ ଏବଂ ଏହା ନିର୍ବାଣ ପ୍ରୟାସୀ ହୁଏ । ସଂସାରର ଅନନ୍ତ ବୈଷମ୍ୟ ମଧ୍ୟରେ ବ୍ୟକ୍ତି ଈଶ୍ୱରୀୟ ସତ୍ତା ଖୋଜି ବୁଲେ । ଧୀରେ ଧୀରେ ବ୍ୟକ୍ତି ଜଣକ ଜାତି, ଧର୍ମ, ବର୍ଣ୍ଣ ଇତ୍ୟାଦିର ଗୁମ୍ଫା ଭିତରୁ ବାହାରକୁ ଆସି ''ସର୍ବତ୍ର ସମଦର୍ଶନଃ'' ଭୂମିକାରେ ଉପନୀତ ହୁଏ ।''

ଏଥିରେ ଲାଭ ତିନୋଟି । ପ୍ରଥମତଃ-ଉପରୋକ୍ତ ଧର୍ମଧାରାରେ ଧାବିତ ବ୍ୟକ୍ତି ଜୀବନରେ ବିଶ୍ୱପ୍ରେମର ଫଲ୍‌ଗୁ ପ୍ରବାହିତ ହୁଏ । ଦ୍ୱିତୀୟତଃ- ''ସମଦର୍ଶନ''ର ଫଳ ସ୍ୱରୂପ ବ୍ୟକ୍ତିର ଅନ୍ତଃସ୍ଥ ଆଧ୍ୟାତ୍ମିକତାର ଉର୍ଦ୍ଧ୍ୱଗାମୀ ହୁଏ । ଜୀବନ ପ୍ରତି ଏକ ଅମୃତ ଦୃଷ୍ଟିକୋଣର ସଂପ୍ରସାରଣ ହୁଏ । ଅତ୍ର, ତତ୍ର, ସର୍ବତ୍ର ବ୍ୟକ୍ତି ଈଶ୍ୱର ଦର୍ଶନ କରିବାର ଯୋଗ୍ୟତା ଲାଭ କରେ ।

ତୃତୀୟତଃ, ସମଦର୍ଶନରୁ ବ୍ରହ୍ମଦର୍ଶନ ଲାଭ କରିଥିବା ବ୍ୟକ୍ତି ଜୀବନରେ ''ଉପାସ୍ୟ ଏବଂ ଉପାସକ'' ବ୍ୟବଧାନ ରହେନାହିଁ ।

''ଯେ ମାଂ ପଶ୍ୟତି ସର୍ବତ୍ର
ସର୍ବଂଚ ମୟି ପଶ୍ୟତି
ତସ୍ୟାହଂନ ପ୍ରଣଶ୍ୟାମି
ସଚନମେ ପଣଶ୍ୟତି''

ଜଗନ୍ନାଥ ସଂସ୍କୃତି ଏହି ତ୍ରିଗୁଣାତ୍ମକ ବାର୍ତ୍ତାର ପରିଚାୟକ । ଭୂମିରୁ ଭୂମାକୁ, ଭୋଗରୁ ଭକ୍ତିକୁ, ମାୟାରୁ ମୁକ୍ତିକୁ ସଂଚରଣ, ଏହାର ମୂଳମନ୍ତ୍ର । ସମସ୍ତଙ୍କୁ ଆପଣେଇ ନେବାର ଆବେଗ ନେଇ କାଳିଆ ଠାକୁର ଉନ୍ମୁକ୍ତ ବାହୁ । ଯୁଗେ ଯୁଗେ ସେ ଠାକୁରର ଆଶିଷ ଟିକିଏ ପାଇଁ ଆମେ ସମସ୍ତେ ବ୍ୟାକୁଳ ।

ନାହିଁ ନାହିଁ ଜାତି ଧର୍ମ
ନାହିଁ ନାହିଁ ବିଷମ ଭାବନା
ନାହିଁ କେହି ଉଚ୍ଚ ନୀଚ
ନାହିଁ କିଛି ବିଷୟ ବାସନା
ଗୋଟିଏ ସୂତାରେ ଗୁନ୍ଥା ଫୁଲପରି
ସମସ୍ତେ ତା ଭକ୍ତ
କାଳିଆର ଛତ୍ରଛାୟା ତଳେ
ସମସ୍ତେ ଆଶ୍ରିତ ।

ସୁଦୂର ପ୍ରସାରି ରାସ୍ତା ପାର୍ଶ୍ୱରେ ଦଣ୍ଡାୟମାନ ବିଶାଳ ବଟବୃକ୍ଷଟିକୁ ଦେଖିଲେ, ତା'ର ଉଦାରତା ବୁଝି ହୁଏ । କେତେ ଅନାବିଳ ତା'ର ଆବେଗ ! କ୍ଳାନ୍ତ ପଥିକମାନଙ୍କୁ ଛାୟା ପ୍ରଦାନ କରିବାରେ, ସେ କେବେ ବି କୁଣ୍ଠିତ ହୁଏନା । ଅନ୍ୟକୁ ଆଲୋକିତ କରିବା ପାଇଁ, ଆଲୋକ ସଂଚରି ଦେବାରେ, ସୂର୍ଯ୍ୟର କୃପଣତା ପ୍ରକାଶ ପାଏନା । ଉଦରରେ ଥିବା ସମସ୍ତ ଜଳରାଶିକୁ ବିତରି ଦେବାରେ, ବାଦଲ କେବେ ବି ମନ ଊଣା କରେନା ଠିକ୍ ସେହିପରି, ବିଶ୍ୱୈକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଜଗନ୍ନାଥ ସଂସ୍କୃତି ପରକୁ ଅପର କରିବାରେ ଅଟକି ଯାଏନା । ବରଂ ମାନବବାଦର ବେଦି ଉପରେ ସ୍ଥାପିତ ଏ ସଂସ୍କୃତି ଅନ୍ୟକୁ ଅନନ୍ୟ କରିବା ପାଇଁ ଯେତିକି ଆଗ୍ରହୀ, ସେତିକି ଉତ୍ସାହୀ ।

ଫୁଟିଲା ଫୁଲଟିଏ ନିଜର ସ୍ଥିତିକୁ ସ୍ୱତଃ ସୂଚେଇ ଦିଏ, ନିଜସ୍ୱ ବାସ୍ନା ମାଧ୍ୟମରେ । ଆକର୍ଷିତ କରେ ମଧୁପିପାସୁ ଭ୍ରମରମାନଙ୍କୁ । ସ୍ୱୀୟ ସୌନ୍ଦର୍ଯ୍ୟରେ ଋଦ୍ଧିମନ୍ତ ଜଗନ୍ନାଥ ସଂସ୍କୃତି ଅନେକଙ୍କୁ ଆକର୍ଷିତ କରିଛି, କରୁଛି ମଧ୍ୟ । ଅତୀତରେ ଅନେକ ଆଚାର୍ଯ୍ୟ, ପ୍ରାଚାର୍ଯ୍ୟ, ସନ୍ଥ, ସନ୍ନ୍ୟାସୀ ଇତ୍ୟାଦି ଶ୍ରୀକ୍ଷେତ୍ରକୁ ଆସିଛନ୍ତି । ଜଗନ୍ନାଥଙ୍କର ଅଲୌକିକତାରେ ଆହ୍ଲାଦିତ ହୋଇ ଜଗନ୍ନାଥଙ୍କୁ ନିଜର କରିଛନ୍ତି । ସର୍ବସ୍ୱ ବୋଲି ଧରିନେଇଛନ୍ତି ।

ଏମିତି ବି ହୁଏ, ପଦ୍ମଫୁଲରୁ ରସ ଗ୍ରହଣ କରୁ କରୁ, ବେଳେବେଳେ ଭ୍ରମରଟିଏ ବୁଝି ପାରେନା, ସଂଜ ନଇଁବାର ବେଳ। ସୂର୍ଯ୍ୟର ଆବର୍ତ୍ତମାନରେ ପଦ୍ମଫୁଲଟି ଆଖି ବୁଜିଦିଏ । ବିଚରା ଭ୍ରମରଟି ବନ୍ଦୀ ହୋଇଯାଏ ପାଖୁଡା ଭିତରେ । ପଦ୍ମକୁ ଭଲ ପାଉଥିବା ଭ୍ରମରଟି କିନ୍ତୁ ନିଜକୁ ମୁକୁଳାଇବା ପାଇଁ, ପଦ୍ମର କୌଣସି କ୍ଷତି କରେନା । ବରଂ ନିଜେ ଶୋଇଯାଏ ଚିରନିଦ୍ରାରେ ।

ଶ୍ରୀକ୍ଷେତ୍ରକୁ ଆସିଥିବା ଅନେକଙ୍କ କ୍ଷେତ୍ରରେ ଏହା ଘଟିଛି । ଶ୍ରୀଜଗନ୍ନାଥଙ୍କର ଅନନ୍ତ ବିଭୂତିରେ ଅଭିଭୂତ ହୋଇ ସନ୍ଥ ମହାତ୍ମାମାନେ କେବଳ ଯେ ମଠ/ଆଶ୍ରମ ସ୍ଥାପନ କରିଛନ୍ତି, ତା' ନୁହେଁ । ଅନେକ ଜୀବନର ଶେଷ ସଂଧ୍ୟା ଏଇଠି କାଟିଛନ୍ତି ।

ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେ
ଽସ୍ତଂ ଗଛନ୍ତି ନାମରୂପ ବିହାୟ
ତଥା ବିଦ୍ୱାନ୍ ନାମ ରୁପାଦ୍ ବିମୁକ୍ତଃ
ପରାତ୍ପରଂ ପୁରୁଷମୁପୈତି ଦିବ୍ୟମ୍

(ମୁଣ୍ଡକ- ୨/୮)

ଯେପରି ନଦୀଟିଏ ସମୁଦ୍ରରେ ମିଶିଲାପରେ ନିଜର ନାମ, ସ୍ୱାଦ, ସତ୍ତା ଓ ସ୍ୱରୂପ ହରାଇ ସମୁଦ୍ର ସହ ଏକାକାର ହୋଇଯାଏ, ସେହିପରି ଏହି ମହାନ୍ ଜଗନ୍ନାଥାୟନର ସୁନ୍ଦର ପରିସର ମଧ୍ୟରେ ବୌଦ୍ଧ, ଶୈବ, ଶାକ୍ତ, ସୌର, ଗାଣପତ୍ୟ, ଖ୍ରୀଷ୍ଟ, ଇସଲାମୀୟ ଇତ୍ୟାଦି ସମସ୍ତେ ଇତିହାସ ସାଜିଛନ୍ତି । ସ୍ଥିର ଦିଗବାରେଣୀ ସ୍ତମ୍ଭପରି, ସମୟର ତରଙ୍ଗରେ ଦୋଳାୟମାନ ସମସ୍ତ ସାମ୍ପ୍ରଦାୟିକତାର ପୋତମାନଙ୍କୁ ଏ ସଂସ୍କୃତି ସାମାଜିକତାର ଦିଗ ଦେଖାଇଛି । ନିଜେ ଦୋହଲିଯାଇନି । ''ବସୁଧୈବ କୁଟୁମ୍ବକଂ'' ଯାହାର ପରିଭାଷା, ମାନବବାଦ ଯାହାର ମୂଳମନ୍ତ୍ର ଆଧ୍ୟାତ୍ମିକତା ଯାହାର ପ୍ରାଣ, ''ଜଗଦ୍ଧୀତାୟ'' ଯାହାର ଚେତନା, ସେ ସଂସ୍କୃତି ସଂକୁଚିତ ହୋଇଥାନ୍ତା କିପରି ? ନୀଳ ଆକାଶରେ ବଉଦଟିଏ ସୃଷ୍ଟିହେବା- ହଜିଯିବା ସ୍ୱାଭାବିକ୍ । ହେଲେ ଆକାଶ ??? ଥିଲା- ଅଛି-ଥିବ ।

ବିଡମ୍ବନା ମନେହୁଏ ସେତେବେଳେ, ଯେତେବେଳେ ଜଗନ୍ନାଥଙ୍କୁ ନେଇ, ଐତିହାସିକମାନଙ୍କଠାରୁ ଆରମ୍ଭ କରି ପୁରାଣ ପଣ୍ଡିତମାନଙ୍କ ମଧ୍ୟରେ ଯୁକ୍ତିତର୍କର ଝଡ ସୃଷ୍ଟିହୁଏ । ଜଗନ୍ନାଥ ଉପାସନାର ଆଦ୍ୟକାଣ୍ଡ ଖୋଜି ଖୋଜି କିଏ ଶବର ସଂସ୍କୃତିରେ ପହଞ୍ଚିଲେଣି ତ କିଏ ପାରଳାଖେମୁଣ୍ଡିର ଶୈଳୋଦ୍ଭବ ବଂଶ କଥା କହିଲେଣି । କେହି କେହି ପୁରୀରେ ଅତୀତରେ ନୌବାଣିଜ୍ୟର ଏକ ପୋତାଶ୍ରୟ ଥିଲା ଏବଂ ବିଦେଶୀ ନୌବଣିକମାନଙ୍କର ଉପାସନାର ପର୍ଯ୍ୟାୟ କ୍ରମିକ ବିବର୍ତ୍ତନ କଥା ଅନୁମାନ କଲେଣି । କେହି କେହି ବୁଦ୍ଧ ଦନ୍ତ ଏବଂ ଜୈନତୀର୍ଥଙ୍କର ସମ୍ପର୍କକୁ ଜୋର୍ ଦେଇ ଚିତ୍କାର କରୁଥିବା ବେଳେ, ଶେଷ ସାରାଂଶ କ'ଣ ମିଳିଛି ?

''ମୋ ମାୟା ମୋତେ ଅଗୋଚର
କାହୁଁ ଜାଣିବ ଛାର ନର ।''

ଯୁକ୍ତିତର୍କର ପ୍ରବାହକୁ ପ୍ରବଳ କରିବା ପାଇଁ ପୁରାଣକାରମାନଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ । ଉଦାହରଣ ସ୍ୱରୂପ ଏତିକି କୁହାଯାଇପାରେ- ସ୍କନ୍ଦପୁରାଣର ଇନ୍ଦ୍ରଦ୍ୟୁମ୍ନ ଅବନ୍ତୀ ନଗରର ରାଜା ହେଲାବେଳେ, ବ୍ରହ୍ମ ପୁରାଣର ଇନ୍ଦ୍ରଦ୍ୟୁମ୍ନ ମାଳବ ରାଜ୍ୟର ରାଜା । ଶାରଳା ଦାସଙ୍କ ମହାଭାରତରେ ଇନ୍ଦ୍ରଦ୍ୟୁମ୍ନ ସାକଲ୍ୟ ଦ୍ୱୀପର ରାଜା । ଏଥିରେ ତ କଳିଗୋଳ ଲାଗିଯିବା ସ୍ୱାଭାବିକ । ପୁନଶ୍ଚ ଜଗନ୍ନାଥ କିଏ ? ରାମ, କୃଷ୍ଣ ନା କାଳୀ ? ଏ ବ୍ରହ୍ମ କ'ଣ ? ଶାଳଗ୍ରାମ ନା ବୁଦ୍ଧଦନ୍ତ ? ବଳଭଦ୍ର- କୃଷ୍ଣଙ୍କର ବଡଭାଇ ବଳରାମ ନା ରୁଦ୍ର ? ସୁଭଦ୍ରା ଜଗନ୍ନାଥଙ୍କର ଭଗିନୀ ନା ଅଭିଶପ୍ତ ବ୍ରହ୍ମା ? ଏଇମିତି ନାନାମୁନିଙ୍କର ନାନା ମତ ପ୍ରକାଶିତ ହେଲାବେଳେ, ସାରାଂଶ ?

ସର୍ବଂ ରହସ୍ୟଂ ପୁରୁଷୋତ୍ତମସ୍ୟ
ଦେବୋ ନଜାନାତି କୁତୋ ମନୁଷ୍ୟଃ ।

ଆଲୋକ ନିକଟରେ ବସି ପୁସ୍ତକ ପଢିବା ଯେତିକି ସହଜ, ଦୂରେଇଗଲେ ହୁଏନି । ଅକ୍ଷର ଝାପ୍‌ସା ଦେଖାଯିବା, ଅଳ୍ପ ଦେଖାଯିବା, ମୋଟେ ନଦେଖାଯିବାର ସମ୍ଭାବନାକୁ ମଧ୍ୟ ଏଡେଇ ହୁଏନା । ଜଗନ୍ନାଥ ସଂସ୍କୃତିର ବିଚାରକୁ ଇତିହାସ ପୃଷ୍ଠାରେ କିମ୍ବା ପୌରାଣିକ କାହାଣୀ ଭିତରେ ଖୋଜି ବସିଲେ, ବାଟବଣା ହେବାର ସମ୍ଭାବନା ଯଥେଷ୍ଟ । ଆମେ ମନେ ରଖିବା ଉଚିତ୍- ଇତିହାସ ସଂସ୍କୃତି ନୁହେଁ, ସଂସ୍କୃତିର ମୂକସାକ୍ଷୀ । ପୁରାଣ ସଂସ୍କୃତି ନୁହେଁ, ସଂସ୍କୃତିର ବାର୍ତ୍ତାବହ । ତାକୁନେଇ ଏତେ ବାଦ ବିସମ୍ବାଦ ଠିକ୍ ନୁହେଁ । ଏଥିପାଇଁ ଜ୍ଞାନର ଅହଂକାର ନୁହେଁ, ଅନୁଭବ ଲୋଡା । ଫଳଟିଏ ତା'ର ଆକାର ଓ ଆକୃତିକୁ ନେଇ ଯେତିକି ପ୍ରିୟଭାଜନ ହୁଏ, ତା'ଠାରୁ ଅଧିକ ପ୍ରିୟଭାଜନ ହୁଏ ତା'ର ସ୍ୱାଦକୁ ନେଇ । ଜଗନ୍ନାଥ ସଂସ୍କୃତି ତା'ର ରୀତି-ନୀତି, ପୂଜା ପାର୍ବଣ, ଯାନି-ଯାତ୍ରା ଇତ୍ୟାଦିକୁ ନେଇ ଯେତିକି ସୁନ୍ଦର ହୋଇଛି, ତା'ଠାରୁ ଅଧିକ ସୁନ୍ଦର ହୋଇଛି ତା'ର ଆବେଗ ପାଇଁ... ତା'ର ବିଚାର ପାଇଁ... ସେ ଠାକୁରକୁ ବୁଝିବା ପାଇଁ, ତା'ର ସଂସ୍କୃତିକୁ ହୃଦୟଙ୍ଗମ କରିବା ପାଇଁ ଗୋଟିଏ ସୂକ୍ଷ୍ମ ସୂତ୍ର ଅଛି । ସେ ସୂତ୍ର ନଜାଣିଲା ପର୍ଯ୍ୟନ୍ତ, ଗଣିତ କଷିବା, ଅନ୍ଧାରେ ବାଡି ବୁଲେଇବା ସହ ସମାନ ।

ତତ୍ତ୍ୱ ବୁଝିଲେ ତୁଟେ ଭ୍ରାନ୍ତି
ଜନ୍ମ ମରଣୁ ତରିଯାନ୍ତି

ଏହା ସର୍ବଜନସମ୍ମତ ଯେ, ମନୁଷ୍ୟ ଏକଦା ପ୍ରକୃତି କୋଳରେ ବଞ୍ଚୁ ଥିଲା । ତେଣୁ ନିସ୍ୱାର୍ଥପର ଭାବରେ ଫଳପୁଷ୍ପ ସମର୍ପି ଦେଉଥିବା ବୃକ୍ଷକୁ, ଦେହରେ ପୁଲକ ଆଣୁଥିବା ମଳୟର ସ୍ପର୍ଶକୁ, ଭାବ ପ୍ରବଣତାରେ ଭରି ଦେଉଥିବା ଝରଣାର କଳ କଳ ଧ୍ୱନିକୁ, ମନୁଷ୍ୟ ଭଲପାଇବା ସ୍ୱାଭାବିକ । କାଳକ୍ରମେ ପ୍ରକୃତିକୁ ଭଲ ପାଉଥିବା ମନୁଷ୍ୟ, ପ୍ରକୃତି ପ୍ରତି କୃତଜ୍ଞ ହୋଇଛି । ତା'ର ସୁରକ୍ଷା ପାଇଁ ପ୍ରକୃତିର ଉପାସନା କରିଛି । ଯେତେବେଳେ ପ୍ରକୃତି ତା'ର କ୍ରୁରତା ପ୍ରକାଶ କରିଛି, ତା'କୁ ଶାନ୍ତ କରିବା ପାଇଁ ଉପାୟ




ଖୋଜିଛି । ଭୟରେ ହେଉ ବା କୃତଜ୍ଞତାର ପରିପ୍ରକାଶ ପାଇଁ ହେଉ, ବୃକ୍ଷ ଉପାସନା, ନଦୀ ଉପାସନା, ଅଗ୍ନି ଉପାସନା, ବାୟୁ ଉପାସନା ଇତ୍ୟାଦି ମନୁଷ୍ୟର ଭାବନାକୁ ସମୟକ୍ରମେ ଅନୁଶାସିତ କରିଛି । ସେ ଅନୁଭବ କରିଛି ପ୍ରକୃତିର ପ୍ରତ୍ୟେକ କାର୍ଯ୍ୟ ପଛରେ ଏକ ନିର୍ଦ୍ଦିଷ୍ଟ ନିୟମ ବା ଅନୁଶାସନ ରହିଛି । ନିଜକୁ ପଚାରିଛି– ଏ ଅନୁଶାସନର ସ୍ରଷ୍ଟା କିଏ ? ଶାସକ କିଏ ? ଏ ଜିଜ୍ଞାସାର ସୀମା ଯେତେ ଖୋଜିଲେ ବି, ଉତ୍ତର ମିଳିଛି 'ନେତି ନେତି' ଏବଂ ଶାସକ ମନସ୍କ ମନୁଷ୍ୟ ପରେ ଆତ୍ମ ସମର୍ପଣ କରିଛି, ସେଇ ବୁଝିପାରିନଥିବା ବିଶ୍ୱନିୟନ୍ତାଙ୍କ ନିକଟରେ ତାଙ୍କୁ କେବଳ ଗୋଟିଏ ନାମରେ ନାମିତ କରିଛି । ସେ ହେଉଛନ୍ତି ପରମେଶ୍ୱର ।

ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣଂ ମସ୍ନାବିରଂ
ଶୁଦ୍ଧମପାପବିଦ୍ଧମ୍
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୁର୍ଯାଥା ତଥ୍ୟ
ତୋର୍ଥ୍ୟାନ୍ ବ୍ୟଦଧାଙ୍ଗଶ୍ୱତୀଭ୍ୟଃ ସମାଭ୍ୟଃ

(ଯଜୁଃ ୪୦/୮)

ଅର୍ଥାତ୍–''ପରମେଶ୍ୱର ପ୍ରତ୍ୟେକ ବସ୍ତୁର ଚତୁର୍ଦ୍ଦିଗରେ ବ୍ୟାପୀ–ବ୍ୟାପକ ଭାବରେ ବିଦ୍ୟମାନ । ସଂସାରର ବୀଜଶକ୍ତି ବା ମୂଳକାରଣ । ସେ ଶରୀର ରହିତ ବ୍ରଣାଦିଛିଦ୍ର ରହିତ, ନାଡି ବିହୀନ ହେବାରୁ ବନ୍ଧନମୁକ୍ତ, ଅତ୍ୟନ୍ତ ପବିତ୍ର, ମଳ ରହିତ । ସେ ପାପ ଦ୍ୱାରା ଆକ୍ରାନ୍ତ ହୋଇପାରନ୍ତି ନାହିଁ । ସେ ଜ୍ଞାନୀ, ବିଚାରବାନ୍, ସର୍ବବିଦ୍ୟମାନ । ସେ ନିଜେ ହିଁ ନିଜର ଉତ୍ପତ୍ତି କର୍ତ୍ତା । ତାଙ୍କର କେହି ସ୍ୱାମୀ ନାହାନ୍ତି । ସେ ସମସ୍ତଙ୍କର ସ୍ୱାମୀ । ସେ ନିଜର ଶାଶ୍ୱତ ନିୟମ ଦ୍ୱାରା ପରିବ୍ୟାପ୍ତ । ସଂସାରର ପ୍ରତ୍ୟେକ ବସ୍ତୁକୁ ସେ ଯଥାରୀତି ଧାରଣ ବା ନିୟନ୍ତ୍ରଣ କରନ୍ତି ।'' ତାଙ୍କୁ ଜାଣିବାର ଅର୍ଥ ଜନ୍ମମୃତ୍ୟୁ ଚକ୍ରର ଉର୍ଦ୍ଧ୍ୱକୁ ଚାଲିଯିବା ଓ ପରମାନନ୍ଦ ଲାଭ କରିବା ।

ବେଦାହ ମେତଂ ପୁରୁଷଂ ମହାନ୍ତମ୍–
ଆଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍
ତମେବ ବିଦିତ୍ୱାତି ମୃତ୍ୟୁମେତି
ନାନ୍ୟଃ ପନ୍ଥାଃ ବିଦ୍ୟତେଽୟନାୟ

(ଶ୍ୱେତାଶ୍ୱତର–୩/୮)

ବୈଦିକ ଯୁଗରେ ତେତିଶ କୋଟି ଦେବତାଙ୍କୁ ମଣିଷ ପୂଜା କରୁଥିଲା ବୋଲି ବିଶ୍ୱାସ କରାଯାଏ । ପ୍ରକୃତରେ 'କୋଟି' ଶବ୍ଦଟି ଏଠାରେ ସଂଖ୍ୟାବାଚକ ନୁହେଁ, ବର୍ଗବାଚକ । ତେତିଶିବର୍ଗର ଦେବତା ପୂଜା ବେଦବିଦିତ । ଏମାନେ ହେଲେ ଦ୍ୱାଦଶ ଆଦିତ୍ୟ, ଏକାଦଶ ରୁଦ୍ର, ଅଷ୍ଟ ବସୁ, ଇନ୍ଦ୍ର ଓ ପ୍ରଜାପତି । ଉପନିଷଦୀୟ ଯୁଗ ବେଳକୁ ବିଶ୍ୱାତ୍ମାଙ୍କର ପରିକଳ୍ପନା ସର୍ବଜନଗ୍ରାହ୍ୟ । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରକୃତିର ଘଟଣାବଳୀକୁ ନିକଟରୁ ଅନୁଧ୍ୟାନ କରି, ମନୁଷ୍ୟ ଅନୁଭବ କଲା, ପ୍ରକୃତିରେ ନିତ୍ୟ ନିରନ୍ତର ଘଟି ଯାଉଥିବା ପ୍ରତ୍ୟେକ ଘଟଣା ନିଜର ଶରୀରରେ ମଧ୍ୟ ଘଟୁଛି ।

ଦେହେସ୍ମିନ୍ ବର୍ତ୍ତତେ ମେରୁଃ ସପ୍ତଦ୍ୱୀପ ସମନ୍ୱିତଃ
ସରିତଃ ସାଗରାଃ ଶୈଳାଃ କ୍ଷେତ୍ରାଣି କ୍ଷେତ୍ରପାଳକାଃ
ଋଷୟଃ ମୁନୟଃ ସର୍ବେ ନକ୍ଷତ୍ରାଣି ଗ୍ରହାସ୍ତଥା
ପୁଣ୍ୟ ତୀର୍ଥାନି ପୀଠାନି ବର୍ତ୍ତନ୍ତେ ପୀଠ ଦେବତାଃ ।

(ଶିବ ସଂହିତା)

ତେଣୁ ପ୍ରକୃତିର ଏକ ପ୍ରତୀକ ହେଉଛି ଶରୀର । ପିଣ୍ଡ–ବ୍ରହ୍ମାଣ୍ଡ ଏକ ଓ ଅନନ୍ୟ । ବ୍ରହ୍ମାଣ୍ଡରେ ବିଶ୍ୱାତ୍ମା ପରିବ୍ୟାପ୍ତ ଥିବାବେଳେ ଶରୀରରେ ସେ ଜୀବାତ୍ମା ।

ଅହଂ ଆତ୍ମା ଗୁଡାକେଶ ସର୍ବଭୂତାଶ୍ରୟସ୍ଥିତଃ
ଅହମାଦିଶ୍ଚ ମଧ୍ୟଂଚ ଭୂତାନାମନ୍ତ ଏବଚ ॥

(ଗୀତା–୧୦/୨୦)

ଦ୍ୱନ୍ଦ୍ୱ ସୃଷ୍ଟିହେଲା ସେତେବେଳେ, ଯେତେବେଳେ ମଣିଷ ବିଚାର କଲା– ଯଦି ପ୍ରତ୍ୟେକମାନଙ୍କ ଭିତରେ ଈଶ୍ୱର, ତେବେ ଜଣେ ସାମାଜିକ ଓ ଜଣେ ଅସାମାଜିକ କାହିଁକି ? ଜଣେ ସାଧୁ, ଜଣେ ଅସାଧୁ କାହିଁକି ?

ଈଶ୍ୱର ସର୍ବଭୂତାନାଂ ହୃଦେଶେର୍ଜୁନ ତିଷ୍ଠତି
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୁଢାନି ମାୟୟା

(ଗୀତା–୧୮/୨୧)

ଟର୍ଚ୍ଚ ରାସ୍ତା ଦେଖାଏ ନାହିଁ । ସେଥିରୁ ବାହାରୁଥିବା ଆଲୋକ ରାସ୍ତା ଦେଖାଏ । ଛୁରୀ ପରିବା କାଟେନା । ତା'ର ଧାର ପରିବା କାଟେ । ଈଶ୍ୱର କିଛି କରନ୍ତିନି । କେବଳ ମନୁଷ୍ୟର କର୍ମର ସାକ୍ଷୀ ହୋଇରୁହନ୍ତି ।

ଏକ ଦେବୋ ସର୍ବଭୁତେଷୁ ଗୂଢଃ
ସର୍ବବ୍ୟାପି ସର୍ବଭୂତାନ୍ତରାତ୍ମା
କର୍ମାଧ୍ୟକ୍ଷଃ ସର୍ବ ଭୂତାଧିବାସଃ
ସାକ୍ଷୀ ଚେତା କେବଳ ନିର୍ଗୁଣଶ୍ଚ ।

(ଶ୍ୱେତାଶ୍ୱତର–୩/୧୧)

ତେବେ ଜୀବକୁ କର୍ମ ପ୍ରେରିତ କରେ କିଏ ?– ଈଶ୍ୱରୀୟ ମାୟା । ଏହାକୁ ବୁଝିବା କଷ୍ଟ । କେବଳ ଈଶ୍ୱରଙ୍କ କୃପାବଳରେ





ତାକୁ ଜାଣିବା ସମ୍ଭବ । ଏ ମାୟା ପୁଣି ଦୁଇପ୍ରକାର– ବିଦ୍ୟା ମାୟା ଓ ଅବିଦ୍ୟା ମାୟା । ଜୀବ ଭଗବାନଙ୍କର ବିଦ୍ୟା ମାୟାର ବଶବର୍ତ୍ତୀ ହେଲେ ତା' ଭିତରେ ଥିବା ଦୈବୀ ଗୁଣଗଡିକ କାର୍ଯ୍ୟକାରୀ ହୁଏ । ଜୀବ ଯଦି ଅବିଦ୍ୟା ମାୟାର ବଶବର୍ତ୍ତୀ ହେଲା, ତେବେ ଆସୁରୀକଗୁଣର ପରିଚାୟକ ସେ ହେବ ହିଁ ହେବ ।

ଦେହସ୍ଥ ସର୍ବବିଦ୍ୟାଶ୍ଚ ଦେହସ୍ଥ ସର୍ବଦେବତା
ଦେହସ୍ଥ ସର୍ବତୀର୍ଥାନି ଗୁରୁବାକ୍ୟେଣ ଲଭ୍ୟତେ ।

ଏହି ଦେହ ଭିତରେ ଥିବା ଦିବ୍ୟଗୁଣଗୁଡିକର ଉପାସନା ପାଇଁ ବିଭିନ୍ନ ମୂର୍ତ୍ତି କଳ୍ପନା କରାଯାଇଛି । ବ୍ୟକ୍ତିର ନିଜସ୍ୱ ଦିବ୍ୟ ଭାବ ଧାରାର ପ୍ରତିଫଳନ ଆମର ପୂଜ୍ୟ ଦେବତା ସମୂହ । ଏହାର ଫଳସ୍ୱରୂପ ଉପନିଷଦର ଏକେଶ୍ୱର ବାଦ (Monotheism), ପୁରାଣ ଯୁଗରେ ବହୁଦେବତା ବାଦରେ (Polytheism) ରୂପାନ୍ତରିତ ହୋଇଛି । କିନ୍ତୁ ଜଗନ୍ନାଥ ଐକାନ୍ତିକ ବାଦ (Henotheism)ର ପ୍ରତୀକ । ଐକାନ୍ତିକ ବାଦର ଅର୍ଥ ନିଜର ଆରାଧ୍ୟ ଦେବତାଙ୍କଠାରେ ଅନ୍ୟ ସମସ୍ତ ଦେବତାଙ୍କ ଗୁଣଗୁଡିକୁ ଆରୋପ କରି ତାଙ୍କୁ ସର୍ବଶ୍ରେଷ୍ଠ ଦେବତା ଭାବରେ ସ୍ୱୀକାର କରିବା ଏବଂ ଉପାସନା କରିବା ।

ଶ୍ରୀଜଗନ୍ନାଥ ଚେତନାର ସଂଜୀବିତ ଧାରା ଐକାନ୍ତିକବାଦର ଏକ ଅପୂର୍ବ ପ୍ରତିଫଳନ । ମହାସାଗର ଅନେକ ସ୍ରୋତସ୍ୱିନୀର ପ୍ରବାହକୁ ସ୍ୱୀକାର କରି ମଧ ସ୍ୱୀୟଗୁଣରେ ଗୌରବୋଜ୍ୱଳ ରହିଲାପରି, ଶ୍ରୀଜଗନ୍ନାଥ ସମସ୍ତ ମତ, ପଥ ଓ ସିଦ୍ଧାନ୍ତକୁ ଏକାକାର କରି ଗରୀୟାନ ହୋଇଛନ୍ତି । ପ୍ରାଚୀନକାଳର ଶବର ଆରାଧିତ ଠାକୁର ହିନ୍ଦୁଧର୍ମର ସର୍ବୋତ୍ତମ ପରିପ୍ରକାଶରେ ପରିଣତ ହୋଇ, ନୀରବି ଯାଇଛନ୍ତି ତା' ନୁହେଁ । ବରଂ ଶୈବମାନଙ୍କଠାରୁ ଆରମ୍ଭ କରି ଶାକ୍ତମାନଙ୍କ ପର୍ଯ୍ୟନ୍ତ, ଜୈନମାନଙ୍କଠାରୁ ଆରମ୍ଭକରି ଗାଣପତ୍ୟମାନଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କର ସେ ହୋଇଛନ୍ତି ଆରାଧ୍ୟ । ବିଶ୍ୱର ବହୁସ୍ଥାନରେ ପ୍ରଚଳିତ ଖ୍ରୀଷ୍ଟିୟ ପ୍ରେରଣାର ଆଦିଉତ୍ସ ହେଉଛନ୍ତି ନୀଳାଦ୍ରିବିହାରୀ । ସମାଲୋଚକମାନେ ମୁସଲମାନଙ୍କ ପ୍ରିୟ ଚନ୍ଦ୍ରକଳାର ଚିହ୍ନକୁ ଶ୍ରୀଜଗନ୍ନାଥଙ୍କଠାରେ ଆରୋପ କରନ୍ତି ।

କିଏ କହେ ତାଙ୍କୁ କାଳିଆ ସାଆନ୍ତ
କିଏ କହେ କଳାଚାନ୍ଦ
କିଏ କହେ ତାଙ୍କୁ ଗୋବିନ୍ଦ ଗୋପାଳ
କାହା ପାଇଁ ରାମଚନ୍ଦ୍ର
କାହା ପାଇଁ ସିଏ ବୁଦ୍ଧ ମହାବୀର
କାହା ପାଇଁ ମହାକାଳୀ
ଭକତ ଭାବରେ ବନ୍ଧା ସେ ଠାକୁର
ଭକ୍ତ ହୃଦ ଗଳାମାଳି ।

''ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ତଥୈ୍ୟ ଭଜାମ୍ୟହଂ ନ୍ୟାୟରେ, କାଳିଆ ଠାକୁରକୁ ଯିଏ ଯେମିତି ଚିନ୍ତା କିରିଛି, ଦାରୁଦେବତା ତା' ସାମ୍ନାରେ ସେମିତି ପ୍ରତିଭାତ ହୋଇଛନ୍ତି ।

ଈଶ୍ୱରଙ୍କ ସମ୍ବନ୍ଧରେ ପ୍ରଚଳିତ ଦୁଇଟି ବାଦର ଅବତାରଣା ଏଠାରେ ପ୍ରଣିଧାନଯୋଗ୍ୟ । ଗୋଟିଏ ନୃବତ୍‌ବାଦ ଓ ଅନ୍ୟଟି ନୃଲୀଳାବାଦ । ନୃବତ୍‌ବାଦୀ ବ୍ୟକ୍ତି ବିଶେଷ ଈଶ୍ୱରଙ୍କୁ ପୁରୁଷୋତ୍ତମ ଭାବରେ ଗ୍ରହଣ କରି ସମସ୍ତ ଶ୍ରେଷ୍ଠ ମାନବୀୟ ଗୁଣର ସମ୍ମିଳିତ ପ୍ରତୀକ ଭାବରେ ଉପାସନା କରନ୍ତି । ସେମାନଙ୍କ ମତରେ ଈଶ୍ୱର ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ପୁରୁଷ । ତାଙ୍କର ସ୍ଥିତି, ସ୍ଥାପତ୍ୟ ଏବଂ କ୍ଷମତା ଅତୁଳନୀୟ । ଯଦିଓ କେତେକ ସ୍ଥାନରେ ଈଶ୍ୱରଙ୍କର ଚତୁର୍ଭୁଜ, ତ୍ରିନୟନ ଇତ୍ୟାଦିର କଥା ଆଲୋଚିତ, ଏହା ସମ୍ପୂର୍ଣ୍ଣଭାବେ କାଳ୍ପନିକ । ବୋଧହୁଏ ଏଇଥିପାଇଁ ମହର୍ଷି ବ୍ୟାସଦେବ, ସମସ୍ତ ପୁରାଣ ଉପପୁରାଣରେ ଈଶ୍ୱରୀୟ ଅନିନ୍ଦ୍ୟ ଓ ଅନବଦ୍ୟ କାର୍ଯ୍ୟଧାରାକୁ ବର୍ଣ୍ଣନା କରିବା ପରେ କ୍ଷମାପ୍ରାର୍ଥନା କରିଛନ୍ତି ।

ରୂପଂ ରୂପବିବର୍ଜିତସ୍ୟ ଭବତୋ ଧ୍ୟାନେନ ଯଦ୍ କଳ୍ପିତଂ
ସ୍ତୁତ୍ୟାନିର୍ବଚନୀୟତାଖିଳଗୁରୋ ଦୂରୀକୃତା ଯନ୍ମୟା
ବ୍ୟାପିତ୍ୱଂ ଚ ନିରାକୃତଂ ଭଗବତୋ ଯଦ୍ ତୀର୍ଥଯାତ୍ରାଦିନା
କ୍ଷନ୍ତବ୍ୟଂ ଜଗଦୀଶ ! ତଦ୍‌ବିକତା ଦୋଷତ୍ରୟଂ ମତ୍‌କୃତଂ

''ହେ ଜଗଦୀଶ ! ଜଗଦୀଶ୍ୱର ! ଆପଣ ଅରୂପ । କିନ୍ତୁ ମୁଁ ମୋର ଧ୍ୟାନଦ୍ୱାରା ଉପଲବ୍ଧ ରୂପ ଆପଣଙ୍କଠାରେ ଆରୋପ କରିଛି । ଆପଣ ଅନିର୍ବଚନୀୟ ! ତଥାପି ଆପଣଙ୍କର ସ୍ତବ, ସ୍ତୋତ୍ର ଓ ସ୍ତୁତି ଆଦି ମୁଁ ରଚନା କରିଛି । ଆପଣ ନିରାକାର । ସର୍ବ ବ୍ୟାପକ । ତଥାପି ମୁଁ ଆପଣଙ୍କୁ ତୀର୍ଥସ୍ଥାନମାନଙ୍କରେ ଖୋଜିବାକୁ ଚେଷ୍ଟା କରିଛି । ଆପଣଙ୍କୁ ରୂପ, ଶବ୍ଦ ଓ ସ୍ଥାନାଦିର ପରିସୀମାରେ ସୀମିତ କରିବାର ଧୃଷ୍ଟତା ପାଇଁ ଆପଣ ମୋତେ କ୍ଷମା କରନ୍ତୁ ।'' ଓଡ଼ିଆ ଜାତିର ପରମପ୍ରିୟ କଳାସାଆନ୍ତଙ୍କ ଦିନଚର୍ଯ୍ୟା ଯଦିଓ ଠିକ୍ ମଣିଷଟିଏ ପରି, ସେ କିନ୍ତୁ ମଣିଷ ନୁହଁନ୍ତି । ବିଶ୍ୱପ୍ରସିଦ୍ଧ ଚାରଣ ଭାବଧାରାର ମହାନ ପ୍ରବର୍ତ୍ତକ ପଦ୍ମଶ୍ରୀ ସଦାଶିବ ରଥଶର୍ମାଙ୍କ ମତରେ– ''ବ୍ୟକ୍ତିଟିକୁ ବେଶ କରିଦେଲେ ସେ ରାମ, କୃଷ୍ଣ, ଶିବ, ବଳରାମ, ନୃସିଂହ... ଇତ୍ୟାଦି ହୋଇପାରିବ । କିନ୍ତୁ ଜଗନ୍ନାଥ ହୋଇପାରିବେନି । ଅନ୍ୟଭାଷାରେ କୌଣସି ଅଭିନେତା ନିଜର ହସ୍ତପଦ କାଟିଦେଇ ଜଗନ୍ନାଥ ରୂପ ଧାରଣ କରିବାକୁ

ରାଜିହେବା ଅସ୍ୱାଭାବିକ ମନେହୁଏ ।'' ଅନ୍ୟପକ୍ଷରେ ଶ୍ରୀଜଗନ୍ନାଥ ରାମ ହୁଅନ୍ତି, କୃଷ୍ଣ ହୁଅନ୍ତି, କାଳୀ ହୁଅନ୍ତି ମଧ୍ୟ । ତେଣୁ ସେ ଠାକୁର ''ନୃବତ୍‌ବାଦର'' ଢେର ଉର୍ଦ୍ଧ୍ୱରେ । ରାଜାପରି ଅଭିନୟ କରୁଥିବା ବ୍ୟକ୍ତିଟି ଯେମିତି ରାଜାନୁହେଁ, ମଣିଷପରି ଶଯ୍ୟାତ୍ୟାଗ କରୁଥିବା, ନିତ୍ୟକର୍ମ କରୁଥିବା, ଏପରିକି ଜନ୍ମ ମୃତ୍ୟୁକୁ ସ୍ୱୀକାର କରୁଥିବା ଠାକୁର କେବେବି ମାନବ ନୁହେଁ ।

ଈଶ୍ୱରଙ୍କ ସମ୍ପର୍କରେ ଆଉ ଗୋଟିଏ ବାଦ ଆଲୋଚନାର ପରିସରକୁ ଆସେ । ସେଇଟି ହେଲା ''ନୃଲୀଳାବାଦ'' । ଏଠାରେ ଈଶ୍ୱରଙ୍କୁ ମଣିଷ ରୂପରେ ଚିତ୍ରଣ କରିବାକୁ ପଡେନାହିଁ । ସେ ହେଉଛନ୍ତି ମହାନ୍ ଅଦୃଷ୍ଟ ଅନିର୍ବଚନୀୟ ସତ୍ତା । ଅପରନ୍ତୁ ସେ ମଣିଷଭଳି ଲୀଳା କରନ୍ତି ।

ନମାତା ନପିତା ତସ୍ୟନ ଭାର୍ଯ୍ୟା ନ ସୂତାଦୟଃ
ନାତ୍ମୀୟୋ ନ ପରିଶ୍ଚାପି ନ ଦେହୋ ଜନ୍ମ ଏବଚ
ନ ଚାସ୍ୟ କର୍ମ ବା ଲୋକେ ସଦସନ୍ ମିଶ୍ରଯୋନିଷୁ
କ୍ରୀଡାର୍ଥଃ ସୋଽପି ସାଧୁନାଂ ପରିତ୍ରାଣାୟ କଳ୍ପତେ,
(ଭା-୧୦/୪୬/୩୮-୩୯)

''ସେ ଭଗବାନଙ୍କର ମାତା, ପିତା, ଭାର୍ଯ୍ୟା ପୁତ୍ରାଦି ନାହାନ୍ତି । ନିଜ ପର ନାହାନ୍ତି । ଦେହ ନାହିଁ । କିନ୍ତୁ ସାଧୁମାନଙ୍କର ଦୁଃଖ ଲାଘବ ପାଇଁ, ସେମାନଙ୍କ ସହ ଲୀଳାରସ ଆସ୍ୱାଦନ କରିବା ନିମନ୍ତେ ସେ ଅବତୀର୍ଣ୍ଣ ହୁଅନ୍ତି ।'' ପରମ ଦାରୁମୂର୍ତ୍ତି ଶ୍ରୀଜଗନ୍ନାଥ ବନ୍ଧୁ ମହାନ୍ତିଙ୍କର ବନ୍ଧୁ ହୋଇଛନ୍ତି । ବଳରାମ ଦାସଙ୍କ ପାଇଁ ପଣସଚୋରି ମାମଲାରେ ଦଣ୍ଡିତ ହୋଇଛନ୍ତି । ଦାସିଆବାଉରିର ନଡିଆ ନେବା, ଭକ୍ତ ସାଲବେଗ ପାଇଁ ବଡଦାଣ୍ଡରେ ଅପେକ୍ଷାକରିବା ଇତ୍ୟାଦି କାବିକ କଳ୍ପନା ନୁହେଁ, ଐତିହାସିକ ଅନୁଭୂତି । ଏବେ ବି ଅନେକ ଅଲୌକିକତାର ପ୍ରବାହ, କଳାଠାକୁରର ଆଗରେ, ପଛରେ ଓ ଚତୁଃପାର୍ଶ୍ୱରେ । ଭକ୍ତମାନଙ୍କ ଦୁଃଖକୁ ଦୂରକରିବା ପାଇଁ ।

ଭାରତେଚୋତ୍‌କଳ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାଂ ଅଭୟପ୍ରଦଃ
(ତନ୍ତ୍ରଯାମଳ)

ସେଇ ''ନୃଲୀଳାବାଦ''କୁ ସାକାର କରୁଥିବା ମହାବାହୁଙ୍କର ଜୟ ହେଉ । ଜୟ ଜଗନ୍ନାଥ ।

ଅଧ୍ୟାପକ
ନବୀନାବାଗ, ଖୋର୍ଦ୍ଧା

# ତୁମ ଡୋରି ଲାଗିଛି

ଉର୍ମିଳା ମିଶ୍ର

ତୁମ ଡୋରି ଲାଗିଛି, ଆଜି ଆସିଛି ପୁରୀ
ଗୁଣ୍ଡିଚା ବାହୁଡା ଦେଖି,
ଶ୍ରୀପାଦେ ସବୁ ସମର୍ପି ଯିବି ମୁଁ ଫେରି ॥
ସିଂହାସନରୁ ଓହ୍ଲାଇ
ଆସ ଟାହିଆ ହଲାଇ
ସତେ କି, ଢାଳିବ ପ୍ରଭୁ, କରୁଣା ବାରି ॥
ତିନି ରଥେ ତିନି ମୂର୍ତ୍ତି
ଦେଖି ଆଖିଯାଏ ଲାଖି
କୃପା ନେତ୍ରେ ଚାହିଁଥାଅ, ହେ ବଂଶୀଧାରୀ ॥



ତୁମ ବଡଦାଣ୍ଡ ଧୂଳି
ଦେବି ମୋ ଦେହେ ବୋଳି
ଦିବାନିଶି ଭଜୁଥିବି, ତୁମକୁ ହରି ॥
ଏ ମୋର ଦଦରାନାବ
ବସିଛି ହେ ପଦ୍ମନାଭ
ଯାହାବି କରିବ ଶୁଭ, ହେବ ମୋହରି ॥
ତବ ପୂଜା ଅରଚନା ବେଳେ
ପ୍ରାଣ ମୋର ଯାଉ ସେତେବେଳେ
ଏତିକି ଶେଷ ଗୁହାରି, ହେ ବଂଶୀଧାରୀ ॥

ଗ୍ରାମ/ପୋ- ମହୁଲିଆ
ଭାୟା- ବଡମ୍ବା, ଜିଲ୍ଲା- କଟକ






# ଶ୍ରୀଜଗନ୍ନାଥ ଓ ଶିରିଡ଼ି ସାଇବାବା



ମହୀମୋହନ ତ୍ରିପାଠୀ

ପରମ ସଦ୍‌ଗୁରୁ ଶିରିଡିର ସାଇବାବାଙ୍କୁ ଭଗବାନ ଦତ୍ତାତ୍ରେୟଙ୍କ ଅବତାରଭାବେ ବିବେଚନା କରାଯାଏ । ଶିରିଡି ସାଇବାବାଙ୍କ ପୂର୍ବଜ ମହାନ୍ ସନ୍ଥ ଶ୍ରୀପଦବଲ୍ଲଭ, ନରସିଂହ ସରସ୍ୱତୀ, ଅକଲତାକତ୍ ମହାରାଜ, ଗଜାନନ ବାବା ମଧ୍ୟ ଥିଲେ ଦତ୍ତାତ୍ରେୟ ସ୍ୱରୂପ ।

ମହର୍ଷି ଅତ୍ରୀ ଓ ମହାସତୀ ଅନସୂୟାଙ୍କ ସନ୍ତାନ ଥିଲେ ଦତ୍ତାତ୍ରେୟ । ବ୍ରହ୍ମାଙ୍କର ମାନସ ସନ୍ତାନ ଥିଲେ ମହର୍ଷି ଅତ୍ରୀ । ଦେବୀ ସରସ୍ୱତୀ, ଲକ୍ଷ୍ମୀ ଓ ପାର୍ବତୀ ଅନସୂୟାଙ୍କ ପାତିବ୍ରତ୍ୟ ଖ୍ୟାତି ଶୁଣି ଈର୍ଷାନ୍ୱିତା ହୋଇ ନିଜ ନିଜର ପତିଦେବ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଅନସୂୟାଙ୍କ ସତୀତ୍ୱ ପରୀକ୍ଷା ପାଇଁ ପଠାଇଲେ । ଏହି ତିନିଠାକୁର ଯତିରୂପ ଧାରଣ କରି ଅନସୂୟାଙ୍କ ଦ୍ୱାରରେ ପହଞ୍ଚିଲେ ଓ ଭିକ୍ଷା ସ୍ୱରୂପ ତାଙ୍କର ସ୍ତନ୍ୟପାନ ପାଇଁ ଭିକ୍ଷା ମାଗିଲେ । ସତୀତ୍ୱର ଶକ୍ତି ବଳରେ ତିନି ଦେବତାଙ୍କୁ ତିନୋଟି ଶିଶୁ ସନ୍ତାନରେ ପରିଣତ କରି ଅନସୂୟା ସେମାନଙ୍କୁ ସ୍ୱସ୍ତନ ପାନ କରାଇଥିଲେ । କଠୋର ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଥିଲେ ଅନସୂୟା । ତିନି ଦେବତା ମୁଗ୍ଧ ହୋଇ ତାଙ୍କୁ ବରଦାନ ଦେବାକୁ ଇଚ୍ଛାବ୍ୟକ୍ତ କରିବାରୁ ଅନସୂୟା ସେମାନଙ୍କୁ ବର ମାଗିଲେ– ''ପ୍ରଭୁଗଣ, ମୋର ସ୍ତନ୍ୟପାନ କରି ମୋତେ ମାତୃତ୍ୱର ମର୍ଯ୍ୟାଦା ଦେଇଛନ୍ତି । ମୋର ସନ୍ତାନ ହୋଇ ରହିଯାଆନ୍ତୁ ।''

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ସମ୍ମିଳିତ ତେଜରୁ ଆବିର୍ଭୂତ ହେଲେ ଭଗବାନ ଦତ୍ତାତ୍ରେୟ । ତାଙ୍କର ତିନୋଟି ଶିର ଓ ଛଅଟି ଭୁଜ । ଚାରି ଭୁଜରେ ଶୋଭିତ ଶଂଖ, ଚକ୍ର, କମଣ୍ଡଳୁ ଓ ଦଣ୍ଡ । ଅନ୍ୟ ଦୁଇଭୁଜରେ ବ୍ୟାଖ୍ୟାନ ଓ ବରଦମୁଦ୍ରା । ପାଦରେ କାଷ୍ଠ ପାଦୁକା । ମସ୍ତକରେ ଜଟା ଓ ପରିଧେୟରେ ଗୈରିକ ବସ୍ତ୍ର । ଗଳାରେ ତାଙ୍କର ଅନେକ ରୁଦ୍ରାକ୍ଷ ମାଳା । ସର୍ବାଙ୍ଗରେ ଭସ୍ମ ଲେପନ । ପାଦ ପାଖରେ ଚାରିଟି ବିଭିନ୍ନ ବର୍ଣ୍ଣର ଶ୍ୱାନ– ଚାରିବେଦର ପ୍ରତୀକ ଓ ପାର୍ଶ୍ୱରେ ଧେନୁ ।

ଚାରିଯୁଗ, ଅର୍ଥାତ୍ ସତ୍ୟ, ତ୍ରେତୟା, ଦ୍ୱାପର ଓ କଳିରେ ଜଣେ ଜଣେ ମହାନଗୁରୁ ଆବିର୍ଭୂତ ହୋଇଛନ୍ତି । ସେମାନେ ହେଲେ ଯଥାକ୍ରମେ କପିଳ, ଦତ୍ତାତ୍ରେୟ ବ୍ୟାସଦେବ ଓ ଆଚାର୍ଯ୍ୟ ଶଙ୍କର । ବିଶ୍ୱାସ କରାଯାଏ ଯେ, ଏବେ ମଧ୍ୟ ସାତଜଣ (ମତାନ୍ତରେ ନଅଜଣ) ଚିରଂଜୀବୀ ବା ଅମର ଏହି ଧରାଧାମରେ ବିଚରଣ କରୁଛନ୍ତି । ସେମାନେ ହେଲେ ଅଶ୍ୱତ୍ଥାମା, ବଳି, ବ୍ୟାସଦେବ, ହନୁମାନ, ବିଭୀଷଣ କୃପାଚାର୍ଯ୍ୟ ଓ ପରଶୁରାମ । ଏମାନଙ୍କ ସହିତ ମାର୍କଣ୍ଡେୟ ଓ ଦତ୍ତାତ୍ରେୟଙ୍କୁ ସଂଯୋଗ କରି ପ୍ରକୃତରେ ନଅଜଣ ଚିରଂଜୀବୀ ବିଦ୍ୟମାନ କୁହାଯାଉଛି । ଦତ୍ତାତ୍ରେୟ ଏବେ ମଧ୍ୟ ଗୁଜରାଟର ଗିରନାର ପର୍ବତରେ ବିଚରଣ କରୁଥିବା ବିଶ୍ୱାସ କରାଯାଏ। ଭାଗବତ ପୁରାଣ, ମାର୍କଣ୍ଡେୟ ପୁରାଣ, ଗରୁଡ ପୁରାଣ, ମତ୍ସ୍ୟପୁରାଣ, ସାଣ୍ଡିଲ୍ୟ ଉପନିଷଦ, ଭକ୍ତ ବିଜୟ, ଗୋରକ୍ଷ ନାଥଙ୍କ ଅବଧୂତ ଗୀତା, ଗଙ୍ଗାଧର ସରସ୍ୱତୀଙ୍କ ଗୁରୁଚରିତ ପ୍ରଭୃତି ଧର୍ମଗ୍ରନ୍ଥରେ ଦତ୍ତାତ୍ରେୟଙ୍କ ସମ୍ପର୍କରେ ଉଲ୍ଲେଖ ଅଛି । ଏହି ଅବତାରରେ ନିରାକାର ଓ ସାକାର ବ୍ରହ୍ମଙ୍କର ସମନ୍ୱୟ ଘଟିଅଛି । ଶୈବ, ବୈଷ୍ଣବ ଓ ଶାକ୍ତମାନେ ଦତ୍ତାତ୍ରେୟଙ୍କୁ ଗୁରୁମାନନ୍ତି । ଜୈନମାନେ ମଧ୍ୟ ତାଙ୍କୁ ଭକ୍ତି କରନ୍ତି । ବଶିଷ୍ଠ, ବିଶ୍ୱାମିତ୍ର, ଜମଦଗ୍ନି, ଜମଦଗ୍ନିଙ୍କ ପୁତ୍ର ପରଶୁରାମ ଆଦି ଥିଲେ ଦତ୍ତାତ୍ରେୟଙ୍କ ଶିଷ୍ୟ । କୁହାଯାଇଛି ଯେ ଦତ୍ତାତ୍ରେୟ ଆଦିଶଙ୍କରଙ୍କୁ ଏକ ଗିରିଗୁହା ମଧ୍ୟକୁ ନେଇଯାଇଥିଲେ । ସେଠାରୁ ଶଙ୍କର ଆଉ ଫେରିନଥିଲେ । ଅର୍ଥାତ୍ ସେଠାରେ ତାଙ୍କର ହେଲା ମହାସମାଧି । ଦତ୍ତାତ୍ରେୟ (ଅବଧୂତ)ଙ୍କର ଗୁରୁ ପ୍ରକରଣ ସମ୍ପର୍କରେ ଭାଗବତର ଏକାଦଶ ସ୍କନ୍ଧରେ ବର୍ଣ୍ଣନା ରହିଛି ।





ପରଶୁରାମ ଦତ୍ତାତ୍ରେୟଙ୍କ ଠାରୁ ଦୀକ୍ଷାନେଇ ତ୍ରିପୁରା ସାଧନା କରିଥିଲେ । ତ୍ରିପୁରାଙ୍କ ଅନ୍ୟ ନାମ ଲଳିତା । ଶ୍ରୀବିଦ୍ୟା ଓ ଶ୍ରୀଚକ୍ର ଉପରେ ତ୍ରିପୁରାତତ୍ତ୍ୱ ଆଧାରିତ । ଚିରଂଜୀବୀ ପରଶୁରାମ ଏବେ ମଧ୍ୟ ମହେନ୍ଦ୍ର ପର୍ବତରେ ଅବସ୍ଥାନ କରୁଥିବା ବିଶ୍ୱାସ କରାଯାଏ । ବ୍ୟାସଦେବଙ୍କ ମହାଭାରତରେ ଉଲ୍ଲେଖ ଥିବା ମହେନ୍ଦ୍ର ପର୍ବତ ବର୍ତ୍ତମାନର କେବଳ ମହେନ୍ଦ୍ର ପର୍ବତ ନୁହେଁ । ଏହା ଗୋଦାବରୀଠାରୁ ବୈତରଣୀ ପର୍ଯ୍ୟନ୍ତ ଏକଦା ବିସ୍ତୃତ ମହେନ୍ଦ୍ରପର୍ବତ ମାଳାର ଏକ ଗିରିଶୃଙ୍ଗ । ମହେନ୍ଦ୍ର ପର୍ବତମାଳାର ସୁବିସ୍ତୃତ ଗିରିଶୃଙ୍ଗମାନ ବ୍ରହ୍ମବନ ରୂପେ ଅଖ୍ୟାତ ଥିଲା । ଏବର କଣ୍ଟିଲୋର ନୀଳମାଧବଙ୍କ ଆସ୍ଥାନ ବ୍ରହ୍ମାଚଳରେ ଥିବାବେଳେ ଶ୍ରୀଲିଙ୍ଗରାଜ ମନ୍ଦିର ସ୍ୱର୍ଣ୍ଣାଚଳରେ ଓ ଶ୍ରୀଜଗନ୍ନାଥଙ୍କ ମନ୍ଦିର ନୀଳାଚଳରେ ବିଦ୍ୟମାନ । ବ୍ରହ୍ମାଚଳ ଓ ସ୍ୱର୍ଣ୍ଣାଚଳ ପର୍ବତମାଳା ମଧ୍ୟରେ ବାଙ୍କୀ ଚର୍ଚ୍ଚିକା ପର୍ବତଶୃଙ୍ଗ ଅବସ୍ଥିତ । ପାଣ୍ଡବମାନେ ରେଣୁକା ନଦୀର ବାଲିଶଯ୍ୟା ପାରହୋଇ ନୀଳାଚଳରେ ରାତ୍ରଯାପନ ପରେ ପରବର୍ତ୍ତୀ ଦିନ ପୁରୀ-ସାତପଡା ମାର୍ଗରେ ଥିବା ବ୍ରହ୍ମଗିରି ଦେଇ ମହେନ୍ଦ୍ର ପର୍ବତ ମାଳାର ପାଦଦେଶରେ ପରଶୁରାମଙ୍କ ଆଶ୍ରମରେ ରାତ୍ରଯାପନ ସହ ପରଶୁରାମଙ୍କ ଦର୍ଶନ ଲାଭ କରିଥିଲେ । ଏହି ସ୍ଥାନ ଥିଲା ବ୍ରହ୍ମାଚଳ ଓ ନୀଳାଚଳ ମଧ୍ୟବର୍ତ୍ତୀ ଏକ ଗିରିଶୃଙ୍ଗ । ଏବେ ମଧ୍ୟ ଏହି ଅଞ୍ଚଳରେ ପାଣ୍ଡବମାନଙ୍କ ଯାତ୍ରାର ନିଦର୍ଶନ ସ୍ୱରୂପ ପଞ୍ଚପାଣ୍ଡବ ଓ ଦ୍ରୌପଦୀଙ୍କ ମନ୍ଦିରମାନ ବିଦ୍ୟମାନ । ବ୍ରହ୍ମଗିରିର ବିଭିନ୍ନ ସ୍ଥାନରେ ପାଣ୍ଡବମାନଙ୍କ ଅବସ୍ଥାନ ଓ ସ୍ଥାନର ନାମ 'ବ୍ରହ୍ମଗିରି' ନାମକରଣରୁ ଅନୁମାନ କରାଯାଏ ଯେ ମହାଭାରତର ବନପର୍ବରେ ବର୍ଣ୍ଣିତ ବ୍ରହ୍ମବନର ଏହି ସ୍ଥାନ ଅଂଶବିଶେଷ ଅଟେ ।

ତ୍ରିପୁରା ତତ୍ତ୍ୱ ତଥା ଶ୍ରୀଯନ୍ତ୍ରର ସାଧକ ଥିଲେ ପରଶୁରାମ । ପୁରୀ ଶ୍ରୀମନ୍ଦିର ଶ୍ରୀଯନ୍ତ୍ରୀର ପ୍ରତୀକ କୁହାଯାଇଛି । ତ୍ରିପୁର ସୁନ୍ଦରୀ ବା ଲଳିତାମ୍ବିକାଙ୍କର ପ୍ରତୀକ ମଧ୍ୟ ଯନ୍ତ୍ରରାଜ ଶ୍ରୀଯନ୍ତ୍ରୀ (ଶ୍ରୀଚକ୍ର) । ଦେବୀଙ୍କର ମନ୍ତ୍ର, ଯନ୍ତ୍ର ଓ ସ୍ତୋତ୍ରକୁ ଶ୍ରୀବିଦ୍ୟା କୁହାଯାଏ। ରତ୍ନବେଦୀର ନିମ୍ନଭାଗରେ ଶ୍ରୀଯନ୍ତ୍ର ସ୍ଥାପିତ ହୋଇଛି ବୋଲି ବିଶ୍ୱାସ କରାଯାଏ । ଶ୍ରୀଦେବୀ ବା ଲକ୍ଷ୍ମୀ ସ୍ୱୟଂ ସୁଭଦ୍ରା ରୂପରେ ରତ୍ନବେଦୀରେ ଅଧିଷ୍ଠିତା ଶ୍ରୀଯନ୍ତ୍ରର ସାଧନା କରିଥିବା ଓ ଏହାର ତତ୍ତ୍ୱ ବୁଝିଥିବା ସାଧକ ଏ ଯୁଗରେ କ୍ୱଚିତ ଅଛନ୍ତି ।

ଶିରିଡିର ସାଇବାବା ଦତ୍ତାତ୍ରେୟଙ୍କ ଅବତାର ଏବଂ ସଗୁଣ ବ୍ରହ୍ମ ବୋଲି ହେମାଡପନ୍ତଙ୍କ 'ସାଇ ସତ୍‌ଚରିତ'ରେ ଉଲ୍ଲେଖ ଅଛି । ଦତ୍ତାତ୍ରେୟ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ତେଜରୁ ଜାତ । ସେମାନଙ୍କଠାରୁ ଶିରିଡି ସାଇବାବା ଭିନ୍ନ ନୁହନ୍ତି ବୋଲି ସତଚରିତରେ ଲେଖାଅଛି । ଶ୍ରୀମନ୍ଦିରର ତ୍ରିମୂର୍ତ୍ତି-ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା ଯଥାକ୍ରମେ ଶୈବ, ବୈଷ୍ଣବ ଓ ଶାକ୍ତର ପ୍ରତୀକ ବିଗ୍ରହ । ଦେବୀ ସୁଭଦ୍ରା ମହାମାୟା । ସେ ମଧ୍ୟ ବ୍ରହ୍ମା ବୋଲି ସାରଳାଦାସଙ୍କ ମହାଭାରତରେ ଲେଖାଅଛି । ବିଷ୍ଣୁକେଶରୀ ପୁରାଣ, ମାର୍କଣ୍ଡେୟ ପୁରାଣ, ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା' ପ୍ରଭୃତିରେ ମଧ୍ୟ ସୁଭଦ୍ରାଙ୍କୁ ବ୍ରହ୍ମା ରୂପରେ ପରିକଳ୍ପନା କରାଯାଇଛି ।

ଶିରିଡି ସାଇବାବାଙ୍କ ଉଦ୍ଦେଶ୍ୟରେ ସନ୍ଥ ଜନାବାଇଙ୍କ ଏକ ଭଜନରେ ଲେଖାଅଛି:

''ଉଚ୍ଛିଷ୍ଟ ତୁଲା ଦେଣେହୀ ଗୋଷ୍ଟ ନାବରୀ,
ତୁ ଜଗନ୍ନାଥ, ତୁ ଜ ଦେଉ
କଶୀରେ ଭାକରି (୧) ।''

ଉଚ୍ଛିଷ୍ଟ ଭୋଜନ ଆପଣଙ୍କୁ ଅର୍ପଣ କରାଯାଇପାରିବ ନାହିଁ । ଆପଣ ତ ଜଗନ୍ନାଥ ! ଆପଣଙ୍କ ପ୍ରସାଦ ଆପଣଙ୍କୁ ମୁଁ କିପରି ଅର୍ପଣ କରିବି ।)

ଶିରିଡି ସାଇବାବା କହିଛନ୍ତି- ''ଜଗନ୍ନାଥଙ୍କ ରଥଯାତ୍ରା ଯାହା, ମୋର ଚଭାଡି ଯାତ୍ରା ସେୟା ।'' ମହାନ ସାଇଭକ୍ତ ଓ ସାଧକ ଗୁରୁଜୀ ଚନ୍ଦ୍ରଭାନୁ ଶତପଥୀ କହିଛନ୍ତି- ''ପ୍ରତ୍ୟେକ ଓଡିଆ ଜନ୍ମତଃ ଜଗନ୍ନାଥ ଭକ୍ତ । ଶିରିଡି ସାଇବାବାଙ୍କୁ ଆରାଧନା କରିବା ଅର୍ଥ ଜଗନ୍ନାଥଙ୍କୁ ଛାଡିଦେବା ନୁହେଁ । ଶିରିଡି ସାଇବାବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ସେମାନଙ୍କର ଇଷ୍ଟଙ୍କୁ ପ୍ରଥମେ ଉପାସନା କରିବାକୁ କହିଛନ୍ତି ।''

**ପ୍ରସଙ୍ଗ ସୂଚନା**


୧. ଶ୍ରୀ ସାଇ ସତ ଚରିତ- ହେମାଡପନ୍ତ (ଅନୁବାଦ-ସତ୍ୟ ଖଡ୍‌ଗରାୟ)

୨. ଶ୍ରୀଗୁରୁ ଶରଣମ୍- ନବକିଶୋର ରାଜ

୩. ଶ୍ରୀକ୍ଷେତ୍ରରେ ଶ୍ରୀଦେବୀ- ପଣ୍ଡିତ ହରିହର ମହାପାତ୍ର

୪. ସାଇ ନିର୍ମାଲ୍ୟ (ଜୁଲାଇ ୨୦୦୯, ଅକ୍ଟୋବର ୨୦୧୧, ଡିସେମ୍ବର ୨୦୧୧ ସଂଖ୍ୟା)



ଏସ-ଏ/୨, ବ୍ରିଟ୍ କଲୋନୀ,
ନୂଆପଲ୍ଲୀ, ଭୁବନେଶ୍ୱର-୧୨







# ଶ୍ରୀକ୍ଷେତ୍ରର ମଠ ସଂସ୍କୃତି

ଶ୍ରୀନିବାସ ଆଚାର୍ଯ୍ୟ

ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ତଥା ବହୁ ପୁରାଣ ଯୁଗରୁ ପବିତ୍ର ଓଡ଼ିଶା ମାଟିର ଶ୍ରୀକ୍ଷେତ୍ରକୁ ଏକ ଆଧ୍ୟାତ୍ମିକ ପୀଠର କେନ୍ଦ୍ରସ୍ଥଳୀ ରୂପେ ବିବେଚିତ କରାଯାଇଅଛି । ବେଦ-ବେଦାନ୍ତ, ପୁରାଣ ଶାସ୍ତ୍ର ଓ ମାଦଳା ପାଞ୍ଜିର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ଏହି ପୀଠକୁ ବିଭିନ୍ନ ନାମରେ ନାମିତ କରାଯାଇଅଛି । ଯଥା- ନୀଳାଚଳ ଧାମ, ଶ୍ରୀପୁରୁଷୋତ୍ତମ ପୀଠ, ଶଙ୍ଖକ୍ଷେତ୍ର, ନୀଳକନ୍ଦର ଇତ୍ୟାଦି । ଏହି ପୀଠର କଳା, ସଂସ୍କୃତି, ପରମ୍ପରା ମହାନ, ବ୍ୟାପକ ଓ ଅବର୍ଣ୍ଣନୀୟ । କାରଣ ଏହି ପୀଠର ବଡଠାକୁର ଶ୍ରୀଜଗନ୍ନାଥ ବଡ ଦେଉଳର ରତ୍ନ ସିଂହାସନରେ ବଡ ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାକୁ ନେଇ ବିରାଜିତ । ଯାହାର ମହିମା, ଗୁଣଗାରିମା, ଧାର୍ମିକ ଚେତନା ଓ ଦର୍ଶନ ଅସରନ୍ତି, ଅସୀମ, ଅମାପ, ଅଦୃଶ୍ୟ ଓ ଅସ୍ପଷ୍ଟ । ସ୍ୱୟଂ ପରଂବ୍ରହ୍ମ ଭଗବାନ ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ଶ୍ରୀପୁରୁଷୋତ୍ତମଙ୍କ ନାମ ଅନ୍ୟତମ ।

ଶ୍ରୀଶଙ୍କରାଚାର୍ଯ୍ୟ (୭୮୮-୮୨୦ ଖ୍ରୀଷ୍ଟାବ୍ଦ) ବିରଚିତ ''ବିଷ୍ଣୁ ସହସ୍ର ନାମ ଭାଷ୍ୟମ''ରୁ ଉଦ୍ଧୃତ-

''ତସ୍ୟଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ,
ବିଷ୍ଣୋର୍ନାମ ସହସ୍ରଂ ମେ ଶୃଣୁ ପାପଭୟାପହମ୍ ।''

ଆଉ ମଧ୍ୟ ଶ୍ରୀମଦ୍ ଭାଗବତ୍‌ଗୀତା (ଦଶମ ଅଧ୍ୟାୟ ୧୫ ଶ୍ଳୋକରେ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି କୁହାଯାଇଅଛି ।

''ସ୍ୱୟମେବାତ୍ମନାତ୍ମନଂ ବେତ୍‌ଥ ତ୍ୱ ପୁରୁଷୋତ୍ତମ ।
ଭୂତ ଭାବନା ଭୂତେଶ ଦେବ ଦେବ ଜଗତ୍ପତେ ॥''

ଏହି କ୍ଷେତ୍ରକୁ ଭୂସ୍ୱର୍ଗ ପୁରୀ ବୋଲି ''ତନ୍ତ୍ର ଯାମଳ'' ୨୬ ଶ୍ଳୋକରେ କୁହାଯାଇଅଛି-

''ଭାରତେ ଚୋତ୍କଳେଦେଶେ ଭୂସ୍ୱର୍ଗ ପୁରୁଷୋତ୍ତମେ,
ଦାରୁରୂପୀ ଜଗନ୍ନାଥୋ ଭକ୍ତ ନାମ ଭୟପଦଃ''

ଏହି ପୀଠରେ ଶତଶତ ଦେବାଦେବୀ, ମନ୍ଦିର, ମଠ, ଆଶ୍ରମ ଓ ତୀର୍ଥକ୍ଷେତ୍ରର ଆସ୍ଥାନ ଉପରେ ବିରାଜିତ । ଏହିସବୁ ଦେବାଦେବୀ ଜଗନ୍ନାଥ ସଂସ୍କୃତିରେ ମିଶ୍ରଣ ହୋଇ ସୃଷ୍ଟି କରିଅଛି ଏକ ମହାନ ଧର୍ମନଦୀ । ସେହି ମହାନ ଧର୍ମନଦୀ ମଧ୍ୟରେ ମଠଗୁଡିକର ମାହାତ୍ମ୍ୟ ସ୍ୱତନ୍ତ୍ର । ଜଗତର ନାଥ ଶ୍ରୀଜଗନ୍ନାଥଙ୍କର ସଂସ୍କୃତି, ପରମ୍ପରା, ଦୈନନ୍ଦିନ ରୀତିନୀତି ଓ ମେଳା ମହୋତ୍ସବରେ ମଠମାନଙ୍କର ନିବିଡ ସମ୍ପର୍କ ନିହିତ ଅଛି ।

ଦାରୁମୂର୍ତ୍ତି ମୁରାରୀ ଶ୍ରୀଜଗନ୍ନାଥଙ୍କର ସ୍ୱରୂପ ଓ ତତ୍ତ୍ୱ ସମସ୍ତ ସମ୍ପ୍ରଦାୟ ତଥା ବିଭିନ୍ନ ଧର୍ମ ଦ୍ୱାରା ସମ୍ମତ ଓ ଆଦୃତ । ଏହି ପୀଠର କଳା ସଂସ୍କୃତି ଉପରେ ବିଭିନ୍ନ ସମୟରେ ବିଭିନ୍ନ ଧର୍ମାବଲମ୍ବୀ ମହାପୁରୁଷ, ସାଧୁ, ସନ୍ଥ ଓ ପରମ ଭକ୍ତମାନେ ଆକର୍ଷିତ ହୋଇ, ସେମାନଙ୍କର ଆସ୍ଥାନ ମଣ୍ଡନ କରିଛନ୍ତି । ପରବର୍ତ୍ତୀ ସମୟରେ ସେହିସବୁ ଧର୍ମର ଭକ୍ତ ଓ ଆଚାର୍ଯ୍ୟଗଣ ପ୍ରଭୁ ଜଗନ୍ନାଥଙ୍କ ଉପରେ ଅଶେଷ ଭକ୍ତିଭାବ ଓ ବିଶ୍ୱାସ ସ୍ଥାପନ କରି ନିଜ ନିଜର ଇଷ୍ଟଦେବ-ଦେବୀଙ୍କୁ ମଠରେ ସ୍ଥାପନ କରିଛନ୍ତି । କାଳକ୍ରମେ ଶ୍ରୀପ୍ରଭୁଙ୍କ ସେବା, ବେଶଭୂଷା, ପର୍ବପର୍ବାଣି ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟରେ ଯୋଗଦେଇ ସେବା କରିବାକୁ ପଛାଇ ନଥାନ୍ତି । ତେଣୁ ସେମାନେ ଏକ ମଠ (ଆଶ୍ରୟସ୍ଥଳୀ) ସ୍ଥାପନ କରି ସେମାନଙ୍କର ଇଷ୍ଟଦେବଙ୍କ ସହ ଶ୍ରୀଜଗନ୍ନାଥଙ୍କ ସେବା ଆଦି କାର୍ଯ୍ୟରେ ନିୟୋଜିତ ହୋଇଥାଆନ୍ତି ।

ବିଭିନ୍ନ ମତବାଦରେ ''ମଠ'' ଶବ୍ଦର ଅର୍ଥ ଭିନ୍ନ ଭିନ୍ନ ଅଟେ । ଯେଉଁଠାରେ ବିଦ୍ୟାର୍ଥୀମାନେ ବାସ ସହିତ ବିଦ୍ୟା ଅଧ୍ୟୟନ କରିଥାନ୍ତି, ତାହାକୁ ମଠ ବା ଆଶ୍ରମ କୁହାଯାଇଥାଏ । ଯାହାକି ଅତୀତରେ ଗୁରୁକୁଳ ଆଶ୍ରମରେ ବିଦ୍ୟାର୍ଥୀମାନେ ବିଦ୍ୟା ଅଧ୍ୟୟନ କରୁଥିଲେ । ଅନ୍ୟ ଗୋଟିଏ ଅର୍ଥ ହେଉଛି, ଜମିବାଡି ଖଞ୍ଜାହୋଇ



ଦେବପୂଜା ହେଉଥିବା ଗୃହକୁ ମଠ କୁହାଯାଏ । ସଂସ୍କୃତ ମହାଭାରତରେ ଉଦ୍ଧୃତ ମଠ କହିଲେ ''ଆଶ୍ରମ କୁଟୀର'' । ଯେଉଁ ସ୍ଥାନରେ ସଂସାର ତ୍ୟାଗୀ ଶୁଦ୍ଧପୂତ ଭାବରେ ବାସ କରୁଥିବା ଘରକୁ ମଧ୍ୟ ମଠ କୁହାଯାଇଥାଏ । ସାଧାରଣତଃ ମଠ କହିଲେ ସନ୍ନ୍ୟାସୀ, ତପସ୍ୱୀ ଓ ଭିକ୍ଷୁଶ୍ରେଣୀୟ ପରମ ଭକ୍ତମାନେ ରହି ସେମାନଙ୍କର ଇଷ୍ଟଦେବଙ୍କୁ ପୂଜା ଅର୍ଚ୍ଚନା କରିଥାନ୍ତି, ସେହି ଗୃହକୁ ମଠ କୁହାଯାଇଥାଏ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଆଧ୍ୟାତ୍ମିକ କେନ୍ଦ୍ରକୁ ମଠ କୁହାଯାଇଥାଏ । କ୍ରମଶଃ ନିତ୍ୟ ନୀଳାଚଳ ଧାମରେ ମଠଗୁଡ଼ିକ ଶିକ୍ଷା ପ୍ରସାରଣ କ୍ଷେତ୍ର, ସଂସ୍କୃତିର ସଂବାହନ ଭୂମି ଓ ଧର୍ମ ଚର୍ଚ୍ଚାର ପ୍ରମୁଖ କେନ୍ଦ୍ର ପାଲଟି ଗଲା । ତେଣୁ ଶ୍ରୀକ୍ଷେତ୍ରରେ ଆରମ୍ଭ ହେଲା ମଠ ସଂସ୍ଥାପନ । ମଠଗୁଡ଼ିକର ନାମକରଣ ବିଭିନ୍ନ ଧର୍ମ ସଂମ୍ପ୍ରଦାୟରେ ଭିନ୍ନ ଭିନ୍ନ ଅଟେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତାନୁଯାୟୀ ବର୍ତ୍ତମାନ ଓଡ଼ିଶାରେ ଯେଉଁସବୁ ମଠମାନ ଦୃଷ୍ଟିଗୋଚର ହେଉଅଛି, ଅତୀତରେ ତାହାସବୁ ବୌଦ୍ଧ ବିହାର ଆଦର୍ଶରେ ଗଢ଼ି ଉଠିଥିଲା । ନେପାଳୀ ଭାଷାରେ 'ବିହାର' ଶବ୍ଦର ଅର୍ଥ ବୌଦ୍ଧଧର୍ମାବଲମ୍ବୀଙ୍କ ଆଶ୍ରମ ବା ମଠକୁ ବୁଝାଇଥାଏ । ସେହିପରି ଖ୍ରୀଷ୍ଟିୟାନଙ୍କ ମଠକୁ ''ମନାଷ୍ଟ୍ରି'' କୁହାଯାଇଥାଏ ।

ଶ୍ରୀକ୍ଷେତ୍ରରେ ନିର୍ଦ୍ଦିଷ୍ଟ କେତୋଟି ମଠ ଅଛି, ତାହାର ସଠିକ୍ ହିସାବ ଆଜି ପର୍ଯ୍ୟନ୍ତ ଜଣାନଥିଲେ ମଧ୍ୟ ପ୍ରାୟ ୧୫୦ରୁ ଅଧିକ ମଠ ବିଦ୍ୟମାନ । ମଠର ମୁଖ୍ୟଙ୍କୁ 'ମହନ୍ତ' କହନ୍ତି । ସାଧାରଣତଃ ମଠମାନଙ୍କରେ ଦୁଇପ୍ରକାର ମହନ୍ତ ଦେଖାଯାଇଥାଏ । ଯେଉଁ ମଠର ମହନ୍ତ ଆଜୀବନ ସନ୍ନ୍ୟାସୀ ବ୍ରତ ଅବଲମ୍ବନ କରିଥାନ୍ତି ଓ ନିଜର ଘର ଓ ଆତ୍ମୀୟ ସ୍ୱଜନକୁ ପରିତ୍ୟାଗ କରିଥାନ୍ତି, ସେହିସବୁ ମଠକୁ 'ନିହଙ୍ଗ' ମଠ କୁହାଯାଇଥାଏ । ଯେଉଁ ମଠର ମହନ୍ତ ଗୃହସ୍ଥ ଜୀବନ ତ୍ୟାଗ ନକରି ମହନ୍ତ ହୋଇଥାନ୍ତି, ସେହିସବୁ ମଠକୁ 'ଗୃହୀମଠ'କୁହାଯାଇଥାଏ । ତିନୋଟି ପର୍ଯ୍ୟାୟରେ ମଠର ମହନ୍ତ ନିଯୁକ୍ତି ହୋଇଥାନ୍ତି । ୧. ମହନ୍ତଙ୍କ ମୃତ୍ୟୁପରେ ପୁରୁଷାନୁକ୍ରମେ ତାଙ୍କର ଉତ୍ତରାଧିକାରୀ ମହନ୍ତ ହୋଇଥାନ୍ତି । ଦ୍ୱିତୀୟରେ କେତେକ ମଠର ମହନ୍ତ ମୃତ୍ୟୁ ପୂର୍ବରୁ (ନୂଆ ମହନ୍ତ) ଚେଲାଙ୍କୁ 'ଉଇଲ୍' କରି ମଠର ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତିକୁ ଚେଲାଙ୍କୁ ଦିଆଯାଇଥାଏ । ତୃତୀୟରେ ମହନ୍ତଙ୍କ ମୃତ୍ୟୁପରେ ସର୍ବସାଧାରଣରେ ଗୃହୀତ ହୋଇ ଜଣଙ୍କୁ ସ୍ୱୀକୃତି ପ୍ରଦାନ କରାଯାଇଥାଏ । ସେହି ମହନ୍ତଙ୍କ ମୁଣ୍ଡରେ 'ମହନ୍ତେଇ' ଶାଢୀ ବା ପାଗ ବନ୍ଧା ଯାଇଥାଏ ।

ଶ୍ରୀଜଗନ୍ନାଥଙ୍କ ନିତ୍ୟଲୀଳା ଦର୍ଶନ, ଦିବ୍ୟ ଆନନ୍ଦ ଉପଭୋଗ ଓ ଧର୍ମର ପ୍ରଚାର ପ୍ରସାର କରିବାର ପ୍ରବଳ ଆଗ୍ରହ-ଆକାଂକ୍ଷା ସହିତ ସନ୍ଥମାନେ ମଠମାନ ସ୍ଥାପନ କରି ଅବସ୍ଥାନ କରିଥିଲେ । କ୍ରମଶଃ ଜଗନ୍ନାଥ ସଂସ୍କୃତି, ପରମ୍ପରା, ମେଳା ମହୋତ୍ସବରେ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଗଲେ । ସେହି ମଠମାନଙ୍କ ମଧ୍ୟରୁ ନିମ୍ନରେ କେତେକ ମଠ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଅଛି ।

୧. ଗୋବର୍ଦ୍ଧନ ମଠ- ମଠମାନଙ୍କ ମଧ୍ୟରେ ଏହି ମଠ ସର୍ବପ୍ରାଚୀନ । ଏହାକୁ ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ସ୍ୱର୍ଗଦ୍ୱାର ନିକଟସ୍ଥ ବାଲିସାହିରେ ନବମ ଶତାବ୍ଦୀରେ ସ୍ଥାପନ କରିଥିଲେ । ଏହି ମଠର ପୀଠାଧୀଶ ଶ୍ରୀମନ୍ଦିର ଭିତରକୁ ଦଣ୍ଡଧରି ପ୍ରବେଶ କରନ୍ତି ଓ ମନ୍ଦିର ଭିତରେ ଆସନ ପକାଇ ବସିବାର ବ୍ୟବସ୍ଥା ଅଛି । ମଠ ପକ୍ଷରୁ ଶ୍ରୀଜୀଉଙ୍କ ପହଣ୍ଡି ସମୟରେ ପଂକ୍ତିଭୋଗ ହୁଏ । ଗଜପତିଙ୍କ ଛେରାପହଁରା କାର୍ଯ୍ୟ ପୂର୍ବରୁ ରଥ ଉପରକୁ ଯାଇ ଦର୍ଶନ ଓ ପୂଜା କରିବାର ବିଧିବିଧାନ ଅଛି। ପହଣ୍ଡି ସମୟରେ ଏହି ମଠରୁ ତୁଳସୀମାଳ ପ୍ରେରିତ ହୁଏ । ଏହି ମଠର ଶଙ୍କରାଚାର୍ଯ୍ୟମାନେ ମୁକ୍ତିମଣ୍ଡପର ସଭାପତି ରୂପେ ମନୋନିତ ହୋଇଆସୁଛନ୍ତି । ଶଙ୍କରାଚାର୍ଯ୍ୟ ୯ମ ଶତାବ୍ଦୀରେ ପୁରୀ ଆସି ଏହି ମନ୍ଦିରର କେତେକ ସାଂସ୍କୃତିକ ଓ ଧାର୍ମିକ ନୀତି ପରିବର୍ତ୍ତନ କରିଥିବାରୁ ଏହି ମଠର ମହନ୍ତ ଠାକୁରଙ୍କର ନୀତି ଓ ପାଳନରେ ସିଦ୍ଧାନ୍ତ ନେଇପାରନ୍ତି । ଏହି ମଠକୁ 'ବାଲିମଠ' ମଧ୍ୟ କୁହାଯାଏ ।

୨. ଏମାର ମଠ- ଏହି ମଠ ରାମାନୁଜ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ । ଶ୍ରୀକ୍ଷେତ୍ରର ମଠମାନଙ୍କ ମଧ୍ୟରେ ଏହା ସର୍ବ ବୃହତ୍ତମ ଅଟେ । ଏହି ମଠ ଶ୍ରୀକ୍ଷେତ୍ରସ୍ଥିତ ସିଂହଦ୍ୱାର ପାଖରେ ଦ୍ୱାଦଶ ଶତାବ୍ଦୀରେ ପ୍ରସିଦ୍ଧ ବୈଷ୍ଣବାଚାର୍ଯ୍ୟ ଶ୍ରୀରାମାନୁଜଙ୍କ ଶିଷ୍ୟ ଗୋବିନ୍ଦାଚାର୍ଯ୍ୟ ସ୍ଥାପନ କରିଥିଲେ । ଏହା ଓଡ଼ିଶାର ଗୋଟିଏ ବୃହତ ପାଠାଗାର । ମଠ ଭିତରେ କାନ୍ଥରେ ପ୍ରାୟ ୨/୩ ଶହବର୍ଷ ତଳର ଭିତିଚିତ୍ର ରହିଛି । ଏହି ମଠ ଦୈନିକ ଶ୍ରୀଜଗନ୍ନାଥ ମନ୍ଦିରର ଦ୍ୱାର ଫିଟାନ୍ତି ଓ ମଙ୍ଗଳ ଆଳତି ସମୟରେ ମଶାଲ ଜାଳିଥାନ୍ତି । ବଡ଼ସିଂହାର ବେଶ ପାଇଁ ଫୁଲର ଚନ୍ଦ୍ରିକା ଯୋଗାଇ ଥାଆନ୍ତି । ଅଣସରବେଳେ ମଇଲମ ଓ ଚଟକା ଭୋଗ ଅର୍ପଣ କରିଥାନ୍ତି । ଏତଦ୍‌ବ୍ୟତୀତ ମନ୍ଦିରରେ ସଂକୀର୍ତ୍ତନ କରିଥାନ୍ତି ।

୩. ଶଙ୍କରାନନ୍ଦ ମଠ- ସ୍ୱାମୀ ଶଙ୍କରାନନ୍ଦ ନବମ ଶତାବ୍ଦୀରେ ବାଲିସାହିରେ ଏହି ମଠ ପ୍ରତିଷ୍ଠା କରିଥିଲେ ।





ଭଗବତଟୀକାକାର ଶ୍ରୀଧର ସ୍ୱାମୀ ଏହି ମଠରେ ରହୁଥିଲେ । ଏହା ଶ୍ରୀଜଗନ୍ନାଥଙ୍କ ମନ୍ଦିର ପରିଚାଳନାରେ ଅଂଶଗ୍ରହଣ କରିଥାନ୍ତି । ମଠର ମହନ୍ତ ମୁକ୍ତି ମଣ୍ଡପରେ ବସନ୍ତି । ମଠର ରୋଷଘରେ 'ହିଙ୍ଗୁଳା ପୀଠ'ନାମକ ୨ଟି ଚୂଲା ନିର୍ଦ୍ଦିଷ୍ଟଭାବେ ଅଛି । ସେହି ଚୂଲା ହେଲା ୨୮ ଓ ୨୯ ନମ୍ବର । ତତ୍କାଳୀନ ସମୟରେ ଏହି ମଠର ମଠାଧିଶ ଲୋକନାଥ, ଲିଙ୍ଗରାଜ ଓ କପିଳାସ ମହାପ୍ରଭୁଙ୍କର ପରିଚାଳନା ଦାୟିତ୍ୱରେ ରହିଥିଲେ ।

୪. ଓଡ଼ିଆ ମଠ– ଏହି ମଠ ଓଡ଼ିଆ ଭାଗବତର ରଚୟିତା ଅତିବଡ଼ି ଜଗନ୍ନାଥ ଦାସଙ୍କ ଦ୍ୱାରା ବାସେଳି ସାହିରେ ସାତ ଏକର ମୂଲ୍ୟବାନ ଜମି ଉପରେ ଉତ୍କଳର ଗଜପତି ପ୍ରତାପରୁଦ୍ର ଦେବ ସମୟରେ ସ୍ଥାପନ ହୋଇଥିଲା । ସବୁ ମଠଠାରୁ ଏହି ମଠ ଶ୍ରୀଜଗନ୍ନାଥଙ୍କ ସେବାପୂଜା କାର୍ଯ୍ୟ ଅଧିକ କରିଥାନ୍ତି । ରତ୍ନସିଂହାସନର ସୁରକ୍ଷା ଓ ମରାମତି କାର୍ଯ୍ୟ ମଧ୍ୟ ଏହି ମଠ କରିଥାନ୍ତି । ବାହୁଡ଼ା ଯାତ୍ରାପରେ ରଥ ଉପରେ ଅଧରପଣା ଭୋଗ କରିବାର ପରମ୍ପରା ରହିଛି । ନୀଳାଦ୍ରି ବିଜେ ଦିନ ମଠ ତରଫରୁ ରତ୍ନସିଂହାସନ ପରିଷ୍କାର ଓ ନୀଳଚକ୍ରରେ ଧ୍ୱଜାବନ୍ଧା କରିଥାନ୍ତି । ଅନବସର ସମୟରେ ଚଟକା ଭୋଗ ଓ ରାଶିତେଲ ଯୋଗାଇ ଥାଆନ୍ତି । ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଯାତ୍ରା ଦିନ ଏହି ମଠ ଖେଚୁଡ଼ି ଭୋଗ ଲାଗି କରିଥାନ୍ତି । ଚନ୍ଦନଯାତ୍ରା ସମୟରେ ପଣାଭୋଗ ହୋଇଥାଏ । ମଠର କାଞ୍ଜିପାଣି ବା ନଦିଆ ତୋରାଣୀ ପାଇଁ ବିଗତ ୫ଶହ ବର୍ଷ ତଳୁ ସମଗ୍ର ଦେଶରେ ପ୍ରସିଦ୍ଧି ଲାଭ କରିଅଛି । ଏହି ମଠର ମହନ୍ତ ଶ୍ରୀଜୀଉଙ୍କ ପାଖରେ ଚାମର ସେବା କରିଥାନ୍ତି ।

୫. ଗଙ୍ଗାମାତା ମଠ– ଏହି ମଠ ଷୋଡ଼ଶ ଶତାବ୍ଦୀର ବାଲିସାହିରେ ଅବସ୍ଥିତ । ଏହା ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ମଠ ଅଟେ । ଏହି ମଠ ସୁନାବେଣ୍ଟ ଚାମରରେ ବଡଠାକୁରଙ୍କୁ ଆଲଟ ସେବା କରିଥାନ୍ତି । ଫୁଲ ଚନ୍ଦନ ଇତ୍ୟାଦି ଯୋଗାଇ ଥାଆନ୍ତି ।

୬. ଗୋପାଳ ତୀର୍ଥ ମଠ– ଏହି ମଠକୁ ଦ୍ୱାଦଶ ଶତାବ୍ଦୀରେ ପ୍ରସିଦ୍ଧ ଦଣ୍ଡୀ ଆଚାର୍ଯ୍ୟ ସ୍ଥାପନ କରିଥିଲେ । ଏହି ମଠ ଶ୍ରୀଜଗନ୍ନାଥଙ୍କର ହାତୀ ବେଶ ପାଇଁ ଫୁଲ, ଚନ୍ଦନ ତୁଳସୀମାଳ ଇତ୍ୟାଦି ଯୋଗାଇଥାଆନ୍ତି ଏବଂ ସଂକୀର୍ତ୍ତନ ବ୍ୟବସ୍ଥା ମଧ୍ୟ କରିଥାନ୍ତି ।

୭. ବାଉଳି ମଠ– ଏହି ମଠ ଷୋଡ଼ଶ ଶତାବ୍ଦୀରେ ସ୍ୱର୍ଗଦ୍ୱାର ନିକଟରେ ଶିଖ୍ ସଂପ୍ରଦାୟ ଭକ୍ତଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏଥିରେ ଗୁରୁ ନାନକଙ୍କର ପବିତ୍ର ସ୍ମୃତି ସହିତ ନିବିଡ଼ ସମ୍ପର୍କ ଅଛି । ପୁରୀ ଆସିଥିବା ଶିଖ୍ ଯାତ୍ରୀମାନେଏଠାରେ ଗୁରୁ ନାନକଙ୍କ ଓ ଗୁରୁ ଗ୍ରନ୍ଥ ସାହବଙ୍କୁ ବନ୍ଦନା କରିଥାନ୍ତି ।

୮. ଜଗନ୍ନାଥ ବଲ୍ଲଭ ମଠ– ଏହି ମଠ ଶ୍ରୀମନ୍ଦିର ଓ ଗୁଣ୍ଡିଚା ମନ୍ଦିର ମଝିରେ ଥିବା ବଡଦାଣ୍ଡର ବାମପାର୍ଶ୍ୱରେ ଷୋଡ଼ଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଏହା ବିଷ୍ଣୁସ୍ୱାମୀ ସମ୍ପ୍ରଦାୟର ମଠ । ଏହା ରାୟ ରମାନନ୍ଦଙ୍କର ସାଧନା ପୀଠ ରୂପେ ବିବେଚିତ ଅଟେ । ଏଠାରେ ଶ୍ରୀଜଗନ୍ନାଥଙ୍କର ବହୁତ ଉତ୍ସବ ପାଳନ କରାଯିବାର ବିଧିବିଧାନ ଖଞ୍ଜା ଯାଇଅଛି । ଏହି ମଠ ଶ୍ରୀମନ୍ଦିରର ନୃତ୍ୟ ସେବା ପୂଜା, ନୀତି ପର୍ବପର୍ବାଣି ସହିତ ଦୀର୍ଘ ଶହ ଶହ ବର୍ଷ ଧରି ପ୍ରତ୍ୟକ୍ଷଭାବେ ସଂପୃକ୍ତ । ସେହି ଯାତ୍ରା ଓ ପର୍ବପର୍ବାଣିଗୁଡ଼ିକ ହେଲା–ପଣାସଂକ୍ରାନ୍ତି, ଚନ୍ଦନଯାତ୍ରା, ନୃସିଂହଜନ୍ମ, ଶୀତଳ ଷଷ୍ଠୀ, ସ୍ନାନପୂର୍ଣ୍ଣିମା, ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଯାତ୍ରା, ବଣଭୋଜି ବେଶ, କାଳୀୟ ଦଳନ ଏକାଦଶୀ, ପ୍ରଳମ୍ବାସୁରବଧ ନୀତି, କୁମାର ପୂର୍ଣ୍ଣିମା, କାର୍ତ୍ତିକ ମାସ ବାଳଧୂପ, ଦୁଗ୍ଧମେଲାଣି ଯାତ୍ରା, ବେଣ୍ଟ ପର୍ବ, ଅଶୋକାଷ୍ଟମୀ, ଶ୍ରୀରାମ ନବମୀ, ଦୟଣାଚୋରି ନୀତି ଓ ନବକଳେବର ।

୯. ରାଧାକାନ୍ତ ମଠ– ଏହି ମଠ ଶ୍ରୀକ୍ଷେତ୍ର ପୁରୀର ବାଲିସାହିରେ ଷୋଡ଼ଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଏହି ମଠ ଗୌଡ଼ୀୟ ବୈଷ୍ଣବମାନଙ୍କର ଆଶ୍ରମ ଥିଲା । ପ୍ରଥମେ ଏହି ଆଶ୍ରମରେ ଗୋଟିଏ କ୍ଷୁଦ୍ର କୋଠରୀରେ ଚୈତନ୍ୟ ମହାପ୍ରଭୁ ଦୀର୍ଘ ୧୮ବର୍ଷ କାଳ ନିଜର ଶେଷ ଜୀବନ ଅତିବାହିତ କରିଥିଲେ । ତେଣୁ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ସେ ବ୍ୟବହାର କରୁଥିବା କାଠର କଠଉ, କମଣ୍ଡଳୁ ଓ ତାଙ୍କର ବିଛଣା ଆଦି ମଠରେ ସଂରକ୍ଷିତ କରାଯାଇଛି । ଏହି ମଠ ଶ୍ରୀମନ୍ଦିରକୁ ଦୈନନ୍ଦିନ ଫୁଲ, ଚନ୍ଦନ ଓ ତୁଳସୀ ପତ୍ର ଯୋଗାଇବା ସଙ୍ଗେ ସଙ୍ଗେ ସଂକୀର୍ତ୍ତନ ବ୍ୟବସ୍ଥା କରାଇଥାନ୍ତି ।

୧୦. ରାଘବ ଦାସ ମଠ– ଏହି ମଠ ଷୋଡ଼ଶ ଶତାବ୍ଦୀରେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଗୋସ୍ୱାମୀ ରଘୁ ଅରକ୍ଷିତ ବାଲିସାହିରେ ପ୍ରତିଷ୍ଠା କରିଥିଲେ । ଏହି ମଠ ଶ୍ରୀପ୍ରଭୁଙ୍କର ସ୍ନାନଯାତ୍ରା ପାଇଁ ହାତୀ ବେଶ ପାଇଁ ଅନ୍ୟସବୁ ମଠ ପରି ଏହି ମଠ ଫୁଲ, ଚନ୍ଦନ ଓ ତୁଳସୀମାଳ ଇତ୍ୟାଦି ଯୋଗାଇଥାଏ । ଦୁବର ଟାହିଆ, ପୋଷାକ ଓ ଶାଢୀ, ଚନ୍ଦନ ଇତ୍ୟାଦି ଯୋଗାଇ ଥାଆନ୍ତି । ରଥଯାତ୍ରା ପରେ ଠାକୁର ମନ୍ଦିରକୁ ଆସିଲା ବେଳେ ମଠ ଟାହିଆ ଯୋଗାଇଥାଏ । ଏହାସହିତ ମଧ୍ୟ ଚଟକା ଭୋଗ, ଧୁଆମୁଗ, ପଣସ ଭୋଗ ଅର୍ପଣ ବିଧି ଅଛି ।

୧୧. ଦଶାବତାର ମଠ– ଏହି ମଠ ପ୍ରଥମେ ଶ୍ରୀଗୁଣ୍ଡିଚା ମନ୍ଦିର ସମ୍ମୁଖସ୍ଥ ଦ୍ୱାଦଶ ଶତାବ୍ଦୀରେ ଗୀତଗୋବିନ୍ଦ



କାବ୍ୟ ରଚୟିତା ତଥା ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ କବିରାଜ ଜୟଦେବଙ୍କର ଏକ ଆଶ୍ରମ ଥିଲା । ଏହା ଥିଲା ଏକ କୁଡିଆ ଘର । ପରେ ଜୟଦେବଙ୍କ ଅନୁଗାମୀମାନେ ଏହି ସ୍ଥାନରେ ମଠ ପ୍ରତିଷ୍ଠା କରିଥିଲେ । ଯାହାକି ଆଦି 'ଦଶାବତାର' ମଠରୂପେ ସୁପରିଚିତ । ଅତୀତରେ ଜୟଦେବଙ୍କ ରଚିତ ଗୀତଗୋବିନ୍ଦକୁ ଶ୍ରୀମନ୍ଦିରରେ ତିନି ବିଗ୍ରହଙ୍କ ସମ୍ମୁଖରେ ଗାନ ସହିତ ଦେବଦାସୀ ନୃତ୍ୟ ଏହି ମଠର ସେବା ଥିଲା । ଖଟୁଆ ସେବା (ଖଟୁଆଲୁଗା) ଶ୍ରୀଜୀଉଙ୍କୁ ଅର୍ପଣ କରିବା ସେବା ସ୍ୱତନ୍ତ୍ର ସ୍ଥାନ ବହନ କରିଅଛି । ନାକୁଆସୀ ସେବା (ରାଧାମାଧବଙ୍କ ମିଳିତ ବିଗ୍ରହ) ଜୟଦେବ ଗ୍ରହଣ କରିଥିଲେ । ରଥଯାତ୍ରାରେ ଗୁଣ୍ଡିଚା ମନ୍ଦିର ସମ୍ମୁଖରେ ରହୁଥିବା ତିନିରଥ ଉପରେ ଠାକୁରମାନଙ୍କ ନିମନ୍ତେ ଏହି ମଠର ପବିତ୍ର କୂପର ଜଳରେ ନୀତି ସମ୍ପାଦନ ହୁଏ ।

୧୨. ସୁନାର ଗୌରାଙ୍ଗ ମଠ– ଏହି ମଠ ଚକ୍ରତୀର୍ଥ ନିକଟରେ ଷୋଡଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । କେହି କେହି ଏହି ମଠକୁ ଚକ୍ରତୀର୍ଥ ମଠ ବୋଲି କହିଥାନ୍ତି । ଏହା ଭକ୍ତିସିଦ୍ଧାନ୍ତୀ ମଠ ଅଟେ ।

୧୩. ସାଲବେଗ ମଠ– ଏହି ମଠ ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀକ୍ଷେତ୍ରସ୍ଥିତ କୁଣ୍ଢେଇ ବେଣ୍ଟ ସାହିରେ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ସାଲବେଗ ସ୍ଥାପନ କରିଥିଲେ । ସାଲବେଗ ଥିଲେ ଶ୍ରୀଜଗନ୍ନାଥଙ୍କର ଅଦ୍ୱିତୀୟ ଓ ପରମଭକ୍ତ । ସେ ଭାବବିହ୍ୱଳ ହୋଇ ଜଗନ୍ନାଥଙ୍କର କେତେଗୁଡ଼ିଏ ସ୍ତୁତି ଓ ଜଣାଣ ଲେଖିଛନ୍ତି। ସେଥିମଧ୍ୟରୁ 'ଆହେ ନୀଳ ଶଇଳ' ଖୁବ ଆଦୃତ । କଥିତ ଅଛି ସାଲବେଗଙ୍କ ଶରୀର ଅସୁସ୍ଥତା ଯୋଗୁଁ ଗୋଟିଏ ବର୍ଷ ରଥଯାତ୍ରାକୁ ଆସିବା ଡେରି ହୋଇଥିଲା। ତେଣୁ ଜଗନ୍ନାଥଙ୍କ ରଥ 'ନନ୍ଦିଘୋଷ' ତାଙ୍କର ଆସିବା ବାଟକୁ ଅପେକ୍ଷା କରି ଅଟକି ଯାଇଥିଲା । ସାଲବେଗ ଶ୍ରୀକ୍ଷେତ୍ରରେ ପହଞ୍ଚିବା ପରେ ପୁନଶ୍ଚ ରଥଚକ ଗଡିବାକୁ ଲାଗିଲା । ଏହା ହେଉଛି ଭଗବାନ ଓ ଭକ୍ତଙ୍କ ମଧ୍ୟରେ ଥିବା ସମ୍ପର୍କର ଡୋରି । ଆଉ ମଧ୍ୟ ସାଲବେଗ ତାଙ୍କ ଶେଷ ଜୀବନଟି ପୁରୀରେ କଟାଇବା ପାଇଁ ଗୀତ ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କୁ ଗୁହାରି କରି ଶରଧାବାଲିରୁ ମାତ୍ର ଏକହାତ ମାଗିଛନ୍ତି:

'ଜଗନ୍ନାଥ ହୋ, କିଛି ମାଗୁନାହିଁ– ତୋତେ
ଧନମାଗୁନାହିଁ, ଜନ ମାଗୁନାହିଁ,
ମାଗୁଛି ଶରଧାବାଲିରୁ ହାତେ ।

୧୪. ସିଦ୍ଧ ବକୁଳ ମଠ– ଏହି ମଠକୁ ମଧ୍ୟ ହରିଦାସ ମଠ କୁହାଯାଏ । ଏହା ଷୋଡଶ ଶତାବ୍ଦୀରେ ଶ୍ରୀଚୈତନ୍ୟଙ୍କର ପରମ ଶିଷ୍ୟ ହରିଦାସ ସ୍ୱର୍ଗଦ୍ୱାରଠାରେ ସ୍ଥାପନ କରିଥିଲେ । ଓଡ଼ିଶା ଆଗମନ ଫଳରେ ହରିଦାସ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ହୋଇଯାଇଥିଲେ । ଆଜି ବି ହରିଦାସଙ୍କର ସମାଧିପୀଠ ବିଦ୍ୟମାନ । ଏଠାରେ ଥିବା ବକୁଳଗଛଟି ତାହା ଶ୍ରୀଚୈତନ୍ୟଦେବଙ୍କ ଦାନ୍ତକାଠିରୁ ସୃଷ୍ଟି ହୋଇଅଛି । ତାହାକୁ ସିଦ୍ଧ ବକୁଳ କୁହାଯାଏ ।

୧୫. ଦକ୍ଷିଣ ପାର୍ଶ୍ୱ ମଠ– ଏହା ଏକ ପ୍ରାଚୀନ ମଠ ରୂପେ ଶ୍ରୀକ୍ଷେତ୍ରରେ ଖ୍ୟାତି ଲାଭ କରିଛି । ଏହି ମଠ ବଡଦେଉଳର ଦକ୍ଷିଣଦ୍ୱାର ନିକଟରେ ସ୍ଥାପିତ ହୋଇଥିଲା । ବୀର ଛତ୍ରପତି ଶିବାଜୀଙ୍କ ଗୁରୁ ରାମଦାସଙ୍କ ସମୟଠାରୁ ମହାରାଷ୍ଟ୍ର ସହିତ ଏହି ମଠର ସମ୍ବନ୍ଧ ରହିଛି ।

୧୬. ଘୁମୁସର ମଠ– ଏହିମଠ ଷୋଡଶ ଶତାବ୍ଦୀରେ ମରିଚିକୋଟ ଗଳିରେ ସ୍ଥାପନ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଅବସ୍ଥାନ କରିଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ରାମ, ଲକ୍ଷ୍ମଣ ଓ ସୀତାମୂର୍ତ୍ତି ଏହି ମଠରେ ପୂଜା ପାଉଛନ୍ତି ।

୧୭. ସାତଲହଡି ମଠ– ଏହି ମଠ ଷୋଡଶ ଶତାବ୍ଦୀରେ ଗୌଡବାଡ ସାହିରେ ଅବସ୍ଥିତ ହୋଇଥିଲା । ଲୋକାଚାରରେ ଜଣାଯାଏ ଓଡ଼ିଆ ଭାଗବତର ରଚୟିତା ଅତିବଡି ଜଗନ୍ନାଥ ଦାସ ସମୁଦ୍ରକୁ କହିଲେ ''ମୋ ପାଇଁ ତୁ ସାତଟି ଲହଡି ପଛକୁ ଫେରିଯା', ମୁଁ ସେଠାରେ ଏକ ମଠ ନିର୍ମାଣ କରିବି । ସତକୁ ସତ ପ୍ରଭୁ ଜଗନ୍ନାଥଙ୍କର ମହିମା ଫଳରେ ସମୁଦ୍ର ୭ଟି ଲହଡି ପଛକୁ ପଳାଇଲା ଓ ସେଠାରେ ମଠ ନିର୍ମାଣ ହେଲା ।

୧୮. ମଙ୍ଗୁ ମଠ– ଏହି ମଠ ସିଂହଦ୍ୱାର ସମ୍ମୁଖରେ ସପ୍ତଦଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଏହା ମଧ୍ୟ ଜଗନ୍ନାଥ ମନ୍ଦିରର ନୀତିନିୟମ ସହିତ ସମ୍ପୃକ୍ତ ।

୧୯. ନନ୍ଦିନୀ ମଠ– ଏହି ମଠ ମାର୍କଣ୍ଡେୟ ସାହିରେ ଅବସ୍ଥିତ । ଭାରତ ବିଖ୍ୟାତ ଭକ୍ତକବି ମୀରାବାଈ ଏହି ମଠରେ ରହି ଭଜନ କୀର୍ତ୍ତନ କରିବାର କିମ୍ବଦନ୍ତୀ କହେ ।

୨୦. ବଡ଼ଛତା ମଠ– ଏହି ମଠ ମାର୍କଣ୍ଡେଶ୍ୱର ସାହିରେ ଚତୁର୍ଦ୍ଦଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଜନମାନସରେ ଏହି ମଠ ଯଥେଷ୍ଟ ଗୁରୁତ୍ୱ ବହନ କରିଅଛି ।

୨୧. ସାନଛତା ମଠ– ଏହି ମଠ ସପ୍ତଦଶ ଶତାବ୍ଦୀରେ ମାର୍କଣ୍ଡେଶ୍ୱର ସାହିରେ ସ୍ଥାପନ ହୋଇଥିଲା ।

୨୨. ଲବଣୀଖିଆ ମଠ– ଏହି ମଠ ଷୋଡଶ ଶତାବ୍ଦୀରେ ଲୋକନାଥଙ୍କୁ ଯିବା ରାସ୍ତାରେ ସ୍ଥାପନ କରାଯାଇଥିଲା ।





୨୩. କବିର ଚଉରା ମଠ– ଏହି ମଠ ଷୋଡଶ ଶତାବ୍ଦୀରେ ସ୍ୱର୍ଗଦ୍ୱାରଠାରେ ନିର୍ମାଣ ହୋଇଥିଲା । ଯୋଗପୁରୁଷ କବିର ପୁରୀ ରହଣି କାଳରେ ଏହି ମଠରେ ଅବସ୍ଥାନ କରୁଥିଲେ ।

ମାନବ ଜାତିର ମଙ୍ଗଳ ଓ କଲ୍ୟାଣ ଉଦ୍ଦେଶ୍ୟରେ ଏହି ମଠଗୁଡିକ ସ୍ଥାପନ କରାଯାଇଅଛି । ଜଗନ୍ନାଥଙ୍କ ଭକ୍ତମାନଙ୍କୁ ଏହି ମଠଗୁଡିକ ଯାବତୀୟ ସୁବିଧା ସୁଯୋଗ ପ୍ରଦାନ କରିଥାନ୍ତି । ଏହି ମର୍ତ୍ତ୍ୟବୈକୁଣ୍ଠ ଧାମର ଆକର୍ଷଣ ମହାପ୍ରଭୁ ଜଗନ୍ନାଥ ଓ ତାଙ୍କର ପରମ ଭକ୍ତମାନେ ଏକାକାର ହୋଇଯାଇଛନ୍ତି । ଭକ୍ତକୁ ଦେଖିବାକୁ ତା'ର ଆରାଧ୍ୟ ଠାକୁର ଯେପରି ପାଗଳ ହୋଇଯାଇଛନ୍ତି । ମନେହୁଏ ଆତ୍ମା ଓ ପରମାତ୍ମାଙ୍କର ମିଳନ ହୋଇଯାଇଛି । ବଳିଆରଭୁଜ ମହାପ୍ରଭୁ ଶ୍ରୀଜଗନ୍ନାଥ ସମସ୍ତଙ୍କୁ ଆଶୀର୍ବାଦ କରନ୍ତୁ, ଏହାହିଁ ପ୍ରାର୍ଥନା । ଏହା ଧ୍ରୁବ ସତ୍ୟ ଯେ ଏକ ଅଦୃଶ୍ୟ ଶକ୍ତିର ସହାୟତା ବିନା ଏ ଦୃଶ୍ୟମାନ ଜଗତରେ ଚାଲିପାରିବା ସହଜ ନୁହେଁ ।

ପ୍ଲଟ୍ ନଂ– ୭୮୫/୧୨୮୦
ଦୁର୍ଗାମାଧବ ନଗର, ଭରତପୁର
ଭୁବନେଶ୍ୱର

---

# ପଥ ପ୍ରାର୍ଥନା

**ରକ୍ଷକ ନାୟକ**

ବଡ ଅଦ୍ଭୁତ ଏ ପଥ
ଯେଉଁଠୁ ଆରଂଭ ସେଇଠି ସମାପ୍ତ ।
ପୃଥିବୀ ପୂର୍ବରୁ, ସମୟର ଏନ୍ତୁଡି ଆଗରୁ
ଏଇ ପଥ ଅଛି
ଏଇ ପଥକୁ ଆଶ୍ରା କରି
ଅଂତରୀକ୍ଷ କେତେ କେତେ ଅକ୍ଷରରେ
ସଜେଇ ହେଇଛି ।
ଏ ପଥର ଆରମ୍ଭ ହିଁ ଶେଷ
ଶେଷ ହିଁ ଆରମ୍ଭ,
ତଥାପି ଯିବାକୁ ହୁଏ ଏ ପଥରେ
ଠିକଣା ନୁହେଁ, ଯାତ୍ରା ହିଁ ଅଭୀପ୍‌ସା
ଅନ୍ୱେଷଣ ହିଁ ସର୍ବଶେଷ ସତ୍ୟ
ଇପ୍‌ସିତ ଲକ୍ଷ୍ୟ କାଳକ୍ରମେ
ପାଲଟି ଯାଏ ପଥ ।



ଚିର ନିୟତ ଯାତ୍ରା ଚାଲିଛି ସେ ପଥରେ
ଯାତ୍ରାରେ ସାମିଲ ହେବା ହିଁ ପଥ ହେଇଯିବା
ପୃଥିବୀକୁ ତୁଚ୍ଛ କରିଦେବା
ଯେ ଯାତ୍ରାକୁ ଆସିଛି ଆଉ ଫେରି ନାହିଁ
ଏ ପଥରେ କେବଳ ପ୍ରବେଶ ପ୍ରସ୍ଥାନ ନଥାଇ ।
ଆସ ଯିବା ସେ ଯାତ୍ରାକୁ
ଯେମିତି ନଈଟିଏ ସମୁଦ୍ରକୁ
ଯେମିତି ପ୍ରଶ୍ୱାସଟିଏ ବାୟୁମଣ୍ଡଳକୁ
ନିଜକୁ ନିଃଶେଷ କରିଦେବା
ପଥ ହେଇଯିବା ।

ପାଇକ ସାହି, ସୋରଭା, ନୟାହାଟ,
ପୁରୀ– ୭୫୨୧୦୭



# ଖୋର୍ଦ୍ଧା ରାଜା ଶ୍ରୀପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ତିନୋଟି ଗୁରୁତ୍ୱପୂର୍ଣ୍ଣ ଘଟଣା

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

ଖୋର୍ଦ୍ଧାର ଭୋଇବଂଶୀୟ ରାଜା ରାମଚନ୍ଦ୍ର ଦେବ-୧ମ, ଶ୍ରୀମନ୍ଦିରରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ଭ୍ରାତା ବଳଭଦ୍ର ଏବଂ ଭଗ୍ନୀ ସୁଭଦ୍ରାଙ୍କ ଦାରୁମୂର୍ତ୍ତିକୁ ପୁନଃ ପ୍ରତିଷ୍ଠା କରି ଜନମାନସରେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଭାବରେ ପରିଚିତ ହେଲେ । ତାଙ୍କର ରାଜତ୍ୱକାଳ ଥିଲା-ଖ୍ରୀ ୧୫୬୮ରୁ ଖ୍ରୀ ୧୬୦୦ଯାଏ । ସେନାପତି ମାନସିଂହଙ୍କ ଜରିଆରେ ସେ ବାଦ୍‌ଶାହା ଆକ୍‌ବରଙ୍କ ପ୍ରିୟପାତ୍ର ଥିଲେ । ଏଣୁ ଖୋର୍ଦ୍ଧାରେ ଅବସ୍ଥାନ କରି ନାଏବ ସୁବାଦାର ଭାବରେ ୩,୫୦୦ ଅଶ୍ୱାରୋହୀ ସୈନ୍ୟ ରଖିବାର କ୍ଷମତା ଲାଭ କଲେ ।



ତାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୋର୍ଦ୍ଧା ଶାସନରେ ରହିଲେ । ତାଙ୍କର ଶାସନକାଳ ଥିଲା-ଖ୍ରୀ୧୬୦୧ରୁ ଖ୍ରୀ:୧୬୨୧ ପର୍ଯ୍ୟନ୍ତ । ତାଙ୍କର ଶାସନକାଳ ଥିଲା ଗୁରୁତ୍ୱପୂର୍ଣ୍ଣ । ସେତେବେଳକୁ ଆକବର ଯାଇ, ଦିଲ୍ଲୀ ଗାଦୀରେ ବସିଥିଲେ, ତାଙ୍କ ପୁତ୍ର ଜାହାଙ୍ଗୀର । ତାଙ୍କର ଶାସନକାଳରେ ଓଡ଼ିଶା, ବଙ୍ଗଳାରୁ ମୁକ୍ତ ହୋଇ ଏକ ସ୍ୱତନ୍ତ୍ର ସୁବା ଭାବରେ ଘୋଷିତ ହେଲା । କଟକ ସହର (ଲାଲବାଗ୍ ଅଞ୍ଚଳ) ହେଲା ଓଡ଼ିଶା ସୁବାର ମୁଖ୍ୟ ଦପ୍ତର ।

ରାଜା ପୁରୁଷୋତ୍ତମଙ୍କ ଖୋର୍ଦ୍ଧା ଶାସନ କାଳରେ କଟକ ସୁବାରେ ଯେଉଁ ତିନିଜଣ ସୁବାଦାର ଅବସ୍ଥାପିତ ହୋଇଥିଲେ, ସେମାନେ ହେଲେ- ୧- ହାସିମ୍ ଖାଁ (୧୬୦୭-୧୬୧୧) ୨- ରାଜା କଲ୍ୟାଣ ମଲ୍ଲ (୧୬୧୧-୧୬୧୭) ୩- ମକରମ୍ ଖାଁ (୧୬୧୭-୧୬୨୧)

ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ମୋଗଲ ଶାସନରେ ଯେଉଁ ତିନୋଟି ଗୁରୁତ୍ୱପୂର୍ଣ୍ଣ ଘଟଣା ସଂଘଟିତ ହୋଇଥିଲା, ତାହା ନିମ୍ନରେ ପ୍ରଦତ୍ତ ହେଲା-

### ଜାହାଙ୍ଗୀର କୁଲି ଖାଁଙ୍କ ଓଡ଼ିଶା ଆକ୍ରମଣ, ଅପହରଣ ଓ ସାଲବେଗ ଜନ୍ମ ଚରିତ

ଓଡ଼ିଶା ସ୍ୱତନ୍ତ୍ର ସୁବା ଘୋଷିତ ହେବା ପୂର୍ବରୁ ଜାହାଙ୍ଗୀର କୁଲି ଖାଁ (ଲାଲବେଗ) ଖ୍ରୀ-୧୬୦୫ରୁ ୧୬୦୬ ଯାଏ ବିହାର ଏବଂ ତତ୍‌ପରେ ବଙ୍ଗଳାର ସୁବେଦାର ଥାଇ ଘୋଡା- ସବାର ବାହିନୀ ସହିତ ମଧ୍ୟେ ମଧ୍ୟେ ଓଡ଼ିଶାର ଶ୍ରୀକ୍ଷେତ୍ର ଆକ୍ରମଣ ଓ ଲୁଣ୍ଠନ କ୍ରିୟାରେ ଜଡିତ ଥିଲା । ଏକଦା ପୁରୀ ଶ୍ରୀମନ୍ଦିର ଆକ୍ରମଣ ଉଦ୍ଦେଶ୍ୟରେ ବାହାରି ପୁରୀ ଦାଣ୍ଡମୁକୁନ୍ଦପୁର ବ୍ରାହ୍ମଣ ଶାସନର ଏକ ବିଧବା ବ୍ରାହ୍ମଣୀର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ତାହାକୁ ବଳପୂର୍ବକ ଅପହରଣ କରି ନେଇ ତାହାର ଆପତ୍ତି ସତ୍ତ୍ୱେ ବୁଝାସୁଝା କରି ଉପଭୋଗ କରିବାକୁ ଲାଗିଲା । ସମୟକ୍ରମେ ଲାଲବେଗ ଔରସରୁ ସେହି ବିଧବା ବ୍ରାହ୍ମଣୀ ଗର୍ଭରୁ ଯେଉଁ ପୁତ୍ର ସନ୍ତାନଟି ଜନ୍ମ ନେଲା, ସେ ଭକ୍ତ ସାଲବେଗ ନାମରେ ପ୍ରସିଦ୍ଧ ହେଲେ । ସାଲବେଗଙ୍କ ନିର୍ଦ୍ଦିଷ୍ଟ ଜନ୍ମ ତାରିଖ ଜଣାନଥିଲେ ମଧ ଐତିହାସିକ ତଥ୍ୟ ଅନୁସାରେ ଖ୍ରୀ.୧୬୦୭ ହୋଇଥିବାର ଅନୁମାନ । ଲାଲବେଗ୍‌ଙ୍କ ମୃତ୍ୟୁ ଦିଲ୍ଲୀଠାରେ ଖ୍ରୀ.୨୭.୦୪.୧୬୦୮ରେ ହୋଇଥିବା ଜଣାଯାଏ ।

ଲାଲବେଗ୍‌ଙ୍କ ଅପହରଣ କ୍ରିୟା ଏବଂ ସାଲବେଗଙ୍କ ଜନ୍ମର ଏକ ମନୋଜ୍ଞ ବର୍ଣ୍ଣନ, 'ଦାର୍ଢ୍ୟତାଭକ୍ତି'ରୁ ମିଳିଥାଏ । ଯଥା-




ଏକେ ବ୍ରାହ୍ମଣୀ ଦୁଜେ ଯୁବା
କେ କହିପାରେ ତା'ର ଶୋଭା ।
ଏମନ୍ତ ବେଳେ ଲାଲବେଗ
ଆସି ମିଳିଲା ତା'ର ଆଗ ।
ବଳେ ଧଇଲା ତାର ଭୁଜ
ମୃଗୀକୁ ଯେହ୍ନେ ମୃଗରାଜ ।
ବସାଏ ଅଶ୍ୱର ଉପରେ
ସେ ନାରୀ ଦଇବ ସୁମରେ ।
ଏମନ୍ତ କେତେ ଦିନ ଗଲା
ସେ ନାରୀ ପୁତ୍ର ପ୍ରସବିଲା ।
ପୁତ୍ରକୁ ଦେଖି ଲାଲବେଗ
ନାମ ତା' ଦେଲା ସାଲବେଗ ॥

ଓଡ଼ିଆ ବୈଷ୍ଣବ ଭକ୍ତି ସାହିତ୍ୟ ଏବଂ ଶ୍ରୀଜଗନ୍ନାଥ ଭକ୍ତି ସଂଗୀତ ସାହିତ୍ୟକୁ ଭକ୍ତ ସାଲବେଗଙ୍କ ଅବଦାନ ଅବିସ୍ମରଣୀୟ ଅଟେ ।

**ହିନ୍ଦୁ ରାଜ୍‌ପୁତ ସେନାପତି କେଶୋଦାସ ମାରୁଙ୍କ ରଥଯାତ୍ରା ସମୟରେ ଶ୍ରୀମନ୍ଦିର ଆକ୍ରମଣ**

ପୁରୁଷୋତ୍ତମ ଦେବ (ଖ୍ରୀ୧୬୦୧–୧୬୧୧)ଙ୍କ ଖୋର୍ଦ୍ଧା ଶାସନକାଳରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା–ମୋଗଲ ରାଜତ୍ୱର ହିନ୍ଦୁ ରାଜପୁତ୍ ସେନାପତି କେଶୋଦାସ ମାରୁଙ୍କ ରଥଯାତ୍ରା ଅବସରରେ ଶ୍ରୀମନ୍ଦିର ଆକ୍ରମଣ । ସେତେବେଳେ ଦିଲ୍ଲୀର ବାଦଶାହା ଜାହାଙ୍ଗୀର । ଜାହାଙ୍ଗୀର ରାଜପୁତ୍ ରମଣୀ ଯୋଧା ବାଈ ଗର୍ଭସମ୍ଭୁତ ହେଲେ ମଧ୍ୟ ଅଧିକ ପରିମାଣରେ ହିନ୍ଦୁ ବିଦ୍ୱେଶୀ ଥିଲେ । ତତ୍କାଳୀନ କଟକଠାରେ ଅବସ୍ଥାପିତ ମୋଗଲ ସୁବେଦାର ହାସିମ୍ ଖାଁ (ଖ୍ରୀ ୧୬୦୭–୧୬୧୧), ଦିଲ୍ଲୀ ନବାବକୁ ନାନାଦି ଉପଢୌକନ ଦ୍ୱାରା ତୁଷ୍ଟ କରିବା ପାଇଁ ବହୁ ହିନ୍ଦୁ ମନ୍ଦିର ଭଙ୍ଗାରୁଜା ଏବଂ ଲୁଣ୍ଠନ କାର୍ଯ୍ୟରେ ଲିପ୍ତ ଥିଲା ।

ତାଙ୍କ ନିର୍ଦ୍ଦେଶରେ ରଥଯାତ୍ରା ଅବସରରେ ସୁଯୋଗ ଉଣ୍ଡି କେଶୋଦାସ ମାରୁ ନାମକ ଜନୈକ ହିନ୍ଦୁ ରାଜପୁତ୍ ସେନାପତି ବହୁ ମୋଗଲ ସେନା ସାଥିରେ ଘେନି ପୁରୀ ଆସି ଶ୍ରୀମନ୍ଦିର ଦଖଲ କରିନେଲା । ମହାପ୍ରଭୁଙ୍କ ରଥଦୌଡି ଯାତ୍ରାରେ ବିଘ୍ନ ଘଟାଇଲା । ଖୋର୍ଦ୍ଧାରାଜା ପୁରୁଷୋତ୍ତମ ଦେବ ଖବରପାଇ ଆସି ପ୍ରତି ଆକ୍ରମଣ କଲେ । ମାତ୍ର ବିରାଟ ମୋଗଲ ବାହିନୀଠାରୁ ପରାଜିତ ହୋଇ ସନ୍ଧି କଲେ । ବହୁ ଘୋଡା, ହାତୀ ମୂଲ୍ୟବାନ ରତ୍ନାଦି ଦେଇ କେଶୋଦାସଠାରେ ବଶ୍ୟତା ସ୍ୱୀକାର କଲେ । ଉପଲବ୍ଧ ଦ୍ରବ୍ୟ ସବୁ ଦିଲ୍ଲୀ ବାଦ୍‌ଶାହାଙ୍କ ନିକଟକୁ ଭେଟି ଦିଆଗଲା। ଏହି ଘଟଣା ପରେ ଜାହାଙ୍ଗୀର କେଶୋଦାସ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତାକୁ ପଦୋନ୍ନତି ଦେଇଥିଲେ । ଭିକାରି ଚରଣ ପଟ୍ଟନାୟକଙ୍କ 'ରଥଚକଡା' ପୋଥିରୁ ଉଦ୍ଧାର କରି ଶ୍ରୀମନ୍ଦିର ଗବେଷକ ସ୍ୱର୍ଗତ ସଦାଶିବ ରଥଶର୍ମା କହନ୍ତି– ''ରାମଚନ୍ଦ୍ର (ବଡଜେନା ରାଉତ)



ଦେବଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ ସମୟରେ କେଶୋଦାସ ମାରୁ ରାଜପୁତ, ବଡ ଦେଉଳକୁ ଦଖଲ କଲା । ଆଷାଢ ମାସ ଦିଅଁ ଅଣସରରେ ଦେଉଳଦ୍ୱାର ବନ୍ଦ । ବେଢାରେ କେଶୋଦାସ ସୈନ୍ୟ । ରାଜା ଖୋରଧାରୁ ସୈନ୍ୟ ନେଇ, ହାତୀମାନ ସଜ କରି, ପାଚେରି ଡେଇଁ ପ୍ରତ୍ୟାକ୍ରମଣ କଲେ । ମାତ୍ର ରାଜପୁତ୍‌ଗଣ ଭିତରେ ଥିବା ମଞ୍ଚାକୁ ଭାଙ୍ଗି, ସେଥିରେ ମଶାଲ କରି ରଥଗୁଡିକୁ ପୋଡିଦେଲେ । ରଥ ପୋଡିଯିବାରୁ ରାଜା ବିବ୍ରତ ହୋଇ କେଶୋଦାସର ଶରଣଗଲେ । କେଶୋଦାସ ରାଜାଙ୍କଠାରୁ ଅର୍ଥନେଇ କଟକ ଫେରିଲେ । ସେତ ଥିଲେ ମୁଗଲମାନଙ୍କ ଅଧସ୍ତନ କର୍ମଚାରୀ । ସେ ବର୍ଷ ରଥଯାତ୍ରା ହେଲାନାହିଁ । ମହାପ୍ରଭୁଙ୍କୁ ମାତ୍ର ଶଗଡରେ ବସାଇ ଗୁଣ୍ଡିଚା ଘରକୁ ନିଆଗଲା।''

ବହୁ ସଂଖ୍ୟକ ସୈନ୍ୟ, ଗୋଳାବାରୁଦ ସହିତ ତୀର୍ଥଯାତ୍ରୀ ବେଶରେ କେଶୋଦାସ ମାରୁ ମନ୍ଦିରରେ ପଶି ଅଧିକାର କଲା । ପୁରୁଷୋତ୍ତମ ଦେବ ଯୁଦ୍ଧ କରି ପରାସ୍ତ ହେଲେ ।




### ସୁବେଦାର କଲ୍ୟାଣ ମଲ୍ଲଙ୍କ ଖୋର୍ଦ୍ଧା ଆକ୍ରମଣ

ତୋଦର ମଲ୍ଲଙ୍କ ପୁତ୍ର କଲ୍ୟାଣ ମଲ୍ଲ (ଖ୍ରୀ୧୬୧୧-୧୬୧୭) କଟକରେ ସୁବେଦାର ଭାବରେ ଅବସ୍ଥାପିତ ସମୟରେ ମଧ୍ୟ ଖୋର୍ଦ୍ଧା ଆକ୍ରମଣ କରିଥିଲେ । ଜଣେ ଦକ୍ଷ ପ୍ରଶାସକ ଏବଂ କୂଟନୀତିଜ୍ଞ ଭାବରେ ପରିଚିତ କଲ୍ୟାଣ ମଲ୍ଲ, ଜାହାଙ୍ଗୀର ବାଦ୍‌ଶାହଙ୍କୁ ଖୁସି କରିବା ପାଇଁ ଖୋର୍ଦ୍ଧା ଶ୍ରୀମନ୍ଦିର ଚଢାଉ କରିଥିଲେ । ବହୁ ଧନରତ୍ନ ଲୁଣ୍ଠନ କରି ଦିଲ୍ଲୀ ନବାବଙ୍କୁ ଭେଟି ଦେଇଥିଲେ । ଉପଯୁକ୍ତ ପୁରୀ ଗେଜେଟିଅରରୁ ଏହା ଜଣାଯାଏ । କୁହାଯାଏ କପଟପନ୍ଥା ଅବଲମ୍ବନ କରି ଏହି ହିନ୍ଦୁ ସୁବେଦାର ଜଣକ ପୁରୁଷୋତ୍ତମ ଦେବଙ୍କ ୧୬ଜଣ ସେନାପତିଙ୍କୁ ହତ୍ୟା କରିଥିଲେ । ଏହାର ପ୍ରତିକ୍ରିୟା ସ୍ୱରୂପ, ଖୋର୍ଦ୍ଧାର ପାଇକମାନେ ମେଳି କରିଥିଲେ । କଲ୍ୟାଣ ମଲ୍ଲ ପ୍ରାଣ ଘେନି ପଳାୟନ କଲେ ।

ବିଧର୍ମୀମାନେ ଓଡ଼ିଶାର ଜଗନ୍ନାଥ ଧର୍ମ ଓ ସଂସ୍କୃତିର କ୍ଷତି ସାଧନା କରୁଥିବା କଥା କୁହାଯିବା ସ୍ଥଳେ, ରାଜପୁତ୍ କେଶୋଦାସ ମାରୁ ଏବଂ ହିନ୍ଦୁ ସୁବେଦାର କଲ୍ୟାଣ ମଲ୍ଲଙ୍କ ଭୂମିକା ଏ କ୍ଷେତ୍ରରେ ପ୍ରଣିଧାନଯୋଗ୍ୟ ।

୩୫, ବସନ୍ତ ବିହାର, ଭୁବନେଶ୍ୱର-୧୮

# ନୈବେଦ୍ୟ

କମଳାକୃଷ୍ଣ ତ୍ରିପାଠୀ

ମୋ ପୂଜାଥାଳିରେ ଏବେ କ'ଣ ବାଢି
ତୁମକୁ ତୃପ୍ତି କରିବି, ଠାକୁରେ ?
ଧୂପ-ଦୀପ-ଚନ୍ଦନ-ତୁଳସୀ
ନା ଛପନ ପଉଟି ଭୋଗର ନୈବେଦ୍ୟ !
କୋଟି ରୂପ-ଲାବଣ୍ୟକୁ ଜିଣି
ତୁମର ଯେଉଁ ଶ୍ରୀମୁଖ
ତା' ପାଇଁ ସଜାଡିଥିବା ଚନ୍ଦନଗୁଣ୍ଡ
କେଜାଣି କେଉଁ କାଠର !
ତୁମ ବନ୍ଦାପନା ପାଇଁ ମୁଁ ତିଆରି ଚାଲିଛି
ମହମହ ବାସ୍ନାର ଘୃତଦୀପ
ଏ ସଳିତାତଳେ ଖୁବ୍ ଗଭୀର
ସତଠାରୁ ମିଛ
ନିରୁତାରୁ ଭେଜାଲ !



ମୁଁ ନା ଦେଇପାରିବି
ଦାସୀଆ ନଡିଆ ନା ଶବରୀର କୋଳି ।
ମୁହୂର୍ତ୍ତେ ଭକ୍ତି ଡାଳୁ ଡାଳୁ
ହାଲିଆ ହୋଇଯାଏ ସକାଳ ।
ଛଳଛଳ ଛଳନାରେ
ପ୍ରାଣ-ଆତ୍ମା-ସମଗ୍ର ଜୀବନ
ଉହଳ-ବିକଳ ।
କେମିତି ସାମଗ୍ରୀ ସଜାଡିବି
ହୃଦୟର କେଉଁ ଥାଳରେ
କେଉଁ ବାଟରେ ଚାଲି ଚାଲି
ପହଞ୍ଚିବି ତୁମ ନିକଟରେ !!

'ସୃଜନୀ ନିଳୟ', ପୁରୁଷୋତ୍ତମ ନଗର
ଜୟପୁର, କୋରାପୁଟ- ୭୬୪୦୦୧

# ଶ୍ରୀକ୍ଷେତ୍ର ଓ ଶ୍ରୀପୁରୁଷୋତ୍ତମ

**ଡାକ୍ତର ଦୀନବନ୍ଧୁ ମହାରଣା**

ବିଶ୍ୱରେ ରହିଥିବା ହିନ୍ଦୁମାନଙ୍କର ପରମ ପବିତ୍ର କ୍ଷେତ୍ର ମଧ୍ୟରେ ଶ୍ରୀଧାମ ଅଥବା ଶ୍ରୀକ୍ଷେତ୍ର ଅତୀବ ପବିତ୍ର । ଏହା ହିନ୍ଦୁମାନଙ୍କର ସର୍ବଶ୍ରେଷ୍ଠ ୪ଟି ପବିତ୍ର ଧାମ ମଧ୍ୟରୁ ଅନ୍ୟତମ । ଦାରୁରୂପୀ ଜଗନ୍ନାଥ ଏହି ଶ୍ରୀକ୍ଷେତ୍ରର ପୀଠାଧିପତି ରୂପେ ପୂଜା ପାଇ ଏହାର ମାହାତ୍ମ୍ୟକୁ ଦ୍ୱିଗୁଣିତ କରିଅଛନ୍ତି । ଶ୍ରୀକ୍ଷେତ୍ରର ପବିତ୍ରତା ଓ ଶ୍ରେଷ୍ଠତା ସମ୍ବନ୍ଧରେ ବେଦପୁରାଣ ପ୍ରଶଂସାରେ ଶତମୁଖ । ସ୍କନ୍ଦ ପୁରାଣରେ ଶ୍ରୀକ୍ଷେତ୍ରର ଯଥାର୍ଥ ମହିମା ସମ୍ବନ୍ଧରେ ବର୍ଣ୍ଣନା ରହିଛି–

'ପୃଥିବ୍ୟାଂ ଗୋପିତଂସ୍ଥାନ ତବଚାପିସୁଦୁର୍ଲ୍ଲଭମ୍' ଏ କ୍ଷେତ୍ରର ପବିତ୍ରତା ସମ୍ପର୍କରେ ସହଜରେ ଉପଲବ୍ଧ ହୋଇଥାଏ । ତେଣୁ ଏହାକୁ ପରମଗୁହ୍ୟ କ୍ଷେତ୍ର ବୋଲି ମୁନିଋଷିମାନେ ବର୍ଣ୍ଣନା କରିଅଛନ୍ତି । ବିଭିନ୍ନ ପୁରାଣରେ ଏହାକୁ ଅଦ୍ୱିତୀୟ ବୋଲି ପ୍ରକାଶ କରାଯାଇ ମହିମାନ୍ୱିତ କରାଯାଇଅଛି । ସନାତନ ସଂସ୍କୃତିରେ ରହିଥିବା ଭୁବନେଶ୍ୱରର ଚକ୍ରକ୍ଷେତ୍ର, କୋଣାର୍କର ପଦ୍ମକ୍ଷେତ୍ର, ଯାଜପୁରର ଗଦାକ୍ଷେତ୍ରଠାରୁ ଶଙ୍ଖକ୍ଷେତ୍ର ଶ୍ରୀକ୍ଷେତ୍ର ଶ୍ରେଷ୍ଠ। ଜଗତର ନାଥ ଶ୍ରୀଜଗନ୍ନାଥ ଏହିଭଳି ଏକ ଦିବ୍ୟଧାମରେ ଲୀଳାଖେଳା କରିବା ପାଇଁ ଭକ୍ତମାନଙ୍କୁ ଆକର୍ଷିତ କରିଥାନ୍ତି ।

ଶ୍ରୀକ୍ଷେତ୍ରର ମହିମା ଅବର୍ଣ୍ଣନୀୟ । ଏ କ୍ଷେତ୍ରର ଶ୍ରେଷ୍ଠତ୍ୱ ସମ୍ପର୍କରେ ନୃସିଂହ ପୁରାଣରେ ବର୍ଣ୍ଣିତ ଅଛି–

'ପୁରଷୋତ୍ତମ ପରଂକ୍ଷେତ୍ର ନାସ୍ତ୍ୟତ୍ର ପୃଥିବୀ ତଳେ,
ଭୂସ୍ୱର୍ଗମିତି ବିଖ୍ୟାତଂ ଦେବାନାପିଦୁର୍ଲଭଂ ।'

ସର୍ବଶ୍ରେଷ୍ଠ ପୁରାଣ 'ଶିବପୁରାଣ'ରେ ଶ୍ରୀକ୍ଷେତ୍ର ସମ୍ପର୍କରେ ବର୍ଣ୍ଣନା ରହିଛି, ଯଥା– 'ପୁରୁଷୋତ୍ତମାତ ପରଂକ୍ଷେତ୍ରଂ ନାସ୍ତ୍ୟନଦ ଭବମୋଚନ କ୍ଷତ୍ର ସାକ୍ଷାତ ପରଂବ୍ରହ୍ମ ଦାରୁବାଦ ଶରୀର୍ଯ୍ୟଭୂତା ।' ଶ୍ରୀକ୍ଷେତ୍ରର ମହିମା ସମ୍ପର୍କରେ କପିଳ ସଂହିତାରେ ଯେଉଁ ବ୍ୟାଖ୍ୟା ରହିଛି, ତାହାହେଲା–

'ସାକ୍ଷାତ୍ ବୈକୁଣ୍ଠ
ସ୍ୱରୂପଂ ତତ୍‌କ୍ଷେତ୍ର ଶ୍ରୀପୁରୁଷୋତ୍ତମ୍ ।
କ୍ଷେତ୍ରାଣାମଣି କ୍ଷେତ୍ରଂ ତଂ ତୀର୍ଥାନାଦି ଯଦ୍ ବରଂ ।'

ଶ୍ରୀକ୍ଷେତ୍ରର ପରିସୀମା ସମ୍ବନ୍ଧରେ ପୁରାଣ ଶାସ୍ତ୍ରମାନଙ୍କରେ ମଧ୍ୟ ବର୍ଣ୍ଣିତ ହୋଇଛି । ନୀଳାଦ୍ରି ମହୋଦୟରେ କୁହାଯାଇଛି–

'ଋଷିକୁଲ୍ୟା ସମାସାଦ୍ୟ ଯାବତ୍ ବୈତରଣୀ ନଦୀ
ତାବତ୍ କ୍ଷେତ୍ରସ୍ୟ ମାହାତ୍ମ୍ୟ ବର୍ତ୍ତତେ ମୁନି ପୁଙ୍ଗବ ।
ସମୁଦ୍ରୋସ୍ୟାତ୍ତରେ ତୀରେ ମହାନଦ୍ୟାସ୍ତୁ ଦକ୍ଷିଣେ,
ତରମ୍ୟାରଭ୍ୟ ତତ୍‌କ୍ଷେତ୍ର ରାଜମାନଂ ସୁପାବନମ୍ ।।'





ଶ୍ରୀକ୍ଷେତ୍ର ହେଉଛି ଦକ୍ଷିଣାବର୍ତ୍ତକ ଶଙ୍ଖ ସଦୃଶ । ଜଗନ୍ନାଥ ପୁରାଣରେ ଉଲ୍ଲେଖ ରହିଛି–

'ଦକ୍ଷିଣାବର୍ତ୍ତକ ଶଙ୍ଖ ଯେଉଁ ପରକାର
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ତେମନ୍ତ ପ୍ରକାର ।'

ତ୍ରିକୋଣାକୃତି ଦକ୍ଷିଣାବର୍ତ୍ତକ ଶଙ୍ଖତୁଲ୍ୟ ଶଙ୍ଖକ୍ଷେତ୍ର (ଶ୍ରୀକ୍ଷେତ୍ର)ର ମସ୍ତକ ଅର୍ଥାତ୍ ପଶ୍ଚିମ ସୀମାନ୍ତରେ ଶ୍ରୀଲୋକନାଥ, ଅଗ୍ରଭାଗରେ ଅର୍ଥାତ୍ ପୂର୍ବ ସୀମାରେ ଶ୍ରୀବିଲେଶ୍ୱର ମହାଦେବ, ମଧ୍ୟଭାଗରେ ମାଉସୀମା ଏବଂ ଶଙ୍ଖର କେନ୍ଦ୍ରସ୍ଥଳରେ ରୋହିଣୀକୁଣ୍ଡ ଓ କଳ୍ପବୃକ୍ଷ ବିରାଜମାନ । ପ୍ରଭୁ ଶ୍ରୀଜଗନ୍ନାଥ ଶଙ୍ଖର ନାଭିପ୍ରଦେଶରେ ଲୀଳାଖେଳା ସଂରଚନାପୂର୍ବକ ଭକ୍ତଙ୍କୁ ହାତଠାରି ଡାକୁଥିବା ପ୍ରତୀୟମାନ ହୁଏ ।

ଶ୍ରୀକ୍ଷେତ୍ର ପରି ଏକ ଦିବ୍ୟଧାମର ଅଧିପତି ଥିଲେ ଶ୍ରୀପୁରୁଷୋତ୍ତମ । କେଉଁ ଅନାଦି କାଳରୁ ଦିବ୍ୟଲୀଳା ସଂରଚନାପୂର୍ବକ କୋଟି କୋଟି ଦେବତାଙ୍କ ମଉଡମଣି ନାମର ସାର୍ଥକତାକୁ ଜନମୁଖେ ପ୍ରଚାର କରାଇଅଛନ୍ତି । ବେଦପୁରାଣରେ ଶ୍ରୀଜଗନ୍ନାଥ ହେଉଛନ୍ତି ବ୍ରହ୍ମଦାରୁ । ସୃଷ୍ଟି ସ୍ଥିତି ଲୟର ଉର୍ଦ୍ଧ୍ୱରେ ବିରାଜମାନ କରିଥିବା ବିଶ୍ୱବିଧାତା ଯାହାଙ୍କ ଇଙ୍ଗିତରେ ସଚରାଚର ବିଶ୍ୱବ୍ରହ୍ମାଣ୍ଡ ଆତଯାତ । ଋଗ୍‌ବେଦରେ ତାଙ୍କୁ ଅମୃତ ତତ୍ତ୍ୱର ନିୟାମକ ଭାବେ ବର୍ଣ୍ଣନା କରାଯାଇ ମହିମାନ୍ୱିତ କରାଯାଇଛି । ସେ ନିଖିଳ ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ତ୍ରାଣକର୍ତ୍ତା । ହସ୍ତପଦ ହୀନ ଦେବତା ହୋଇଥିଲେ ହେଁ, ତତ୍ତ୍ୱତଃ ସେ ସର୍ବଦ୍ରଷ୍ଟା, ସର୍ବଶ୍ରୋତା, ସର୍ବଜ୍ଞ ଓ ସର୍ବାନ୍ତର୍ଯ୍ୟାମୀ ବ୍ରହ୍ମପୁରୁଷ । ଭଗବତ ଗୀତାର ପୁରୁଷୋତ୍ତମ ଯୋଗର ବ୍ୟାଖ୍ୟା ବେଳେ ଭଗବାନ ଶ୍ରୀକୃଷ୍ଣ ସଖା ଅର୍ଜୁନଙ୍କୁ କହିଥିଲେ–

'ଯସ୍ମିନକ୍ଷର ମତୀତୋଦ୍ଧହଂକ୍ଷରାଦପି ଚୋତ୍ତମଃ
ଅତୋସ୍ମିନ୍ ଲୋକ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।'

ବେଦ ଉପନିଷଦ ସମୂହରେ ବର୍ଣ୍ଣିତ ତଥ୍ୟକୁ ଆଧାର କରି ପୁରୁଷୋତ୍ତମ କ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥଙ୍କୁ ଶ୍ରେଷ୍ଠସ୍ଥାନ ପ୍ରଦାନ ପୂର୍ବକ ପୁରୁଷ ଶ୍ରେଷ୍ଠ ଭାବେ ଅଭିହିତ କରାଯାଇଛି । ଭଗବତ ଗୀତାର ଦଶମ ଅଧ୍ୟାୟ ୧୫ଶ୍ଳୋକରେ ପୁରୁଷୋତ୍ତମ ବୋଲି ବର୍ଣ୍ଣିତ ଥିବା ଜଣାଯାଏ–

'ସ୍ୱୟମେବାତ୍ମନାତ୍ମାନଂ ନେତଥତ୍ୱଂ ପୁରୁଷୋତ୍ତମ
ଭୂତ ଭାବନା–ଭୂତେଶ ଦେବଦେବ ଜଗତପ୍ତେ ॥'

ଶ୍ରୀଧାମରେ ଶ୍ରୀପୁରୁଷୋତ୍ତମ ହିଁ ମୋକ୍ଷ ବା କୈବଲ୍ୟ ପ୍ରଦାୟକ । ଭାଗବତରେ ବର୍ଣ୍ଣନା ରହିଛି–

'ନମୋଦ୍ଧକିଞ୍ଚନବରାୟ ନିବୃତ୍ତଗୁଣ ତ୍ରୟେ
ଆତ୍ମାରାମାୟ ରାମାୟ କୈବଲ୍ୟପତୟେ ନମଃ ॥'

ତେଣୁ ଯୁଗେ ଯୁଗେ ଶ୍ରୀକ୍ଷେତ୍ର ବହୁ ସାଧୁ, ସନ୍ଥ, ମୁନିଋଷି ଓ ଯୋଗୀଶ୍ରେଷ୍ଠଙ୍କୁ ଆକର୍ଷିତ କରିବାକୁ ସକ୍ଷମ ହୋଇଛି । ତେଣୁ ଶ୍ରୀକ୍ଷେତ୍ର ହେଉଛି ସିଦ୍ଧ ଆଉ ବୁଦ୍ଧଙ୍କ ମିଳନ ଭୂମି । ତପସ୍ୱୀଗଣ ଶ୍ରୀକ୍ଷେତ୍ରକୁ ଆଗମନ କରି ସଫଳ ମନୋରଥ ହୋଇଛନ୍ତି । ଏହି ପବିତ୍ର ଧାମରେ ଅଦ୍ୱୈତବାଦୀ ଶଙ୍କରାଚାର୍ଯ୍ୟ, ଶ୍ରୀଚୈତନ୍ୟ, ସନ୍ଥ ନାନକ, ଭକ୍ତ ସାଲବେଗ, ସଦ୍‌ଗୁରୁ ନିଗମାନନ୍ଦ, ସନ୍ଥ ତୁଳସୀଦାସ, ଭକ୍ତକବି ଜୟଦେବଙ୍କ ପରି ବହୁ ଅଲୌକିକ ସାଧୁସନ୍ଥ ଅବସ୍ଥାନପୂର୍ବକ ସାଧନ ଭଜନ କରି ବିଶ୍ୱବିଖ୍ୟାତ ହୋଇପାରିଛନ୍ତି ।

ଶ୍ରୀକ୍ଷେତ୍ରର ମନୋରମ ଓ ପବିତ୍ର ବାତାବରଣ ଭକ୍ତ ଓ ଭଗବାନଙ୍କୁ ଏକାକାର କରିବାର ଏକ ମହାନ୍ ପୀଠ । ଜଗନ୍ନାଥଙ୍କ ପରମ ଭକ୍ତ ଶ୍ରୀଜୟଦେବ ଦିବ୍ୟନୀଳଧାମ ଶ୍ରୀକ୍ଷେତ୍ରରେ ଅବସ୍ଥାନପୂର୍ବକ ଗୋବିନ୍ଦଙ୍କ ପ୍ରିୟ ଗୀତ ଗୀତଗୋବିନ୍ଦ ରଚନା କରିଥିଲେ । ତେଣୁ ଜଗନ୍ନାଥ ଓ ଜୟଦେବଙ୍କ ଅଭେଦ୍ୟ ସମ୍ପର୍କ ଜନମାନସରେ ବହୁଳ ପ୍ରଚାରିତ । ଶ୍ରୀକ୍ଷେତ୍ର, ଶ୍ରୀଜଗନ୍ନାଥ ଓ ଶ୍ରୀଜୟଦେବ ଅଙ୍ଗାଙ୍ଗୀଭାବେ ଜଡିତ । ଶ୍ରୀପୁରୁଷୋତ୍ତମଙ୍କ ଦିବ୍ୟଲୀଳାର ମହାନ୍ ଭୂମି ହେଉଛି ଶ୍ରୀକ୍ଷେତ୍ର । ତେଣୁ ଯୁଗେ ଯୁଗେ ଭକ୍ତମାନେ ଏହି ପୀଠକୁ ସ୍ୱତଃ ଆକର୍ଷିତ ହୋଇଆସିଥାନ୍ତି । ଯଥାର୍ଥରେ କହିଲେ ଶ୍ରୀକ୍ଷେତ୍ର ହେଉଛି ପରମ ପାବନ ପୀଠ, ଯାହାକି ବିଶ୍ୱର ଯେକୌଣସି ଧାର୍ମିକ ସ୍ଥଳୀଠାରୁ ଆହୁରି ପବିତ୍ର ଆଉ ଶ୍ରେଷ୍ଠ ।

୧୧୧, ମ୍ୟୁନିସିପାଲିଟି ମାର୍କେଟ୍,
ଓ.ଏମ୍.ପି.ଛକ, କଟକ



# ଭକ୍ତକବି ତୁଳସୀ ଦାସ ଓ ଶ୍ରୀଜଗନ୍ନାଥ ଚେତନା

ଡକ୍ଟର ତ୍ରିନାଥ ପଟ୍ଟନାୟକ



ଭାରତୀୟ କାବ୍ୟ କବିତା ସାହିତ୍ୟ ଜଗତର ସର୍ବଶ୍ରେଷ୍ଠ କବି ତୁଳସୀ ଦାସ ଏକାନ୍ତ ରାମଭକ୍ତ । ତଥାପି ସେ ଶ୍ରୀଜଗନ୍ନାଥ ଚିନ୍ତା ଚେତନା ମଧ୍ୟରେ ଅନୁପ୍ରାଣିତ ହୋଇଛନ୍ତି । ତାଙ୍କ ରଚିତ 'ରାମ ଚରିତ ମାନସ' ଗ୍ରନ୍ଥ ନିମନ୍ତେ ସେ ସାରା ସଂସାରରେ ସୁପରିଚିତ । ବିଦ୍ୱାନମାନେ ମତ ପ୍ରକାଶ କରନ୍ତି ଯେ, ତୁଳସୀ ଦାସ ସମ୍ବତ ୧୫୮୯ରେ ଉତ୍ତର ପ୍ରଦେଶର ରାଜପୁରଠାରେ ଜନ୍ମଲାଭ କରିଥିଲେ । କବି ନିଜ ବିଷୟରେ କହିଛନ୍ତି–

ମାତୁ ପିତା ଜଗଜାୟ ତେଜ୍ୟା ବିଧି ହୁଁ ଲଖିକଛୁ ଲାଭ ଭଲାଇ ।
(କବିତାବଳୀ)

ଜନକ ଜନନୀ ତେଜ୍ୟା ଜନମୀ, କରମ ବିନୁ ବିଧିହୁ ସୃଜ୍ୟୋ ଅବଡେରେ ।
ତନୁ ଜେନ୍ୟା କୁଟିଳ କୀଟ ଜ୍ୟୋଂ ତେଜ୍ୟା ମାତୁ ପିତା ହୁଂ ॥
(ବିନୟ ପତ୍ରିକା)

ସେ ଅଭୁକ୍ତମୂଳ ନକ୍ଷତ୍ରରେ ଜନ୍ମ ହୋଇଥିଲେ ବୋଲି ତାଙ୍କ ପିତା ତାଙ୍କୁ ତ୍ୟାଗ କରିଥିଲେ । ଜଣେ ସାଧୁ ନରହରି ଦାସ ଶିଶୁ ତୁଳସୀଙ୍କୁ ଲାଳନ ପାଳନ କରିଥିଲେ । ଶେଷରେ ସେହି ସାଧୁ ହିଁ ତୁଳସୀଙ୍କର ଗୁରୁ ହୋଇଥିଲେ ।

ସନ୍ଥ ତୁଳସୀ ଦାସ ୧୬୮୦ ସମ୍ବତରେ କାଶୀଠାରେ ଇହଲୀଳା ତ୍ୟାଗ କରିଥିଲେ । ସେହି ସ୍ଥାନ ଏବେ ତୁଳସୀଘାଟ ରୂପେ ପ୍ରସିଦ୍ଧିଲାଭ କରିଅଛି ।

ସମ୍ବତ ସୋଳହ ସୌଅସୀ, ଅସି ଗଙ୍ଗକେ ତୀର
ଶ୍ରାବଣ ଶୁକ୍ଳା ସପ୍ତମୀ, ତୁଳସୀ ତଜ୍ୟୌ ଶରୀର ॥

ତୁଳସୀ ଦାସ ଜୀବନ କାଳରେ ଶ୍ରୀଜଗନ୍ନାଥ, ରାମେଶ୍ୱର, ବଦରିନାଥ, ମଥୁରା, ବୃନ୍ଦାବନ, ପଞ୍ଚବଟୀ, ଅଯୋଧ୍ୟା ଆଦି ତୀର୍ଥାଟନ ପରେ କାଶୀର ଗଙ୍ଗା କୂଳରେ ନିବାସ କରିଥିଲେ । ମୀରାବାଈ, ରହିମ ଆଦି ତତ୍‌କାଳୀନ କବି ଓ ଭକ୍ତମାନଙ୍କ ସହିତ ତାଙ୍କର ମିତ୍ରତା ଥିଲା । ଆକବର ଭଳି ମହାନ ବାଦ୍‌ଶାହ ମଧ୍ୟ ତୁଳସୀଙ୍କୁ ସ୍ନେହ କରୁଥିଲେ ।

ତୁଳସୀ ଦାସଙ୍କର ଶ୍ରୀଜଗନ୍ନାଥଙ୍କ ସହିତ ନିବିଡ ସମ୍ପର୍କ ଥିଲା । ଥରେ ସେ ବାଲ୍ମୀକି ରାମାୟଣ ପାଠ କଲାବେଳେ ପଢିଲେ– ''ଆରାଧ୍ୟାୟ ଜଗନ୍ନାଥଂ ଇକ୍ଷ୍ୱାକୁ କୁଳ ଦୈବତଂ'' । ଇକ୍ଷ୍ୱାକୁ ବଂଶର କୁଳଦେବତା ଜଗନ୍ନାଥ ଜାଣିଲା ପରେ ରାମଭକ୍ତ





ତୁଳସୀ ଦାସଙ୍କ ମନରେ ଜଗନ୍ନାଥ ଦର୍ଶନ ନିମନ୍ତେ ଆଗ୍ରହ ସ୍ୱତଃ ଜାତ ହେଲା । ସେ ବିଭିନ୍ନ ସ୍ଥାନ ଭ୍ରମି ଭ୍ରମି ଶେଷରେ ଆସି ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । ଶ୍ରୀଜଗନ୍ନାଥ ମନ୍ଦିର, ଲୋକ ଗହଳି ଦେଖି ଆତ୍ମବିଭୋର ହୋଇଉଠିଲେ । ମାତ୍ର ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଦୁଃଖ ଓ ନୈରାଶ୍ୟରେ ଭାଙ୍ଗି ପଡିଲେ । ଏ ହସ୍ତପାଦ ହୀନ ଚକାନୟନ ବିଶାଳ ଦାରୁମୂର୍ତ୍ତି ସତରେ କଣ ନୟନାଭିରାମ ଶ୍ୟାମଳ ଶାନ୍ତମୂର୍ତ୍ତି ହୋଇପାରନ୍ତି ? ସେ କାନ୍ଦି ପକାଇଲେ । ତାଙ୍କର ପୁରୀ ଯାତ୍ରା ବୃଥା ହୋଇଗଲା ବୋଲି ଅନୁଭବ କଲେ । ଦେଉଳ ଛାଡି ଅନତି ଦୂରରେ ଥିବା ତୁଳସୀ ଚଉରାକୁ ଫେରି ଆସି ରାତ୍ରି ଯାପନ କଲେ । ସେଇ ରାତ୍ରିରେ ସେ ନିଜର ଆରାଧ୍ୟ ଦେବତା ରାମଚନ୍ଦ୍ରଙ୍କର ଦର୍ଶନ ପାଇଲେ । ତୁଳସୀଙ୍କର ମନର ସନ୍ଦେହକୁ ମୋଚନ କରିବାକୁ ଯାଇ ପ୍ରଭୁ କହିଲେ– ''ତୁମେ ଜାଣି ପାରିଲ ନାହିଁ । ମୁଁ ତୁମର ସେହି ଆରାଧ୍ୟ ଦେବତା । ଏଠାରେ ଜଗନ୍ନାଥ ରୂପେ ଅବସ୍ଥାନ କରୁଛି । ଭକ୍ତମାନଙ୍କର ଭକ୍ତିରସ ଆସ୍ୱାଦନ ନିମନ୍ତେ ନିର୍ଗୁଣ ରୂପ ଧାରଣ କରିଛି ।''

ସେ ତା'ପରଦିନ ସକାଳୁ ସକାଳୁ ଶ୍ରୀମନ୍ଦିରରେ ପହଞ୍ଚିଗଲେ । ରତ୍ନସିଂହାସନ ଉପରେ ଦେଖିଲେ– ଜଗନ୍ନାଥ– ସୁଭଦ୍ରା– ବଳଦେବ ତାଙ୍କ ପାଇଁ ଶ୍ରୀରାମ–ସୀତା–ଲକ୍ଷ୍ମଣ ରୂପରେ ବସିଛନ୍ତି । ତୁଳସୀ ଦାସ ବିଭୋର ହୋଇ ଗାଇବାକୁ ଲାଗିଲେ–

ପୁରୁଷୋତ୍ତମ ପ୍ରଭୁ ! ତ୍ରିଭୁବନ ଦେବା
ମଣିମା ଜୟ ଜଗନ୍ନାଥ ଜଗଦେବା ॥ ଘୋଷା ॥
ଜୟ ଜୟ ଜଗନ୍ନାଥ ନିଖିଳ ବିହାରୀ
ସାଧୁ ସନ୍ଥଙ୍କ ଜନହିତ କାରୀ ।
ଜୟ ଜୟ ଜଗନ୍ନାଥ ଜଗଦେବା
ଶିବ ବିରଞ୍ଚି ନାରଦ କରେ ସେବା ।
ପୁଷ୍ପାଞ୍ଜଳି ପ୍ରଭୁ ! ତ୍ରିଭୁବନ ପରଶେ
ନରନାରୀ ଆନନ୍ଦେ ସୁଖି ବିଳାସେ ।
ସୁର ନର ମୁନିଜନ କରନ୍ତି ଆରତି
ଛଡରସ ବ୍ୟଞ୍ଜନ ନାନା ଜାତି ।
ଚାମର ଛତ୍ର ଶିରପର ଶୋହେ
ଜଗନ୍ନାଥ ଦେବ ! ସୁଖ ପହୁଡେ ।
ଜୟ ଜୟ ଜଗନ୍ନାଥ ଜଗଦେବା
ଶିବ ବିରଞ୍ଚି ନାରଦ କରେ ସେବା ।

ଏବେ ମଧ୍ୟ ପ୍ରତିଦିନ ବଡସିଂହାର ବେଳେ ପ୍ରଭୁ ଜଗନ୍ନାଥଙ୍କ ଶ୍ରୀଛାମୁରେ ତୁଳସୀ ଦାସଙ୍କ ପ୍ରସିଦ୍ଧ ପୀଠ ବଡଛତା ମଠର ସନ୍ଥମାନେ ଗିନି, ଖୋଳର ତାଳେ ତାଳେ ଝଙ୍କାର ତୋଳି ଶ୍ରୀଜୀଉଙ୍କ ପହୁଡ ମଣୋହି କରିଥାନ୍ତି ।

ତୁଳସୀ ଦାସ, ଜଗନ୍ନାଥଙ୍କ ସ୍ୱରୂପରେ କୋଦଣ୍ଡଧାରୀ ରାମଚନ୍ଦ୍ରଙ୍କୁ ଦର୍ଶନ କରିଥିଲେ । ଫଳରେ ତାରି ପ୍ରଭାବ ରାମ ସମ୍ପ୍ରଦାୟ ସାଧୁ ରାମାନନ୍ଦଙ୍କ ଉପରେ ପଡିଥିଲା । ସେହି ପ୍ରଭାବର ସ୍ମୃତି ସ୍ୱରୂପ ଏବେ ମଧ୍ୟ ରାମାନୁଜପନ୍ଥୀମାନେ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହ ମଧ୍ୟରେ ଶ୍ରୀରାମଙ୍କ ଉପସ୍ଥିତିକୁ ଅନୁଭବ କରୁଛନ୍ତି–

ଯୋହି ରାମ ସୋହି ଜଗଦିଶା
ଦିନହି କେ ଅନନ୍ତ ପବତ ଶେଷା
ଶେଷ ଭୟେ ଲଛମନ ଅନୁଚାରୀ
ଭଦ୍ରା ସୋ ସିୟ ରାଜକୁମାରୀ
ବନ୍ଦଇ ଖଦା ବ୍ରହ୍ମା ଅବିନାଶି
ଜୟ ହନୁମାନ ରାମ ପଦଦାସୀ ॥

ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବମାନ୍ୟ ଦେବତା । ପରମ ରାମଭକ୍ତ ଉତ୍କଳୀୟ କବି ବଳରାମ ଦାସ ମଧ୍ୟ ତୁଳସୀ ଦାସଙ୍କ ଭଳି କହିଛନ୍ତି, ଯେ ରାମ ସିଏ ଜଗନ୍ନାଥ ।

ଅପୂର୍ବ ମୂରତି ଯେ ଦେଖିଲେ ରଘୁସାଇଁ,
ଶ୍ରୀଜଗନ୍ନାଥ ମୂରତି ପାଶେ ଉଭା ହୋଇ ।
ବଳଭଦ୍ର ପାଖରେ ଲକ୍ଷ୍ମଣ ଉଭା ହେଲେ,
ଜାନକୀ, ସୁଭଦ୍ରା ଦେବୀ ଛାମୁରେ ହୋଇଲେ ।
ଶ୍ରୀ ରଘୁନାଥ ବୋଲନ୍ତି ଜଗନ୍ନାଥ ମୁହିଁ,
ସୀତା ସୁଭଦ୍ରା ଲକ୍ଷ୍ମଣ ବଳଭଦ୍ର ହୋଇ ।

ଶ୍ରୀଜଗନ୍ନାଥଙ୍କର ପରମବ୍ରହ୍ମ ସ୍ୱରୂପକୁ ସଂଦର୍ଶନ କରି ତୁଳସୀ ଦାସ ଉପନିଷଦର ବାଣୀକୁ ସମର୍ଥନ ପୂର୍ବକ 'ଶ୍ରୀରାମ ଚରିତ ମାନସ'ରେ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ବର୍ଣ୍ଣନା କରିଛନ୍ତି–

ବିନୁପଦ ଚଲଇ ସୁନଇ ବିନୁ କାନା
କରବିନୁ କରମ କରଇ ବିଧି ନାନା ।
ଆନନ ରହିତ ସକଳ ରସ ଭୋଗୀ,
ବିନୁ ବାନି ବକତା ବଡ ଯୋଗୀ ।





ତନ ବିନୁ ପରସ ନୟନ ବିନୁ ଦେଖା,

ଗ୍ରହଇ ଘ୍ରାନ ବିନୁ ବାସ ଆସେସା ।

(ବାଳକାଣ୍ଡ)

ସେହି ପରମବ୍ରହ୍ମ ବିନା ପାଦରେ ଚାଲିପାରନ୍ତି । କର୍ଣ୍ଣ ବିନା ଶୁଣି ପାରନ୍ତି । ହସ୍ତ ବିନା ସମସ୍ତ କାର୍ଯ୍ୟ କରିପାରନ୍ତି । ମୁଖ ବିନା ସମସ୍ତ ରସ ଆସ୍ୱାଦନ କରିପାରନ୍ତି । ବାଣୀ ବିନା ଅର୍ଥାତ କଥା ନକହି ସେ ବଡ ଯୋଗ୍ୟ ବକ୍ତା ଅଟନ୍ତି । ଘ୍ରାଣେନ୍ଦ୍ରିୟ ବିନା ସେ ସମସ୍ତ ଗନ୍ଧ ଆଘ୍ରାଣ କରିପାରନ୍ତି ।

ଭକ୍ତ ଶିରୋମଣି ତୁଳସୀ ଦାସ ଭାରତୀୟ ଭକ୍ତ ମଣ୍ଡଳୀରେ ସର୍ବଶ୍ରେଷ୍ଠ ତଥା ପରମ ଭଗବତ ପ୍ରେମୀ ଅଟନ୍ତି । ପ୍ରଭୁଙ୍କର କୃପାରୁ ତାଙ୍କର ଉଜୁଡା ଜୀବନ ସଜାଡି ହୋଇଯାଇଥିଲା । ଶ୍ରୀରାମଙ୍କ କୃପାରୁ ସେ ସର୍ବଶ୍ରେଷ୍ଠ କବିରୂପେ ପରିଚିତ ହୋଇପାରିଛନ୍ତି ।

ଚାଣକ୍ୟଙ୍କ ନୀତିଶାସ୍ତ୍ର ଭଳି ତୁଳସୀଙ୍କ ରଚନାରେ ଅସଂଖ୍ୟ ନୀତି ଉପଦେଶ ପରିପୂର୍ଣ୍ଣ ହୋଇରହିଛି । ସେସବୁ ନୀତିବାଣୀ ତୁଳସୀ ନିଜ ଅନୁଭୂତିରେ ପରଖି ଜନସାଧାରଣଙ୍କ ହିତ ନିମନ୍ତେ ପରିବେଷଣ କରିଛନ୍ତି ।

ଜ୍ଞାନୀମାରେ ଜ୍ଞାନସୋ, ବ୍ୟାଧ ମାରେ ତୀର

ସଦ୍‌ଗୁରୁ ମାରେ ଶବ୍ଦସେ, ଶାଲେ ସକଲ୍ ଶରୀର ।

ବ୍ୟାଧ ଯେପରି ତୀର ମାରି ପକ୍ଷୀ ଶିକାର କରେ, ଜ୍ଞାନୀ ସେହିପରି ଜ୍ଞାନ ସଳାକା ଦ୍ୱାରା ମନର ମଳିନତା ଦୂର କରେ ଏବଂ ସଦ୍‌ଗୁରୁ ମହତ ଉପଦେଶ ଦ୍ୱାରା ମନକୁ ପାପବୃତ୍ତିମାନଙ୍କ କବଳରୁ ଫେରାଇ ଆଣି ସଂଯମ ଶିକ୍ଷା ଦେଇ ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରି ରଖେ ।

ବଡା ବଡା ସବ୍ କଇ କଓ୍ୱା, ବଡମେ ତାଲ୍ ଔର ଖଜୁର୍

ବୈଠ୍‌ନୋକୋ ଛାୟା ନାହିଁ ମିଲତୋ ଫଲ୍ ବଡିଦୂର ॥

ଏ ସଂସାରରେ ଅନେକ ବଡଲୋକ ବୋଲି ବଡେଇ କରନ୍ତି । କିନ୍ତୁ ପ୍ରକୃତରେ କଣ ସେମାନେ ବଡ ? ସେମାନେ ତାଳ ଖଜୁରୀ ଗଛ ପରି ବଡ । ବସିବାକୁ ତ ଟିକିଏ ଛାଇ ମିଳେ ନାହିଁ, ଫଳ ଆଶା କରିବା ଦୂରର କଥା ।

ତୁଳସୀ ଦାସ ଜନସମାଜକୁ ସତର୍କ କରାଇ କହିଛନ୍ତି– ଯେ ହରିକଥା ନ ଶୁଣେ ତା କାନ ଦୁଇଟି ସର୍ପର ବୀଳପରି ଅନିଷ୍ଟ କାରକ ଅଟେ । ଯାହାର ଆଖି ଈଶ୍ୱର ଦର୍ଶନ ନକଲା ସେ ଆଖି ଦୁଇଟି ମୟୂର ଚନ୍ଦ୍ରିକା ପରି ନିଷ୍ଫଳ ।

ଯାହାର ଶିର ଭଗବାନଙ୍କ ଚରଣ ତଳେ ବା ପାଦପଦ୍ମରେ ନ ଲୋଟିଲା, ସେ ମୁଣ୍ଡଟି ଲାଉତୁମ୍ବା ପରି ନିରର୍ଥକ ।

ଯାହା ହୃଦୟରେ ହରି ଭକ୍ତି ନାହିଁ ତାହାର ଦେହ ଶବ ସଙ୍ଗେ ସମାନ । ଯାହାର ଜିହ୍ୱା ରାମନାମ ଗୁଣଗାନ ନକଲା ତାହାର ଜିହ୍ୱା ଭେକ(ବେଙ୍ଗ) ଜିହ୍ୱାପରି ତୁଚ୍ଛ । ହରି ଚରିତ ଶୁଣି ଯାହାର ଆନନ୍ଦ ନ ଜନ୍ମେ ତା ଛାତି ବଜ୍ରପରି କଠୋର ଅଟେ ।

ସମ୍ପାଦକ, ପୁରାଣ ପତ୍ରିକା
ନିଆଳୀ– ୭୫୪୦୦୪, ଜି–କଟକ,





# ଜଗନ୍ନାଥ ବଲ୍ଲଭ ମଠ ଅନ୍ତର୍ଭୁକ୍ତ ମନ୍ଦିର ଓ ଦେବାଦେବୀ

ଡକ୍ଟର ମନସା ଶ୍ରୀଚନ୍ଦନ



ପବିତ୍ର ଉତ୍କଳ ଭୂମିର ଶିରୋମଣି କ୍ଷେତ୍ର ଶ୍ରୀକ୍ଷେତ୍ରରେ କେଉଁ ପ୍ରାଚୀନ କାଳରୁ ଅନେକ ସାଧୁ, ସନ୍ଥ, ସନ୍ନ୍ୟାସୀ, ଦାର୍ଶନିକ ନିଜ ନିଜର ଧର୍ମର ପରିପ୍ରଚାର ନିମନ୍ତେ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିଥିଲେ । ସେହି ଧର୍ମାବଲମ୍ବୀମାନେ ଶିଷ୍ୟଙ୍କର ଶ୍ରଦ୍ଧା ଲାଭ କରି ଯେଉଁ ସ୍ଥାନରେ ରହୁଥିଲେ ତାହାକୁ 'ମଠ' କୁହାଯାଏ । 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ଏହାର ଅନ୍ୟ ଏକ ଅର୍ଥ ହେଉଛି ଦେବସେବା ନିମନ୍ତେ ସ୍ଥାପିତ ଓ ଜମିବାଡି ଖଞ୍ଜାଥିବା ସ୍ଥାନକୁ ବୁଝାଏ । ସମାଲୋଚକଙ୍କ ମତରେ ଭାରତବର୍ଷରେ ସାତ ଶହ ବାବନ ମଠ (୭୫୨) ମଧ୍ୟରୁ ଏକ ଶହ ଏକାଅଶୀ (୧୮୧) ଏବେ ବି ପୁରୀରେ ଚାଲୁଛି । କିନ୍ତୁ ଅନେକ ଏହାକୁ ଗ୍ରହଣ ନକରି ପୁରୀରେ ସାତ ସାହିରେ ବାବନ ମଠକୁ ନେଇ ଏହାର ସଂଖ୍ୟା ଶତାଧିକରେ ପହଞ୍ଚିଛି ବୋଲି କୁହାଯାଏ । ଏହି ମଠଗୁଡ଼ିକ ଶୈବ, ଶାକ୍ତ, ବୈଷ୍ଣବ, ଇସ୍‌ଲାମ୍, ଶିଖ୍, ବୌଦ୍ଧ ଆଦି ଧର୍ମାବଲମ୍ବୀମାନଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରିଛି । ଭିନ୍ନ ଭିନ୍ନ ଧର୍ମଭାବର ମଠଗୁଡ଼ିକର ସଂସ୍କୃତିକୁ ଦେଖିଲେ ସେମାନଙ୍କର ମନ୍ତ୍ର ଜପ, ଚିତା ନାମରେ ଭିନ୍ନତା ଥିଲେ ହେଁ ସାଧକମାନଙ୍କର ଆଧ୍ୟାତ୍ମିକ ଏକତା ଓ ଅଭିନ୍ନତା ଦେଖିବାକୁ ମିଳେ । ଏସବୁକୁ ନେଇ ଭିନ୍ନ ଭିନ୍ନ ସମ୍ପ୍ରଦାୟ ସୃଷ୍ଟି ହୋଇଥିଲା ।

ସେହି ସମ୍ପ୍ରଦାୟ ମଧ୍ୟରୁ ବୈଷ୍ଣବ ଧର୍ମାବଲମ୍ବୀ ବିଷ୍ଣୁସ୍ୱାମୀ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଶ୍ରୀଜଗନ୍ନାଥ ବଲ୍ଲଭ ମଠ ଅନ୍ୟତମ । ଯାହା ସପ୍ତଦଶ ଶତାବ୍ଦୀରେ ବିଷ୍ଣୁସ୍ୱାମୀ ସମ୍ପ୍ରଦାୟର ବାବା ବ୍ରହ୍ମଚାରୀଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରିଛି । ଏହାର ନାମକରଣ ସମ୍ପର୍କରେ ଜଣାଯାଏ ଯେ, ଶ୍ରୀଜଗନ୍ନାଥଙ୍କର ଏହା ପ୍ରିୟ ତଥା ଆନନ୍ଦ ପ୍ରଦାନ କରୁଥିବାରୁ ଏହାର ନାମ ଜଗନ୍ନାଥ ବଲ୍ଲଭ ମଠ ରଖାଯାଇଛି । ଚୈତନ୍ୟଙ୍କ ପୂର୍ବବର୍ତ୍ତୀ ସମୟରେ ପରମଭକ୍ତ ରାୟ ରାମାନନ୍ଦ ତାଙ୍କର ବିଖ୍ୟାତ ନାଟକ 'ଜଗନ୍ନାଥ ବଲ୍ଲଭ' ଏହିଠାରେ ରହି ରଚନା କରିଥିବାରୁ ଏହାର ନାମ ଜଗନ୍ନାଥ ବଲ୍ଲଭ ମଠ ଦିଆଯାଇପାରେ ବୋଲି ଆଲୋଚକମାନେ ମତ ଦିଅନ୍ତି । ଶ୍ରୀଜଗନ୍ନାଥ ମନ୍ଦିର ରୀତିନୀତି, ପରମ୍ପରା, ସଂସ୍କୃତି ସହ ଏହି ମଠର ପ୍ରତ୍ୟକ୍ଷ ସମ୍ପର୍କ ରହିଛି ।

କାଳର ଅନନ୍ତ ଗର୍ଭରେ କେତେକେତେ ଶତାବ୍ଦୀ ଲୁଚିଗଲାଣି ତାହା ସହ ଲୁଚିଛି କେତେ କାହାଣୀ ତାହାର ଇୟତ୍ତା ନାହିଁ । ହେଲେ ସେହି ସମୟର ଅନେକ କାହାଣୀ ଆଜି ବି କିମ୍ବଦନ୍ତୀ





ପାଲଟି ସାହିତ୍ୟ ପୃଷ୍ଠାରେ ଅବା ମଠ, ମନ୍ଦିରର ଗାତ୍ରରେ ସଦୃଶ୍ୟ ହେଉଛି ଜଗନ୍ନାଥ ବଲ୍ଲଭ ମଠର ପରିସର ଏବଂ ପରିଚାଳନାରେ ଚାଲୁଥିବା ସମସ୍ତ ମନ୍ଦିରରେ ଥିବା ଦେବାଦେବୀଙ୍କ ପଛରେ ଅନେକ କିମ୍ବଦନ୍ତୀ ରହିଛି । ଯେଉଁ କିମ୍ବଦନ୍ତୀ ଶୁଣିଲେ ଭକ୍ତର ଆଧାତ୍ମିକ ବିଶ୍ୱାସ ଆହୁରି ଦୃଢ଼ୀଭୂତ ହୁଏ ।

ଶ୍ରୀଜଗନ୍ନାଥ ବଲ୍ଲଭ ମଠର ପ୍ରବେଶ ଦ୍ୱାରରେ ଉପରକୁ ଚାହିଁଲେ ବିଷ୍ଣୁଙ୍କର ଅନନ୍ତ ଶୟନର ସୁନ୍ଦର କାରୁକାର୍ଯ୍ୟ ଖଚିତ ମୂର୍ତ୍ତି ଦେଖିବାକୁ ମିଳେ । ଯାହା ବୈଷ୍ଣବ ଧର୍ମର ଦ୍ୟୋତକ ବହନ କରେ । ମଠର ପୂର୍ବାଭିମୁଖରେ ମୁଖ୍ୟ ମନ୍ଦିରର ଡାହାଣ ପଟେ ଶଙ୍ଖ, ଚକ୍ର, ବଂଶୀଧାରୀ ଛନ୍ଦାୟିତ କୃଷ୍ଣ-ବିଷ୍ଣୁଙ୍କର ସମ୍ମିଶ୍ରଣ ଶ୍ରୀଗୋପାଳଜୀଉଙ୍କ ମୂର୍ତ୍ତି ସୁଶୋଭିତ । ବିଗ୍ରହର ଉର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଚକ୍ର, ବାମହସ୍ତରେ ଶଙ୍ଖ ନିମ୍ନ ଦୁଇ ହସ୍ତରେ ବଂଶୀ ଶୋଭାପାଏ । ଏହି କମନୀୟ ମୂର୍ତ୍ତି ପଛରେ ଥିବା କାରଣକୁ ଶ୍ରୀଜଗନ୍ନାଥ ଦାସଙ୍କ ଓଡ଼ିଆ 'ଶ୍ରୀମଦ୍ ଭାଗବତ' ଦଶମ ସ୍କନ୍ଦ ଦ୍ୱାରକାଲୀଳା ଊନପଞ୍ଚାଶ ଅଧ୍ୟାୟାନୁଯାୟୀ ପୁରାଣ କହେ-

ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ଦ୍ୱାରା କଂସ ନିଧନ ପରେ ଗୋପଲୀଳାର ସମାପ୍ତି ଏବଂ ଦ୍ୱାରକାଲୀଳାର ଆରମ୍ଭ ହୋଇଛି । ଦୁଇ ଭାଇ ବଳରାମ ଓ କୃଷ୍ଣ ପିତା ବସୁଦେବଙ୍କ ସହ ଗୋପରୁ ମଥୁରାକୁ ଫେରି ଆସିଛନ୍ତି । ପିତା ବ୍ରାହ୍ମଣମାନଙ୍କ ଦ୍ୱାରା ବିଦ୍ୟାଧର୍ମର ଦଶକର୍ମ କରାଇବା ପରେ ଅବନ୍ତୀ ନଗରର କାଶ୍ୟପ ଗୋତ୍ରୀୟ ବ୍ରାହ୍ମଣ ସନ୍ଦିପନୀଙ୍କ ପାଖରେ ବିଦ୍ୟାର୍ଥୀ ହୋଇଥିଲେ । ଯିଏ ନିଜେ ଶାସ୍ତ୍ରମୟ, କୋଟି ବ୍ରହ୍ମାଣ୍ଡ ଯାହା ନିକଟରେ ଠୁଳ ମାନବୋଚିତ ବିଦ୍ୟାର୍ଥୀ ପରି ବେଦସାର, ବ୍ରହ୍ମଜ୍ଞାନ, ଶାସ୍ତ୍ର ନିତ୍ୟାଚାର, ଧନୁର୍ବେଦ, ଧର୍ମମୀମାଂସା, ନ୍ୟାୟ, ତର୍କ, ରାଜନୀତିର ଷଡବିଧ ଜ୍ଞାନକୁ ଦୁଇମାସ ଚାରିଦିନ ମଧ୍ୟରେ ଗ୍ରହଣ କରିଥିଲେ। ଶିକ୍ଷା ସମାପ୍ତି ପରେ ଗୁରୁଙ୍କୁ କ'ଣ ଦେଇ ଗୁରୁଙ୍କର ପାଦ ବନ୍ଦନା କରିବେ ବୋଲି ପ୍ରଶ୍ନ ପଚାରିବାରୁ ସନ୍ଦିପନୀ ସୃଷ୍ଟିକର୍ତ୍ତାଙ୍କ ଠାରୁ କ'ଣ ମାଗିବେ ବୋଲି ଦ୍ୱନ୍ଦ୍ୱରେ ପଡି ପ୍ରଭୁଙ୍କ ଠାରୁ କିଛି ମାଗିବାର ଭାରକୁ ପତ୍ନୀଙ୍କୁ ଦେଇଥିଲେ । ଗୁରୁପତ୍ନୀ ଆନନ୍ଦିତା ହୋଇ ଲକ୍ଷ୍ମୀଙ୍କ ଦୟାରୁ ତାଙ୍କ ପାଖରେ ସବୁ ଅଛି କିନ୍ତୁ ଧନରୂପୀ ସନ୍ତାନର ଅଭାବକୁ ଦୂର କରିବା ପାଇଁ କହିଥିଲେ । ତେଣୁ ପ୍ରଭାସ ତୀର୍ଥରେ ନାଶ ଯାଇଥିବା ପୁତ୍ରକୁ ପୁନଃ ଫେରାଇ ଆଣି ଗୁରୁ ଦକ୍ଷିଣା ପ୍ରଦାନ କର ଏବଂ ଧର୍ମ ଯଶ ଲାଭ କର ବୋଲି କହିଥିଲେ ।

ପରେ କୃଷ୍ଣ ଓ ବଳରାମ ଯୋଗମାୟା ବଳରେ ବାରାନିଧି କୂଳରେ ପହଞ୍ଚିଲେ । କୃଷ୍ଣ ଓ ବଳରାମ ରଥରୁ ଓହ୍ଲାଇବା ଦେଖି ବରୁଣ କରଞ୍ଜଳି ଦେଇ ପ୍ରଣିପାତ କରି ଆସିବାର କାରଣ ପଚାରିଲେ । ଶ୍ରୀକୃଷ୍ଣ ଗୁରୁପୁତ୍ରଙ୍କୁ ଫେରାଇ ଦେବା ପାଇଁ କହିଲେ । ଏହାଶୁଣି ଭୟଭୀତ ବରୁଣ କହିଲେ- ଶ୍ରୀକୃଷ୍ଣ ଶଙ୍ଖାସୁରକୁ ମାରି ବ୍ରହ୍ମାଙ୍କୁ ବେଦ ଫେରାଇଥିଲେ । ସେହି ଶଙ୍ଖାସୁରର ପଞ୍ଚଜନ ନାମକ ଏକ ପୁତ୍ର ହିଁ ଗୁରୁପୁତ୍ରଙ୍କୁ ଲୁଚାଇ ଥାଇପାରନ୍ତି । ଏହାଶୁଣି ଶ୍ରୀକୃଷ୍ଣ ଆନନ୍ଦରେ ଅଧିର ହୋଇ ବଳରାମଙ୍କୁ ବାରାନିଧି କୂଳରେ ବସାଇ ଜଳରେ ପ୍ରବେଶ କଲେ । ସେଠାରେ ପଞ୍ଚଜନ ସହିତ ଯୁଦ୍ଧ କରି ତାକୁ ଦୁଇଖଣ୍ଡ କଲେ । ତା'ର ପେଟରେ ଗୁରୁପୁତ୍ରଙ୍କୁ ଖୋଜି ମଧ୍ୟ ପାଇଲେ ନାହିଁ ମାତ୍ର ଉଦର ଭିତରୁ ନାଭିଶଙ୍ଖକୁ ଆଣିଥିଲେ । ପରେ ବଳରାମଙ୍କ ସହ ରଥରେ ଯିବା ସମୟରେ ଶଙ୍ଖନାଦ କରି ସମସ୍ତ ପ୍ରାଣୀଙ୍କର ଦୁଃଖକୁ ଖଣ୍ଡନ କଲେ ଏବଂ ଚତୁଃର୍ଭୁଜ ମୂର୍ତ୍ତି ଧାରଣ କରି ଆକାଶ ମାର୍ଗକୁ ଉଠିଲେ । ବାଳୁତ ଶ୍ରୀକୃଷ୍ଣଙ୍କ ପାଖରେ ବିଷ୍ଣୁଙ୍କର ତେଜମୟ ଚିହ୍ନ ଦେଖିବାକୁ ମିଳିଥିଲା । ତେଣୁ ଶ୍ରୀମଦ୍ ଭାଗବତରେ ଲେଖାଅଛି-

''ହୋଇଲେ ଚାରି ଚାରି ଭୁଜ
ଶଙ୍ଖ-କମଳ-ଚକ୍ର ତେଜ ।
ବିଷ୍ଣୁର ତେଜର ଚିହ୍ନବର୍ଣ୍ଣ
ତକ୍ଷଣେ ଉଠିଲେ ଗଗନ ।''

ପ୍ରଭୁଙ୍କର ଶଙ୍ଖ ଶବ୍ଦ ଶୁଣି ଯମପୁର ଥରହର ହେଲା । ଯମ ଚିତ୍ରଗୁପ୍ତ ସହ ଆସି କୃଷ୍ଣ ଚରଣ ତଳେ ପଡି ଆସିବାର କାରଣ ପଚାରନ୍ତେ କୃଷ୍ଣ କହିଲେ ଯେ, ଯମର ଦୂତମାନେ ତା'ର ମରଣକାଳ ଜାଣି ଏଠାକୁ ଆଣିଛନ୍ତି, ତେଣୁ କୃଷ୍ଣ ଆଦେଶ ଦେଲେ-

'ଗୁରୁପୁତ୍ର ମିହାନୀତଂ'- ଈଶ୍ୱରଙ୍କ ଇଚ୍ଛାରେ ମଣିଷର ପ୍ରାରବ୍ଧ ମଧ୍ୟ ଖଣ୍ଡନ ହୁଏ । ଶ୍ରୀକୃଷ୍ଣଙ୍କ ଠାରୁ ଶୁଣିବା ମାତ୍ରେ ଯମ ଗୁରୁପୁତ୍ରଙ୍କୁ ଫେରାଇଥିଲା । ଶ୍ରୀକୃଷ୍ଣ ଓ ବଳରାମ ସେହି ଗୁରୁପୁତ୍ର ସ୍ୱରୂପ ଗୁରୁଦକ୍ଷିଣାକୁ ପ୍ରଦାନ କରି ଗୁରୁକୃପା ଓ ଗୁରୁ କଲ୍ୟାଣ ଲାଭ କରିଥିଲେ ।

ତେବେ ଅନ୍ୟ ଏକ ଜନଶ୍ରୁତି କହେ କୃଷ୍ଣ ଏବଂ ବଳରାମ ଗୁରୁପୁତ୍ର ମୃତ୍ୟୁ ହୋଇଥିବାର ଜାଣି ପ୍ରଥମେ ଯମପୁର ଯାଇଥିଲେ । ସେଠାରେ ଚିତ୍ରଗୁପ୍ତର ପଞ୍ଜିକାରେ ଗୁରୁପୁତ୍ରର ନାମକୁ ନପାଇ ପ୍ରଭାସ ତୀରକୁ ଆସି ବରୁଣଙ୍କୁ ଗୁରୁପୁତ୍ରଙ୍କୁ ମାଗିବାରୁ ବରୁଣ ଦେବତା ବାଳୁତ ଅବସ୍ଥାରେ ବିଷ୍ଣୁ କୃଷ୍ଣଙ୍କର ଏହିପରି ସମ୍ମିଶ୍ରଣ ରୂପକୁ ଦେଖି ଗୁରୁପୁତ୍ରଙ୍କୁ ଫେରାଇବି ବୋଲି କହିଥିବାରୁ ପ୍ରଭୁ ଏହି ଦିବ୍ୟରୂପ ମାଧୁରୀ, ଛନ୍ଦ ମାଧୁରୀ ଓ ଲୀଳା ମାଧୁରୀର ଅପୂର୍ବ ରୂପକୁ ପ୍ରକଟ କରି ଗୁରୁପୁତ୍ରଙ୍କୁ ବରୁଣଙ୍କ ପାଖରୁ ନେଇ



ଗୁରୁଦକ୍ଷିଣା ପ୍ରଦାନ କରିଥିଲେ। ତେଣୁ 'ବ୍ରହ୍ମ ବୈବର୍ତ୍ତ ପୁରାଣ'ରେ କୁହାଯାଇଛି–

''ଦ୍ୱାଭ୍ୟାଂ କରାଭ୍ୟାଂ ଧୃତ ଶଙ୍ଖଚକ୍ରଂ
ଦ୍ୱାଭ୍ୟାଂ କରାଭ୍ୟାଂ ମୂରଲୀ ଦଧାନଂ
ସନ୍ଦୀପନେ ପୁତ୍ରଦ୍ଧଦାମ୍ଭ୍ୟାମ୍
ସନ୍ତାନ ଗୋପାଳମାହଂ ପ୍ରପଦ୍ୟେ''

ତେବେ ଏହିପରି କୃଷ୍ଣ–ବିଷ୍ଣୁ ମୂର୍ତ୍ତି ତ୍ରୟୋଦଶ ଶତାବ୍ଦୀରେ ଓଡ଼ିଶାରେ ନିର୍ମିତ ଓ ପୂଜିତ ହେଉଥିବା ବିଷୟ କଟକ ଜିଲ୍ଲା ଧର୍ମଶାଳା ଅଞ୍ଚଳରୁ ମିଳିଥିବା ଗୋଟିଏ କୃଷ୍ଣ–ବିଷ୍ଣୁ ମୂର୍ତ୍ତିରୁ ଜଣାଯାଇଛି ବୋଲି ବୃନ୍ଦାବନ ଆଚାର୍ଯ୍ୟ 'ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ'ରେ ଉଲ୍ଲେଖ କରିଥିବାରୁ ଗୋପାଳଜୀଉଙ୍କ ପ୍ରତିଷ୍ଠା ତ୍ରୟୋଦଶ ଶତାବ୍ଦୀ ହୋଇଥିବ ବୋଲି ଅନୁମାନ କରାଯାଏ ।

ଶ୍ରୀଗୋପାଳଜୀଉଙ୍କ ବାମ ପାର୍ଶ୍ୱରେ ଭୂତନାଥ ବାବାଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରିଥିବା ପ୍ରାୟ ୩ଫୁଟ ଉଚ୍ଚର ରାଧାମୂର୍ତ୍ତି ଏବଂ ଦକ୍ଷିଣ ପାର୍ଶ୍ୱରେ ଆଦିକନ୍ଦ ବାବାଙ୍କ ଦ୍ୱାରା ପ୍ରତିଷ୍ଠିତ ଲଳିତାଙ୍କ ଧାତୁ ମୂର୍ତ୍ତି ବିରାଜିତ । ଏହି ମନ୍ଦିରରେ ଅନ୍ୟମାନଙ୍କ ମଧ୍ୟରେ ରହିଛନ୍ତି ଅଷ୍ଟଧାତୁରେ ନିର୍ମିତ ରାଧା, ଧାତୁ ନିର୍ମିତ କୃଷ୍ଣ ନୃସିଂହ ଏବଂ ଆଣ୍ଠୁଆ ଗୋପାଳ ବିରାଜିତ ଅଟନ୍ତି ।

ମଧ୍ୟ ପ୍ରକୋଷ୍ଠରେ ରହିଛନ୍ତି ରାୟ ରାମାନନ୍ଦ ଓ ଚୈତନ୍ୟଙ୍କର ପ୍ରତିମୂର୍ତ୍ତି ବିରାଜିତ । ୧୯୪୪ ମସିହା ସେପ୍ଟେମ୍ବର ୨୦ ତାରିଖ ଦିନ ଆଦିକନ୍ଦ ଦାସଙ୍କର ଉଦ୍ୟୋଗରେ ପଣ୍ଡିତ ନରସିଂହ ମିଶ୍ର ଏହି ମୂର୍ତ୍ତିଦ୍ୱୟ ପ୍ରତିଷ୍ଠା କରିଥିଲେ ବୋଲି 'ପୁରୀର ମଠ ସଂସ୍କୃତି' ପୁସ୍ତକରେ ଶ୍ରୀ ଭାସ୍କର ମିଶ୍ର ଉଲ୍ଲେଖ କରିଛନ୍ତି । ଶ୍ରୀଚୈତନ୍ୟ ଗୋଦାବରୀ ନଦୀ ତୀରରେ ରାୟ ରାମାନନ୍ଦଙ୍କ ଠାରୁ ପ୍ରେମଭକ୍ତି ଧର୍ମର ମୂଳତତ୍ତ୍ୱମାନ ଶିକ୍ଷା କଲେ ଗୌଡୀୟ ଷଡଗୋସ୍ୱାମୀମାନଙ୍କର ଆବିର୍ଭାବ ପୂର୍ବରୁ ରାୟ ରାମାନନ୍ଦ ରାଧାକୃଷ୍ଣଙ୍କ ପ୍ରେମଲୀଳାର ତାତ୍ତ୍ୱିକ ରୂପ ପ୍ରଦାନ କରିଥିଲେ । ପରେ ଚୈତନ୍ୟ ସେହି ତତ୍ତ୍ୱର ରହସ୍ୟକୁ ବୁଝି ନିଜ ଦୈନନ୍ଦିନ ବ୍ୟବହାରରେ କରି ତାହାର ପ୍ରଚାର କଲେ । ଚୈତନ୍ୟ ଏବଂ ରାୟ ରାମାନନ୍ଦଙ୍କର ଅପୂର୍ବ ଯୁଗଳ ମୂର୍ତ୍ତି ଆଜି ସେହି ପ୍ରେମ ଭକ୍ତି ଧର୍ମର ସାଧନାରେ ଆତ୍ମନିୟୋଗ କରିବାର ଦୃଷ୍ଟାନ୍ତ ପ୍ରଦାନ କରେ ।

ମନ୍ଦିରର ଦକ୍ଷିଣ ପ୍ରକୋଷ୍ଠରେ ଦାରୁ ନିର୍ମିତ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ମା' ସୁଭଦ୍ରା, ଶ୍ରୀସୁଦର୍ଶନ ଏବଂ ମା'ଲକ୍ଷ୍ମୀ, ମା' ସରସ୍ୱତୀ ଓ ଶାଳଗ୍ରାମ ମୂର୍ତ୍ତି ପୂଜିତ ହେଉଛନ୍ତି । ଏହାଙ୍କର ନୂତନ କଳେବର ବ୍ରହ୍ମାନନ୍ଦ ସରସ୍ୱତୀ ଶଙ୍କରାଚାର୍ଯ୍ୟ ଜଗଦ୍‌ଗୁରୁ କରାଇଛନ୍ତି ବୋଲି ଆଲୋଚକମାନେ ମତ ଦିଅନ୍ତି । ଏତଦ୍‌ବ୍ୟତୀତ ଭକ୍ତଙ୍କ ଦ୍ୱାରା ପ୍ରଦତ୍ତ ଅନେକ ଦାନ ବିଗ୍ରହ ମଧ୍ୟ ଏଠାରେ ପୂଜିତ ହେଉଛନ୍ତି ।

ଜଗନ୍ନାଥ ବଲ୍ଲଭ ମଠର ବିଜେସ୍ଥଳୀରେ ଥିବା ମନ୍ଦିରରେ ଠାକୁରମାନଙ୍କ ବ୍ୟତୀତ ମଠର ଉଦ୍ୟାନ ଭିତରେ ପାଞ୍ଚଗୋଟି ମନ୍ଦିର ରହିଛି ଯଥା– ସୁଗ୍ରୀବ ବା ବଡ ମହାବୀର ଯିଏ ଡାହାଣ ହସ୍ତରେ ପର୍ବତ ଓ ବାମପଟ ହସ୍ତରେ ଗଦା ମୁଖ ଏବଂ ପାଦ ମଧ୍ୟ ବାମପଟକୁ ରହିଛି । ବଡ ମହାବୀରଙ୍କର ବାମ ପଟେ ଅଞ୍ଜନାଦେବୀଙ୍କ ମନ୍ଦିର । ଅଞ୍ଜନା ଦେବୀ ଦୁଇ ଭୁଜା ଉର୍ଦ୍ଧ୍ୱବାହୁ । ହସ୍ତରେ ଷଷ୍ଠ ପାଖୁଡାର ଫୁଲ ଧରିଛନ୍ତି । ଅଞ୍ଜନା ଦେବୀଙ୍କର ଡାହାଣ ପଟେ ବଲ୍ଲଭେଶ୍ୱର ମହାଦେବ ପୂଜା ପାଉଛନ୍ତି । ଉଦ୍ୟାନର ବାମ ପଟେ ଅଛନ୍ତି ଗୁଆବାଡି ବା ସୁପାରି ହନୁମାନ । ଏତଦ୍‌ବ୍ୟତୀତ ଶ୍ରୀଜଗନ୍ନାଥ ମନ୍ଦିରରୁ ଜଗନ୍ନାଥ ବଲ୍ଲଭ ମଠର ଏହି ଆନନ୍ଦଦାୟକ ଉଦ୍ୟାନ ପର୍ଯ୍ୟନ୍ତ ଥିବା ଗୁପ୍ତ ସୁଡଙ୍ଗ ପଥର ଦ୍ୱାରଦେଶରେ ପ୍ରହରୀ ବେଶରେ ଗୁମ୍ଫା ମହାବୀର ବା ସୁଡଙ୍ଗ ମହାବୀର ବିଦ୍ୟମାନ, ଯାହାଙ୍କର ଉଚ୍ଚତା ୮ଫୁଟ ହେବ ବୋଲି ଅନୁମାନ କରାଯାଏ । ସେ ହେଉଛନ୍ତି ଜଗନ୍ନାଥ ବଲ୍ଲଭ ମଠର ପ୍ରଧାନ ରକ୍ଷକ । ଅକ୍ଷୟ ତୃତୀୟା ଦିନ ଚନ୍ଦନ ଯାତ୍ରା ପୂର୍ବରୁ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ନୌକାବିହାର ନିମିତ୍ତ ଉଦ୍ୟାନରେ ପ୍ରବେଶ କରିବା ପାଇଁ ପ୍ରଥମେ ବଡ ମହାବୀର ଓ ଗୁମ୍ଫା ମହାବୀରଙ୍କ ଠାରୁ ଅନୁମତି ନେଇଥାନ୍ତି । ପ୍ରଭୁ ଜଗତର ଠାକୁର ହେଲେ ହେଁ ନିଜର ପରମଭକ୍ତ ହନୁମାନଙ୍କର ସମ୍ମାନାର୍ଥେ ଏହି ପ୍ରଥା ଆଜିବି ପ୍ରଚଳିତ । ଉଦ୍ୟାନରେ ବୁଢୀମା ଠାକୁରାଣୀ ମନ୍ଦିରରେ ବୁଢୀମା'ଙ୍କ ସହ ଅନ୍ୟାନ୍ୟ ଦେବୀମୂର୍ତ୍ତିର ପୂଜା କରାଯାଉଛି । ଯେଉଁଥିରୁ ଏହି ମଠରେ ଶାକ୍ତ ଧର୍ମର ପ୍ରଭାବ ରହିଥିଲା ବୋଲି ଅନୁମାନ କରାଯାଏ ।

ଜଗନ୍ନାଥ ବଲ୍ଲଭ ମଠର ଅନ୍ୟ ମନ୍ଦିର ହେଉଛି ଦରିଆ ମହାବୀର ବା ବେଡି ମହବୀର ମନ୍ଦିର, ଯିଏ ମଠର ପରିସର ବାହାରେ ଅର୍ଥାତ୍ ଚକ୍ରତୀର୍ଥ ଠାରେ ଅବସ୍ଥାନ କରିଛନ୍ତି । ଏହି ମନ୍ଦିର ପଛରେ ଏକ ସୁନ୍ଦର କିମ୍ବଦନ୍ତୀ ରହିଛି ଯେ, ଯେତେବେଳେ ଶ୍ରୀକ୍ଷେତ୍ର ବାରମ୍ବାର ସାଗର ଜଳରେ ପ୍ଳାବନ ଦ୍ୱାରା କ୍ଷତିଗ୍ରସ୍ତ ହେଉଥିଲା ସେତେବେଳେ ଶ୍ରୀକ୍ଷେତ୍ର ନିବାସୀ ଜଗନ୍ନାଥଙ୍କୁ ପ୍ରାର୍ଥନା କଲେ । ପ୍ରଭୁଙ୍କର ଆଦେଶ କ୍ରମେ ହନୁମାନ ସାଗର ରାଜା ବରୁଣଙ୍କ ପ୍ରବେଶକୁ ପ୍ରତିରୋଧ କରି ଭକ୍ତଜନଙ୍କୁ ରକ୍ଷା କଲେ ।





ଶ୍ରୀଜଗନ୍ନାଥ ତାଙ୍କୁ ସେଠାରେ ରଖାଇ ଶ୍ରୀମନ୍ଦିରରୁ ପ୍ରତ୍ୟେକ ଦିନ ଅନ୍ନପ୍ରସାଦ ଖାଇବାକୁ ଦିଅନ୍ତି । ହେଲେ ଅଯୋଧାର ଖୁଆମଣ୍ଡା ବା ଅମୃତଲଡୁର ଲୋଭରେ ପଡି ଥରେ ହନୁମାନ ଶ୍ରୀଜଗନ୍ନାଥଙ୍କ ଅଜ୍ଞାତରେ ଅଯୋଧ୍ୟା ଚାଲିଗଲେ । ଫଳରେ ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ବରୁଣ ଦେବତା ଶ୍ରୀକ୍ଷେତ୍ରକୁ ଜଳମଗ୍ନ କଲେ । ପ୍ରଭୁ ଜଗନ୍ନାଥ ହନୁମାନଙ୍କୁ ସ୍ମରଣ କରିବା ମାତ୍ରେ ହନୁମାନ ଯେଉଁ ଅବସ୍ଥାରେ ଥିଲେ ଅର୍ଥାତ୍ ଦକ୍ଷିଣ ହସ୍ତରେ ଗଦା ଓ ବାମ ହସ୍ତରେ ଅଧା ଖାଇଥିବା ଅମୃତ ଲଡୁ, ଖୁଆମଣ୍ଡା ଧରି ଉପସ୍ଥିତ ହେବାରୁ ସମୁଦ୍ର ଶ୍ରୀକ୍ଷେତ୍ରର ଜନବସତି ଠାରୁ ଦୂରକୁ ଚାଲିଯାଇଥିଲା । ପରେ ପ୍ରଭୁ ହନୁମାନଙ୍କୁ ଏପରି ଏକ ଅମୃତ ଲଡୁ ଧରେଇଲେ ଯାହା କେବେ ସରିବନି କି ଏ ଶ୍ରୀକ୍ଷେତ୍ର କେବେ ଜଳମଗ୍ନ ହେବନି । ସେଥିସହ ଦାୟିତ୍ୱରେ ଅବହେଳା ଯୋଗୁଁ ବେଡି ପକାଇଥିଲେ ଏବଂ ଶ୍ରୀକ୍ଷେତ୍ରର ସୁରକ୍ଷା ପାଇଁ ସେଠାରୁ କୁଆଡେ ନଯିବା ପାଇଁ କହିଥିଲେ । ତେବେ ହନୁମାନଙ୍କୁ କୌଣସି ଶୃଙ୍ଖଳା ବା ବନ୍ଧନ ଆୟତ୍ତ କରିପାରିବ ନାହିଁ କିନ୍ତୁ ସେହି ବେଡିର ପ୍ରତ୍ୟେକ ଭାଗରେ ରାମନାମ ତାରକମନ୍ତ୍ର ଧ୍ୱନିତ ହେଉଥିବାରୁ ହନୁମାନ ନିଜର ପ୍ରଭୁ ସେବାରୁ ବିରତ ନେଇ ପାରୁନାହାନ୍ତି କିମ୍ବା ବନ୍ଧନଙ୍କୁ ମଧ୍ୟ ଛିନ୍ନ କରିପାରୁନାହାନ୍ତି । ତେଣୁ ଦରିଆର ପ୍ରକୋପରୁ ଶ୍ରୀକ୍ଷେତ୍ରକୁ ରକ୍ଷା କରୁଥିବାରୁ ଦରିଆ ମହାବୀର ଏବଂ ବାମ ହସ୍ତରେ ଖୁଆମଣ୍ଡା ଓ ଦକ୍ଷିଣ ହସ୍ତରେ ଗଦା ଧାରଣ କରି ପଦରେ ବେଡି ଓ ଶରୀର ଲୌହ ଶୃଙ୍ଖଳ ପଡିଥିବାରୁ ତାଙ୍କର ଅନ୍ୟନାମ ବେଡି ମହାବୀର । ଆଜିବି ଏଠାରେ ପ୍ରତ୍ୟହ ଜଗନ୍ନାଥ ବଲ୍ଲଭ ମଠ ତରଫରୁ ଚନ୍ଦ୍ରନାରାୟଣଙ୍କୁ ଲାଗି ହୋଇଥିବା ଖୁଆମଣ୍ଡାରୁ ପାଞ୍ଚୋଟି ବେଡି ହନୁମାନଙ୍କୁ ସମର୍ପଣ କରାଯାଏ । ଏଠାରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସମସ୍ତ ନୀତିକ୍ରାନ୍ତି ସହ 'ରାମ ସହସ୍ର ନାମ' ପାଠ ପରେ ପହଡ ପଡେ । ନାଟ ମନ୍ଦିରର ପାର୍ଶ୍ୱରେ ଶନି ମନ୍ଦିର ଏବଂ ଲଡୁଗୋପାଳ ପୂଜା ପାଉଛନ୍ତି । ମନ୍ଦିରର ଚତୁଃପାର୍ଶ୍ୱରେ ସାବିତ୍ରୀ, ଅଞ୍ଜନା ଓ ଗଣେଶଙ୍କ ପ୍ରସ୍ତର ମୂର୍ତ୍ତି ବିରାଜିତ । ବେଡି ମହାବୀରଙ୍କ ମାଉସୀ ଏହି ସ୍ଥାନର ମାହାତ୍ମ୍ୟକୁ ବୃଦ୍ଧି କରୁଛି ।

ଚକ୍ରତୀର୍ଥସ୍ଥ ଅନ୍ୟ ଏକ ମନ୍ଦିର ଚକ୍ରନାରାୟଣ ମନ୍ଦିର ଯେଉଁଠାରେ ଅଭୟ/ନୃସିଂହ, ଲକ୍ଷ୍ମୀ ନୃସିଂହ ଓ ଚକ୍ର ନୃସିଂହ ପୂଜା ପାଉଛନ୍ତି । କେହି କେହି ଏହାକୁ ଲକ୍ଷ୍ମୀଙ୍କ ବାପଘର କହୁଥିବା ବେଳେ ଏଥିରେ ଦ୍ୱିମତ ରହିଛି । ଏହି ମନ୍ଦିରର ପାର୍ଶ୍ୱରେ ପଞ୍ଚବଟୀ ମହାଦେବ ମନ୍ଦିର ଏବଂ ଅନ୍ୟପାର୍ଶ୍ୱରେ ବଳରାମ ଦାସଙ୍କ ଗୁମ୍ଫା ରହିଛି । ପୁରୀର ପୂର୍ବ କୋଣରେ ମହୋଦଧିର ତୀରରେ ଚକ୍ରତୀର୍ଥ ଅବସ୍ଥିତ । ଏଠାରେ ଚକ୍ରନାରାୟଣଙ୍କର ଏକ ସ୍ୱତନ୍ତ୍ର ମନ୍ଦିର ଅଛି । ମନ୍ଦିରର ଚଟାଣରେ ପ୍ରସ୍ତର ନିର୍ମିତ କାରୁକାର୍ଯ୍ୟ ଖଚିତ ନୀଳଚକ୍ର ମଧ୍ୟରେ ପ୍ରଭୁ ନାରାୟଣ ବିଦ୍ୟମାନ । କାଳର କ୍ରମାନୁସାରେ ଏଠାରେ ନାରାୟଣ ମୂର୍ତ୍ତି ଅସ୍ପଷ୍ଟ ହେଉଛି । ପୂଜକ ଚକ୍ରକୁ କେବଳ ଜଳ ମଧ୍ୟରେ ରଖି ପୂଜାର୍ଚ୍ଚନା କରିଥାନ୍ତି ।

ସେହିପରି ଚକ୍ର ନୃସିଂହଙ୍କ ସମ୍ପର୍କରେ କିମ୍ବଦନ୍ତୀ କୁହେ:– ଯେତେବେଳେ ଦାରୁ ବିଗ୍ରହ ଫାଲ୍‌ଗୁନ ମାସ ଶୁକ୍ଳ ଦ୍ୱାଦଶୀ ବା ଗୋବିନ୍ଦ ଦ୍ୱାଦଶୀରେ ବାଙ୍କିମୁହାଣଠାରେ ଲାଗିଥିଲା ସେତେବେଳେ ରାଜା ଇନ୍ଦ୍ରଦ୍ୟୁମ୍ନ ମହାଦାରୁର ଚକ୍ର ମଧ୍ୟରେ ପ୍ରଥମେ ନୃସିଂହ ରୂପକୁ ଦେଖିଥିଲେ । ତେଣୁ ସେହି ତୀର୍ଥକ୍ଷେତ୍ରକୁ ଚକ୍ରତୀର୍ଥ ଏବଂ ଚକ୍ର ମଧ୍ୟରେ ନୃସିଂହଙ୍କ ରୂପ ପ୍ରତିଷ୍ଠିତ ହୋଇଛି । ଶ୍ରୀଜଗନ୍ନାଥଙ୍କର ଆଦିରୂପ ନୃସିଂହ ଓ ଲକ୍ଷ୍ମୀ ନୃସିଂହ ନାମକ ବିଗ୍ରହ ପୂଜିତ । ନୃସିଂହ ହେଉଛନ୍ତି ମାନବ ଓ ସିଂହର ଏକୀଭୂତ ରୂପ । ହିରଣ୍ୟ ନିଧନ କାଳରେ ପ୍ରଭୁ ଅସ୍ତ୍ର ରୂପେ ନଖର ବ୍ୟବହାର କରିଥିଲେ । 'ନ'ର ଅର୍ଥ ନାହିଁ, 'ଖ'ର ଅର୍ଥ ଶୂନ୍ୟ ବା ଗଗନ । ତେଣୁ ନୃସିଂହ ହେଉଛନ୍ତି କ୍ଷର ଆତ୍ମା ଏବଂ ଅକ୍ଷର ଆତ୍ମାର ମିଳନ ରୂପ । ସେ ଅଦୃଶ୍ୟ ହେଲେବି ଦୃଶ୍ୟମାନ । ପୁଣି ଦୃଶ୍ୟ ହେଲେ ବି ଅଦୃଶ୍ୟମାନ । ତନ୍ତ୍ରମତେ ଆଲୋଚନା କଲେ ଜଣାଯାଏ ଚକ୍ରତୀର୍ଥର ଅଭୟ ନୃସିଂହ ହେଉଛନ୍ତି ବଳଭଦ୍ର ଏବଂ ଚକ୍ର ନୃସିଂହ ହେଉଛନ୍ତି ଦୁର୍ଗାମାଧବ ଓ ସେ ସୁଭଦ୍ରାରୂପୀ ବ୍ରହ୍ମା ମଧ୍ୟ ଅଟନ୍ତି ଏବଂ ଲକ୍ଷ୍ମୀ ନୃସିଂହ ଚକ୍ରରେ ପ୍ରଭୁ ଜଗନ୍ନାଥ ନିଜେ ବିରାଜିତ ବୋଲି ଆଲୋଚକ ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି ଉଲ୍ଲେଖ କରିଛନ୍ତି । ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଜଗନ୍ନାଥ ନୃସିଂହ ରୂପରେ ପୂଜା ପାଆନ୍ତି । ସେହିଦିନ ଆଜ୍ଞାମାଳ ଚକ୍ର ନୃସିଂହଙ୍କ ଠାରୁ ଯିବା ପରେ ଜନ୍ମୋତ୍ସବ ମହାସମାରୋହରେ ପାଳନ ହୁଏ ।

ଚକ୍ର ନୃସିଂହ ମନ୍ଦିରର ପାର୍ଶ୍ୱରେ ଥିବା ବଳରାମ ଦାସଙ୍କ ଗୁମ୍ଫା ଷୋଡଶ ଶତାବ୍ଦୀର ଅଟେ । ଏହି ଗୁମ୍ଫା ସମ୍ପର୍କରେ ଏକ ସୁନ୍ଦର ଲୋକଶ୍ରୁତି ଅଛି । ଷୋଡଶ ଶତାବ୍ଦୀର ପ୍ରତାପରୁଦ୍ର ଦେବଙ୍କ ସମୟର କଥା । ପଞ୍ଚସଖାଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ବଳରାମ ଦାସ ଶ୍ରୀଜଗନ୍ନାଥ ଦେବଦାସୀ ମାଧବୀର ପ୍ରେମରେ ପଡିଥିଲେ । ମାଧବୀ ଦେବଦାସୀ ହୋଇଥିବାରୁ ଧର୍ମ ଏବଂ ଆଦର୍ଶ ନାମରେ ନିଜ ଆତ୍ମା ଏବଂ ଦେହକୁ ଠକି ଆସିଥିଲେ । ଦିନେ ବଳରାମ ଦାସଙ୍କୁ ପ୍ରେମ ନିବେଦନ କରି ନିଜ ଗୃହକୁ ଡାକି ବିରହଜ୍ୱାଳାକୁ ବୟାନ କରିଥିଲେ । ମାଧବୀ ଚାହୁଁଥିଲେ ମଣିଷ ଠାରୁ ସମ୍ବେଦନା । ତେଣୁ ବଳରାମ ଦାସ ସେହି ସମୟରେ ଭୁଲିଯାଇଥିଲେ ସେଦିନ




ଥିଲା ରଥଯାତ୍ରା ବୋଲି । ଏକ ଭାବବିହ୍ୱଳ ମୁହୂର୍ତ୍ତରେ ମାଧବୀଙ୍କ ମୁଖରୁ 'ଜୟ ଜଗନ୍ନାଥ' ଶବ୍ଦ ଶୁଣି ବଳରାମ ଦାସ ଚମକି ପଡିଥିଲେ । ତାଙ୍କର ମନେ ପଡିଲା ଆଜି ପବିତ୍ର ରଥଯାତ୍ରା । ବଳରାମ ସେହି ଇତସ୍ତତଃ ଅବସ୍ଥାରେ ନାରୀର ସ୍ପର୍ଶକୁ ଭୁଲି ଦୌଡିଲେ ବଡଦାଣ୍ଡକୁ ସେଠାରେ ଦଇତାପତି ଓ ପଣ୍ଡାମାନେ ବଳରାମଙ୍କ ଅବସ୍ଥାକୁ ଦେଖି ଗଜପତିଙ୍କ ଆଗରେ ବେଶ୍ୟାମତ୍ତ ଶୂଦ୍ର ବୋଲି ଗାଳି ଦେଇ ରଥ ଉପରୁ ଏପରିକି ବଡଦାଣ୍ଡରୁ ବାହାର କରିନେଲେ । ତେଣୁ ବଳରାମ ଦାସ ଚକ୍ରତୀର୍ଥର ମହୋଦଧି କୂଳରେ ବାଲିରଥ ନିର୍ମାଣ କରି ପ୍ରଭୁଙ୍କୁ ସେଠାରେ ବିଜେ କରିବା ପାଇଁ ବିକଳ ପ୍ରାର୍ଥନା କରିଥିଲେ । ପ୍ରଭୁ ଦେଖନ୍ତି ଭକ୍ତର ତାଙ୍କ ପାଖରେ ଥିବା ଶ୍ରଦ୍ଧାଭାବକୁ ଭକ୍ତଭାବକୁ । ତେଣୁ ପ୍ରଭୁ ସେହି ବାଲିରଥରେ ବିଜେ କରନ୍ତେ ହଠାତ୍ ବଡଦାଣ୍ଡର ରଥ ଅଟକି ଯାଇଥିଲା । ମହାରାଜା ଗଜପତିଙ୍କୁ ଶୂନ୍ୟବାଣୀ ହେଲା ଯେ ପ୍ରଭୁ ଯେ ସମୁଦ୍ର କୂଳରେ ବାଲିରଥରେ ବିରାଜମାନ କରିଛନ୍ତି। ତେଣୁ ମତ୍ତ ବଳରାମ ଯଦି ବଡଦାଣ୍ଡକୁ ଆସି ରଥ ଦଉଡି ଛୁଇଁବେ ତେବେ ରଥ ଚାଲିବ, ପରେ ପୂଜାପଣ୍ଡାମାନେ, ଭକ୍ତ, ଘଣ୍ଟୁଆଳ ଆଦି ସମସ୍ତେ ବଳରାମଙ୍କୁ ପାଛୋଟି ଆଣିବାରୁ ରଥ ଚାଲିଥିଲା । ତେବେ ବଳରାମ ଦାସ ଗୁମ୍ଫା ବୋଲି କୁହାଯାଇଛି । ବଳରାମ ଦାସ ତାଙ୍କର 'ଭାବ ସମୁଦ୍ର' ଗ୍ରନ୍ଥରେ ବେଶ୍ୟାମତ୍ତ କଥା ଉଲ୍ଲେଖ ନକରି କେବଳ ଶୂଦ୍ର ବୋଲି ଉଲ୍ଲେଖ କରିଛନ୍ତି ।

ଜଗନ୍ନାଥ ବଲ୍ଲଭ ମଠର ଅନ୍ୟ ଏକ ମନ୍ଦିର ଗୋରୁଆଳରେ ଅଛି । ଗୋରୁଆଳର ପ୍ରବେଶ ପଥରେ ହନୁମାନଙ୍କ ମନ୍ଦିର ଏବଂ ଗ୍ରାମର ଶେଷ ଭାଗରେ ରହିଛି ପୁଳକେଶ୍ୱରୀ ମନ୍ଦିର । ପୁଳକେଶ୍ୱରୀ ମନ୍ଦିର ସମ୍ପର୍କରେ ଏକ ଚମତ୍କାର କାହାଣୀ ଗ୍ରାମଲୋକଙ୍କ ମୁଖରୁ ଶୁଣିବାକୁ ମିଳେ ଯେ, ପୁଳକେଶ୍ୱରୀ ଠାକୁରାଣୀ ଗ୍ରାମର ଛୋଟ ଛୁଆମାନଙ୍କୁ ଖାଇଯାଉଥିଲେ । ଏଥିରୁ ନିବର୍ତ୍ତାଇବା ପାଇଁ ଭଉଣୀ ହରଚଣ୍ଡୀ ତାଙ୍କୁ ଚାପୁଡା ପକାଇ ତାଙ୍କ ପାଖରେ ଜଗି ରହିଥିଲେ । ତେଣୁ ମନ୍ଦିର ଭିତରେ ଏହି ଦୁଇ ମୂର୍ତ୍ତି ପୂଜିତ ହେଉଛନ୍ତି । ଏହି କାହାଣୀ ପଛରେ ସତ୍ୟାସତ୍ୟ ବିଶ୍ୱାସଯୋଗ୍ୟ ନହେଲେ ହେଁ ତାହା ଲୋକକଥାରେ ରହିଆସିଛି । କିନ୍ତୁ ସେହି ମା' ଦୟାମୟୀ, କୃପାମୟୀ ରୂପରେ ଗ୍ରାମକୁ ଚାହିଁ ରହିଛନ୍ତି ବୋଲି ଆଜିବି ଗ୍ରାମବାସୀ ବିଶ୍ୱାସ କରନ୍ତି ।

ଜଗନ୍ନାଥ ବଲ୍ଲଭ ମଠରେ ଥିବା ଦେବାଦେବୀଙ୍କ ପାଇଁ ଦୈନିକ ବଲ୍ଲଭ ଭୋଗ ମଧ୍ୟାହ୍ନ ସମୟରେ ଖେଚେଡି, ଖିରୀ ଭୋଗ, ଅପରାହ୍ନରେ ବାଳଭୋଗରେ ଖୁଆମଣ୍ଡା, ଖଇ, ରାବିଡି ଭୋଗ ହୁଏ । ଶ୍ରୀଜଗନ୍ନାଥ ମନ୍ଦିରରୁ ଅନ୍ନ ପ୍ରସାଦ ଆସି ମଠରେ ଅଧିଷ୍ଠିତ ପାର୍ଶ୍ୱ ଦେବାଦେବୀଙ୍କୁ ସମର୍ପଣ କରାଯାଏ । ଏତଦ୍‌ବ୍ୟତୀତ ମଠ ତରଫରୁ ବେଡି ମହାବୀର, ଚକ୍ର ନୃସିଂହ, ଲକ୍ଷ୍ମୀ ନୃସିଂହ, ଅନନ୍ତ ନୃସିଂହ ଏବଂ ପଞ୍ଚବଟୀ ମହାଦେବଙ୍କ ପାଇଁ ଦୈନିକ ବାଳଭୋଗ, ଅନ୍ନଭୋଗ ମଠ ତରଫରୁ ଦିଆଯାଏ । ଶ୍ରୀମନ୍ଦିରର ଅନେକ ଉତ୍ସବ ସହ ଜଗନ୍ନାଥ ବଲ୍ଲଭ ମଠ ସଂଶ୍ଳିଷ୍ଟ ରହିଛି । ତେବେ ଜଗନ୍ନାଥ ବଲ୍ଲଭ ମଠର ମନ୍ଦିର ଏବଂ ଶ୍ରୀମନ୍ଦିରର ଅନେକ ନୀତିକ୍ରାନ୍ତି ଏବେ ବନ୍ଦ ରହିଥିବାର ଶୁଣିବାକୁ ମିଳେ ।

ଏହି ମଠ ଅନ୍ତର୍ଭୁକ୍ତ ସମସ୍ତ ମନ୍ଦିରରେ ପୂଜିତ ଦେବାଦେବୀଙ୍କ ପଛରେ ରହିଥିବା କିମ୍ବଦନ୍ତୀ ବା କାହାଣୀରେ ତଥ୍ୟଗତ ସତ୍ୟ ନମିଳିଲେ ହେଁ ଏଥିରେ ଥିବା ଏକ ସମ୍ଭାବିତ ସତ୍ୟକୁ ଉପେକ୍ଷା କରିହେବ ନାହିଁ । ଏହି ଦେବାଦେବୀଙ୍କ କାହାଣୀ କେବଳ ସେମାନଙ୍କର ମହିମାକୁ ଯେ ବଢାଇଛି ତାହାନୁହେଁ ବରଂ ମଣିଷ ମନରେ ଆଧ୍ୟାତ୍ମିକ ବିଶ୍ୱାସକୁ ବଢାଇବାରେ ସହାୟକ ହୋଇଛି । ମଠ ଅନ୍ତର୍ଭୁକ୍ତ ମନ୍ଦିର ଏବଂ ଦେବାଦେବୀ ଏକ ସମୟରେ ହୋଇନଥିବାରୁ ଏବଂ କେବଳ ଜଣଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରିନଥିବାରୁ କେବଳ ଗୋଟିଏ ଧର୍ମ ବିଶ୍ୱାସ ଠାକୁର ପୂଜିତ ନୁହଁନ୍ତି । ଏହି ମଠ ବିଷ୍ଣୁ ସମ୍ପ୍ରଦାୟର ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ମନ୍ଦିରର ଦେବାଦେବୀ ଏବଂ ମୂର୍ତ୍ତିତତ୍ତ୍ୱକୁ ଦେଖିଲେ ଏଥିରେ ଶାକ୍ତଧର୍ମ, ଶୈବଧର୍ମର ପ୍ରଭାବ ପଡିଥିବାର ମତକୁ ଏଡାଇ ଦେଇ ହେବନାହିଁ । ତେବେ ଏହି ପ୍ରାଚୀନ ମନ୍ଦିର ଦେବାଦେବୀଙ୍କ ସୁରକ୍ଷା କେବଳ ମଠ ଉପରେ ନ୍ୟସ୍ତ ରଖି ଜଣେ ସଚେତନ ନାଗରିକର ଦାୟିତ୍ୱରୁ ଓହରିଯିବା ଉଚିତ ନୁହେଁ । ମନ୍ଦିରଗୁଡିକୁ କେବଳ ବ୍ୟବସାୟଭିତ୍ତିକ ନକରି ତୀର୍ଥଯାତ୍ରୀମାନେ କିପରି ଏହାର ମାହାତ୍ମ୍ୟ ସମ୍ପର୍କରେ ଅଧିକ ପରିମାଣରେ ଜାଣି ନିଜର ଆଧ୍ୟାତ୍ମିକ ପିପାସା ମେଣ୍ଟାଇ ପାରିବେ ସେଥିପ୍ରତି ସମସ୍ତ ଜିଲ୍ଲା ପ୍ରଶାସନ, ମନ୍ଦିର ପ୍ରଶାସନ ଏବଂ ଜନସାଧାରଣଙ୍କ ଦୃଷ୍ଟି ରହିବା ଉଚିତ ।

ନରେନ୍ଦ୍ରକୋଣ, ପୁରୀ









# ମହୋଦଧିର ଦିବ୍ୟତୀର୍ଥ

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର

## ଚକ୍ରତୀର୍ଥ ହିଁ ଦିବ୍ୟତୀର୍ଥ

ରାମାୟଣରୁ ଜଣାଯାଇଛି, ଭାରତର ପୂର୍ବ ଭାଗରେ ସୁଦର୍ଶନ ନାମରେ ଏକ ସରୋବର ଥିଲା । ଧଳା ରଙ୍ଗର ପଦ୍ମ ଫୁଟିଥିବା ଏହି ସରୋବରରେ ରାଜହଂସ ଥିଲେ । ଦେବତାମାନେ ଏଠି ଜଳ ବିହାର କରୁଥିଲେ । ସୁଗ୍ରୀବ ଏହି ସରୋବର ନିକଟକୁ ସୀତାଙ୍କୁ ଖୋଜିବା ପାଇଁ ବାନରମାନଙ୍କୁ ପଠାଇଥିଲେ[୧] ।

ଏହା ପରେ ପରେ ବର୍ଣ୍ଣନା ଅଛି ଯେ, ସରୋବର ଆଗକୁ ସମୁଦ୍ର ଅଛି । ସମୁଦ୍ରର ଉତ୍ତରକୁ ପର୍ବତଟିଏ ଅଛି । ସେହି ପର୍ବତ ଉପରେ ଧରଣୀକୁ ଧାରଣ କରିଥିବା ସମସ୍ତ ଦେବତାମାନଙ୍କର ପୂଜ୍ୟ ସହସ୍ରଶୀର୍ଷ ପୀତାମ୍ବରଧାରୀ ଅନନ୍ତ ଅଛନ୍ତି ।[୨] ସେହି ପର୍ବତ ଉପରେ ସୁବର୍ଣ୍ଣମୟୀ ପତାକା ରହିଛି । ସେହି ପର୍ବତର ଆଧାର ଭୂମିରେ ବେଦୀଟିଏ ଅଛି ।[୩] ଏହା ପୂର୍ବ ଭାରତର ସୀମା[୪] ।

ଏହାପରେ ଦକ୍ଷିଣ ଭାରତ କଥା ବର୍ଣ୍ଣିତ ହୋଇଛି । ତନ୍ମଧ୍ୟରେ ଉତ୍କଳ ଦେଶର ବର୍ଣ୍ଣନା ରହିଛି[୫] । ଉପରେ ବର୍ଣ୍ଣିତ ବେଦୀ ଯଦି ପୂର୍ବ ଭାରତର ସୀମା, ତା'ପରଠାରୁ ଉତ୍କଳ ଦେଶ ଆରମ୍ଭ ହୋଇଛି । ଯାହା ଦକ୍ଷିଣ ଦିଗ ଅନ୍ତର୍ଭୁକ୍ତ ହୋଇଛି । ତା'ପରେ କଳିଙ୍ଗ ଦେଶର ବର୍ଣ୍ଣନା ରହିଛି ।

'ସୁଦର୍ଶନ' ଶବ୍ଦ ପରବର୍ତ୍ତୀ କାଳରେ ସୁଦର୍ଶନ ଚକ୍ରରେ ଲାକ୍ଷଣିକ ହେଲା ପରି ମନେହୁଏ । ଶ୍ରୀଜଗନ୍ନାଥ ଚେତନା ବିକାଶ କାଳରେ ଶ୍ରୀସୁଦର୍ଶନ 'ଶ୍ରୀଚତୁର୍ଦ୍ଧା ବିଗ୍ରହ'ଙ୍କ ମଧ୍ୟରେ ଉପାସିତ ହୋଇଛନ୍ତି । ସେ ମଧ୍ୟ ମହାପ୍ରଭୁଙ୍କ ପ୍ରତିନିଧି ହୋଇଛନ୍ତି । ଉପାସନାରେ 'ଆୟୁଧ' ପ୍ରତିନିଧି ହେବାର ଦୃଷ୍ଟାନ୍ତ ଶ୍ରୀଜଗନ୍ନାଥ ଚେତନାରେ ଏକ ଅନନ୍ୟ ଉଦାହରଣ । ସୁଦର୍ଶନ ତୀର୍ଥ, ଆୟୁଧରେ ରୂପାନ୍ତରିତ ହେବା ପରେ ନାମିତ ହେଲା 'ଚକ୍ରତୀର୍ଥ' ଭାବରେ । ଚକ୍ର ହୋଇଗଲା ପାଞ୍ଚୋଟି ତତ୍ତ୍ୱର ସାଙ୍କେତିକ ନିଦର୍ଶନ । ତୀର୍ଥ ହୋଇଗଲା ଜୀବନ ଦର୍ଶନର ଘାଟ । ସେଇ ପାଞ୍ଚୋଟି ତତ୍ତ୍ୱର ଘାଟ ଲୋକାଚାରକୁ ଆସିଲା ଲୋକ ସାହିତ୍ୟ, ଲୋକକଥା, ଆଖ୍ୟାୟିକା ଓ ଗାଥା ମାଧ୍ୟମରେ[୬] ।

ଉପାସନାରେ ଅଙ୍ଗୀଭୂତ ହେବା ପରେ 'ସୁଦର୍ଶନ ସରୋବର' ସୁଦର୍ଶନ ତୀର୍ଥ ରୂପେ ପ୍ରସିଦ୍ଧ ହେବା ସମ୍ଭାବନାକୁ ପ୍ରମାଣିତ କରିବାରେ ଗବେଷଣା ନୀରବ ଅଛି । ହୁଏତ, ନଦୀ ମୁହାଁଣର ଏହି ପବିତ୍ର ସ୍ଥାନ ସୁଦର୍ଶନ ତୀର୍ଥ ରୂପେ ବିକାଶ ଲାଭ କରି କାଳ ପ୍ରବାହରେ ସୁଦର୍ଶନ ଯେହେତୁ ଚକ୍ର ଆକୃତିର, ତେଣୁ ଚକ୍ରତୀର୍ଥ ଶବ୍ଦରେ ଲାକ୍ଷଣିକ ହେଲାପରି ଲାଗୁଛି ।

୧. ବା.ରା. ୪/୪/୪୦-୪୬ ।

୨. ତତ୍ରୈବ ୪/୪୦/୫୧-୫୨ ।

୩. ତତ୍ରୈବ ୪/୪୦/୫୩

ତ୍ରିଶିରାଃ କାଞ୍ଚନ କେତୁସ୍ତାଳସ୍ତସ୍ୟ ମହାତ୍ମନଃ ।

ସ୍ଥାପିତଃ ପର୍ବତସ୍ୟାଗ୍ରେ ବିରାଜତି ସବେଦିକଃ ॥

୪. ତତ୍ରୈବ ୪/୪୦/୫୪

୫. ତତ୍ରୈବ ୪/୪୧/୯

''ମେଖଳାନୁତ୍କଳାଂଶ୍ଚୈବ ଦଶାର୍ଣ୍ଣନଗରାଣ୍ୟପି ।''

୬. ଚକ୍ର — ତୀର୍ଥ





ପୁରୁଷୋତ୍ତମ କ୍ଷେତ୍ରର 'କଣ୍ଡୁ ଆଶ୍ରମ' ଯେଉଁପରି ପଣ୍ଡୁ ଆଶ୍ରମ ଏବଂ କଣ୍ଡୁ ନୃସିଂହ ଯେପରି ପଣ୍ଡୁ ନୃସିଂହ ଭାବରେ ପୁରୀର ଲୋକକଥାରେ ଆଜି ବି ରୂଢ଼ି ହୋଇଛି, ସେହିପରି ସୁଦର୍ଶନ ତୀର୍ଥ ଲୋକ ମୁଖରେ ଚକ୍ରତୀର୍ଥ ଭାବରେ ପ୍ରସିଦ୍ଧ ହୋଇ ନଥିବ, କିଏ କହିବ ! ଚକ୍ରତୀର୍ଥ ଶବ୍ଦରେ ରୂଢ଼ି ହୋଇଯିବା ପରେ ସଂସ୍କୃତ ଶାସ୍ତ୍ରମାନଙ୍କରେ ତଥା ପୁରାଣମାନଙ୍କରେ ଚକ୍ର ତୀର୍ଥର ଲୌକିକ ବର୍ଣ୍ଣନା ସ୍ଥାନ ପାଇଛି । ଚକ୍ର ତୀର୍ଥଙ୍କୁ ନେଇ ଯାହା ଯାହା ବର୍ଣ୍ଣନା ପୁରାଣମାନଙ୍କରେ ମିଳେ, ତାହାସବୁ ତାତ୍ତ୍ୱିକ ରହସ୍ୟର ଲୌକିକ ରୂପ ।

## ପୌରାଣିକ ଲୌକିକ ରୂପ

ଯୁଗ ସଞ୍ଚାର ବେଳର କଥା । ବ୍ରହ୍ମା ସମାଧିସ୍ଥ ହେଲେ । ତାଙ୍କର ଚାରି ମୁହଁରୁ ଚାରି ବେଦ ସୃଷ୍ଟି ହେଲା । ଭାବିଲେ ଚାରି ବେଦକୁ ସମସ୍ତଙ୍କୁ ଜଣେଇବେ କିଏ ! ଶିଷ୍ୟ ଗୌତମ, ପିପଲ୍ଲାଦ, ମଧୁଛନ୍ଦ ଓ ଯାଜ୍ଞବଲ୍କ୍ୟଙ୍କୁ ଡକେଇଲେ । ବେଦ ଶିକ୍ଷା ଦେଲେ ।

ସେଇ ସମୟରେ ମଧୁ ରାକ୍ଷସର ଝାଳରୁ ଜନ୍ମ ନେଇଥିବା ଶଙ୍ଖାସୁର, ଦେବ ଦେବ ମହାଦେବଙ୍କ ପାଖରୁ ତନ୍ତ୍ର ଶିକ୍ଷା କରୁଥିଲେ । ମହର୍ଷିମାନଙ୍କର ଚାରି ବେଦ ଶିକ୍ଷା ସରିବା ବେଳକୁ ଶଙ୍ଖାସୁର ଶିଖି ସାରିଥିଲେ ଚାରୋଟି ବିଦ୍ୟା ।

ସେଥିରୁ ପ୍ରଥମ ବିଦ୍ୟାଟି ହେଲା ଦୂରରୁ ଶୁଣିବା କାଇଦା । ଯାହାକୁ କୁହାଯାଏ ଆକାଶବାଣୀ । ଦ୍ୱିତୀୟ ବିଦ୍ୟା ହେଲା ଦୂରରୁ ଦର୍ଶନ କରିବାର ରହସ୍ୟ । ଯାହାକୁ କୁହାଯାଏ ଦୂରଦର୍ଶନ । ତୃତୀୟ ବିଦ୍ୟା ହେଲା ତିନି ପୁରକୁ ଯା-ଆସ କରିବାର କଳା । ଯାହାକୁ କୁହାଯାଏ ତ୍ରିପୁର ଗମନ । ଚତୁର୍ଥ ବିଦ୍ୟା ହେଲା ଚାହୁଁ ଚାହୁଁ ଉଭେଇ ଯିବାର କାଇଦା । ତାକୁ କହନ୍ତି ସହସା ଅନ୍ତର୍ଦ୍ଧାନ କାଇଦା ।

ଶଙ୍ଖାସୁରଙ୍କର ବାକି ରହିଥିଲା ଶିଖିବାକୁ 'ନାଦ' ତତ୍ତ୍ୱ । ନାଦତତ୍ତ୍ୱ ଶିକ୍ଷା କରିବା ସମୟରେ ଅନୁଭବ କଲେ ବାରମ୍ବାର ବାଧା ସୃଷ୍ଟି ହେଉଛି । ନିଜ ବିଦ୍ୟା ବଳରେ ଜାଣିଲେ ପ୍ରଜାପତି ଯଜୁର୍ବେଦର 'ନମସ୍ତେ ରୁଦ୍ରମନ୍ୟବ'ର ରହସ୍ୟ ମହର୍ଷି ଯାଜ୍ଞବଲ୍କ୍ୟଙ୍କୁ ବୁଝାଉଛନ୍ତି । ଜାଣି ପାରିଲେ ବୈଦିକମନ୍ତ୍ର ଦ୍ୱାରା ଦେବ ଦେବ ମହାଦେବ ବାରମ୍ବାର ପ୍ରଭାବିତ ହେଉଛନ୍ତି । ନାଦତତ୍ତ୍ୱ ଶିକ୍ଷା ସେଇଠି ଅଟକିଲା । ଶଙ୍ଖାସୁର ଚାଲିଲେ ପ୍ରଜାପତିଙ୍କ ପାଖକୁ । ନିଜ ମନ କଥା କହିଲେ । ମାତ୍ର ପ୍ରଜାପତି ନାଚାର । କହିଲେ ଚାରି ବେଦ ବାଣ୍ଟି ସାରିଛି । ଶଙ୍ଖାସୁର ବ୍ୟସ୍ତ ହେଲେ । ତାଙ୍କର ବେଦ ଶିଖିବାର ବିକଳତା ବ୍ରହ୍ମାଙ୍କୁ ବିଚଳିତ କଲା । ଶେଷକୁ ହଁ ଭରିଲେ । ପଞ୍ଚମ ମୁଖ ସୃଷ୍ଟି କରି ପଞ୍ଚମ ବେଦ ସୃଷ୍ଟି କରିବାକୁ ଅଗ୍ରସର ହେଲେ । ଦେବଦେବ ମହାଦେବ ଏ କଥା ଜାଣିପାରିଲେ । ସେ ବ୍ରହ୍ମାଙ୍କର ପଞ୍ଚମ ମସ୍ତକ ଛେଦନ କଲେ । ପଞ୍ଚମ ବେଦ ପାଇବାର ଆଶା ମଉଳିଗଲା ଶଙ୍ଖାସୁରଙ୍କର । ଭାଙ୍ଗି ପଡିଲେନି । ତନ୍ତ୍ରଶକ୍ତି ପ୍ରୟୋଗ କରି ଚାରି ବେଦକୁ ହରଣ କରିନେଲେ । ଗଭୀର ସମୁଦ୍ରକୁ ଚାଲିଗଲେ । ଏ କଥା ବିଷ୍ଣୁଙ୍କ କାନକୁ ନେଲେ ପ୍ରଜାପତି । ଶେଷକୁ ବହୁ ଭାବିଚିନ୍ତି ବିଷ୍ଣୁ ମତ୍ସ୍ୟ-ଅବତାର ନେବାକୁ ସିଦ୍ଧାନ୍ତ କଲେ ।

ମତ୍ସ୍ୟ ରୂପରେ ସ୍ୱୟଂ ବିଷ୍ଣୁ ଆସିଛନ୍ତି ବୋଲି ଶଙ୍ଖାସୁର ଜାଣିପାରିଲେ । ଗଭୀର ସମୁଦ୍ରରେ ଶଙ୍ଖାସୁରଙ୍କୁ ଧରିବା ପାଇଁ ସାତଥର ଏପଟ-ସେପଟ ହେବାକୁ ପଡିଲା । ଶେଷକୁ ଶଙ୍ଖାସୁର ଚାରି ବେଦକୁ ଉଦରସ୍ଥ କଲେ । ସବୁଠାରୁ ଶକ୍ତିଶାଳୀ ସ୍ଥାନ







ନୀଳଗିରିର କଳ୍ପବଟକୁ ଆଶ୍ରୟ କଲେ । ବିଷ୍ଣୁ ଏ କଥା ଜାଣିପାରି ଚତୁର୍ଦ୍ଧା ବିଗ୍ରହ ଧାରଣ କଲେ ।

ଭୟଭୀତ ହୋଇ ପଡିଲେ ଶଙ୍ଖାସୁର । ନିଜର କଠିନ ଆବରଣକୁ ଶଙ୍ଖ ରୂପରେ ପରିଣତ କଲେ । ଆଉ ନିଜକୁ ଏକ ଅଣଆଡିଆ ସ୍ଥାନରେ ହଜେଇ ଦେଲେ । ମହାପ୍ରଭୁ ଚକ୍ରରାଜ ସୁଦର୍ଶନଙ୍କୁ ଆଦେଶ ଦେଲେ– ଶୀଘ୍ର ଶଙ୍ଖାସୁରର ମୁଣ୍ଡକାଟ କର। ମାତ୍ର ସବୁ ବିଫଳ ହେଲା । ଶଙ୍ଖାସୁର ଜାଣିଥିଲେ କଳ୍ପବଟର ଅଦ୍ଭୁତ ପ୍ରଭାବ । ସେଇ ପ୍ରଭାବରେ ଶଙ୍ଖାକୃତି ଶରୀରର ଉପର ଅଂଶ ବଜ୍ରଭଳି ହୋଇ ଯାଇଥିବାରୁ ସୁଦର୍ଶନ ଚକ୍ରଙ୍କର ପ୍ରଚଣ୍ଡ ଆଘାତରେ ଛିଟିକିଯାଇ ଖଣ୍ଡେ ଦୂରରେ ନିଜେ ସୁଦର୍ଶନ ପଡିଲେ ସିନା, ଶଙ୍ଖାସୁରଙ୍କର କିଛି ହେଲା ନାହିଁ । ମହାରାଜ ସୁଦର୍ଶନ ଛିଟିକି ପଡିଥିବା ସ୍ଥାନଟି ହେଲା ମର୍ତ୍ତ୍ୟ ବୈକୁଣ୍ଠର ଚକ୍ରତୀର୍ଥ ।

ଏହା ଭିତରେ ଅନେକ ସମୟ ବିତିଗଲେ ମଧ୍ୟ ସୁଦର୍ଶନ ଚକ୍ର ନଫେରିବାରୁ ନୀଳଗିରି ଉପରେ ମହାମାୟାଙ୍କୁ ଧ୍ୟାନ କଲେ । ବିଷ୍ଣୁଙ୍କ ସ୍ମରଣମାତ୍ରେ ଉପସ୍ଥିତ ହୋଇ ମହାମାୟା ଦୁଇଟି ଶକ୍ତି ପ୍ରଦାନ କରିଥିଲେ । ଦେବତାମାନଙ୍କ ଶକ୍ତି ଏବଂ ମହାମାୟା ଦେଇଥିବା ଦୁଇ ଶକ୍ତିରେ ନିଜ ଶକ୍ତିକୁ ମିଶାଇ ପ୍ରଜାପତି ବ୍ରହ୍ମାସ୍ତ୍ର ପ୍ରସ୍ତୁତ କରି ବିଷ୍ଣୁଙ୍କୁ ଦେଲେ । ଏହି ବ୍ରହ୍ମାସ୍ତ୍ର ଶଙ୍ଖାସୁରଙ୍କର ମୁଖରନ୍ଧ୍ରକୁ ପ୍ରୟୋଗ ହୋଇଥିଲା । ଶଙ୍ଖାସୁରଙ୍କର ହୃଦୟ ଓ ନାଭି ବିଦୀର୍ଣ୍ଣ ହେବା ପରେ ଶଙ୍ଖ ଦେହରୁ ଏକ ଦିବ୍ୟଜ୍ୟୋତି ବାହାରି ସ୍ୱର୍ଗଦ୍ୱାର ପଥ ଦେଇ ସ୍ୱର୍ଗକୁ ଯାଇଥିଲା । ମାତ୍ର ଗର୍ଭରେ ବେଦକୁ ନପାଇ ବିଷ୍ଣୁ ଶଙ୍ଖର ଗର୍ଭରୁ ମାଂସ ବାହାର କରି ଖୋଳଟିକୁ ବ୍ରହ୍ମାଙ୍କୁ ପ୍ରଦାନ କଲେ । ବ୍ରହ୍ମା ସେହି ଶଙ୍ଖର ରନ୍ଧ୍ରରେ ପ୍ରଥମେ ଫୁଙ୍କାର ଦେବାରୁ ଓଁକାର ଧ୍ୱନି ଶୁଣାଗଲା । ଓଁକାର ଧ୍ୱନି ମାଧ୍ୟମରେ ବେଦ ରକ୍ଷା ହୋଇଗଲା ।

ଶଙ୍ଖାସୁରଙ୍କର ବଧ ଦେବ ଦେବ ମହାଦେବଙ୍କର ଅସହ୍ୟ ହେଲା । ସେ ଆସି ଉପସ୍ଥିତ ହେଲେ । କ୍ରୋଧାନ୍ୱିତ ମହାଦେବଙ୍କୁ ଦେଖି ଦେବଗଣ ତାଙ୍କୁ ସ୍ତବ କରି ଶାନ୍ତ କଲେ । ବ୍ରହ୍ମା–ବିଷ୍ଣୁ–ଶିବଙ୍କର ଏକତ୍ର ଉପସ୍ଥିତିରେ ସମସ୍ତ ଦେବଗଣ ଥାଇ ନୀଳଗିରିକୁ ବୈକୁଣ୍ଠ ରୂପେ ସେଇଦିନ ପରିଗଣିତ କରାଗଲା । ଶିବଙ୍କର ପ୍ରସ୍ତାବ ଥିଲା ଶଙ୍ଖାସୁରର ସ୍ମୃତି ରକ୍ଷା ହେବ । ପାଞ୍ଚକୋଶ ପରିମିତ ଭୂଖଣ୍ଡ ଶଙ୍ଖକ୍ଷେତ୍ର ନାମରେ ପ୍ରସିଦ୍ଧ ହେବ । ତାହା ହିଁ ହେବ ଦିବ୍ୟକ୍ଷେତ୍ର ।

ଦାର୍ଶନିକ ରୂପ

ତନ୍ତ୍ର ଦର୍ଶନ ପ୍ରସଙ୍ଗ ଚକ୍ରତୀର୍ଥ ସହିତ ଯୋଡି ହୋଇଯିବା ପରେ ଶ୍ରୀଜଗନ୍ନାଥଙ୍କ ଉପାସନାରେ ଚକ୍ରତୀର୍ଥ ଅଙ୍ଗାଙ୍ଗୀ ଭାବେ ଜଡିତ ହୋଇଯାଇ ନଥିବ, ତାହା ଅସ୍ୱୀକାର କରିହେବ ନାହିଁ ।

ଦାର୍ଶନିକ ଦୃଷ୍ଟିକୋଣରୁ ତନ୍ତ୍ର ପରମ୍ପରାରେ ପାଞ୍ଚୋଟି ତତ୍ତ୍ୱରେ ଚକ୍ର ସଂଯୁକ୍ତ ରହିଛନ୍ତି । ରୁଦ୍ରଯାମଳ ତନ୍ତ୍ର ଅନୁସାରେ ଏହି ୫ଟି ଚକ୍ର ଓ ତାର ତତ୍ତ୍ୱ ହେଲା–

୧. ମହାଚକ୍ର– ଯିଏ ମୋକ୍ଷ ଆଣିଦିଏ ।
୨. ରାଜଚକ୍ର– ଯିଏ ରାଜତ୍ୱ (ପ୍ରଭୁତ୍ୱ) ଆଣିଦିଏ ।
୩. ଦିବ୍ୟଚକ୍ର– ଯିଏ ଦିବ୍ୟତ୍ୱ ଆଣିଦିଏ ।
୪. ବୀରଚକ୍ର– ଯିଏ ସିଦ୍ଧି ଆଣିଦିଏ ।
୫. ପଶୁଚକ୍ର– ଦାରିଦ୍ର୍ୟ ଓ ଦୁଃଖକୁ ଆଣିଦିଏ ।

ଶ୍ରୀସୁଦର୍ଶନ ଚକ୍ର ହେଉଛନ୍ତି 'ଦିବ୍ୟଚକ୍ର' । ଶ୍ରୀସୁଦର୍ଶନ ସ୍ୱୟଂ ଦିବ୍ୟ । ତାଙ୍କର ସାଂକେତିକ ରୂପ ଦିବ୍ୟଚକ୍ର ହେବା ସ୍ୱାଭାବିକ । ତେଣୁ ସୁଦର୍ଶନ ସରୋବର ଥିଲା ଦିବ୍ୟ ସରୋବର । ସୁଦର୍ଶନ ଶବ୍ଦ ତାଙ୍କର ସାଂକେତିକ ସ୍ୱରୂପରେ ଅଭିବ୍ୟଞ୍ଜିତ ହେବା ପରେ ସେହି ଚକ୍ର 'ଦିବ୍ୟଚକ୍ର' ହେବା ସ୍ୱାଭାବିକ । ଦିବ୍ୟ ଚକ୍ରଙ୍କୁ ନେଇ ଯେଉଁ ତୀର୍ଥ ବିକଶିତ, ତାହା ଦିବ୍ୟତୀର୍ଥ ରୂପେ ପ୍ରସିଦ୍ଧିଲାଭ କରିଅଛି । ଯାହା ତନ୍ତ୍ର ପରମ୍ପରାର ଦର୍ଶନ ତତ୍ତ୍ୱର ଏକ ମହାନ୍ ଲୌକିକ ତୀର୍ଥ । ଏହି ଦିବ୍ୟ ତୀର୍ଥର ସୁରକ୍ଷାରେ ଜଣେ ଦିବ୍ୟ ଆତ୍ମା ଜଡିତ । ସେହି ଦିବ୍ୟାତ୍ମା ହେଉଛନ୍ତି ରାମାୟଣର ମହାନ୍ ବୀର ଓ ସ୍ଥପତି ନଳ ।

ରାମାୟଣର ବର୍ଣ୍ଣନାରୁ ଜଣାଯାଇଛି ସୀତାଙ୍କୁ ଠାବ କରିବା ପାଇଁ ଅଙ୍ଗଦ ଏହି କ୍ଷେତ୍ରକୁ ଆସିଥିଲେ । ଅଙ୍ଗଦ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ମହର୍ଷି କଣ୍ଡୁଙ୍କ ଆଶ୍ରମକୁ ଆସିଥିବା କଥା ଉତ୍ତର ରାମାୟଣରୁ ଜଣାପଡେ[୭] । ତେଣୁ ରାମାୟଣର ଏହି ବୀରଙ୍କର ଉପାସନା ପୁରୀରେ ପ୍ରାଚୀନ କାଳରୁ ରହି ଆସିଅଛି ।

୭. ବା.ରା.୪/୪୧/୧୯

୮. ଏହି ଉପାସନା ସହିତ ପୁରୀର ଶ୍ରୀଜଗନ୍ନାଥ ବଲ୍ଲଭ ମଠ ସମ୍ପୃକ୍ତ ରହିଅଛି । ମହାବିଷୁବ ସଂକ୍ରାନ୍ତି ଦିନ ମଠ ପକ୍ଷରୁ ଶ୍ରୀମନ୍ଦିରର ପୂର୍ବଦ୍ୱାର ଫତେ ମହାବୀର, ପଶ୍ଚିମଦ୍ୱାର ମହାବୀର ଓ ଦକ୍ଷିଣଦ୍ୱାର ମହାବୀରଙ୍କୁ ପ୍ରଥମେ ପନ୍ତିଭୋଗ ଲାଗେ ।



ପନ୍ତିଭୋଗ ପରେ ମହାପ୍ରଭୁଙ୍କ ଆଜ୍ଞାମାଳ ଜଗନ୍ନାଥ ବଲ୍ଲଭ ମଠକୁ ଯାଇ ମଠ ପରିସରରେ 'ବଡ ମହାବୀର' ନାମରେ ପ୍ରସିଦ୍ଧ ସୁଗ୍ରୀବ ମହାରାଜାଙ୍କ ନିକଟରେ ପହଞ୍ଚିଥାଏ । ଶ୍ରୀମନ୍ଦିର ପୂଜାପଣ୍ଡା ମହାଶୟ ସୁଗ୍ରୀବ ମହାରାଜଙ୍କୁ କାନ୍ତି ଓ ଶିରପା ସମର୍ପଣ କରିବା ପରେ ଆଜ୍ଞାମାଳ ଲାଗି ହୁଏ । ପୁନଃ ମଠ ପରିସରରେ ଥିବା ଗୁମ୍ଫା ମହାବୀରଙ୍କ ପାଖକୁ ଆଜ୍ଞାମାଳ ଯାଏ । ଗୁମ୍ଫାମହାବୀର ମନ୍ତ୍ରୀ ଜାମ୍ବବାନ ରୂପେ ପ୍ରସିଦ୍ଧ । ସେଠାରେ ନୀତି ସରିବା ପରେ ମହାପ୍ରଭୁଙ୍କ ଆଜ୍ଞାମାଳର କିଛି ଅଂଶ ଜାମ୍ବବାନଙ୍କୁ ଲାଗି ହୁଏ । ପୂର୍ବରୁ ସୁଗ୍ରୀବ ମହାରାଜାଙ୍କୁ ମଧ୍ୟ ଆଜ୍ଞାମାଳର କିଛି ଅଂଶ ଲାଗି ହୋଇସାରିଥାଏ ।

ସୁଗ୍ରୀବ ମହାରାଜ, ମନ୍ତ୍ରୀ ଜାମ୍ବବାନଙ୍କ ପରେ ଆଜ୍ଞାମାଳ ମଠ ପରିସରରେ 'ଗୁଆବାରୀ ମହାବୀର' ରୂପେ ଲୋକ ପ୍ରସିଦ୍ଧି ଲାଭ କରିଥିବା ଶ୍ରୀହନୁମାନଙ୍କ ପାଖକୁ ଯାଏ । ଏଠାରେ ପୂଜାନୀତି ସରିବା ପରେ ପୂଜାପଣ୍ଡା ସାମନ୍ତ ଆଜ୍ଞାମାଳର କିଛି ଅଂଶ ଲାଗି କରନ୍ତି ଶ୍ରୀହନୁମାନଙ୍କୁ । ଏଠାରେ ଶ୍ରୀହନୁମାନଙ୍କୁ ଶିରପା ଲାଗି ପରେ ଶ୍ରୀମନ୍ଦିରରୁ ଆସିଥିବା ବିଜେ କାହାଳୀ ଲାଗି ହେବା ପ୍ରଥା ରହିଛି ।

ଏହାପରେ ଆଜ୍ଞାମାଳ ପୋଖରିଆ ମହାବୀରଙ୍କ ପାଖକୁ ଯାଏ । ବର୍ତ୍ତମାନର ବଡଦାଣ୍ଡରେ ଥିବା ମ୍ୟୁନିସିପାଲିଟି ମାର୍କେଟର ଯାହାକି ବଳଭଦ୍ର ବଲ୍ଲଭ ରୂପେ ପରିଚିତ ଥିଲା, ତାହାର ପୂର୍ବ ଦିଗକୁ ଏହି ପୋଖରିଆ ଅବସ୍ଥିତ । ପୂର୍ବେ ଏହା ଶ୍ରୀସୁଦର୍ଶନ ବଲ୍ଲଭ ରୂପେ ପରିଚିତ ଥିଲା । ପୋଖରିଆ ମହାବୀର ଶ୍ରୀଜଗନ୍ନାଥ ବଲ୍ଲଭ ମଠର ଉପାସନା ଭିତ୍ତିରେ ରାମାୟଣର 'ନୀଳ' ରୂପେ ଉପାସିତ । ଏଠାରେ ଉପର ବର୍ଣ୍ଣିତ ସମାନ ନୀତି ହେବା ପରେ ଆଜ୍ଞାମାଳର କିଛି ଅଂଶ ଲାଗି କରାଯାଏ । ଏହାପରେ ମହାପ୍ରଭୁଙ୍କଠାରୁ ଆସିଥିବା ଅବଶିଷ୍ଟ ଆଜ୍ଞାମାଳ ସହ ପୂଜାପଣ୍ଡା ସାମନ୍ତ ଚକ୍ରତୀର୍ଥ ଅଞ୍ଚଳରେ ବିଜେ କରିଥିବା 'ବେଡି ହନୁମାନଙ୍କ' ନିକଟକୁ ପଟୁଆରରେ ଯା'ନ୍ତି । ବେଡି ହନୁମାନ ଅଥବା ଦରିଆ ମହାବୀର ରୂପେ ପ୍ରସିଦ୍ଧି ଲାଭ କରିଥିବା ଏହି ମହାବୀର ଶ୍ରୀଜଗନ୍ନାଥ ବଲ୍ଲଭ ମଠର ଉପାସନା ଧାରାରେ 'ନଳ' ରୂପେ ପରିଚିତ । ସେଠାରେ କାନ୍ତି ଶିରପା ଲାଗି ପରେ ମହାପ୍ରଭୁଙ୍କ ଆଜ୍ଞାମାଳ ଲାଗି ହୁଏ । ସେଠାରୁ ଉକ୍ତ ପଟୁଆର ପୁନଃ ଶ୍ରୀଜଗନ୍ନାଥ ବଲ୍ଲଭ ମଠକୁ ଆସେ । ଶ୍ରୀଜଗନ୍ନାଥ ବଲ୍ଲଭରେ ସେତେବେଳକୁ ଶ୍ରୀମନ୍ଦିରର ଭଣ୍ଡାର ମହାବୀର ବିମାନରେ ଆସି ବିଜେ କରିଥାନ୍ତି । ମହାପ୍ରଭୁଙ୍କ ଆଜ୍ଞାମାଳ ଶ୍ରୀମନ୍ଦିରରୁ ବାହାରିବା ପରେ ପରେ ଭଣ୍ଡାର ମହାବୀର ବିମାନରେ ଶ୍ରୀଜଗନ୍ନାଥ ବଲ୍ଲଭକୁ ବିଜେ କରନ୍ତି । ଶ୍ରୀନଳଙ୍କ ପାଖରୁ ପଟୁଆର ମଠକୁ ଫେରିବା ବେଳକୁ ଭଣ୍ଡାର ମହାବୀର ଅପେକ୍ଷା କରିଥାନ୍ତି । ପୂଜାପଣ୍ଡା ସେବକ ଭଣ୍ଡାର ମହାବୀରଙ୍କୁ ଏଠାରେ ମାଜଣା କରି କାନ୍ତି ଶିରପା ଲାଗି କରିବା ପରେ ଭଣ୍ଡାର ମହାବୀର ଶ୍ରୀମନ୍ଦିରକୁ ଫେରିଯାନ୍ତି ।

ଏହି ବୀରଙ୍କ ମଧ୍ୟରେ ରାଜା ହେଉଛନ୍ତି ଶ୍ରୀ ସୁଗ୍ରୀବ ମହାରାଜା । ମନ୍ତ୍ରୀ ହେଉଛନ୍ତି ଶ୍ରୀ ଜାମ୍ବବାନ । ରାଜକୁମାର ହେଉଛନ୍ତି ଅଙ୍ଗଦ । ଅଙ୍ଗଦଙ୍କ ସହିତ ଦକ୍ଷିଣ ଭାରତକୁ ସୀତାଙ୍କ ଠାବ ସମୟରେ ସହଯୋଗ କରିଥିଲେ ନଳ, ନୀଳ, ବିବିଦ ଓ କୁମୁଦ । ଶ୍ରୀହନୁମାନ, ଶ୍ରୀଜାମ୍ବବାନ୍ ଓ ମହାରାଜା ସୁଗ୍ରୀବ ଚାରି ଦିଗକୁ ଯାଇଥିବା ବୀରମାନଙ୍କର ନିୟନ୍ତ୍ରଣ ଦାୟିତ୍ୱରେ ଥିଲେ । ନିୟନ୍ତ୍ରଣ ଦାୟିତ୍ୱରେ ଥିବା ଶ୍ରୀହନୁମାନ୍ ମଧ୍ୟ ମହାପ୍ରଭୁଙ୍କର ପ୍ରମୋଦ ଉଦ୍ୟାନରେ (ଜଗନ୍ନାଥ ବଲ୍ଲଭ) ବିଜେ କରିଥିବା ବେଳେ ଅନ୍ୟତମ ପ୍ରମୋଦ ଉଦ୍ୟାନ ଶ୍ରୀସୁଦର୍ଶନ ବଲ୍ଲଭରେ 'ନୀଳ' ବିଜେ କରିଛନ୍ତି ଏବଂ ଦିବ୍ୟ ତୀର୍ଥ ଚକ୍ର ତୀର୍ଥରେ 'ନଳ' ବିଜେ କରିଛନ୍ତି[୯] ।

ଜଗନ୍ନାଥ ବଲ୍ଲଭ ମଠର ଉପାସନା ଧାରାରେ ନଳ ସମ୍ପୃକ୍ତ ରହିଥିବା ବେଳେ ଶ୍ରୀମନ୍ଦିର ଉପାସନାରେ ମଧ୍ୟ ରହିଛନ୍ତି । ଶ୍ରୀନୃସିଂହ ଜନ୍ମ ଦିନ ସେହି ଦିବ୍ୟ ତୀର୍ଥରେ ବିଜେ କରିଥିବା ଦିବ୍ୟାତ୍ମା ନଳଙ୍କୁ ମହାପ୍ରଭୁଙ୍କ ଆଜ୍ଞାମାଳ ଦିଆଯାଏ[୧୦] ।

**ଉପସଂହାର**

ତେଣୁ ପୁରୁଷୋତ୍ତମ କ୍ଷେତ୍ରର ଗୋଟିଏ ପଟେ ମହୋଦଧିର ଯମନିକ ତୀର୍ଥକୁ ନେଇ ମହାତୀର୍ଥ ସ୍ୱର୍ଗଦ୍ୱାର ରହିଥିବା ବେଳେ ଅନ୍ୟ ଗୋଟିଏ ପଟେ ମହୋଦଧି ସଂଲଗ୍ନ ହୋଇ ଦିବ୍ୟତୀର୍ଥ ରହିଅଛି । ଏହି ଦିବ୍ୟତୀର୍ଥ ହିଁ ମହାପ୍ରଭୁଙ୍କର ଆବିର୍ଭାବ ଘାଟ । ପୌରାଣିକ ବର୍ଣ୍ଣନାର ରହସ୍ୟମୟ ଅନ୍ତଃସ୍ରୋତରେ ଅଜ୍ଞାନଚ୍ଛେଦକ ଘାଟ ହିଁ ରୂପାନ୍ତରିତ ହୋଇଯାଇଛି ଚକ୍ରତୀର୍ଥ ଶବ୍ଦରେ । ଏହା ହେଉଛି ସଂବୃତି ରୂପକ ଶୂନ୍ୟତାର ଘାଟ । ଚକ୍ର ହେଉଛି ନିରବଚ୍ଛିନ୍ନ ଶାନ୍ତି ଦେଉଥିବା 'ସୁଖର ପରିଭାଷା' । ସେହି ପରିଭାଷାରେ ତୀର୍ଥ ହେଉଛି ସୁଖର ଘାଟ । ଚକ୍ର ହେଉଛି ସୌଭାଗ୍ୟର ପ୍ରତୀକ । ତେଣୁ ଚକ୍ରର ଘାଟ ହେଉଛି ଆମମାନଙ୍କ ପାଇଁ ସୌଭାଗ୍ୟଘାଟ । ସେହି ସୌଭାଗ୍ୟ ଦିନେ ଉପଲବ୍ଧ ହୋଇଥିଲା ଏହି ଘାଟରୁ । ସୌଭାଗ୍ୟ ଘାଟରେ ସେହି ଅପୌରୁଷେୟ ଦାରୁ ଆବିର୍ଭାବ ହୋଇଥିଲେ ଆମକୁ ସୌଭାଗ୍ୟ ଦେବା ପାଇଁ । ଚର୍ମଚକ୍ଷୁରେ ଆମକୁ ଦର୍ଶନ ଦେବା ପାଇଁ ।





ଚକ୍ର ହେଉଛି ସତ୍‌ପୁରୁଷ ସଙ୍ଗର ଆଧାର । ଆମର ସୌଭାଗ୍ୟର ଦାରୁ ଏଇଠି ଆବିର୍ଭାବ ହେବା ପରେ ଏଇ ଘାଟରେ ଘଟିଥିଲା ଅନେକ ସତ୍‌ପୁରୁଷମାନଙ୍କର ସଙ୍ଗମ । ସେହିଦିନୁଁ ଏ ଘାଟ ହୋଇଯାଇଛି ଆମମାନଙ୍କ ପାଇଁ ସତ୍‌ପୁରୁଷ ସଙ୍ଗମର ଘାଟ । ଦିବ୍ୟତୀର୍ଥର ଘାଟ । ଦିବ୍ୟ ଚେତନାର ଘାଟ ।

୯. ଭାରତୀୟ ବାଙ୍ମୟରେ ପାଞ୍ଚଜଣ 'ନଳ'ଙ୍କର ଚରିତ୍ର ଆମେ ପାଉ । ଏଥିରେ ୪ଜଣ ନଳ ପୁରୁଷ ହୋଇଥିବାବେଳେ ଜଣେ ନାରୀ ରହିଛନ୍ତି ।

ପ୍ରଥମ ନଳ: ରାବଣଙ୍କ ଭାଇ ବିଭୀଷଣଙ୍କ କନ୍ୟାର ନାମ ନଳ । ସୀତା ଅଶୋକ ବନରେ ଥିବାବେଳେ ବିଭୀଷଣଙ୍କ କନ୍ୟା ସୀତାଙ୍କର ପରିଚାରିକା ରୂପେ ନିଯୁକ୍ତି ହୋଇଥିଲେ । ସେ ଥିଲେ ଆଦର ଓ ଶ୍ରଦ୍ଧାର ପ୍ରତୀକ ।

ଦ୍ୱିତୀୟ ନଳ: ରାମାୟଣ ବର୍ଣ୍ଣିତ ଅଷ୍ଟବୀରଙ୍କ ମଧ୍ୟରୁ ଜଣେ । ରାମାୟଣ ବର୍ଣ୍ଣିତ ନଳ ବିଶ୍ୱକର୍ମାଙ୍କର ପୁତ୍ର ଥିଲେ (୧/୧୭/୧) ଯେ କି ରାମାୟଣରେ ବାନର ରୂପେ ବର୍ଣ୍ଣିତ । ସୁଗ୍ରୀବଙ୍କ ସୈନ୍ୟବାହିନୀର ଜଣେ ପ୍ରଧାନ ସୈନିକ । ସେତୁବନ୍ଧ ନିର୍ମାଣରେ ମୁଖ୍ୟ ଭୂମିକା ନେଇଥିଲେ । ଘୃତାଚୀ ଅପସରା ଗର୍ଭରେ ବିଶ୍ୱକର୍ମାଙ୍କ ଔରସରୁ ଗୋଦାବରୀ ନଦୀ କୂଳରେ ଜନ୍ମ ନେଇଥିଲେ । ଋତଧ୍ୱଜ ମୁନିଙ୍କ ଅଭିଶାପରୁ ସେ ବାନର ରୂପେ ଜନ୍ମ ହୋଇଥିଲେ ବୋଲି ବାମନ ପୁରାଣରୁ (୬୨ ଅଧ୍ୟାୟ) ଜଣାପଡେ । କିନ୍ତୁ ବାଲ୍ମୀକି ରାମାୟଣରେ ସ୍ପଷ୍ଟ ଉଲ୍ଲେଖ ଅଛି ଶ୍ରୀରାମଙ୍କ ସହାୟତା ନିମନ୍ତେ ଦେବତାମାନେ ତାଙ୍କୁ ସୃଷ୍ଟି କରିଥିଲେ । (ବା.ରା.୭/୩୮/୪୯) । ସେ ଯେଉଁ ପଥର ସ୍ପର୍ଶ କରୁଥିଲେ ତାହା ଜଳରେ ଭାସୁଥିଲା ।

ତୃତୀୟ ନଳ: ରଘୁବଂଶରେ ଏହି ନଳଙ୍କ ବିଷୟରେ ବର୍ଣ୍ଣନା ରହିଛି । ଶ୍ରୀରାମଙ୍କ ପୁତ୍ର କୁଶଙ୍କ ନାତିଙ୍କ ନାମ ନିଷଧ । ନିଷଧଙ୍କ ପୁତ୍ର ଥିଲେ ନଳ ।

ଚତୁର୍ଥ ନଳ: ମାର୍କଣ୍ଡେୟ ପୁରାଣ ଅନୁସାରେ ରାଜା ଧୂମାଶ୍ୱଙ୍କ ପୁତ୍ର । ବନ୍ଧୁ ରାଜା ସୁଦେବଙ୍କ ସହ ମୃଗୟାରେ ଯାଇ ବ୍ରମତି ଋଷିଙ୍କ ଆଶ୍ରମରେ ଋଷିପତ୍ନୀଙ୍କୁ କୁତ୍ସିତ ବ୍ୟବହାର କରି ଋଷିଙ୍କ ଅଭିଶାପରେ ଜଳରେ ପରିଣତ ହୋଇଥିଲେ ।

ପଞ୍ଚମ ନଳ: ନିଷଧ ରାଜ୍ୟର ରାଜା ବୀରସେନଙ୍କ ପୁତ୍ର । ଯାହାଙ୍କୁ ନେଇ ନଳ-ଦମୟନ୍ତୀ ଉପାଖ୍ୟାନ ସୃଷ୍ଟି ହୋଇଛି । ଏହି ନଳ ମହାଭାରତ କାଳୀନ ।

୧୦. ଶ୍ରୀ ଦାରୁବ୍ରହ୍ମଙ୍କ ଆଜ୍ଞାମାଳ ରହସ୍ୟ, ୨୭୧ ସଂଖ୍ୟକ ସଙ୍କେତ ଦ୍ରଷ୍ଟବ୍ୟ । ଲେଖକ ଶ୍ରୀ ରବୀନ୍ଦ୍ରନାଥ ପ୍ରତିହାରୀ ।

ଗବେଷଣା ଅଧିକାରୀ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ,
ଶ୍ରୀବିହାର, ପୁରୀ-୭୫୨୦୦୩








# ଅଧା ଗଢ଼ା ଠାକୁର

ଅନନ୍ତ ଗୋପାଳ ପଣ୍ଡା

ପଶ୍ଚିମ ଦିଗ୍‌ବିଭାଗରେ ସୂର୍ଯ୍ୟଙ୍କର ଅବସ୍ଥିତି । ଅସ୍ତଗାମୀ ସୂର୍ଯ୍ୟଙ୍କର ରକ୍ତିମ ଆଭାରେ ସବୁଜ ବନାନୀ ରଂଗାୟିତ । ଅନତି ଦୂରରେ ପୁଣ୍ୟତୋୟା ଯମୁନା ପ୍ରବାହିତ । ସମସ୍ତ ନିସ୍ତବ୍‌ଧତାକୁ ଭଙ୍ଗ କରି ପାଗଳିନୀ ପ୍ରାୟ ଜଣେ ରମଣୀ ଗୁଣୁ ଗୁଣୁ ହୋଇ ଘୁରି ବୁଲୁଛନ୍ତି ନିକୁଞ୍ଜକାନନ ମଧ୍ୟରେ । ସତେ ଯେପରି ଖୋଜି ଚାଲିଛନ୍ତି ହରାଇଥିବା କୌଣସି ଏକ ଦୁର୍ଲ୍ଲଭ ବସ୍ତୁଟିକୁ । ମୁକୁଳିତ କେଶ ସାଙ୍ଗକୁ ଅଂଗ ବସନ ଇତସ୍ତତଃ । ଚକ୍ଷୁ ଯୁଗଳରୁ ବୋହି ଆସୁଛି ଧାର ଧାର ଲୋତକ ବିନ୍ଦୁ ।

ପାଗଳିନୀ ଆଉ କେହି ନୁହଁନ୍ତି, ସେ ହେଉଛନ୍ତି ଅପ୍ରାକୃତ ପ୍ରେମର ପୂଜାରିଣୀ, ହ୍ଲାଦିନୀ ଶକ୍ତି ସ୍ୱରୂପା ବୃଷଭାନୁ ରାଜନନ୍ଦିନୀ ଶ୍ରୀରାଧା । ଅତ୍ର, ତତ୍ର, ସର୍ବତ୍ର ଖୋଜି ଚାଲିଛନ୍ତି ପ୍ରାଣର ଦେବତା ଯଶୋଦା ନନ୍ଦନଙ୍କୁ । ଅତୀତର ଘଟଣାବଳୀକୁ ରୋମନ୍ଥନ କରି ଚାଲିଛନ୍ତି ମାନସ ପଟରେ । ଗୁଣୁ ଗୁଣୁ ହୋଇ କହି ଚାଲିଥାନ୍ତି, କାହାଁନ୍ତି ମୋ ପ୍ରାଣପ୍ରିୟ କଳାକାହ୍ନୁ ? ଆଉ କ'ଣ ଶୁଣିପାରିବି ନାହିଁ ତାଙ୍କର ସେହି ସୁମଧୁର ବଂଶୀସ୍ୱନ ? ଚର୍ମ ଚକ୍ଷୁରେ ଦେଖି ପାରିବିନାହିଁ ତାଙ୍କର ରୂପ ଲାବଣ୍ୟ ? ନଟନାଗରଙ୍କ ବିହୁନେ ହତଭାଗିନୀର ଜୀବନ ହୋଇଉଠିଛି ଅଲୋଡ଼ା । ବଞ୍ଚିବାର ଆବଶ୍ୟକତା ସତେ ଯେପରି ତାଙ୍କ ନିକଟରେ ତୁଚ୍ଛ ହୋଇଉଠିଛି । ଶୟନେ ସ୍ୱପନେ ଜାଗରଣରେ ଯାହାଙ୍କର ଭାବନା ମନକୁ କରିଛି ଆଚ୍ଛନ୍ନ, ତନୁ-ମନ-ପ୍ରାଣ ଯାହାଙ୍କ ଚରଣ କମଳରେ ହୋଇଛି ସମର୍ପିତ, ସେ ଯଦି ପର କଲେ, ତେବେ ବଞ୍ଚିବେ କାହାପାଇଁ ? କାନ୍ଦି କାନ୍ଦି ଧରଣୀ ବକ୍ଷରେ ଲୋଟି ଯାଉଥାନ୍ତି କୃଷ୍ଣ ବିରହିଣୀ ଶ୍ରୀରାଧା ।

ଅନ୍ୟ ପକ୍ଷରେ ଦ୍ୱାରକାର ଏକାଙ୍ଗ ଚକ୍ରବର୍ତ୍ତୀ ଆଜି ଶଯ୍ୟାଶାୟୀ । ରାଜ ସିଂହାସନ ହୋଇଉଠିଛି ତାଙ୍କ ପକ୍ଷରେ ତୁଚ୍ଛ । କ୍ଷମତାର ମୋହ କରିପାରିନାହିଁ ତାଙ୍କ ମନକୁ ଆଚ୍ଛନ୍ନ । ଶରୀରରେ ବେପଥୁ । ସୁମିଷ୍ଟ ଖାଦ୍ୟମାନ ହରାଇ ବସିଛି ତାଙ୍କ ନିକଟରେ ନିଜର ସ୍ୱାଦକୁ । ଅଷ୍ଟପାଟବଂଶୀଙ୍କର ଉପସ୍ଥିତି ମଧ୍ୟ ଭରିପାରିନାହିଁ ମନରେ ଆନନ୍ଦ । ବିଷଣ୍ଣ ହୋଇଉଠିଛି ଶ୍ରୀମୁଖ କମଳ । ଚଳଚଞ୍ଚଳ ମନ ପାଲଟି ଯାଇଛି ସ୍ଥାଣୁ । ସବୁକିଛି ହୋଇଯାଇଛି ଓଲଟପାଲଟ ଗୋଟିଏ ଚିନ୍ତାରେ, ଗୋଟିଏ ଭାବନାରେ । ସେ ଯେ ଭକ୍ତର ଭଗବାନ । ତାଙ୍କ ଲାଗି ଯେ ଆଜି ସାଜିଛି ପାଗଳିନୀ, ସମସ୍ତ କଳଙ୍କକୁ ମଥାରେ ବହନ କରି ଯେ ହୋଇଛି କଳଙ୍କିନୀ, ଜୀବନ ଯାର ହୋଇଉଠିଛି ଅଲୋଡ଼ା । ସେହି ଚିନ୍ତା ଓ ଭାବନାରେ ଅଥଳ ଜଳଧିରେ ପ୍ରଭୁଙ୍କର ମନ ମୀନ ଆଦି ଖୋଜି ପାଉନାହିଁ ଥଳକୂଳ ।

ପ୍ରାଣପ୍ରିୟା ଅଷ୍ଟପାଟ ମହିଷୀଗଣ ଚେଷ୍ଟା କରିଚାଲିଛନ୍ତି ଜାଣିବା ପାଇଁ ଏହି ଅଘଟଣର କାରଣ । ରୁକ୍ମିଣୀ ପାଦସେବା କରିବା ଅବସ୍ଥାରେ ସମସ୍ତ କୌଶଳ ପ୍ରୟୋଗ କରିଚାଲିଛନ୍ତି ପ୍ରଭୁଙ୍କ ବିଷଣ୍ଣତାକୁ ପ୍ରସନ୍ନତାରେ ପରିଣତ କରିବା ପାଇଁ । କିନ୍ତୁ ସବୁ ଚେଷ୍ଟା ତାଙ୍କର ହାରମାନିଛି । ଜାମ୍ବବତୀ ସତ୍ୟଭାମା ଇତ୍ୟାଦି ମଧ୍ୟ ଆକୁଳ କଣ୍ଠରେ କରପତ୍ର ଯୋଡି ପ୍ରାର୍ଥନା କରିଚାଲିଛନ୍ତି ଯାଦବେନ୍ଦ୍ରଙ୍କ ନିକଟରେ ରୋଗର କାରଣ ଏବଂ ନିରାକରଣର ଉପାୟ ଜାଣିବା ପାଇଁ । କିନ୍ତୁ ହଟିଆ ନାଗର ନିରୁତ୍ତର । ତୁଣ୍ଡରୁ ସ୍ଫୁରୁନାହିଁ ବଚନ ।

ଏହି ସମୟରେ ବୀଣା ବାଦନ ସହ ନାରାୟଣ, ନାରାୟଣ ନାମ ଗାନକରି ରାଜପ୍ରାସାଦରେ ଉପସ୍ଥିତ ହେଲେ ଦେବର୍ଷି ନାରଦ । ସମସ୍ତ ରାଣୀଗଣ ଦେବର୍ଷିଙ୍କୁ ପ୍ରଣାମ ଜଣାଇ ଆସନ ଗ୍ରହଣ ପାଇଁ କଲେ ଅନୁରୋଧ । ମହର୍ଷି ଗୋପୀଜନ ବଲ୍ଲଭଙ୍କୁ ପ୍ରଣିପାତ ଜ୍ଞାପନ ପୂର୍ବକ ପ୍ରଭୁଙ୍କ ଶଯ୍ୟା ନିକଟରେ କଲେ ଉପବେସନ । କିନ୍ତୁ ଏ କ'ଣ ସେ ଦେଖୁଛନ୍ତି ? ସମସ୍ତଙ୍କର ମନ ବିଷାଦଗ୍ରସ୍ତ । ଏହାର କାରଣ ମହାରାଣୀ ରୁକ୍ମିଣୀଙ୍କୁ ପ୍ରଶ୍ନ କରି ଅବଗତ ହେଲେ ଭକ୍ତ ଶ୍ରେଷ୍ଠ ନାରଦ । ସଙ୍ଗେ ସଙ୍ଗେ କାଳବିଳମ୍ବ





ନକରି ବିନମ୍ରତାର ସହ ଯୋଡହସ୍ତ ହୋଇ ଅସୁସ୍ଥତାର କାରଣ ପୁଛିଲେ ରସରାଜ ରସିକେନ୍ଦ୍ର ମଉଳିଙ୍କୁ । ପ୍ରଭୁ ଭକ୍ତର ଅନୁରୋଧକୁ ଏଡି ନପାରି ଅତି କ୍ଷୀଣ ସ୍ୱରରେ ଉତ୍ତର ଦେବାକୁ ଆରମ୍ଭ କଲେ । କହିଲେ ହେ ବିଧି ନନ୍ଦନ ଏହା ଏକ ଅସମ୍ଭବ ଯନ୍ତ୍ରଣାଯୁକ୍ତ ବ୍ୟାଧି । ଯାହା କେବଳ ପ୍ରିୟଜନମାନଙ୍କର ପାଦର ଧୂଳିକୁ ଶରୀରରେ ଲେପନ ଦ୍ୱାରା ଦୂର ହୋଇପାରିବ ।

କାଳବିଳମ୍ବ ନକରି ଦେବର୍ଷି ଅଙ୍ଗ ଉତ୍ତରୀୟକୁ ଖୋଲି ଅଷ୍ଟପାଟରାଣୀମାନଙ୍କୁ ସେମାନଙ୍କର ପଦରଜ ତହିଁରେ ପ୍ରଦାନ କରିବାକୁ କଲେ ଅନୁରୋଧ । କିନ୍ତୁ ଏ କି ବିଡମ୍ବନା । ଜଣେ କେହି ହେଲେ ପଦରଜ ପ୍ରଦାନ କଲେନାହିଁ । ବରଂ ଉତ୍ତରରେ କହିଲେ, ନିଜର ପାଦଧୂଳିକୁ ଇହକାଳ ପରକାଳର ଦେବତାଙ୍କ ଦେହରେ ବୋଳିଦେବା ପାଇଁ ପ୍ରଦାନ କରି ସେମାନେ କ'ଣ ନର୍କ ଯନ୍ତ୍ରଣାକୁ ବରଣ କରିବେ ? ଏହା ସମ୍ପୂର୍ଣ୍ଣ ଅସମ୍ଭବ । ଜାଣିଶୁଣି ମରଣକୁ ବରଣ କରିପାରିବେ ନାହିଁ । ଗୋଟିଏ ପରେ ଗୋଟିଏ ରାଣୀ ନାରଦ ମହର୍ଷିଙ୍କୁ କ୍ଷମା ମାଗି ସେ ସ୍ଥାନରୁ ପ୍ରସ୍ଥାନ କଲେ ।

ପରେ ପରେ ଦେବର୍ଷି ରାଜପ୍ରାସାଦର ଅନ୍ୟ ଆତ୍ମୀୟ ସ୍ୱଜନମାନଙ୍କ ନିକଟରେ ଭିକ୍ଷା କରିବାକୁ ଲାଗିଲେ ପ୍ରଭୁଙ୍କ ଆରୋଗ୍ୟାର୍ଥେ ସେମାନଙ୍କର ପାଦଧୂଳି । କିନ୍ତୁ ସେ ଏଥିରେ ମଧ୍ୟ ସଫଳ ହେଲେନାହିଁ । ସମସ୍ତେ ଏହା ଘୋର ଅନ୍ୟାୟ କାର୍ଯ୍ୟ ବୋଲି ମତ ଦେଇ ଜାଣିଶୁଣି ଅପରାଧ କରିପାରିବେ ନାହିଁ ବୋଲି ରୋକ୍‌ଠୋକ୍ ମୁନିଙ୍କୁ ଜଣାଇଦେଲେ । ଅନ୍ୟ ଉପାୟ ନପାଇ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ପ୍ରଭୁଙ୍କର ଆରୋଗ୍ୟ ଚିନ୍ତାରେ ମ୍ରିୟମାଣ ହୋଇପଡିଲେ ଦେବର୍ଷି । ଶେଷରେ ଗୋପପୁର କଥା ତାଙ୍କ ମନ ମଧ୍ୟରେ ପ୍ରବେଶ କଲା । ବ୍ରଜଲୀଳାର ସ୍ମୃତିକୁ ମନେ ପକାଇ ପ୍ରଭୁଙ୍କଠାରୁ ବିଦାୟ ନେଇ ଗୋପପୁର ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କଲେ ଚତୁରାନନ ନନ୍ଦନ ।

ଗୋପ ଦାଣ୍ଡରେ ମହର୍ଷି ପହଞ୍ଚିବା କ୍ଷଣି ତାଙ୍କର ବୀଣାବାଦନ ଶ୍ରବଣପୂର୍ବକ ଗୋପୀମାନେ ଧାଇଁ ଆସିଲେ । ପ୍ରଣାମ ଜ୍ଞାପନ କରି ବିଭିନ୍ନ ପ୍ରଶ୍ନମାନ ପଚାରି ବସିଲେ ମୁନୀଙ୍କୁ, ସେମାନଙ୍କର ପ୍ରାଣଠାରୁ ଅଧିକ କାହ୍ନୁ ସମ୍ପର୍କରେ ଜାଣିବା ପାଇଁ । କିପରି ଅଛନ୍ତି ହଟିଆ ନାଗର ? ତାଙ୍କର ସବୁ କୁଶଳ ତ ? ଏତେ ଶୀଘ୍ର ଆମକୁ ପର କରିଦେଲେ ? ଇତ୍ୟାଦି ଇତ୍ୟାଦି । ଧୈର୍ଯ୍ୟହରା ଗୋପୀମାନଙ୍କୁ ବିଳମ୍ବ ନକରି ପ୍ରଭୁଙ୍କର ଅସୁସ୍ଥତା ତଥା ତହିଁର ନିରାକରଣର ଉପାୟ ଜଣାଇଦେଲେ ବ୍ରହ୍ମାଙ୍କ ଆତ୍ମଜ ।

ଏହା ଶୁଣି ସମସ୍ତଙ୍କ ଚକ୍ଷୁ ଲୋତକାପ୍ଲୁତ ହୋଇଉଠିଲା । ପାଗଳିନୀ ପ୍ରାୟ କାନ୍ଦିବାକୁ ଆରମ୍ଭ କଲେ ସମସ୍ତ ଗୋପୀ । ନିଅନ୍ତୁ ନିଅନ୍ତୁ ଯେତେ ପାରିବେ ପାଦଧୂଳି ନିଅନ୍ତୁ । ଶୀଘ୍ର ପ୍ରଭୁଙ୍କ ଶରୀରରେ ଲେପନ କରିବାର ବ୍ୟବସ୍ଥା କରନ୍ତୁ । ହେଉ ଅପରାଧ, ମିଳୁ ମୃତ୍ୟୁଦଣ୍ଡ, ଜନ୍ମ ଜନ୍ମାନ୍ତରର ସଞ୍ଚିତ ପୁଣ୍ୟ କ୍ଷୟ ହେଉ ପଛେ ଭଲ ହୋଇଯାଆନ୍ତୁ ପ୍ରାଣପ୍ରିୟ ରାଧା ମାଧବ । ଏହି ସମୟରେ ଦେବର୍ଷି ଅନତି ଦୂରରେ ଜଣେ ରମଣୀ ଧାଇଁ ଧାଇଁ ଆସୁଥିବା ଦେଖିବାକୁ ପାଇଲେ । ବିଧି ତନୟଙ୍କର ଚରଣରେ ପ୍ରଣତି ଜ୍ଞାପନ କରିବା ଅବସ୍ଥାରେ ସଂଜ୍ଞାହୀନ ହୋଇ ଭୂମିରେ ଲୋଟିପଡିଲେ । ସେ ଥିଲେ କୃଷ୍ଣ ପ୍ରେମ ପାଗଳିନୀ ରାମେଶ୍ୱରୀ ଶ୍ରୀରାଧା । ପ୍ରାଣପ୍ରିୟଙ୍କର ଅସୁସ୍ଥତା ଶୁଣି କଇଁ କଇଁ ହୋଇ କାନ୍ଦି ଉଠୁଥାନ୍ତି । ଅନୁନୟ ପୂର୍ବକ ଦେବର୍ଷିଙ୍କୁ ପ୍ରାର୍ଥନା କରି କହିଲେ ନିଜର ପାଦଧୂଳିକୁ ନେବା ପାଇଁ । ଶୁଖିଲା ପାଦରେ ଧୂଳି କମ୍ ଥିବ ଅନୁଭବ କରି ପାଦ ଓଦାକରି ଧୂଳିରେ ରଖି ପୁନଶ୍ଚ ଝାଡି ଦେଉଥାନ୍ତି ନାରଦଙ୍କର ଉତ୍ତରୀୟ ଉପରେ ।

ଆଶ୍ଚର୍ଯ୍ୟ ହୋଇ ଏସବୁ ଦୃଶ୍ୟ ଅବଲୋକନ କରୁଥାନ୍ତି ଦେବର୍ଷି । ଅଭୁତପୂର୍ବ ଏ ଦୃଶ୍ୟ । ଦ୍ୱାରକାରେ କଣାଏ ପାଦଧୂଳି ପାଇବାକୁ ସମର୍ଥ ହୋଇନଥିଲା ବେଳେ ଏଠାରେ ମିଳୁଥିବା ଧୂଳିକୁ ସେ ନେବେ କିପରି ? କି ପ୍ରକାର ଭକ୍ତି ? ଅପ୍ରାକୃତ ପ୍ରେମର ଚରମ ନିଦର୍ଶନ । ପାପ ପାଇଁ ନାହିଁ ଖାତର । ଯମଦଣ୍ଡ ପ୍ରତି ତିଳେ ହେଲେ ନାହିଁ ଭୟ ମନ ମଧ୍ୟରେ । ମୃତ୍ୟୁକୁ ସ୍ୱାଗତ କରି ଅର୍ଜିତ ପୁଣ୍ୟ କ୍ଷୟର ପ୍ରତିବଦଳରେ ଇପ୍‌ସିତ କାମନା ହେଉଛି କାହ୍ନୁଙ୍କୁ ରୋଗମୁକ୍ତ କରିବା । ନବଧା ଭକ୍ତିର ଏହା ଚରମ ନିଦର୍ଶନ ।

କାଳ ବିଳମ୍ବ ନକରି ଦେବର୍ଷି ଗୋପପୁର ତ୍ୟାଗ କରି ସଂଗୃହୀତ ପାଦଧୂଳିକୁ ମସ୍ତକରେ ବହନ ପୂର୍ବକ ଦ୍ୱାରକା ଅଭିମୁଖେ ଯାତ୍ରା କଲେ । କି ପବିତ୍ର ଏ ଧୂଳି । ଯାହାର ପରଶରେ ପ୍ରଭୁ ହେବେ ଆରୋଗ୍ୟ । ସତେ ଯେପରି ଯାଦୁକରୀ ମନ୍ତ୍ରରେ ଅଭିମନ୍ତ୍ରିତ । ଏହି ଧୂଳିଠାରୁ ବଳି ପବିତ୍ର ଆଉ କ'ଣ ଥାଇପାରେ । ଆଜି ମୋର ମହାଭାଗ୍ୟ । ଏହି ଭାବନାରେ ମୁନିଙ୍କର ତନୁ ମନ ପୁଲକିତ ହୋଇ ଉଠୁଥାଏ । ନାରଦଙ୍କର ପ୍ରତ୍ୟାବର୍ତ୍ତନର ମାର୍ଗକୁ ଅପଲକ ନୟନରେ ଚାହିଁ ରହିଥାନ୍ତି ପରମ ପ୍ରେମମୟୀ ଶ୍ରୀରାଧା ଓ ସମସ୍ତ ଗୋପାଙ୍ଗନା ।

ଦ୍ୱାରକାରେ ପହଞ୍ଚି ନିଜେ ସ୍ୱହସ୍ତରେ ମଥାରେ ବହନ କରି ଆଣିଥିବା ପାଦଧୂଳିକୁ ପ୍ରଭୁଙ୍କର ଶ୍ରୀଅଙ୍ଗରେ ବୋଳିବାକୁ ଆରମ୍ଭ କଲେ ଦେବର୍ଷି । କ୍ରମେ କ୍ରମେ ଦେବକୀ ନନ୍ଦନ ଶାରୀରିକ ଯନ୍ତ୍ରଣାରୁ ମୁକ୍ତି ପାଇ ସୁସ୍ଥ ହେବାକୁ ଲାଗିଲେ । ଶଯ୍ୟା ତ୍ୟାଗ




କରି କଲେ ଉପବେସନ । ମୁଖମଣ୍ଡଳର ବିଷଣ୍ଣତା ପରିଣତ ହେଲା ପ୍ରସନ୍ନତାରେ । ରଙ୍ଗଅଧରରେ ଖେଳିବାକୁ ଆରମ୍ଭ କଲା ସ୍ମିତହାସ୍ୟ ରେଖା । ଏସବୁ ପରିବର୍ତ୍ତନକୁ ଅବଲୋକନ କରି ମହର୍ଷି କହି ଉଠିଲେ, ହେ ପ୍ରଭୁ, ଏ କି ବିଚିତ୍ର ଲୀଳା ତୁମର ? ଯାହା ବୁଝିବା ଆଦୌ ସମ୍ଭବ ନୁହେଁ ଅନ୍ୟମାନଙ୍କ ପକ୍ଷରେ । ସଙ୍ଗେ ସଙ୍ଗେ ଗାଇ ଉଠିଲେ–

''ଶ୍ରୀକୃଷ୍ଣ ଗୋପୀଙ୍କର ଭାବ,
ଯେ ବ୍ରହ୍ମା ଶିବଙ୍କୁ ଦୁର୍ଲ୍ଲଭ ॥
କେ କହିପାରେ ତହିଁ ସ୍ୱାଦ,
ବିଷୟା ବିଷକୁ ସେ ଗଦ ॥

ପ୍ରଭୁ ସୁସ୍ଥ ହେବା ଖବର ଚାରିଆଡେ ଖେଳିଗଲା, ପାଦଧୂଳିର ଏକି ଚମତ୍କାରିତା । ଯାହାଦ୍ୱାରା ଅସାଧ ରୋଗ ମଧ ଭଲ ହୋଇଯାଇପାରେ । ଅଷ୍ଟପାଟ ମହିଷୀଗଣ ପାଦଧୂଳି ସଂଗ୍ରହର ସମସ୍ତ ବୃତ୍ତାନ୍ତ ମୁନିଙ୍କଠାରୁ ଶ୍ରବଣ କରି ଲଜ୍ଜିତ ହେଲେ। ନିଜର ଅକ୍ଷମତା, ସଂକୀର୍ଣ୍ଣତା ତଥା ଅଜ୍ଞତା ପାଇଁ ନିଜକୁ ମନେ ମନେ ଧିକ୍କାର କଲେ । ଗୋପୀମାନଙ୍କର ପ୍ରେମଭାବ ନିକଟରେ ସେମାନେ କେତେ ହୀନ ଏବଂ ନଗଣ୍ୟ ଏହା ଭାବି ରହିଲେ ନିରୁତ୍ତର ।

ଦିନେ ମାତା ରୋହିଣୀଙ୍କୁ ଶ୍ରୀରାଧା ତଥା ବ୍ରଜଲୀଳା ସମ୍ପର୍କରେ ଜାଣିବା ପାଇଁ ଅଷ୍ଟପାଟ ମହିଷୀଗଣ ଅନୁରୋଧ କଲେ । ସେମାନଙ୍କର ଅନୁରୋଧ ରକ୍ଷାକରି ମା ଗୋଟି ଗୋଟି କରି ଗୋପ ତଥା ବୃନ୍ଦାବନରେ ସଙ୍ଗଠିତ ପ୍ରଭୁଙ୍କର ସମସ୍ତ ଲୀଳା ବର୍ଣ୍ଣନା କରି ବସିଲେ । ଗୋପପୁରରେ କ୍ଷୀର ଲବଣୀ ଚୋରି ଠାରୁ ଆରମ୍ଭ କରି ନିକୁଞ୍ଜ କାନନରେ ଅନୁଷ୍ଠିତ ପବିତ୍ର ରାସଲୀଳା ପର୍ଯ୍ୟନ୍ତ ଘଟଣାବଳୀକୁ ତନ୍ନ ତନ୍ନ କରି ବୁଝାଇ ଚାଲିଲେ ରାଣୀମାନଙ୍କୁ । ବ୍ରଜଲୀଳା ଠାରୁ ବଳି ଶ୍ରେଷ୍ଠ ଲୀଳା ପ୍ରଭୁଙ୍କର ଆଉ କିଛି ନାହିଁ । ଏହି ବର୍ଣ୍ଣନାରୁ ରାଣୀମାନେ ଅବଗତ ହେଲେ ଯେ ରାଧା କିପରି ଥିଲେ କୃଷ୍ଣ ପ୍ରେମରେ ପାଗଳିନୀ । ଦୈହିକ କାମନା ବାସନାରେ ଊର୍ଦ୍ଧ୍ୱରେ ଥିଲା ତାଙ୍କର ଚିନ୍ତା ଓ ଚେତନା । ଅପ୍ରାକୃତ ପ୍ରେମର ସେ ଥିଲେ ପରମ ପୂଜାରିଣୀ ।

ମା' ରୋହିଣୀ ବ୍ରଜଲୀଳା ବର୍ଣ୍ଣନା କରୁଥିବା ସମୟରେ ସମସ୍ତଙ୍କ ଅଗୋଚରରେ ଦୃଷ୍ଟିର ଅନ୍ତରାଳରେ ଦ୍ୱାର ଦେଶରେ ଉପସ୍ଥିତ ରହି ଶ୍ରବଣ କରି ଚାଲିଥିଲେ ପରମ ପ୍ରେମମୟ ଶ୍ରୀକୃଷ୍ଣ ଚନ୍ଦ୍ର, ଭାଇ ବଳରାମ ଓ ଭଗିନୀ ସୁଭଦ୍ରା । ଶ୍ରୀରାଧାଙ୍କର ପ୍ରେମ ଭାବର କଥା ଓ ଗାଥା ଶ୍ରବଣ କରି ତିନି ଜଣଙ୍କର ଅଂଗ ଗଳିତ ହେବାକୁ ଲାଗିଲା । ସେମାନେ ଏପରି ଆତ୍ମ ବିଭୋର ହୋଇପଡିଥିଲେ ଯେ ନିଜ ଅଙ୍ଗର ବିଗଳିତ ଅବସ୍ଥା ପ୍ରତି ତାଙ୍କର ଦୃଷ୍ଟି ନଥିଲା ।

ଠିକ୍ ଏହି ସମୟରେ ଦେବର୍ଷି ନାରଦ ସେଠାରେ ଉପସ୍ଥିତ ହୋଇ ତିନିଜଣଙ୍କର ଏହି ହସ୍ତପଦ ବିହୀନ ରୂପ ଦର୍ଶନରେ ବିମୋହିତ ହୋଇପଡିଲେ । କରଯୋଡି ପ୍ରାର୍ଥନା କଲେ ପ୍ରଭୁ ମୁଁ ଆଜି ଯେଉଁ ରୂପ ଆପଣଙ୍କର ଦେଖିବାକୁ ପାଉଛି, ଅନ୍ୟମାନଙ୍କୁ ତଥା ଆପଣଙ୍କର ଭକ୍ତମାନଙ୍କୁ ଦୟାକରି ଏହି ରୂପ ଥରେ ଦେଖିବାକୁ ସୁଯୋଗ ପ୍ରଦାନ କରନ୍ତୁ । ଭକ୍ତର ଆକୁଳ ନିବେଦନକୁ ପ୍ରଭୁ ଗ୍ରହଣ କରି କହିଦେଲେ ତଥାସ୍ତୁ । ହେ ଦେବର୍ଷି ଆଗାମୀ କଳିଯୁଗରେ ଏହିପରି ହସ୍ତପଦ ବିହୀନ ଅବସ୍ଥାରେ ନୀଳାଚଳ ଧାମରେ ଆମେ ତିନିଜଣ ଶ୍ରୀମନ୍ଦିରରେ ବିଜେକରି ଭକ୍ତମାନଙ୍କୁ ଦର୍ଶନ ଦେବୁ ।

ତେଣୁ ଆଜି ପବିତ୍ର ନୀଳାଚଳ ଧାମରେ ନୀଳକନ୍ଦରରେ ଆମେ ଯେଉଁ ଚତୁର୍ଦ୍ଧା ମୂରତୀକୁ ଦର୍ଶନ କରୁଛୁ, ତାହା ସେହି ପରମ ପ୍ରେମମୟୀ ଶ୍ରୀରାଧାଙ୍କ ଯୋଗୁଁ ଯେ ସମ୍ଭବ ହୋଇଛି, ଏଥିରେ ସନ୍ଦେହର ଅବକାଶ ନାହିଁ । 'ଚିତ୍ତ ବିନୋଦ'ରେ ରାଧାରାଣୀଙ୍କର ମହାନତାକୁ ବର୍ଣ୍ଣନା କରିବାକୁ ଯାଇ ଭକ୍ତ ଗାଇ ଉଠିଛି–

'ରାଧା ବୋଲି ଅଟେ ଯେଉଁ ଦିଓଟି ଅକ୍ଷର,
ସମାନ ନୁହଁଇ ତାଙ୍କୁ ଚତୁର୍ଦ୍ଦଶ ପୁର ।
ରାଧା ନାମେ ଗଙ୍ଗାଯାଏ ତିନିପୁରେ ବହି,
ରାଧା ନାମେ ଚନ୍ଦ୍ର ସୂର୍ଯ୍ୟ ଆତଯାତ ହୋଇ ।'

ଧନ୍ୟ ପ୍ରଭୁ, ଧନ୍ୟ ତୁମ ଲୀଳା, ତୁମ ଲୀଳାର ଆଦି ଅନ୍ତ ପାଇବା ଯୋଗୀ ଋଷିମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ତୁମେ ଏକା ଭକତର । ଭକତ ଏକା ତୁମର ପ୍ରାଣଧନ । ତାର ଉଦ୍ଧାର ଲାଗି ଆଜି ତୁମର ଏ ହସ୍ତପଦ ବିହୀନ ରୂପ ଲାବଣ୍ୟ । ତୁମର ଏ ରୂପ ବିମୋହିତ କରୁଛି କୋଟି କୋଟି ଭକ୍ତମାନଙ୍କୁ । ସବୁ ଧର୍ମକୁ କରିଛି ଏକାକାର । ସବୁ ମତବାଦ ସେ ରୂପରେ ହୋଇଛି ବିହୀନ । ମନ ମଧରେ ସେ ଅପରୂପ ସଦା ନାଚିଉଠୁ, ଏତିକି ମାତ୍ର ତୁମର ଚରଣାର ବିନ୍ଦରେ ପ୍ରାର୍ଥନା ।

ସିଣ୍ଡିକେଟ୍ ବ୍ୟାଙ୍କ,
ଖୋର୍ଦ୍ଧା ଶାଖା



# ନୀଳଶୈଳର ଯଜ୍ଞପୁରୁଷ ଶ୍ରୀଜଗନ୍ନାଥ

ରମେଶ ପ୍ରସାଦ ସିଂହ

ନୀଳାଚଳରେ କାହିଁ କେଉଁ ଅନାଦି କାଳରୁ ପରଂବ୍ରହ୍ମ ଶ୍ରୀଶ୍ରୀଜଗନ୍ନାଥ ମହାପ୍ରଭୁ ପୂଜା ପାଇଆସୁଛନ୍ତି, ସେ ବିଷୟରେ ଯେତେ ଗବେଷଣା କଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ପ୍ରାମାଣିକ ତଥ୍ୟ ଦେବା କେବେହେଲେ ସମ୍ଭବ ହୋଇପାରିନାହିଁ । ଆଧ୍ୟାତ୍ମିକ ଚିନ୍ତାଧାରାର ଗବେଷକ ବା ଐତିହାସିକମାନେ କିମ୍ବଦନ୍ତୀ, ଲୋକକଥା, ପୁରାଣ, ପରମ୍ପରା, ଐତିହାସିକ ତଥ୍ୟ ତଥା ବିଭିନ୍ନ ଶିଳାଲେଖକୁ ତର୍ଜମା କରି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ନିଜର ଗବେଷଣା ଉପରେ ମଧ୍ୟ ସେମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଆସିପାରେ ନାହିଁ, କାରଣ ଏମିତି ଅନେକ ତଥ୍ୟ ଆପେ ଆପେ ଗବେଷଣା ପରିଧିକୁ ଚାଲିଆସେ ଯେ ଶେଷରେ ସେମାନେ ଆଧ୍ୟାତ୍ମିକ ଭାବ ମଧ୍ୟରେ ନିଜର ସତ୍ତା ହରାଇ ବସନ୍ତି । ସେହି କାରଣରୁ ନୀଳାଚଳ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସ୍ଥିତି ସମ୍ପର୍କରେ ଐତିହାସିକ ଅଡୁଆ ସୂତାକୁ ଆଜିଯାଏଁ ଫିଟାଇବା ସମ୍ଭବ ହୋଇନାହିଁ । ଏପରିକି ଇତିହାସକାରମାନେ ଗବେଷଣା କରୁ କରୁ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ନିଜର ଆତ୍ମସତ୍ତା ହରାଇ ଜଣେ ଜଣେ ଉତ୍ସର୍ଗୀକୃତ ଭକ୍ତ ଭାବରେ ପରିଚିତ ହୋଇଯାଇଛନ୍ତି । ଶ୍ରୀମନ୍ଦିରରେ ପୂଜିତ ହେଉଥିବା ବ୍ରହ୍ମମୟ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ସନାତନ ହିନ୍ଦୁ ଧର୍ମର ବିଭିନ୍ନ ସମ୍ପ୍ରଦାୟର ଭକ୍ତମାନେ ନିଜ ନିଜର ଆରାଧ୍ୟ ଦେବତା ଭାବେ ଅତି ନିଜର କରିନେଇ ଥିବାରୁ ଅନାଦି କାଳରୁ ପ୍ରାକ୍ ଐତିହାସିକ ସାଙ୍କେତିକ ପ୍ରତିମାଭାବେ ପୂଜା ପାଉଥିବା ସନାତନ ଧର୍ମର ଏହି ଅଦ୍ଭୁତ ତଥା ଆକର୍ଷଣୀୟ ଦେବତାଙ୍କୁ ଆଦି ଅନ୍ତ ବିଷୟରେ ଧର୍ମାଚାର୍ଯ୍ୟ ତଥା ପଣ୍ଡିତମାନେ ମଧ୍ୟ ପ୍ରଶ୍ନ କରିବାର ସାହସ କରିପାରିନାହାନ୍ତି । ଯେଉଁଠି ସର୍ବମୟକର୍ତ୍ତା ଭଗବାନଙ୍କ ସତ୍ତାର ପ୍ରଶ୍ନ ଉଠେ ଏବଂ ଯେତେବେଳେ ଜଣେ ଅଂହକାରୀ ବ୍ୟକ୍ତିତ୍ୱ ସେହି ପ୍ରଶ୍ନ ସମଗ୍ର ସଂସାରକୁ କରେ, ସେତେବେଳେ ଶିଶୁ ସୁଲଭ ବିଶ୍ୱାସୀ ପ୍ରହଲ୍ଲାଦର ଆକୁଳ ନିବେଦନ ତଥା ସମର୍ପଣ ଭାବରେ ବିଶ୍ୱସ୍ରଷ୍ଟା ବୈକୁଣ୍ଠ ତ୍ୟାଗ କରି ଅହଂକାରର ବିନାଶ ନିମନ୍ତେ ଓ ବିଶ୍ୱାସର ପ୍ରତିଷ୍ଠା ନିମନ୍ତେ ନିର୍ଜୀବ ବସ୍ତୁରୁ ମଧ୍ୟ ଆତ୍ମ ପ୍ରକାଶ କରିଥାନ୍ତି । ସମର୍ପଣ ଭାବ ବିଶ୍ୱାସ ଏବଂ ଧର୍ମର ପ୍ରତିଷ୍ଠା ପାଇଁ ଭଗବାନ ନେଇଥାନ୍ତି ଭୟଙ୍କର ରୂପ, ଶାନ୍ତି ସ୍ୱରୂପ ଯାହା ହିଁ ନୃସିଂହଙ୍କର ଅବତାର । ପୃଥିବୀ ପୃଷ୍ଠରେ ଅଂହକାରୀ, ଅତ୍ୟାଚାରୀଙ୍କ ପ୍ରାଦୁର୍ଭାବ ହ୍ରାସ କରି ସମର୍ପିତ ବିଶ୍ୱାସୀ ଧାର୍ମିକ ବ୍ୟକ୍ତିଙ୍କୁ ରକ୍ଷା କରିବା ପାଇଁ ଓ ଧର୍ମର ପ୍ରତିଷ୍ଠା କରିବା ପାଇଁ ଭଗବାନ ବିଷ୍ଣୁ ଧରା ପୃଷ୍ଠକୁ ଅବତରଣ କରିଥାନ୍ତି ଅବତାର ଭାବରେ ।

ସେଦିନ ଥିଲା ସ୍ୱାତୀ ନକ୍ଷତ୍ର ସଂଯୁକ୍ତ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଶନିବାର ପ୍ରଦୋଷ ସମୟ । ଭଗବାନ ବିଷ୍ଣୁ ହିରଣ୍ୟକଶିପୁ ମନରୁ ଅଜ୍ଞତା ତଥା ଅଂହକାର ଦୂର କରିବା ପାଇଁ ଓ ଅତ୍ୟାଚାରୀ ଦାନବକୁ ବଧ କରିବା ପାଇଁ ଉଗ୍ର ରୂପ ଧାରଣ କରିବା ବେଳେ, ସରଳ ପ୍ରହଲ୍ଲାଦ ମନରେ ଆତ୍ମଜ୍ଞାନ ସଂଚାର ପୂର୍ବକ ସୌମ୍ୟ ଅବତାର ଧାରଣ କରିଥିଲେ । ପୁରାଣରେ ବର୍ଣ୍ଣିତ ଯେ ଦୈତ୍ୟରାଜ ହିରଣ୍ୟକଶିପୁକୁ ବଧ କରିବା ପରେ ମହାବିଷ୍ଣୁ ଶ୍ରୀ ନୃସିଂହ ବଙ୍ଗସାଗର ମଧ୍ୟସ୍ଥିତ ଏକ ପୁଣ୍ୟ କ୍ଷେତ୍ରରେ ତପସ୍ୟା କରି ସେଇଠାରେ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଯାହାକି ସମ୍ଭବତଃ ଆମ୍ଭର ଏହି ପୁଣ୍ୟ ନୀଳାଚଳ ଧାମର ମହାବେଦୀ । ଏହି ପୂର୍ବ କଥାବସ୍ତୁ ସହ ଆଜିର ନୀଳାଚଳ ଧାମ ବା ଶ୍ରୀକ୍ଷେତ୍ରକୁ ଚିହ୍ନିତ କରିବା ପାଇଁ କୌଣସି ଐତିହାସିକ ତଥ୍ୟ ନଥିଲେ ମଧ୍ୟ କିମ୍ବଦନ୍ତୀ ଏବଂ ପୌରାଣିକ ମତବାଦ ଏହା ହିଁ ସାବ୍ୟସ୍ତ କରୁଛି । କାରଣ ଶଙ୍ଖକ୍ଷେତ୍ର, ଶ୍ରୀମନ୍ଦିର ତଥା ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ସେବା ପୂଜାରେ ଶ୍ରୀନୃସିଂହଙ୍କର ପୂଜା ମୁଖ୍ୟ ସ୍ଥାନ ଗ୍ରହଣ କରିଛି ।




ପୁରାଣ, କିମ୍ବଦନ୍ତୀ ଓ ଲୋକକଥାରେ ବର୍ଣ୍ଣିତ ଯେ ମହାନ୍ ବିଷ୍ଣୁ ଭକ୍ତ ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ଦୂତ ବିଦ୍ୟାପତି ବ୍ୟାଘ୍ରଗୁହାର ଦୁର୍ଗମ ଅଞ୍ଚଳରେ ଗୋପନୀୟ ଭାବରେ ପୂଜିତ ପ୍ରଭୁ ନୀଳମାଧବଙ୍କୁ ଦର୍ଶନ କରି ଫେରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଯେତେବେଳେ ମଣିମୟ ପ୍ରତିମା ପ୍ରଭୁ ନୀଳମାଧବଙ୍କର ମାହାତ୍ମ୍ୟ ବର୍ଣ୍ଣନା କଲେ, ସେତେବେଳେ ବିଷ୍ଣୁ ଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଭୁଙ୍କ ଦର୍ଶନ ନିମନ୍ତେ ଅତ୍ୟନ୍ତ ଆତୁର ହୋଇ ନିଜର ଇଷ୍ଟ ଦେବ ପ୍ରଭୁ ଦୁର୍ଗା ନରସିଂହଙ୍କୁ ପୂଜା ତତ୍‌କ୍ଷଣାତ୍ ନୀଳାଚଳ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଏକାମ୍ର କାନନରେ ପହଞ୍ଚି ଧ୍ୟାନ କରିବାକୁ ମହାପ୍ରଭୁ ନୀଳମାଧବଙ୍କର ଅନ୍ତର୍ଦ୍ଧାନ ଏବଂ ନୀଳମାଧବଙ୍କ ଅବର୍ତ୍ତମାନରେ ସ୍ୱୟଂ ନୀଳକଣ୍ଠେଶ୍ୱର ଭାବରେ ସେହି ପବିତ୍ର ନୀଳଗିରିକୁ ରକ୍ଷା କରୁଛନ୍ତି ବୋଲି ମହାପ୍ରଭୁ ଲିଙ୍ଗରାଜ ସୂଚନା ଦେଲେ । ବିଷ୍ଣୁ ଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ଏକାମ୍ର ବନରେ ପ୍ରଭୁ ଶ୍ରୀଲିଙ୍ଗରାଜଙ୍କଠାରୁ ନୀଳଶୈଳର ବ୍ୟାଘ୍ର ଗୁମ୍ଫାରୁ ମୃତ୍ୟୁର ଦେବତା ଯମରାଜାଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଅନ୍ତର୍ଦ୍ଧାନ ହୋଇଯାଇଥିଲେ ବୋଲି ସୂଚନା ପାଇ ବ୍ୟାକୁଳ ଭାବରେ ପ୍ରଭୁ ଭୁବନେଶ୍ୱରଙ୍କୁ ପ୍ରାର୍ଥନା କରିବାରେ ତାଙ୍କ ନିର୍ଦ୍ଦେଶରେ ନୀଳାଚଳ ଧାମର ଉପକଣ୍ଠରେ ଏକ ସଦୃଶ୍ୟ ମଣ୍ଡପ ଓ ମନ୍ଦିର ନିର୍ମାଣ କରି ନିଜର ଆରାଧ୍ୟ ଦେବତା ଦୁର୍ଗାମାଧବ (ନୃସିଂହ)ଙ୍କ ଉପାସନା ପୂର୍ବକ ଦେବର୍ଷି ନାରଦଙ୍କ ଉପଦେଶ ମତେ ବିଷ୍ଣୁ କୃପା ଲାଭ କରିବା ପାଇଁ ମହାବିଷ୍ଣୁ ମହାଯଜ୍ଞର ଆୟୋଜନ କଲେ । କେତେକ ପୌରାଣିକ ମତବାଦରେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ଏହି ଯଜ୍ଞ ଆୟୋଜନ କରିଥିବାବେଳେ ଅନ୍ୟ କେତେକ ମତବାଦରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଚତୁର୍ଦ୍ଧା ମୂର୍ତ୍ତି ପ୍ରତିଷ୍ଠା ଅବସରରେ ଏହି ମହାବିଷ୍ଣୁ ମହାଯଜ୍ଞର ଆୟୋଜନ ଇନ୍ଦ୍ରଦ୍ୟୁମ୍ନ କରିଥିଲେ ବୋଲି ପୁରାଣରେ ବର୍ଣ୍ଣିତ ଅଛି । ଯାହା ହେଉନା କାହିଁକି ଏହି ମହାଯଜ୍ଞର ଆୟୋଜନ ସେସମୟର ଏକ ବୃହତ ଧର୍ମାନୁଷ୍ଠାନ କରିଥିଲା । ସାରା ଭାରତବର୍ଷରୁ ବିଦ୍ୱାନ ପଣ୍ଡିତ ନୈଷ୍ଠିକ ବ୍ରାହ୍ମଣ ବୈଷ୍ଣବ, ସାଧୁ, ସନ୍ଥ, ଋଷି ମୁନି ତଥା ଦେବତାମାନଙ୍କୁ ମଧ୍ୟ ଏହି ଆୟୋଜନକୁ ଯଥାଚାର ନିମନ୍ତ୍ରଣ କରାଯାଇଥିଲା ଓ ସେମାନଙ୍କୁ ଏ ମହାଯଜ୍ଞ ନିମନ୍ତେ ବରଣ କରାଯାଇଥିଲା । ଏହି ବିରାଟ ଆୟୋଜନକୁ ସ୍ୱୟଂ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ମହାରାଣୀ ଗୁଣ୍ଡିଚା ଦେବୀ ତଦାରଖ କରୁଥିଲେ । ସହସ୍ର କୁଣ୍ଡିୟ ଏହି ମହାବିଷ୍ଣୁ ମହାଯଜ୍ଞ ନିମନ୍ତେ ଏକକୋଶ ବ୍ୟାପି ଯଜ୍ଞସ୍ଥଳୀ ନିର୍ମାଣ କରାଯାଇଥିଲା । ବିଶ୍ୱର ସମସ୍ତ ଦେବାଦେବୀ ଓ ଋଷି ମୁନିଙ୍କୁ ଆବାହନ କରାଯାଇଥିଲା । ମହାପ୍ରଭୁ ଏକାମ୍ର ଅଧୀଶ୍ୱର ଶ୍ରୀଲିଙ୍ଗରାଜଙ୍କର ନିର୍ଦ୍ଦେଶରେ ଏହି ଯଜ୍ଞ ସଂପାଦିତ ହେବାକୁ ଥିବାରୁ ପ୍ରଭୁଙ୍କ ନିର୍ଦ୍ଦେଶରେ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକ ଯାଇ ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ସାଙ୍ଗରେ ଯଜ୍ଞ ସମ୍ପାଦନ କରିବା ନିମନ୍ତେ ଆଣିଥିଲେ ବୋଲି ପୁରାଣ ଶାସ୍ତ୍ରରେ ବର୍ଣ୍ଣନା କରାଯାଇଅଛି । ଅଙ୍କୁରା ରୋପଣ ଓ ଅଧିବାସଠାରୁ ମହାଆଡମ୍ବରରେ ସମ୍ପୂର୍ଣ୍ଣ ଶାସ୍ତ୍ରୀୟ ପଦ୍ଧତି ଓ ରୀତିନୀତି ଅନୁସାରେ ବେଦ ମନ୍ତ୍ର ଧ୍ୱନି ମଧ୍ୟରେ ସହସ୍ର କୁଣ୍ଡିୟ ମହାବିଷ୍ଣୁ ମହାଯଜ୍ଞ ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କ ପୌରହିତ୍ୟରେ ଆରମ୍ଭ ହେଲା । ଯଜ୍ଞ ହେବାଠାରୁ ଦିନ ଦିନ ଧରି ବେଦମନ୍ତ୍ର ଧ୍ୱନିରେ ଗଗନ ପବନ ମୁଖରିତ ହୋଇ ଘୃତ ଓ ସମିଧ ଆହୂତିରେ ଗଗନ ମଣ୍ଡନ ପବିତ୍ରମୟ ହୋଇଉଠିଲା । ପ୍ରଭୁ ନୀଳମାଧବଙ୍କର ଗୋପନୀୟ ଆବାସସ୍ଥଳୀ ନୀଳକନ୍ଦର ମଧ୍ୟ ପବିତ୍ର ମନ୍ତ୍ର ଧ୍ୱନିରେ ପ୍ରତିଧ୍ୱନିତ ହୋଇ ପରିବେଶ ପବିତ୍ରମୟ ହୋଇଉଠିଲା । ଯଜ୍ଞର ପୂର୍ଣ୍ଣାହୂତିଦିନ ଯେତିକି ପାଖେଇ ଆସୁଥାଏ, କେବଳ ରାଜା ଇନ୍ଦ୍ରଦ୍ୟୁମ୍ନ ରାଣୀ ଗୁଣ୍ଡିଚାଦେବୀ ନୁହନ୍ତି, ଯଜ୍ଞରେ ଉପସ୍ଥିତ ସମସ୍ତ ଦେବାଦେବୀ, ଋଷିମୁନି, ଏପରିକି ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ମନ ଏକ ଅଜ୍ଞାତ ଆଶାରେ ପୁଲ୍ଲକିତ ହୋଇଉଠୁଥାଏ ଓ ଆଶଙ୍କାରେ ମନ ଅଥୟ ହୋଇଉଠୁଥାଏ । ଶେଷରେ ଯଜ୍ଞର ସେ ଦିନଟି ଉପସ୍ଥିତ ହେଲା । ଯଜ୍ଞର ପୂର୍ଣ୍ଣାହୂତି ପାଇଁ ମହାରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚା, ସୃଷ୍ଟିକର୍ତ୍ତା ବ୍ରହ୍ମା, ଦେବର୍ଷି ନାରଦ ଓ ଅନ୍ୟାନ୍ୟ ଅତିଥିଗଣ ପ୍ରସ୍ତୁତ ହୋଇଗଲେ । ଯଜ୍ଞର ପୁରୋହିତ ବେଦପତି ବ୍ରହ୍ମା ଋଷିମୁନିଙ୍କ ଗହଣରେ ପରମ ପବିତ୍ର ମନ୍ତ୍ର ବେଦ ଉଚାରଣ ମଧ୍ୟରେ ଯଜ୍ଞର କର୍ତ୍ତା ମହାରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚାକୁ ମହାଯଜ୍ଞ ଅଗ୍ନିକୁଣ୍ଡରେ ମହାବିଷ୍ଣୁଙ୍କର ଉଦ୍ଦେଶ୍ୟରେ ପୂର୍ଣ୍ଣାହୂତି ଦେବାକୁ ନିର୍ଦ୍ଦେଶ ଦେଲେ । ପୁରୋହିତଙ୍କ ନିର୍ଦ୍ଦେଶମତେ ମହାରାଜା ଭଗବାନ ବିଷ୍ଣୁଙ୍କୁ ଧ୍ୟାନ କରି ପରମ ପବିତ୍ର ବିଷ୍ଣୁମନ୍ତ୍ର ଉଚାରଣପୂର୍ବକ ବିଷ୍ଣୁ ଦର୍ଶନ ନିମନ୍ତେ ନିଜ ମନର ବ୍ୟାକୁଳତା ପ୍ରକାଶ କରି ଯଜ୍ଞକୁଣ୍ଡରେ ପୂର୍ଣ୍ଣାହୂତି ପ୍ରଦାନ କଲେ । ହେଲେ ଏ କ'ଣ !!! ଯଜ୍ଞ କୁଣ୍ଡରେ ଆହୂତି ପଡିବା କ୍ଷଣି ଏକ ପ୍ରଚଣ୍ଡ ବିସ୍ଫୋରଣ ସହ ଯଜ୍ଞାନଳର ଲେଲିହାନ ଶିଖା ଆକାଶ ଛୁଇଁଗଲା । ଯଜ୍ଞକୁଣ୍ଡର ଅଗ୍ନି ଶତ ସହସ୍ର ସୂର୍ଯ୍ୟର ତେଜକୁ ଧାରଣ କରି ଅଦ୍‌ଭୁତ ଆଲୋକ ବିକିରଣ କଲା । ଆକାଶରେ ସହସ୍ର ବଜ୍ରର ନିର୍ଘୋଷରେ ଧରା ପ୍ରକମ୍ପିତ ହୋଇ ଯଜ୍ଞକୁଣ୍ଡର ଅଗ୍ନି ଗର୍ଭରୁ ନିର୍ଗତ ହେଲା ବଜ୍ରନିର୍ଘୋଷ ବିଷ୍ଣୁମୟ ମନ୍ତ୍ର ଧ୍ୱନି । ପ୍ରଚଣ୍ଡ ଶବ୍ଦ ଓ ଭୟଙ୍କର ଅଗ୍ନିଶିଖା ସମସ୍ତଙ୍କ ମନରେ ଭୀତିସଂଚାର କଲା ।

ଯଜ୍ଞସ୍ଥଳୀରେ ଉପସ୍ଥିତ ଥିବା ରାଜା, ରାଣୀ, ପାତ୍ର, ମନ୍ତ୍ରୀ, ବିଦ୍ୱାନ ମଣ୍ଡଳୀ, ପୁରୋହିତଗଣ, ମୁନିଋଷି ଓ ପ୍ରଜା ଓ ଭକ୍ତଗଣ ପ୍ରଚଣ୍ଡ ଶବ୍ଦ ଓ ଭୟଙ୍କର ଆଲୋକର ବିକିରଣ ଦେଖି ହତବାକ୍ ହୋଇଗଲେ । ଅନେକ ତତ୍‌କ୍ଷଣାତ୍ ଚେତା ହରାଇଲେ । ସେହି ଅଗ୍ନିଶିଖା ପିଙ୍ଗଳ ବର୍ଣ୍ଣ ଧାରଣ କରି ଚକ୍ରାକୃତି ଘୂରିବାକୁ ଲାଗିଲା । ପିଙ୍ଗଳବର୍ଣ୍ଣ ଧାରଣ କରି ଚକ୍ରାକୃତିରେ ଘୁରୁଥିବା ସେ ଅଗ୍ନି ମଧ୍ୟରେ ଶତ ସହସ୍ର ସୂର୍ଯ୍ୟର ତେଜ ନେଇ ଦୃଶ୍ୟମାନ ହେଲେ ଯଜ୍ଞ ନୃସିଂହ । ଅତ୍ୟନ୍ତ ଭୟଙ୍କର ସେ ନୃସିଂହ ରୂପ । ସହସ୍ର ହସ୍ତ, ସହସ୍ର ଜିହ୍ୱା, ସହସ୍ର ସୂର୍ଯ୍ୟସଂଯୁକ୍ତ ଚକ୍ଷୁ, ଦେହ ଓ କେଶରୁ ଅଗ୍ନିର ସ୍ଫୁଲିଙ୍ଗ, ଆୟୁଧ ସଂଯୁକ୍ତ ସହସ୍ର ହସ୍ତ ଶରୀରରେ ସମଗ୍ର ବିଶ୍ୱ ସମାହିତ । ମସ୍ତକରେ ସହସ୍ର ଫଣାଯୁକ୍ତ ଶେଷନାଗ କୋଳରେ ମହାଭୟଙ୍କରୀ ମହାକାଳୀ, ଆଦ୍ୟାଶକ୍ତି ଯୋଗମାୟା ଅପଲକ ନୟନରେ ଉପସ୍ଥିତ ଦେବତା, ମାନବ ସମସ୍ତେ ଚକିତ ହୋଇ ଚାହିଁ ରହିଲେ । ଯଜ୍ଞାଗ୍ନିର ଲେଲିହାନ ଶିଖା ବିକିରଣରେ ସେହି ମହାଜାଗତିକ ଦୃଶ୍ୟରେ ସମସ୍ତେ ନିଜ ସତ୍ତା ହରାଇ ବସିଲେ । ସେ ଭୟଙ୍କର ରୂପକୁ ଦେଖି ମହାରାଜା ଇନ୍ଦ୍ରଦ୍ୟୁମ୍ନ ଓ ସମସ୍ତ ଭକ୍ତ ନିଜର ଚେତନା ହରାଇଲେ । ମହାବିଷ୍ଣୁ ମହାଯଜ୍ଞର ଅନଳରୁ ପ୍ରକାଶିତ ମହାବିଷ୍ଣୁଙ୍କର ଏହି ଯଜ୍ଞନରସିଂହ ରୂପ ଦେଖି ବ୍ରହ୍ମାଦି ଦେବତା ତଥା ନାରଦାଦି ଋଷିମାନେ ବିଚଳିତ ହୋଇ ଯୋଡ ହସ୍ତରେ ପ୍ରାର୍ଥନା କରିବାକୁ ଲାଗିଲେ ।

''ଉଗ୍ରଂ ବୀର ମହାବିଷ୍ଣୁଂ ଜ୍ୱଳନ୍ତ ସର୍ବତୋ ମୁଖଃ
ନୃସିଂହ ଭୀଷଣଂ ଭଦ୍ର ମୃତ୍ୟୁ ମୃତ୍ୟୁ ନମାମି ଅହଂ ।''

ଅନେକ ସମୟ ପ୍ରାର୍ଥନା ଓ ଆତ୍ମ ନିବେଦନ କରିବା ପରେ ସୃଷ୍ଟି କର୍ତ୍ତା ବ୍ରହ୍ମା ଓ ସମସ୍ତ ଦେବଗଣ ପ୍ରଭୁ ମହାବିଷ୍ଣୁଙ୍କୁ ଭୟଙ୍କର ରୂପ ପରିହାର କରି ଶାନ୍ତ ସୌମ୍ୟ ରୂପରେ ଦର୍ଶନ ଦେବାକୁ ବିନୀତ ନିବେଦନ କଲେ । ବ୍ରହ୍ମଦେବ ଯୋଡହସ୍ତ ହୋଇ ନିବେଦନ କଲେ ''ହେ ପ୍ରଭୁ, ଆପଣଙ୍କର ଏହି ଭୟଙ୍କର ସ୍ୱରୂପ ଦେଖି ମହୀମଣ୍ଡଳରେ ଆପଣଙ୍କର ଭକ୍ତମାନେ ଚେତା ହରାଇଛନ୍ତି । ସେମାନଙ୍କର ଚର୍ମ ଚକ୍ଷୁ ଆପଣଙ୍କର ଏହି ତେଜଦୀପ୍ତ ଓ ତେଜସ୍କ୍ରିୟ ରୂପ ସହନ କରିବା ପାଇଁ ସମ୍ପୂର୍ଣ୍ଣ ଅସମର୍ଥ । ଏଣୁ ଆପଣ କମନୀୟ ରୂପରେ ଦର୍ଶନ ଦେଇ ସେମାନଙ୍କର କଲ୍ୟାଣ କରନ୍ତୁ ।'' ଏହି ନିବେଦନରେ ମହାବିଷ୍ଣୁ ସନ୍ତୁଷ୍ଟ ହୋଇ ସେହି ଯଜ୍ଞ ଅନଳରେ ଯଜ୍ଞପୁରୁଷ ରୂପରେ ଦର୍ଶନ ଦେଲେ । ବ୍ରହ୍ମାଙ୍କର ଦିବ୍ୟ ସ୍ପର୍ଶରେ ଇନ୍ଦ୍ରଦ୍ୟୁମ୍ନ ଏବଂ ଅନ୍ୟାନ୍ୟ ଭକ୍ତମାନେ ଚେତନା ପାଇଁ ସେହି ଯଜ୍ଞପୁରୁଷ ବା ଯଜ୍ଞ ନାରାୟଣଙ୍କର ସୋମ୍ୟ ରୂପ ଦର୍ଶନ କରି ଆହ୍ଲାଦିତ ହେଲେ । ପିଙ୍ଗଳ ବର୍ଣ୍ଣଛିଟାର ଅଗ୍ନିଚକ୍ର ମଧ୍ୟରେ ଯଜ୍ଞପୁରୁଷ ଶ୍ରୀଜଗନ୍ନାଥଙ୍କର ଅବିକଳ ରୂପ, ନୀଳକଳେବର ଶାନ୍ତ ସୌମ୍ୟ ରୂପ, ଚତୁଃହସ୍ତରେ ଶଙ୍ଖ ଚକ୍ର ଗଦା ପଦ୍ମ ମସ୍ତକରେ ଶୋଭିତ ଅନନ୍ତ ବାସୁଦେବ, ତାଙ୍କ ହସ୍ତରେ ଶଙ୍ଖ ଚକ୍ର ହଳ ଓ ମୂଷଳ କୋଳରେ ଜଗତ୍‌ମାତା ମା' ଭୁବନେଶ୍ୱରୀ ହସ୍ତେ ପଦ୍ମ ଓ ବରଦା ମୁଦ୍ରାରେ ଉପବେଶିତ ।

ମହାପ୍ରଭୁ ନୀଳମାଧବଙ୍କର ଅନ୍ତର୍ଦ୍ଧାନରେ ମର୍ମାହତ ତଥା ଯଜ୍ଞାନଳରୁ ଦୃଶ୍ୟମାନ ଯଜ୍ଞନୃସିଂହଙ୍କର ଦର୍ଶନରେ ଭୟଭୀତ ହୋଇପଡିଥିବା ରାଜା ଇନ୍ଦ୍ରଦ୍ୟୁମ୍ନ ଯଜ୍ଞନାରାୟଣଙ୍କ ଅପରୂପ କାନ୍ତି ଦର୍ଶନ କରି ବିମୋହିତ ହୋଇପଡିଲେ । ସେ କୃତ୍ୟ କୃତ୍ୟ ହୋଇ ବାରମ୍ବାର ଦଣ୍ଡ ପ୍ରଣାମ କରିବାକୁ ଲାଗିଲେ । ଇନ୍ଦ୍ରଦ୍ୟୁମ୍ନଙ୍କର ଅନାବିଳ ଭକ୍ତି, ଶ୍ରଦ୍ଧା ତଥା ସାଧୁ ଉଦ୍ୟମରେ ପ୍ରସନ୍ନ ହୋଇ ଯଜ୍ଞାନଳରୁ ଆବିର୍ଭୂତ ପ୍ରଭୁ ନାରାୟଣ ରାଜାଙ୍କ ଇଚ୍ଛାମତେ ବର ପ୍ରଦାନ ପୂର୍ବକ ଅଗ୍ନିର ସ୍ଫୁଲିଙ୍ଗ ମଧ୍ୟରେ ଅନ୍ତର୍ଦ୍ଧାନ ହୋଇଗଲେ । ଯଜ୍ଞସ୍ଥଳ ହରିବୋଲ ହୁଳହୁଳି ଶବ୍ଦରେ ପ୍ରକମ୍ପିତ ହୋଇଉଠିଲା । ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ବ୍ରହ୍ମା ଯଜ୍ଞ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରି ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସାଧୁ ଉଦ୍ୟମର ଶତମୁଖ ପ୍ରଶଂସା କରି ବୈଶାଖ ଶୁକ୍ଳ ଜ୍ୟେଷ୍ଠ ଅଷ୍ଟମୀ ଦିନ ବଙ୍ଗସାଗର(ମହୋଦଧି)ରେ ଭାସି ଆସି ଲାଗିଥିବା ଦାରୁରେ ମହାବିଷ୍ଣୁଙ୍କର ମୂର୍ତ୍ତି ନିର୍ମାଣ କରିବା ପାଇଁ ଉପଦେଶ ଦେଇ ବ୍ରହ୍ମଲୋକ ପ୍ରତ୍ୟାବର୍ତ୍ତନ କଲେ । ବ୍ରହ୍ମଦେବ ଓ ଯଜ୍ଞପୁରୁଷ ଶ୍ରୀଜଗନ୍ନାଥଙ୍କର ନିର୍ଦ୍ଦେଶ ମୁତାବକ ମହାରାଜା ଇନ୍ଦ୍ରଦ୍ୟୁମ୍ନ ନୀଳଗିରି ବା ନୀଳାଚଳରେ ପ୍ରଭୁଙ୍କ ଦାରୁମୂର୍ତ୍ତି ନିର୍ମାଣ କରି ମହାବିଷ୍ଣୁ, ଯଜ୍ଞ ନୃସିଂହ, ଯଜ୍ଞପୁରୁଷ ଶ୍ରୀଶ୍ରୀଜଗନ୍ନାଥଙ୍କର ଆରାଧନାର ଅୟମାରମ୍ଭ କଲେ, ଯାହାକି ସନାତନ ଧର୍ମର ଏକ ପ୍ରମୁଖ ପବିତ୍ର ପୀଠ ଭାବରେ ବିଶ୍ୱରେ ନିଜର ପରିଚୟ ସୃଷ୍ଟି କରିପାରିଲା ।

ଦାଣ୍ଡିମାଳସାହି, ପୁରୀ





# ଶ୍ରୀଜଗନ୍ନାଥ ପରମାତ୍ମାଙ୍କ ପ୍ରତୀକ

ଡକ୍ଟର ଦୁର୍ଗା ପ୍ରସନ୍ନ ଚୌଧୁରୀ

ଶ୍ରୀଜଗନ୍ନାଥ ଲୀଳାମୟ, ରହସ୍ୟମୟ, ଗୂଢତତ୍ତ୍ୱମୟ । ସେ ଲୀଳାମୟ, କାରଣ ତାଙ୍କର ଲୀଳା ଅବର୍ଣ୍ଣନୀୟ । ସେ କେତେବେଳେ ସ୍ୱାଭିମାନୀ ତ କେତେବେଳେ ଉତ୍ସବ ମୁଖର । ସେ ରହସ୍ୟମୟ କାରଣ ତାଙ୍କର ମାୟା ସର୍ବବିରାଜମାନ । ତାଙ୍କୁ ନିରିଖିବା, ବୁଝିବା ଓ ଜାଣିବା ଅତ୍ୟନ୍ତ ଗୋପନ ତଥା ଗୂଢତମ ଅଟେ । ସେ ସର୍ବବ୍ୟାପି । ତାଙ୍କର ମହିମା ଏ ସଚରାଚର ପୃଥିବୀରେ ସର୍ବବ୍ୟାପି । ସେ ଗୂଢତମମୟ କାରଣ ତାଙ୍କୁ ବୁଝିବାକୁ ଯାଇ ନିଜ ଅନ୍ତର ମଧ୍ୟରେ ଅଧିକ ଜଟିଳତା ସୃଷ୍ଟି କରିବା । ସେ ଏତେ ଶୀଘ୍ର ଧରା ଦିଅନ୍ତି ନାହିଁ । ତାଙ୍କୁ ମନ, ତନ, ଚେତନା, ଭାବନା ଓ ଚିନ୍ତାର ଉର୍ଦ୍ଧ୍ୱରେ ସ୍ଥାପନା କଲେ, ସେ ଦେଖାଦେଇପାରନ୍ତି । ତାଙ୍କୁ ଅନ୍ତରରେ ଧ୍ୟାନ କଲେ ଆସନ୍ତି, ବସନ୍ତି, ପୁଣି ଅପସରି ଯାଆନ୍ତି । ଋଷିମୁନିମାନେ ବର୍ଷ ବର୍ଷ ଧରି ତପସ୍ୟା କରି ମଧ୍ୟ ତାଙ୍କୁ ପାଇପାରିନାହାନ୍ତି । ଯାହା କିଛି ଉପଲବ୍ଧି କରନ୍ତି, ତାହା ସମୁଦ୍ରକୁ ଶଙ୍ଖେ । ଏଣୁ ତାଙ୍କୁ ଧ୍ୟାନ ମନରେ ଓ ହୃଦୟର କନ୍ଦରରେ ଉପସ୍ଥାପନା କଲେ ସେ ଶୁଣିପାରନ୍ତି । ସେ ମନୁଆ ଠାକୁର, ତାଙ୍କର ଇଚ୍ଛାରେ ସେ ନିଜେ ପ୍ରକଟ ହୁଅନ୍ତି । କିନ୍ତୁ ଯେତେବେଳେ ସେ ଅମୃତାୟନ ହୁଅନ୍ତି, ସବୁକିଛି ଛାଡି ଭକ୍ତର ଦରଦଭରା ବକ୍ଷରେ ଅମୃତର ଜଳ ସିଂଚନ କରନ୍ତି । ଏ କ୍ଷୁଦ୍ର ଲେଖକ ତାଙ୍କର ଲୀଳାଖେଳା ବର୍ଣ୍ଣିତ କରିବାକୁ ଅକ୍ଷମ । ତଥାପି ତା'ର ଅନୁଭୂତି ପ୍ରକାଶ କରିବାକୁ ଟିକେମାତ୍ର ଚେଷ୍ଟା କରୁଛି ।

ସଂପ୍ରତି ସଂପ୍ରୀତି ଅନୁଷ୍ଠାନର ଆନୁକୂଲ୍ୟରେ ଏକ ସାହିତ୍ୟ ଆସର ଯୋଗ ଦେବାର ସୁଯୋଗ ପାଇଥିଲି । ଏହା ମଧ୍ୟ ଶ୍ରୀଜଗନ୍ନାଥଙ୍କର ଜନୈକ ଭକ୍ତଙ୍କର ପଂଚମ କାବ୍ୟ ସଂକଳନ ''ହୃଦୟରେ ଟିକେ ଥାପନ୍ତି' ପୁସ୍ତକ ଉନ୍ମୋଚନ ଅବସରରେ କଟକରେ ଅନୁଷ୍ଠିତ ହୋଇଥିଲା । ସେ କବିତା ସଂକଳନର ମୁଖ୍ୟ ନାୟକ ଶ୍ରୀଜଗନ୍ନାଥ ଥିଲେ । ତାଙ୍କ ନିକଟରେ ଶ୍ରୀମତୀ ବୀଣାପାଣି ସିଂ ନିଜର ସୁଲଳିତ ଅର୍ଘ୍ୟ ଅର୍ପଣ କରିଥିଲେ । ସେ ବିଭିନ୍ନ ପ୍ରକାରର ଶ୍ରୀଜଗନ୍ନାଥଙ୍କର ମହିମା ଗାନ କରିଥିଲେ । ମୁଁ ଲକ୍ଷ୍ୟ କଲି ଶ୍ରୀଜଗନ୍ନାଥଙ୍କ ଫଟୋଚିତ୍ରରେ ପ୍ରଦୀପ ପ୍ରଜ୍ୱଳନ କରି ସଭା ଆରମ୍ଭ ହେଲା । ଲେଖକ ତଥା କବି ବର୍ଣ୍ଣନା କଲେ ଯେ ସେହି ଶ୍ରୀଜଗନ୍ନାଥଙ୍କ ଫଟୋଟି ଜଣେ ବନ୍ଧୁଙ୍କ ଘରୁ ଆଣିଥିଲେ, ତାଙ୍କର ବାନ୍ଧବୀ ସେହି ଫଟୋକୁ ଏକ ଆଲମାରୀରେ ସାଇତି ରଖିଥିଲେ, କିନ୍ତୁ ଆଲମାରୀର ଚାବିଟି ହଜିଯାଇଥିଲା । କବିଙ୍କ ଅନୁରୋଧକ୍ରମେ ତାଙ୍କର ବାନ୍ଧବୀ ଉତ୍ତର ଦେଲେ ଯେ ଯଦି ଚାବି ମିଳେ ତେବେ ଫଟୋ ମିଳିବ । ଖୋଜାଖୋଜି କରି ପାଇଲିନାହିଁ । ଲେଖିକା ମହୋଦୟ ନିରାଶ ହୋଇ ଶ୍ରୀଜଗନ୍ନାଥଙ୍କୁ ଧ୍ୟାନ କଲେ ଓ ମନର ଦୁଃଖ ପରିପ୍ରକାଶ କଲେ । ହଠାତ୍ ତାଙ୍କର ବାନ୍ଧବୀ ଚାବିର ସନ୍ଧାନ ସଭାର ଦୁଇ ତିନି ଦିନ ପୂର୍ବରୁ ପାଇଥିଲେ ଯଦିଓ ସେହି ଚାବି ଦେଢ ବର୍ଷ ଧରି ଖୋଜୁଥିଲେ । ଏହି ସମ୍ବାଦ ପାଇ ଲେଖିକା ଅତ୍ୟନ୍ତ ଖୁସି ପ୍ରକଟ କଲେ ଓ ପ୍ରଭୁଙ୍କ ପାଦ ପଦ୍ମରେ ନିଜର କୃତଜ୍ଞତା ଜଣାଇଲେ । ଏହିସବୁ ସେହି ଲୀଳାମୟ ଶ୍ରୀଜଗନ୍ନାଥଙ୍କର ମହିମା ନୁହେଁ ତ ଆଉ କ'ଣ ? କାରଣ ଯେଉଁ ଚାବିଟି ଦେଢ ବର୍ଷ ଧରି ମିଳୁନଥିଲା, କିନ୍ତୁ ମିଳିବାର ଅର୍ଥ ସେ ଭକ୍ତର ଭାବନାର ସମ୍ମାନ ଦେଇ ନିଜର ଫଟୋ ପରିପ୍ରକାଶ କରି ଭକ୍ତର ମନର ବ୍ୟଥା ପୂରଣ କଲେ ।

ଆଉ ଏକ ଅନୁଭୂତି ଏହି ଲେଖକ ବର୍ଣ୍ଣନା କରୁଛି । କିଛି ବର୍ଷ ତଳେ ପୁରୀ ଶ୍ରୀମନ୍ଦିରର ମ୍ୟାନେଜିଙ୍ଗ କମିଟିର ସଭ୍ୟଭାବେ କାର୍ଯ୍ୟରତ ଥିଲି । ସେତେବେଳେ ବହୁ ଅଦ୍ଭୁତ ଏବଂ ଅଲୌକିକ ଘଟଣା ଘଟିଛି । ମନେଅଛି, ମ୍ୟାନେଜିଙ୍ଗ କମିଟିର ସଭାରେ ଏକ ସିଦ୍ଧାନ୍ତ ନେବା ପାଇଁ ଅନେକ କଷ୍ଟକର ହୁଏ । କାରଣ ଛତିଶ ନିଯୋଗୀର ସିଦ୍ଧାନ୍ତ ବିରୁଦ୍ଧରେ ହେଉ ଅବା ନୀତି ଶୃଙ୍ଖଳା

କରିବା ପାଇଁ ହେଉ, ଆମେ ସେଥିପାଇଁ ମହାପ୍ରଭୁଙ୍କ ନିକଟରେ ନିବେଦନ କରୁ । ଦେଖାଯାଏ ପ୍ରକୃତରେ ସିଦ୍ଧାନ୍ତ ନେବାରେ ଆଶୁ ପ୍ରଦାନ କରିଥାଏ ଏବଂ ଏହା ମଧ୍ୟ ନିଯୋଗୀ ମହାସଭା ଗ୍ରହଣ କରିଥାନ୍ତି ଯେ ମହାପ୍ରଭୁଙ୍କ କାର୍ଯ୍ୟରେ ପ୍ରତିବନ୍ଧକ ସାଜେ ତା'ର ପ୍ରକୃତ ବାଟ ପ୍ରଭୁ ଫିଟାଇଦିଅନ୍ତି । ମ୍ୟାନେଜିଙ୍ଗ କମିଟିରେ ମଧ୍ୟ ମନ୍ଦିରର ସୁରକ୍ଷା ଦୃଷ୍ଟିରୁ ଶ୍ରୀମନ୍ଦିର ନିକଟରେ ଥିବା ଜବରଦଖଲ ହଟାଇବା ପାଇଁ ବାରମ୍ବାର ସିଦ୍ଧାନ୍ତ ନିଆଯାଇଛି କିନ୍ତୁ ତାହା କାର୍ଯ୍ୟକାରୀ କରିବା କଷ୍ଟକର ହେଉଥିଲା । ଏବେ କିନ୍ତୁ ନିଜେ ମହାପ୍ରଭୁ ମାନ୍ୟବର ଉଚ୍ଚ ନ୍ୟାୟାଳୟଙ୍କ ଜରିଆରେ ଉଚ୍ଛେଦ କରିବା ପାଇଁ ଇଚ୍ଛା ପ୍ରକଟ କଲେ । ମାନ୍ୟବର ବିଚାରପତି ମହାପ୍ରଭୁଙ୍କ ବିଷୟବସ୍ତୁ ପ୍ରତି ସମ୍ମାନ ଜଣାଇ ସରଜମିନ ପରିଦର୍ଶନ କରି ବହୁତ ମହତ୍ୱପୂର୍ଣ୍ଣ ଭାବବିହ୍ୱଳ ଆଦେଶ ପ୍ରଦାନ କରିଥିଲେ । ଏହାଦ୍ୱାରା ଶ୍ରୀମନ୍ଦିରର ସୁରକ୍ଷା ପାଇଁ ଜବରଦଖଲ ଉଚ୍ଛେଦ କରାଯାଇଥିଲା । ଏହାସବୁ ସେହି ଶ୍ରୀଜଗନ୍ନାଥଙ୍କ ଅବର୍ଣ୍ଣନୀୟ ଲୀଳା । ଧନ୍ୟ ସେହି ଶ୍ରୀଜଗନ୍ନାଥ ।

ସେ ନଟଖଟ ଶ୍ରୀଜଗନ୍ନାଥଙ୍କ ମହିମା କହିଲେ କେବେ ସରେନି । ସେ ଦୁଃଖ ଦେଲେ ବି ସହିବ ଓ ସୁଖ ଦେଲେ ବି ସହିବ କାରଣ ସେ ସବୁ ଉତ୍ସର ମୂଳ । ସେ ଭକ୍ତଙ୍କୁ ଅତି ନିକଟରେ ରଖି ବିଭିନ୍ନ ପରୀକ୍ଷା କରିଥାନ୍ତି । ମୋର ଅନୁଭୂତିରୁ ଆଉ ଏକ ଦୃଷ୍ଟାନ୍ତ ଦେବା ପାଇଁ ଇଚ୍ଛା ପ୍ରକଟ କରୁଛି । ନିଜ ସନ୍ତାନର ବିଭାଘର ପାଇଁ ବହୁ ପ୍ରସ୍ତାବ ଆସେ ଓ ଅପସରି ଯାଏ । କାରଣ ଜାତକ ପଡେ ନାହିଁ ଅବା ଅନ୍ୟଥା ପ୍ରସ୍ତାବ ପସନ୍ଦ ହୁଏ ନାହିଁ । ସମସ୍ତ ଗୁହାରୀ ଶ୍ରୀଜଗନ୍ନାଥଙ୍କ ଦରବାରରେ ଦାଖଲ କରେ । ଯେତେ ଦୁଃଖ ହେଲେ ସମସ୍ତ ଦୁଃଖ ତାଙ୍କୁ ଜଣାଇ ଦିଏ । ଏକଦା ଏକ ଭଦ୍ର ଲୋକଙ୍କ କନ୍ୟାର ପ୍ରସ୍ତାବ ଶୃଙ୍ଖଳିତ ହେଲା ନାହିଁ । ତା'ପରେ ଅନେକ ପ୍ରସ୍ତାବ ଆସିଲା, କାର୍ଯ୍ୟକାରୀ ହୋଇପାରିଲା ନାହିଁ । ମୁଁ ଭାବିନେଲି ଏହାସବୁ ସେହି ଶ୍ରୀଜଗନ୍ନାଥଙ୍କ ଲୀଳା । ମୁଁ ଜଣେ ଭକ୍ତ ବହୁ ଦୁଃଶ୍ଚିନ୍ତାରେ ଦିନ କାଟୁଥାଏ । ହଠାତ ଦିନେ ମହାପ୍ରଭୁଙ୍କ ଦର୍ଶନରେ ଗଲି ଓ ରାତ୍ରି ଯାପନ କଲି, ତା'ପର ଦିନ ମଙ୍ଗଳ ଆରତୀ ଦର୍ଶନ କଲି, ସେଦିନ ଠାକୁରଙ୍କ ନିକଟରେ ବହୁ ବିନୀତ ଅନୁରୋଧ କଲି ଓ ପ୍ରାର୍ଥନା କଲି । ଚକ୍ଷୁର ଲୋତକଭରା ନୟନରେ ତାଙ୍କୁ ଆହ୍ୱାନ କଲି ଓ ଦର୍ଶନ ସାରି ନିଜ ବାସସ୍ଥାନକୁ ଫେରିଆସିଲି । ସେହିଦିନ ୧୨ଟା ବେଳେ ମୋର ବନ୍ଧୁ (କନ୍ୟାର ପିତା) ଫୋନ୍ ଯୋଗେ ଜଣାଇଲେ, ଯେଉଁ ପ୍ରସ୍ତାବ ପ୍ରଥମେ ଆସିଥିଲା, ସେଥିରେ ଆଗେଇବା ପାଇଁ । ଇତିମଧ୍ୟରେ ଏକ ବର୍ଷରୁ ଊର୍ଦ୍ଧ୍ୱ ବିତିଯାଇଥିଲା । ଏହାସବୁ ସେହି ମହାପ୍ରଭୁଙ୍କ ଆଶୀର୍ବାଦ ଛଡା ଆଉ କିଛି ନୁହେଁ । ଏହା ଭାବି ତତ୍‌କ୍ଷଣାତ୍ ସେହି ପ୍ରସ୍ତାବରେ ଆଗେଇଗଲି । ସେହି ଭାବଗ୍ରାହୀ ଅଲୌକିକ ମାୟାଧାରୀ ଓ ତାଙ୍କ ନିର୍ଦ୍ଦେଶରେ ସଚରାଚର ପୃଥିବୀ ଆତଯାତ । ସେ ମୁକ୍ତା, ସୁନା, ପବନ, ଆହାର, ଜଳ ସର୍ବତ୍ର ବିରାଜମାନ ଭାବେ ମନେ ହୁଏ ।

ଏ ଭକ୍ତ ମହାପ୍ରଭୁଙ୍କୁ ସମସ୍ତ ଗୁହାରି କରେ କାରଣ ତାଙ୍କ ଛଡା କେହି ନାହିଁ ଯାହା ପାଖରେ ଅଳି କରାଯାଇପାରିବ । ବହୁବର୍ଷ ତଳେ ମୁଁ ପୁରୀ କୋର୍ଟରେ କାର୍ଯ୍ୟରତ ଥିଲି, ସେତେବେଳେ ମଧ୍ୟ ମହାପ୍ରଭୁଙ୍କ ଦର୍ଶନ କରିବା ପାଇଁ ସୁଯୋଗ ପାଇଥିଲି । ଏହା ମଧ୍ୟ ସେହି ମହାପ୍ରଭୁଙ୍କ ଲୀଳା । ଏକଦା ନିଜର କର୍ମଜନିତ ଅଭିଯୋଗ ତାଙ୍କ ପାଖରେ ବାଢି ଥିଲି । ଏହା ତାଙ୍କ ରାତ୍ରିର ଶେଷ ପ୍ରହର ଥିଲା । ସେ ଶୟନ ସମୟରେ ଯଦି କେହି ଗୁହାରି କରେ ତାହା ସେ ଶୁଣନ୍ତି ବୋଲି ବିଶ୍ୱାସ । ମୁଁ ଜଣେ ଭକ୍ତ ହୋଇ ଏହି ବିଶ୍ୱାସରେ ବନ୍ଧା ହୋଇଥିଲି । ତା'ପରେ ବର୍ଷ ବର୍ଷ ଧରି ବିତିଗଲା । ବହୁ କଷ୍ଟ ସ୍ୱୀକାର କରିବାକୁ ପଡିଥିଲା । ତଥାପି ମହାପ୍ରଭୁଙ୍କ ଉପରେ ବିଶ୍ୱାସ ହରାଇ ନଥିଲି । ବହୁବର୍ଷ ପରେ ତାଙ୍କର କରୁଣାର ସାଗର ପ୍ରବାହିତ ହେଲା ବୋଲି ଅନୁଭୂତ ହେଲା । ସେ ଯାହା ହେଉ ସେ ଅନ୍ତର୍ଯ୍ୟାମୀ, ଇଚ୍ଛାମୟ । ସେ ଇଚ୍ଛା କଲେ କୌଣସି ପଦାର୍ଥ ବାନ୍ଧି ହୋଇ ରହିପାରିବ ନାହିଁ । ଏଣୁ ତାଙ୍କ ନିକଟରେ ନିଜର ଅନୁଭୂତି ପ୍ରତ୍ୟେକ ଲୋମର କଣେ କଣେ ବହନ କରୁଛି । ଶ୍ରୀଜଗନ୍ନାଥଙ୍କୁ ନିଜ ଆତ୍ମାରେ ରଖି ପାରିଲେ ସେ ଦୁଃଖ ଶୁଣନ୍ତି । ନିଜର ଆତ୍ମାକୁ ପରମାତ୍ମା ସହିତ ଗ୍ରହଣ କରାଇ ପାରିଲେ ପରମାତ୍ମା ନିଜ ଭକ୍ତର ଦୁଃଖ ବୁଝନ୍ତି । ସମ୍ପୂର୍ଣ୍ଣ ସମର୍ପଣର ଆବଶ୍ୟକତା ରହିଛି । ସେଥିରେ ଶ୍ରୀଜଗନ୍ନାଥ ସମସ୍ତ ଆତ୍ମାର ପ୍ରତୀକ ରୂପେ ଭାବିନେବା ଉଚିତ୍ । ହେ ମହାପ୍ରଭୁ, ଆପଣଙ୍କର ପାଦ କମଳରେ ଏହି ଅର୍ଘ୍ୟ ଅର୍ପଣ କରି ନିବେଦନ କରେ କି ସମସ୍ତ ଆତ୍ମାଙ୍କୁ ଶାନ୍ତି ଦିଅନ୍ତୁ ।

ନିର୍ଦ୍ଦେଶକ,
ଓଡ଼ିଶା ଜୁଡିସିୟାଲ୍ ଏକାଡେମୀ,କଟକ







# ଦ୍ୱିତୀୟ ଶ୍ରୀକ୍ଷେତ୍ର ବାରିପଦା ଏକ ସିଂହାବଲୋକନ

ପ୍ରଶାନ୍ତ ବେହେରା

ଦାରୁବ୍ରହ୍ମ ଜ୍ୟୋତିର୍ମୟ ଜଗତର ନାଥ ଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଶାର ଗୌରବମୟ ଐତିହ୍ୟ ସଂସ୍କୃତି ଓ ପରମ୍ପରା ଯେପରି ସୁଖ୍ୟାତି ଲାଭ କରିପାରିଛି, ତା'ର ଯେତେ ଚର୍ଚ୍ଚା କଲେ ମଧ କମ୍ ମନେ ହେବ । ଏଣୁ ଯଥାର୍ଥରେ ଉତ୍କଳମଣି ଗୋପବନ୍ଧୁ ଦାସ ଗାଇ ଉଠିଛନ୍ତି–

''ଭାରତ ସରରେ ଉତ୍କଳ କମଳ
ତା'ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।''

ଏହି ନୀଳାଚଳ ଧାମ ପୁରୀ ପରି ଆଉ ଏକ ଧାମ 'ବାରିପଦା' ଦ୍ୱିତୀୟ ଶ୍ରୀକ୍ଷେତ୍ରର ମାନ୍ୟତା ଲାଭ କରିପାରିଛି ।

ବିଶ୍ୱର ସଂରକ୍ଷିତ ଜୈବମଣ୍ଡଳ ଶିମିଳିପାଳ ଶୋଭାଶ୍ରୀରେ ବିମଣ୍ଡିତ ଆଦିବାସୀ ଅଧ୍ୟୁଷିତ ବନାଞ୍ଚଳ ପ୍ରବଣ ମୟୂରଭଞ୍ଜରେ ଭଞ୍ଜବଂଶୀ ରାଜାମାନେ ଶାସନ କରିଆସୁଥିଲେ । ଷୋଡଶ ଖ୍ରୀଷ୍ଟାବ୍ଦରେ ବାସୁଳୀ ଭଞ୍ଜ ନାମରେ ଜଣେ ରାଜା ଏଠାରେ ଶାସନ କରୁଥିବା ସମୟରେ ତାଙ୍କ ଔରସରୁ ଏବଂ ଗଂଗବଂଶର ରାଜଜେମାଙ୍କ ଗର୍ଭରୁ ଜଗନ୍ନାଥ ଭଞ୍ଜ ଜନ୍ମଲାଭ କରିଥିଲେ । ଜଗନ୍ନାଥ ଭଞ୍ଜ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରକୁ ଆସିଥିବା ବେଳେ ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ତାଙ୍କ ରୂପ ଗୁଣରେ ମୁଗ୍ଧ ହୋଇଥିଲେ ଏବଂ ତାଙ୍କ କନ୍ୟା ସହିତ ବିବାହ କରାଇଦେଲେ । ବିବାହ ପରେ ଜଗନ୍ନାଥ ଭଞ୍ଜ ବାରିପଦାରେ ରାଜବାଟି ନିର୍ମାଣ କରି ସୁଖରେ ରହିଲେ ।

ମହାରାଜା ପ୍ରତାପରୁଦ୍ରଦେବ ଶ୍ରୀଚୈତନ୍ୟ ଦେବଙ୍କ ପରମ ଶିଷ୍ୟ ଥିଲେ । ଐତିହାସିକ ନଗେନ୍ଦ୍ର ନାଥ ବସୁ ଲେଖିଯାଇଛନ୍ତି, ପ୍ରତାପରୁଦ୍ର ଦେବ ଚୈତନ୍ୟ ଦେବଙ୍କ ମୂର୍ତ୍ତି ସହିତ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତିକୁ ନିକଟରେ ରଖି ପ୍ରତ୍ୟହ ପୂଜା କଲାପରେ



ଭୋଜନ କରୁଥିଲେ । ୧୫୪୦ ଖ୍ରୀଷ୍ଟାବ୍ଦରେ ପ୍ରତାପ ରୁଦ୍ରଦେବ ତୀର୍ଥ କରିବା ପାଇଁ ବୃନ୍ଦାବନ ଯାତ୍ରା କରିବା ରାସ୍ତାରେ ଝିଅ ଜ୍ୱାଇଁଙ୍କୁ ଦେଖା କରିଯିବା ଉଦ୍ଦେଶ୍ୟରେ ବାରିପଦା ଅଭିମୁଖେ ଯାଉଥିବା ସମୟରେ ରାମଚନ୍ଦ୍ରପୁର(ବାରିପଦାଠାରୁ ଦଶ କିମି ଦୂର)ଠାରେ ଅସୁସ୍ଥ ହୋଇପଡିଲେ । ଜ୍ୱାଇଁଙ୍କ ନିକଟକୁ ଖବର ଗଲା । ଜଗନ୍ନାଥ ଭଞ୍ଜ ପହଞ୍ଚିଲା ବେଳକୁ ଗଜପତି ଶେଷନିଦ୍ରା ଯାଇଥିଲେ । ସେଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ମୂର୍ତ୍ତି ସହିତ ଚୈତନ୍ୟ ଦେବଙ୍କ ମୂର୍ତ୍ତିର ଯଥାବିଧି ପୂଜା ବ୍ୟବସ୍ଥା




କରିଦିଆଗଲା । ମହାରାଜାଙ୍କ ମର ଶରୀରକୁ ସେହିଠାରେ ସଂସ୍କାର କରି ସମାଧି ନିର୍ମାଣ କରାଗଲା । ରାମଚନ୍ଦ୍ରପୁର ପ୍ରତାପୁର ନାମରେ ଖ୍ୟାତହେଲା । ସେହିଦିନଠାରୁ ଦିଅଁଙ୍କର ପୂଜା ଯଥାରୀତି ଚାଲିଛି, ହେଲେ ଗଜପତିଙ୍କ ସମାଧି ବୁଢାବଳଙ୍ଗର ବାଲୁକା ରାଶିରେ ପୋତି ହୋଇଯାଇଛି ।

ଜଗନ୍ନାଥ ଭଞ୍ଜ ଶ୍ୱଶୁର ଘର ପୁରୀକୁ ଯାଇଥିବା ସମୟରେ ଶ୍ରୀଜଗନ୍ନାଥଙ୍କର ଦୈନିକ ସେବା ଏବଂ ରଥଯାତ୍ରା ଦେଖି ଅଭିଭୂତ ହୋଇପଡୁଥିଲେ । ହେରାପଞ୍ଚମୀରେ ଜଗନ୍ନାଥଙ୍କ ନିମନ୍ତେ ଦେବଦାସୀମାନେ ଯେଉଁ ଗୀତ ଗାଆନ୍ତି, ତାହାଶୁଣି ସେ କେତେକ ଗୀତ ଲେଖିଥିଲେ । ସେ ସବୁ ପରେ ଦେବଦାସୀ କଣ୍ଠରେ ଆବୃତ୍ତି କରାଯାଉଥିଲା । ଯଥା–

ମହା ମହା ମନୋରମ ସାଗର
ଶ୍ରୀଜଗନ୍ନାଥ ତ୍ରିଦଶ ଈଶ୍ୱର
ଅନ୍ତର୍ଯ୍ୟାମୀ ନାଥ କମଳାବର
(ଆହେ) ଚଉଦ ବ୍ରହ୍ମାଣ୍ଡ ପ୍ରଭୁ ଠାକୁର
ମହାପ୍ରଭୁ ସ୍ମର
ଜଗନ୍ନାଥ ଭଞ୍ଜ ଭାଷେ ଏ ଗିର ।

୧୫୪୦ ଖ୍ରୀଷ୍ଟାବ୍ଦରେ ଶ୍ୱଶୁର ପ୍ରତାପରୁଦ୍ର ଦେବଙ୍କ ମୃତ୍ୟୁ ପରେ ପରେ ମହାରାଜା ଜଗନ୍ନାଥ ଭଞ୍ଜ ଇହଲୀଳା ସମ୍ବରଣ କଲେ । ତାଙ୍କ ପୁତ୍ର ନୀଳକଣ୍ଠ ଭଞ୍ଜ ମୟୂରଭଞ୍ଜର ଶାସନଭାର ଗ୍ରହଣ କଲେ । ନୀଳକଣ୍ଠ ତାଙ୍କର ତିନି ପୁତ୍ରଙ୍କୁ ବୈଷ୍ଣବ ଧର୍ମରେ ଦୀକ୍ଷିତ କରିଥିଲେ । ୧୫୬୫ ଖ୍ରୀଷ୍ଟାବ୍ଦରେ ନୀଳକଣ୍ଠ ଭଞ୍ଜଙ୍କ ଦେହାନ୍ତ ପରେ ତାଙ୍କ ପୁତ୍ର ବୈଦ୍ୟନାଥ ଭଞ୍ଜଙ୍କୁ ଶାସନଭାର ଅର୍ପଣ କରାଗଲା । ବୈଦ୍ୟନାଥ ଭଞ୍ଜ ଶାସନ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଇଷ୍ଟଦେବ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରକୁ ଯାତ୍ରା କଲେ । ଅଠରନଳା ନିକଟରେ ରାତିରେ ଶୋଇଥିବା ସମୟରେ ଜଗତ ଠାକୁର ଜଗନ୍ନାଥ ତାଙ୍କୁ ଦର୍ଶନ ଦେଲେ ଏବଂ ବାରିପଦା ଫେରିଯାଇ ସେଠାରେ ତାଙ୍କର ଏକ ମନ୍ଦିର ନିର୍ମାଣ କରିବା ପାଇଁ କହିଲେ । ଗରିବ ପ୍ରଜାମାନେ ଏତେଦୂର ଆସିପାରୁ ନଥିବାରୁ ସେଠାରେ ଦୈନିକ ଦର୍ଶନ ଦେବେ ବୋଲି ସ୍ପଷ୍ଟ କରିଦେଲେ । ସ୍ୱପ୍ନାଦେଶ ପାଇ ମହାରାଜା ବାରିପଦା ପ୍ରତ୍ୟାବର୍ତ୍ତନ କଲେ । ମନ୍ଦିର କିପରି ତିଆରି ହେବ ତାର ନକ୍ସା ଏବଂ କାରିଗର ଯୋଗାଇ ଦେବା ପାଇଁ ଗଜପତି ମୁକୁନ୍ଦ ଦେବଙ୍କ ନିକଟକୁ ମହାରାଜା ବୈଦ୍ୟନାଥ ଭଞ୍ଜ ଦୂତ ପ୍ରେରଣ କଲେ । ଜଗନ୍ନାଥ ମହାପ୍ରଭୁ ମଧ ସବୁପ୍ରକାର ସାହାଯ୍ୟ କରିବା ପାଇଁ ମଧ ସ୍ୱପ୍ନରେ ମୁକୁନ୍ଦଦେବଙ୍କୁ ନିର୍ଦ୍ଦେଶ ଦେଲେ । ଗଜପତି ମୁକୁନ୍ଦଦେବ ଆବଶ୍ୟକୀୟ ନକ୍ସା ଏବଂ କାରିଗର ପଠାଇଲେ । ୧୫୭୫ ଖ୍ରୀଷ୍ଟାବ୍ଦରେ ଏହି ମନ୍ଦିର ନିର୍ମାଣ ଶେଷ ହେଲା । ଭଞ୍ଜଭୂମି ଶ୍ରୀଜଗନ୍ନାଥଙ୍କ ଆବିର୍ଭାବରେ ପୂତ ପାବନ ହେବା ସହିତ ଧନ୍ୟ ହୋଇଗଲା ।

ପୁରୀର ଗଜପତି ମହାରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ କାଳରେ ମୟୂରଭଞ୍ଜ ରାଜ୍ୟ ଅଧୀନରେ ଥିବା କପ୍ତିପଦା ରାଜ୍ୟର ରାଜା ବସନ୍ତ ବିରାଟ ମାନଧାତା ଅପୂର୍ବ ବୀରତ୍ୱର ପରିଚୟ ପ୍ରଦାନ କରିଥିଲେ । ଯାହାକି ମୟୂରଭଞ୍ଜ ସହିତ ଶ୍ରୀକ୍ଷେତ୍ର ପୁରୀର ମଧୁମୟ ସମ୍ପର୍କର ସ୍ୱାକ୍ଷର ବହନ କରେ । ପୁରୁଷୋତ୍ତମ ଦେବ କାଞ୍ଚି ଯୁଦ୍ଧରେ ପରାସ୍ତ ହେଲା ପରେ ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହେଲେ । ମହାପ୍ରଭୁ ତାଙ୍କୁ ସ୍ୱପ୍ନରେ କପ୍ତିପଦା ରାଜା ବସନ୍ତ ବିରାଟଙ୍କୁ ଡକାଇ ସେନାପତି ଭାବେ ନିଯୁକ୍ତି ଦେଇ ଯୁଦ୍ଧ କଲେ ନିଶ୍ଚିତ ଜୟଯୁକ୍ତ ହେବ ବୋଲି କହିଲେ । ଏହାପରେ ପୁରୁଷୋତ୍ତମ ଦେବ ରାଜା ବସନ୍ତ ବିରାଟଙ୍କୁ ଡାକି ପ୍ରଧାନ ସେନାପତି ଭାବେ ନିଯୁକ୍ତ କଲେ । ତାଙ୍କ ପରାମର୍ଶକ୍ରମେ କେନ୍ଦୁଝରର ରାଜା ଗୋବିନ୍ଦ ଭଞ୍ଜଙ୍କୁ ସହଯୋଗ କରିବା ପାଇଁ ନିମନ୍ତ୍ରଣ କଲେ । ରାଜା ବସନ୍ତ ବିରାଟ ଏବଂ ଗୋବିନ୍ଦ ଭଞ୍ଜଙ୍କ ନେତୃତ୍ୱରେ କାଞ୍ଚି ଅଭିଯାନ ଆରମ୍ଭ ହେଲା । ଏଥିରେ ଗଜପତି ପୁରୁଷୋତ୍ତମ ଦେବ ବିଜୟମଣ୍ଡିତ ହୋଇ କାଞ୍ଚି ରାଜାଙ୍କୁ ବନ୍ଦୀ କଲେ ଏବଂ ରାଜଜେମାଙ୍କୁ ବିବାହ କଲେ । ଏହି ଯୁଦ୍ଧକାଳରେ ଶ୍ରୀଜଗନ୍ନାଥ ଏବଂ ବଳଭଦ୍ର କଳାଘୋଡା ଏବଂ ଧଳା ଘୋଡା ଚଢି ପାଇକ ବେଶରେ ଯାଇ ମାଣିକ ଗଉଡୁଣୀଠାରୁ ଦହି ପାନ କରିବା ସହିତ ଯୁଦ୍ଧରେ ସାମିଲ ହୋଇଥିଲେ ବୋଲି ଉପାଖ୍ୟାନ ରହିଛି । ମୟୂରଭଞ୍ଜ ମାଟିର ଏହି ମହାନ୍ ବୀର ପୁରୁଷଙ୍କର ବୀରତ୍ୱର କାହାଣୀ ଇତିହାସ ପୃଷ୍ଠାର ଅଲିଭା କାହାଣୀ ହୋଇ ରହି ଆସିଛି କହିଲେ ଅତ୍ୟୁକ୍ତି ହେବନାହିଁ । ମହାରାଜା ବୈଦ୍ୟନାଥ ଭଞ୍ଜ ବାରିପଦାରେ ଜଗନ୍ନାଥ ମନ୍ଦିର ନିର୍ମାଣ ଏବଂ ରଥଯାତ୍ରା ଆରମ୍ଭ କରିଥିବାରୁ ତାଙ୍କୁ ମୟୂରଭଞ୍ଜର ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଯାଏ । ମନ୍ଦିର ଗାତ୍ରରେ ଲେଖାଅଛି–

ଭଞ୍ଜେନ ବୈଦ୍ୟନାଥେନ
ପ୍ରସାଦସ୍ତୁ କୁତୋମୁଦା

ସେ ଜଣେ ପ୍ରଜାନୁରଞ୍ଜକ ନରପତି ଥିଲେ । ସେ ଜଗନ୍ନାଥ ମନ୍ଦିର ବ୍ୟତୀତ ରାଧା ମୋହନ ମନ୍ଦିର ଏବଂ ରସିକରାୟ ମନ୍ଦିର ମଧ ନିର୍ମାଣ କରିଥିଲେ । ସେ ପୁରୀ ଓ କନୌଜରୁ ବ୍ରାହ୍ମଣମାନଙ୍କୁ




ଆଣି ଜଗନ୍ନାଥଙ୍କ ପୂଜାର୍ଚ୍ଚନା ନିମନ୍ତେ ନିଯୁକ୍ତି ଦେଇଥିଲେ । ତାଙ୍କ ରାଜସଭା ପଣ୍ଡିତ ଏବଂ ବିଦ୍ୱାନମାନଙ୍କ ଦ୍ୱାରା ଅଳଙ୍କୃତ ହେଉଥିଲା । ୧୫୬୫ ଖ୍ରୀଷ୍ଟାବ୍ଦ ବେଳକୁ ତତ୍କାଳୀନ ପୁରୀ ଗଜପତି ମୁକୁନ୍ଦ ଦେବଙ୍କ ସହ ତାଙ୍କ ଘନିଷ୍ଠତା ବଢି ଯାଇଥିଲା । ଏହି ସମୟରେ କଳାପାହାଡ ପୁରୀ ଜଗନ୍ନାଥ ମନ୍ଦିରର ତିନି ଠାକୁରଙ୍କୁ ନଷ୍ଟ କରିଦେବା ଫଳରେ ବାରବର୍ଷ ମନ୍ଦିରରେ ପୂଜା ଅର୍ଚ୍ଚନା ବନ୍ଦ ରହିଥିଲା । ୧୫୭୫ରେ ବାରିପଦାରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ହେଲା ପରେ ୧୫୮୦ ପର୍ଯ୍ୟନ୍ତ ୫ବର୍ଷ ଧରି ନୀଳାଚଳ ନିବାସୀ ଜଗନ୍ନାଥ ମହାପ୍ରଭୁ ଏଠାରେ ପୂର୍ଣ୍ଣ ସମୟ ପୂଜା ପାଉଥିଲେ ବୋଲି କୁହାଯାଏ । ୧୫୮୦ ମସିହାରେ ରାମଚନ୍ଦ୍ର ଦେବ ଗଜପତି ଆସନ ଅଳଙ୍କୃତ କରି ଶ୍ରୀଜଗନ୍ନାଥଙ୍କର ନବକଳେବରର ଆୟୋଜନ କରିବା ସହିତ ରଥଯାତ୍ରା ଆରମ୍ଭ କଲେ । ପୁରୀ ଶ୍ରୀମନ୍ଦିରର ବଡଠାକୁର ହିଁ ବାରିପଦାରେ ପୂଜା ପାଉଥିବା ଶ୍ରୀଜଗନ୍ନାଥ । ସେ ପ୍ରତିଶ୍ରୁତି ରକ୍ଷା କରି ପ୍ରତ୍ୟହ ଏଠାରେ କିଛି ସମୟ ଅବସ୍ଥାନ କରୁଥିବାର ଲୋକବିଶ୍ୱାସ ପ୍ରଚଳିତ ହୋଇଆସୁଅଛି ।

ବୈଷ୍ଣବୀୟ ପରମ୍ପରାକ୍ରମେ ବାରିପଦାର ଶ୍ରୀଜଗନ୍ନାଥଙ୍କ ମନ୍ଦିରର ନାମକରଣ କରାଯାଇଅଛି 'ହରିବଳଦେବ ଜୀଉ' । ପୁରୀ ଶ୍ରୀମନ୍ଦିର ସହିତ ବିଭିନ୍ନ ସାମଞ୍ଜସ୍ୟ ଥିଲେ ମଧ୍ୟ ଏଠାରେ କେତେକ ସ୍ୱାତନ୍ତ୍ରତା ପରିଲକ୍ଷିତ ହୁଏ । ଶ୍ରୀମନ୍ଦିରରେ ଛପନ ପଉଟି ଅନ୍ନ ଭୋଗ ଲାଗୁଥିବା ବେଳେ ବାରିପଦାରେ ଅଳ୍ପ ପରିମାଣରେ ଅନ୍ନଭୋଗ ଲାଗିଥାଏ । ମାଟି କୁଡୁଆ ପରିବର୍ତ୍ତେ ଏଠାରେ ଶାଳପତ୍ରରେ ଭୋଗ ପରସା ଯାଇଥାଏ । ଏଠାକାର ଗରିବ ଆଦିବାସୀଙ୍କର ଖଲିପତ୍ରକୁ ଅତି ଆଦରରେ ଆପଣେଇ ନେଇଥିବା ଅନୁମାନ କରାଯାଏ । ଏଠାରେ ଠାକୁରଙ୍କର ପ୍ରିୟ ଦଳା ଖେଚୁଡି, ରାମଲୋଚକ ଏବଂ ଆରିସା ପିଠା ଭୋଗହୁଏ । ବାରିପଦା ମନ୍ଦିର ଆକାର ଛୋଟ ଏବଂ ଏଠାରେ ଆନନ୍ଦ ବଜାର ନାହିଁ । ପୁରୀରେ ନରେନ୍ଦ୍ର ପୁଷ୍କରିଣୀରେ ଚନ୍ଦନ ଯାତ୍ରା ହେଉଥିବା ବେଳେ ଏଠାରେ ହେମ ସାଗର ବା ରତ୍ନ ସାଗରରେ ଚନ୍ଦନ ଯାତ୍ରା ହୋଇଥାଏ । ସେଠାରେ ତିନି ଠାକୁରଙ୍କୁ ଗୁଣ୍ଡିଚା ମନ୍ଦିରକୁ ଟାଣି ଟାଣି ନିଆଯାଉଥିବା ବେଳେ ଏଠାରେ ଗୁଣ୍ଡିଚା ମନ୍ଦିର ନାହିଁ, ରାଧାମୋହନ ମନ୍ଦିରକୁ ନିଆଯାଇଥାଏ । ମାଆ ସୁଭଦ୍ରାଙ୍କ ରଥକୁ ଏଠାରେ କେବଳ ମହିଳାମାନେ ଟାଣନ୍ତି । ପୁରୀରେ ପହଣ୍ଡି ଦିନ ରଥଟଣା ହେଉଥିବା ବେଳେ ଏଠାରେ ପହଣ୍ଡି ପର ଦୁଇଦିନ ରଥଟଣା ଯାଇଥାଏ । ଶ୍ରୀମନ୍ଦିରରେ ଠାକୁରଙ୍କ ନୀତି ସରିବା ପରେ ଏଠାରେ ନୀତି ସମ୍ପାଦନା କରାଯାଏ । ଶ୍ରୀକ୍ଷେତ୍ରରେ ନବକଳେବର ହୁଏ କିନ୍ତୁ ଏଠାରେ କେବଳ ପଚ୍ଚି ପରିବର୍ତ୍ତନ କରାଯାଇଥାଏ । ରଥ ଉପରେ ଗଜପତି ମହାରାଜା ନିଜେ ଛେରାପହଁରା କରୁଥିବା ବେଳେ ଏଠାରେ ମହାରାଜାଙ୍କର ପ୍ରତିନିଧି ଛେରାପହଁରା କରିଥାନ୍ତି । ବାରିପଦାରେ ୧୦୦ଜଣ ସେବାୟତ ରହିଥିବା ବେଳେ ଶ୍ରୀମନ୍ଦିରରେ ଏମାନଙ୍କର ସଂଖ୍ୟା ବହୁ ଅଧିକ ।

ଏହିପରି ପାରମ୍ପରିକ ଶ୍ରଦ୍ଧା ଓ ବିଶ୍ୱାସରେ ବାରିପଦାର ହରିବଳଦେବ ଜୀଉ ମନ୍ଦିର ଦ୍ୱିତୀୟ ଶ୍ରୀକ୍ଷେତ୍ର ମାନ୍ୟତା ପାଇପାରିଛି । ହଜାର ହଜାର ଭକ୍ତଙ୍କର ଏଠାରେ ସମାଗମ ହୋଇପାରୁଛି । ଜଗନ୍ନାଥ ଜଗତରନାଥ ପତିତପାବନ । ସେ ସର୍ବନାମ ଓ ସବୁରି ହୃଦୟରେ ବିଦ୍ୟମାନ । ସେ ଓଡ଼ିଆ ସଂସ୍କୃତିର ରକ୍ଷକ ଏବଂ ଓଡ଼ିଶାବାସୀଙ୍କର ଭାଗ୍ୟ ବିଧାତା । ଉତ୍ତର ଓଡ଼ିଶାର ଏହି ସାଂସ୍କୃତିକ ପ୍ରାଣକେନ୍ଦ୍ର ବାରିପଦାଠାରେ ବିରାଜମାନ କରି ପୂଜା ପାଇଆସୁଥିବାରୁ ମାଟି ମାଆ ଧନ୍ୟ ହୋଇପାରିଛି ।

ଅଧ୍ୟାପକ
ସଂସ୍କୃତ ବିଭାଗ, କପ୍ତିପଦା ମହାବିଦ୍ୟାଳୟ,
ନୂଆସାହି, ମୟୂରଭଞ୍ଜ



# ନିମ୍ବକୁ କରିଅଛୁ ଦାରୁ

ବିପିନ ବିହାରୀ ମହାନ୍ତି

ଦାରୁବ୍ରହ୍ମ ଗୀତାରେ ଉଲ୍ଲେଖ ଅଛି ଯେ ଯଦୁବଂଶ ଧ୍ୱଂସ ପରେ ଶିଉଳି ଲଟାତଳେ ଶୟନ ଜନିତ ବିଶ୍ରାମ ବେଳେ ଜାରାଶବର ଶରାଘାତରେ ଶ୍ରୀକୃଷ୍ଣ ଦେହତ୍ୟାଗ କଲେ । ସେ ଆକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ରଭାବେ ବିରାଜମାନ ହେଲେ । ତାଙ୍କ ମୃତପିଣ୍ଡ ସେମିତି ପଡିରହିଲା । ପାଣ୍ଡବମାନେ ତାଙ୍କ ମୃତପିଣ୍ଡକୁ ନେଇ ଯମନିକ ତୀର୍ଥରେ ଦୁଇଟି ଚନ୍ଦନ କାଠର ଘର୍ଷଣଜନିତ ଅଗ୍ନିରେ ତାଙ୍କ ଶବ ସତ୍କାର କଲେ । ଆଶ୍ଚର୍ଯ୍ୟ କଥା ଏ ନିଆଁ ସାତଦିନ ପର୍ଯ୍ୟନ୍ତ ଜଳିଲା ଅଥଚ ସେ ପିଣ୍ଡ ଦଗ୍ଧ ହେଲାନାହିଁ । ଏଣୁ ପାଣ୍ଡବମାନେ ଚିନ୍ତାରେ ପଡିଲେ । ପରେ ଶୂନ୍ୟବାଣୀ ଅନୁଯାୟୀ ସେମାନେ ଏ ଅର୍ଦ୍ଧଦଗ୍ଧ ଶରୀରକୁ ସମୁଦ୍ରରେ ଭସାଇ ଦେଲେ । ପୁନଶ୍ଚ ଭବିଷ୍ୟବାଣୀ ହେଲା ଯେ ଏହି ପିଣ୍ଡ ଦାରୁ ରୂପେ ନୀଳାଚଳ ଧାମରେ ପାଦପାଣିହୀନ ବୁଦ୍ଧ ରୂପେ ପୂଜା ପାଇବେ ।



ଡକ୍ଟର ବେଣୀ ମାଧବ ପାଢୀଙ୍କ 'ଦାରୁ ଦେବତା' ଗ୍ରନ୍ଥରେ ଶ୍ରୀଜଗନ୍ନାଥ ବିଷୟକ ମତ ମଧ୍ୟ ଏଠାରେ ବିଚାରକୁ ନିଆଯାଇପାରେ । ବୃକ୍ଷ ଧର୍ମୀ ଶବରର ନୀଳାଦ୍ରିକନ୍ଦର ଦାରୁଦେବତା ଭିତରେ ଜୈନ ଦ୍ରାବିଡର ପୁରୁଷୋତ୍ତମ ଭାବ ପଶି ମୂଳ ଦାରୁକୁ ପୁରୁଷୋତ୍ତମ ନାମରେ ନାମିତ କଲା ।

ପଣ୍ଡିତ ନୀଳକଣ୍ଠ ଦାସ ଲେଖିଛନ୍ତି: ଖ୍ରୀଷ୍ଟୀୟ ୭ମ ଓ ଅଷ୍ଟମ ଶତାବ୍ଦୀ ବେଳକୁ କେଉଁଝର, ସମ୍ବଲପୁର, ସୋନପୁର, ପାଟଣା, ଘୁମୁସର, ମୟୂରଭଞ୍ଜ ଓ ଅନ୍ୟାନ୍ୟ ସୀମାନ୍ତ ଅଞ୍ଚଳକୁ 'ଉଡ୍‌ଡିୟାନ୍' କୁହାଯାଉଥିଲା । ଏଠାରେ ଶବରମାନେ ହିଁ ବହୁ ସଂଖ୍ୟାରେ ବସତି ସ୍ଥାପନ କରିଥିଲେ । ସେମାନେ ଆବହମାନ କାଳରୁ ନିର୍ମିତ ଶବରୀ ନାରାୟଣ ମୂର୍ତ୍ତି ଉପାସନା କରି ଆସୁଥିଲେ । ବୋଧହୁଏ ଏହିମାନେ ପୁରୀର ଶ୍ରୀଜଗନ୍ନାଥଙ୍କୁ ନିମ୍ବ କାଠରେ ଗଢି ନିଜର କରି ରଖିଥିଲେ । ପରେ ଉଡ୍‌ଡିୟାନର ରାଜା ଇନ୍ଦ୍ରଭୂତି ଯେ କି ଶୂନ୍ୟବାଦୀ ବୌଦ୍ଧଥିଲେ, ଜଗନ୍ନାଥଙ୍କୁ 'ସର୍ବଜୀନ ବରାର୍ଜିତ ଓ ସର୍ବ ବୁଦ୍ଧମୟ' କହି ତାଙ୍କର ବୌଦ୍ଧତ୍ୱ ପ୍ରତିପାଦନ କଲେ । ସେତେବେଳକୁ ଅନ୍ୟାନ୍ୟ ଶବର ଅଞ୍ଚଳ ମଧ୍ୟରେ ପୁରୀ ଅନ୍ତର୍ଗତ ହୋଇଥାଉ ବା ନହୋଇଥାଉ ଅନ୍ତତଃ ସେଠାରେ ଦେବତା ଶ୍ରୀଜଗନ୍ନାଥ ନାମରେ ଅଭିହିତ ହେଉଥିଲେ । ହୁଏନସାଂ ତାଙ୍କ ଜୀବନୀରେ ଉଡ୍‌ଡିୟାନର ଯେଉଁ ୯୦ଫୁଟ ଉଚ୍ଚର କାଠ ପୂଜା ପାଉଥିବା କଥା ଉଲ୍ଲେଖ କରିଛନ୍ତି, ତାହା ବୋଧହୁଏ ସେହି ଯୁଗରୁ ଦାରୁଦେବତା ପୁରୁଷୋତ୍ତମ ରୂପେ ଲୋକେ ପରିଚିତ ହେଲେ । ଗୀତାର ପୁରୁଷୋତ୍ତମ ତତ୍ତ୍ୱର ଯେଉଁ ବ୍ୟାଖ୍ୟା





ଦିଆଯାଇଛି, ତାହା ପୁରୁଷୋତ୍ତମ ତତ୍ତ୍ୱର ସଙ୍କେତ ଯେ ନୀଳାଚଳରେ ପ୍ରତିଷ୍ଠିତ ଦାରୁଦେବତା ବିନା ଅନ୍ୟ କେହି ନୁହଁନ୍ତି । ନିମ୍ବକାଠ ନିର୍ମିତ ଶବରୀ ନାରାୟଣ ବ୍ୟତୀତ ସେ ଆଉ କିଛି ନୁହଁନ୍ତି, ଯାହାକି ସେ କାଳର ପାଷାଣ ଦେବାଦେବୀଙ୍କ ସହିତ ସମାନ୍ତରାଳ ଭାବେ ଆତ୍ମ ପ୍ରତିଷ୍ଠା ଲାଭ କରିଆସିଥିଲା ।

ଉପରୋକ୍ତ ଆଲୋଚନାରୁ ଦୁଇଟି କଥା ମିଳେ । ପ୍ରଥମଟି ହେଲା ଶ୍ରୀକୃଷ୍ଣଙ୍କ ଦେହାବଶେଷରୁ ଦାରୁଦେବତା । ଦ୍ୱିତୀୟଟି ହେଲା ଶବର ପୂଜିତ ନିମ୍ବକାଠର ଦାରୁଦେବତା । ଏହି ଦ୍ୱିତୀୟ ପ୍ରଶ୍ନଟିର ଉତ୍ତର ସର୍ବଜନବିଦିତ ନୁହେଁ । ଅନେକ ଶାସ୍ତ୍ର ଖାଲି ଦାରୁ ଦେବତା ବୋଲି ଉଲ୍ଲେଖ କରିଛନ୍ତି, ମାତ୍ର ନିମ୍ବ କାଠ କାହିଁକି ବୋଲି କେହି ସନ୍ଦେହ ଦୂରୀଭୂତ କରିନାହାଁନ୍ତି ।

ପୁରାଣଗୁଡିକରେ ଦେବତାମାନେ ଏ ଯୁଗରୁ ଆର ଯୁଗକୁ ସମ୍ବନ୍ଧିତ ଏବଂ ସମ୍ପର୍କିତ । ଏମିତି ସତ୍ୟର ବିଷ୍ଣୁ, ତ୍ରେତୟାର ରାମ, ଦ୍ୱାପରର ଶ୍ରୀକୃଷ୍ଣ ଏବଂ କଳିର ବୁଦ୍ଧ ବା ଜଗନ୍ନାଥ । ଗୋଟିଏ ଜନ୍ମର ନ୍ୟାୟ ବା ଅନ୍ୟାୟ ପାଇଁ ପରଜନ୍ମର ଲାଭ ବା କ୍ଷତି ପୂରଣ ହୁଏ । ଏମିତି ଏକ ବ୍ୟାଖ୍ୟା ଜଗନ୍ନାଥଙ୍କ ଦାରୁକୁ ନେଇ ଅଛି ।

ତ୍ରେତୟା ଯୁଗରେ ଶ୍ରୀ ରାମଚନ୍ଦ୍ର ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରି ତା'ର ପରମ ଶତ୍ରୁ ବାଳୀକୁ ନିମ୍ବଗଛ ଉହାଡରେ ଲୁଚିରହି ଶରବିଦ୍ଧ କଲେ । ସେତେବେଳେ ଏ ନିମ୍ବ ଗଛ ପିତା ନଥିଲା । ଆହତ ଅବସ୍ଥାରେ ଥାଇ ବାଳୀ ଲକ୍ଷ୍ୟ କଲା ଯେ ନିମ୍ବ ଗଛ ପଛପଟେ ଲୁଚିରହି ରାମଚନ୍ଦ୍ର ଶରବିଦ୍ଧ କରିଛନ୍ତି । ରାଗରେ ଗର୍ଜନ କରି ବାଳୀ ନିମ୍ବ ଗଛକୁ କହିଲା: ଏ ବିଶ୍ୱାସଘାତୀ ବୃକ୍ଷ, ତୁ ମୋରି ରାଜ୍ୟରେ ଜନ୍ମି ତା'ରି ମାଟି, ପାଣି ଓ ପବନ ଖାଇ ବଞ୍ଚିଛୁ । ମାତ୍ର ତୋ'ର ଜାଣିବାରେ ମୋତେ ସେ ଲୁଚି ବନ୍ଧ କରୁଛନ୍ତି, ଅଥଚ ତୁ' ମୋତେ ଟିକିଏ ସାବଧାନ କରାଇ ପାରିଲୁ ନାହିଁ ? ତୁ' ଗୋଟାଏ ଶତ୍ରୁ ଏବଂ କୃତଘ୍ନ । ମୁଁ ତୋତେ ଅଭିଶାପ ଦେଉଛି ଯେ, ଏଣିକି ତୋ'ର ସର୍ବାଙ୍ଗ ପିତା ହୋଇଯାଉ । ତୋ'ର ସ୍ୱାଦିଷ୍ଟ ଗୁଣ ନଷ୍ଟ ହୋଇଯାଉ । ତୋତେ ଲୋକେ ପାଟିରେ ଦେଉ ଦେଉ ଥୁ' ଥୁ' କରନ୍ତୁ । ଆଶ୍ଚର୍ଯ୍ୟ ! ସେଇ ମୁହୂର୍ତ୍ତରେ ତା'ର ସର୍ବାଙ୍ଗ ପିତା ହୋଇଗଲା । ଏବେ ଗଛଟି ଶ୍ରୀରାମଚନ୍ଦ୍ରଙ୍କୁ ନିବେଦିଲା: ପ୍ରଭୁ, ଏଥିକୁ ମୋର କି ଦୋଷ ଥିଲା ? ଆପଣଙ୍କ ଯୋଗୁଁ ମୋର ଏ ଦଣ୍ଡ । ମୁଁ କ'ଣ ଆପଣଙ୍କୁ ମନା କରିପାରିଥାନ୍ତି ଯେ ମୋ ଉହାଡରେ ଲୁଚି ମୋ ପ୍ରଭୁ (ବାଳୀ)କୁ ବନ୍ଧ କରନ୍ତୁ ? ଆପଣ ଏଥିରୁ ମୋତେ ଉଦ୍ଧରନ୍ତୁ ।

ରାମଚନ୍ଦ୍ର କହିଲେ, ମନ ଦୁଃଖ କରନାହିଁ ହେ ବୃକ୍ଷ ଦେବତା । ତୁମେ ସିନା ପିତା ହୋଇଗଲ, ମୁଁ ବର ଦେଉଛି ଯେ ତୁମେ ଏକ ଅମୋଘ ଔଷଧୀୟ ଶକ୍ତି ଲାଭ କରିବ । ପ୍ରାଣୀ ଜଗତ ତୁମ ଯୋଗୁଁ ମୃତ୍ୟୁ କବଳରୁ ରକ୍ଷା ପାଇବେ । ବହୁ ରୋଗରୁ ଆରୋଗ୍ୟ ହେବେ । ଖାଲି ସେତିକି ନୁହେଁ, କଳିଯୁଗରେ ମୁଁ ତୁମର ଦେହ ବା କାଠରେ ଦାରୁଦେବତା ରୂପେ ନୀଳାଚଳରେ ପୂଜା ପାଇବି ।

ଏହା ଯଦି ସତ୍ୟ ବୋଲି ଗ୍ରହଣ କରାଯାଏ, ଶ୍ରୀଜଗନ୍ନାଥ ନିମ୍ବ ଦାରୁରେ ଦାରୁବ୍ରହ୍ମ ବୋଲି ଗ୍ରହଣୀୟ । ଆଉ କିଛି ଅନ୍ୟ କାରଣ ନିମ୍ବରୁ ଦାରୁକୁ ନେଇ ଥାଇପାରେ । ତେବେ ଏତିକି କହିବା ସେ କାହିଁକି ନିମ୍ବକୁ ଦାରୁକଲା, ସେ ଏକା ଜାଣେ । ଆମେ କେବଳ ଏଠି ଗୋଟିଏ ଦୃଷ୍ଟାନ୍ତ ଦେଲୁ ।

ନିମ୍ବର ଔଷଧୀୟ ଗୁଣ ସର୍ବାଧିକ ଏବଂ ଔଷଧମାନଙ୍କ ମଧ୍ୟରେ ସର୍ବୋତ୍ତମ । ଏପରିକି ଦୂରାରୋଗ୍ୟ କୁଷ୍ଠରୋଗ ନିମ୍ବଦ୍ୱାରା ପ୍ରସ୍ତୁତ ଔଷଧରେ ଭଲ ହୁଏ । ନିମ୍ବଦ୍ୱାରା ପ୍ରସ୍ତୁତ ଔଷଧ ଏକ ଅମୋଘ (ପେଟେଣ୍ଟ) ଔଷଧ ଅଟେ । ବିଶ୍ୱ ବଜାରରେ ଏହାର ଚାହିଦା ସବୁଠୁ ଅଧିକ ।

ପ୍ରାକ୍ ବୈଦିକ ଯୁଗରୁ ମଣିଷ ଯାହାଠୁ ଉପକାର ପାଏ, ତାକୁ ଦେବତା ବୋଲି ପୂଜା କରେ । ଏପରିକି ଯେତେବେଳେ ସେ ଭଗବାନଙ୍କୁ ଆବିଷ୍କାର କରିନଥିଲା, ସେତେବେଳେ ସେ ପ୍ରକୃତିର ବୃକ୍ଷଲତା, ନଦୀ, ନାଳ..., ଯାହାଠୁ ଉପକାର ପାଇଛି, ତାକୁ ଠାକୁର ବୋଲି ପୂଜା କରିଛି । ଏ ଦୃଷ୍ଟିରୁ ନିମ୍ବକୁ ଦାରୁ ରୂପେ ପୂଜା କରିବା ଅସମୀଚୀନ ନୁହେଁ ।

ବିକାଶ ନଗର, ଜଟଣୀ, ଖୋର୍ଦ୍ଧା








# ମାଟିବ୍ରହ୍ମ ଭୂଦେବୀ

ଡକ୍ଟର ଅଶୋକ କୁମାର ମହାନ୍ତି

ଶ୍ରୀମନ୍ଦିର ରତ୍ନସିଂହାସନରେ ସପ୍ତାବରଣ ମୂର୍ତ୍ତି (ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା, ଶ୍ରୀସୁଦର୍ଶନ, ଶ୍ରୀମାଧବ, ଶ୍ରୀଦେବୀ(ମହାଲକ୍ଷ୍ମୀ), ଶ୍ରୀଭୂଦେବୀ) ଅର୍ଚ୍ଚିତ । କେହି କେହି ଭୂଦେବୀଙ୍କୁ ସରସ୍ୱତୀ ବୋଲି କୁହନ୍ତି । ନୀଳମାଧବଙ୍କ ସ୍ଥାନରେ ଏହି ବିଗ୍ରହମାନ ପୂଜିତ ହେବାକଥା ଲୋକ ବିଶ୍ୱାସରେ ପ୍ରଚଳିତ ।

'ବାସ୍ତୁଶାସ୍ତ୍ର' ଅନୁଯାୟୀ ପୃଥିବୀର ମୂଳ ବସ୍ତୁ ହେଲା 'କ୍ଷିତି, ଅପ୍, ତେଜ୍, ମରୁତ, ବ୍ୟୋମ'' । ଏଗୁଡିକ ପଞ୍ଚ ମହାଭୂତ । ଏଥି ମଧ୍ୟରୁ ବ୍ୟୋମ ବା ଆକାଶ ଅନ୍ତରୀକ୍ଷରେ ଥିବା ଗ୍ରହ ନକ୍ଷତ୍ରକୁ ନେଇ ବା ଏଗୁଡ଼ିକର ଜ୍ୟୋତିର୍ମଣ୍ଡଳକୁ ଅଙ୍ଗୀଭୂତ କରେ । ଏସବୁର ସବିଶେଷ ବିବରଣୀ ପ୍ରକାଶ ପାଉଥିବା ଶାସ୍ତ୍ର ହେଲା 'ଜ୍ୟୋତିଷ ଶାସ୍ତ୍ର' ।

ନିମ୍ନରେ ମାଟି, ଉର୍ଦ୍ଧ୍ୱରେ ଆକାଶ, ପାଣି, ପବନ, ଅଗ୍ନି ଏହି ପଞ୍ଚ ପ୍ରାକୃତିକ ଉପାଦାନ ବିନା ଜଗତ (ଜୀବଜଗତ, ଉଦ୍ଭିଦ ଜଗତ) ଗଠିତ ହୋଇପାରିବ ନାହିଁ । ତିଷ୍ଠି ପାରିବ ନାହିଁ ।

ପୁରାଣ ପୃଷ୍ଠାରେ ଶ୍ରୀଜଗନ୍ନାଥ କ୍ଷେତ୍ର 'ଶଙ୍ଖକ୍ଷେତ୍ର' ରୂପେ ପରିଚିତ । ଶଙ୍ଖ ମଧ୍ୟ 'ଓଁ'କାରର ରୂପ ଭାବରେ ପରିକଳ୍ପିତ ହୋଇଛି । ମାଟି, ପାଣି, ଅଗ୍ନି, ପବନ, ଆକାଶକୁ ଏକତ୍ର ଭାବେ ବା ସମ୍ମିଳିତ ଭାବରେ ପୂଜା କରିବା ଶ୍ରୀଜଗନ୍ନାଥ ସଂସ୍କୃତିର ମୂଳ ।

''ଶୂନ୍ୟଂ ଶୂନ୍ୟଂ ମହାଶୂନ୍ୟଂ
ଶୂନ୍ୟର୍ମଧ୍ୟେ ନିରଞ୍ଜନଃ ।
ନିରଞ୍ଜନର୍ମଧ୍ୟେ ଜ୍ୟୋତିଃ
ସଃ ଜ୍ୟୋତିଃ ପରଂବ୍ରହ୍ମଃ''

ଶୂନ୍ୟରୁ ମହାଶୂନ୍ୟ । ତା'ପରେ ଜ୍ୟୋତି ରୂପରେ ବିନ୍ଦୁ । ବିନ୍ଦୁ ମାତ୍ରାରୁ ବ୍ରହ୍ମ । ପରେ ଶବ୍ଦ ବ୍ରହ୍ମ (ନାଦ), ନାମ ବ୍ରହ୍ମ, ମାଟି ବ୍ରହ୍ମ, ଦାରୁ ବ୍ରହ୍ମ, ଜୀବବ୍ରହ୍ମ ଇତ୍ୟାଦି ସୃଷ୍ଟି ହୋଇଥିବା ସୃଷ୍ଟି ତତ୍ତ୍ୱର ରହସ୍ୟ ।

ସଂସ୍କୃତ ବୃଃ(ବ୍ରମ) ଶବ୍ଦର ଅର୍ଥ ବ୍ୟାପକତା । 'ବ୍ରହ୍ମ' ଶବ୍ଦ ଏହି ମୂଳ ଧାତୁ 'ବୃଃ'ରୁ ଆନୀତ । ଏ ଜଗତର ସୃଷ୍ଟି, ସ୍ଥିତି, ଲୟ ଯାହାଙ୍କ ଦ୍ୱାରା ସମାହିତ ହୁଏ, ସେ ହିଁ 'ବ୍ରହ୍ମ' । ଅଥର୍ବ ବେଦରେ ବ୍ରହ୍ମ ଓ ଆତ୍ମାକୁ ଏକ ଓ ଅଭିନ୍ନ ବୋଲି କୁହାଯାଇଛି । ଓଡ଼ିଶାର ପଞ୍ଚଶଖା ବ୍ରହ୍ମ ଜ୍ଞାନୀ ସାଧକମାନେ ନିଜ ଶରୀର ମଧ୍ୟରେ ଓ ବାହାରେ ଶ୍ରୀଜଗନ୍ନାଥଙ୍କୁ 'ପରଂବ୍ରହ୍ମ' ଓ 'ପରମାତ୍ମା' ଭାବରେ ଦେଖିଛନ୍ତି । ଏମାନେ ସମସ୍ତେ କହିଛନ୍ତି 'ଓଁ'କାର ବା ଏକାକ୍ଷର ହେଉଛନ୍ତି ସାକ୍ଷାତ ପରଂବ୍ରହ୍ମ, ନିରଞ୍ଜନ ଓ ତାଙ୍କର ପ୍ରକାଶ ରୂପ ଅଟନ୍ତି ଶ୍ରୀଜଗନ୍ନାଥ । ତେଣୁ ପଞ୍ଚମହାଭୂତ ରୂପୀ 'ଓଁ' ବା ଏକାକ୍ଷର ବ୍ରହ୍ମ ହିଁ ଶ୍ରୀଜଗନ୍ନାଥ ।

ଜନ୍ମରୁ ମୃତ୍ୟୁ, ଏନ୍ତୁଡିରୁ ଶ୍ମଶାନ ପର୍ଯ୍ୟନ୍ତ ଦାରୁ (କାଷ୍ଠ)ର ଆବଶ୍ୟକତା ଅପରିହାର୍ଯ୍ୟ । ତେଣୁ ଆଦିମାନବ, ଆଦିବାସୀମାନଙ୍କ ପ୍ରକୃତି ପ୍ରୀତି ସଂସ୍କୃତିର ପରମ ଉପଜୀବ୍ୟ ଦାରୁକୁ ହିଁ ଦେବତା ରୂପରେ ପୂଜା କରିବା ବିଧିରୁ 'ଶ୍ରୀଜଗନ୍ନାଥ' ଦାରୁ ବ୍ରହ୍ମଙ୍କର ପୂଜା ବିକାଶ ଲାଭ କରିଥିବା ଅନୁମାନ କରାଯାଏ । କେଉଁ ଆବହମାନ କାଳରୁ ନିମ୍ବକାଠ ନିର୍ମିତ ଶବରୀ ନାରାୟଣ ମୂର୍ତ୍ତି ଶବର ଓ ଜନଜାତିମାନେ ପ୍ରାଚୀନ ଓଡ୍ର ଦେଶରେ ଉପାସନା





କରିଆସୁଥିବାର ପ୍ରମାଣ ରହିଛି । ବୋଧହୁଏ ଏହିମାନେ ପୁରୀ ଜଗନ୍ନାଥଙ୍କୁ ନିମ୍ବକାଠରେ ଗଢି ଜଗନ୍ତ, ଜଗନାଇଲୁ, ଜଗାପେନୁ ନାମରେ ନାମିତ କରିଥିବା ଅନୁମେୟ । ଯାହା ପରବର୍ତ୍ତୀ ସମୟରେ ଶ୍ରୀଜଗନ୍ନାଥ ନାମରେ ପୁରୀ ଶ୍ରୀମନ୍ଦିରରେ ପୂଜା ପାଇଲେ ।

ପ୍ରାଚୀନ ଓଡ୍ର ଦେଶରେ ମୁଖ୍ୟତଃ ଓଡ୍ର, ଭୂମିଜ, ଶବର, ପାଣ, କନ୍ଧ, କୋହ୍ଲ, ସଉରା, ଗଣ୍ଡ, ଜୁଆଙ୍ଗ, ମୁଣ୍ଡା, ମହ୍ଲାର, ହୋ, ଭୂୟାଂ, ବାଥୁଡି, ହାଡି, ଡମ, ଚମାର, କୋୟା, ଓରାମ, ଖରିଆ, ଡଅଁଳା, ସାନ୍ତାଳ, ବଣ୍ଡା ପ୍ରଭୃତି ଜନଜାତି ବସବାସ କରୁଥିଲେ ।

କୋୟାମାନେ ଶିକାରରେ ସଫଳତା ପାଇଁ ଭୂଦେବୀ ବା ଧରଣୀ ପେନୁକୁ ପୂଜା କରୁଥିଲେ ।

କନ୍ଧମାନଙ୍କର ଭୂଦେବୀଙ୍କ ନାମ ଦଶାପେନୁ, ବେରାପେନୁ, ତାରି ପେନୁ ଇତ୍ୟାଦି । କନ୍ଧମାନେ ପାହାଡଦେବତାଙ୍କୁ 'ସାରୁପେନୁ' ନାମରେ ପୂଜା ଆରାଧନା କରିଥାନ୍ତି । ଶବରମାନେ ଧରଣୀମାତାଙ୍କୁ 'ଲୋବା', ମେଡିଆବାରୁ ଓ ଜୁମତାଙ୍ଗବାରୁ ନାମରେ ପୂଜା ଆରାଧନା କରିଥାନ୍ତି । ଖରିଆମାନେ 'ଡୋଙ୍ଗାଦରହା'ଙ୍କୁ ପୂଜା କରିଥାନ୍ତି ।

ଜୁଆଙ୍ଗମାନେ ପ୍ରଚୁର ଖାଦ୍ୟପଦାର୍ଥ ପାଇବା ଆଶାରେ 'ବସୁମତୀ' ପୂଜା କରି ବଳି ପ୍ରଦାନ କରିଥାନ୍ତି । ମୁଣ୍ଡା, ଭୂମିଜ, ଓରାମ, ସାନ୍ତାଳ ଆଦି ଆଦିବାସୀଗଣ ପାହାଡଦେବତା 'ମାରଙ୍ଗବୁରୁ' ବା 'ବୁରୁବୋଙ୍ଗା'ଙ୍କୁ ପୂଜା କରିଥାନ୍ତି ।

ପାହାଡ, ପର୍ବତ, ଝରଣା, ନଦୀ, ମୃତ୍ତିକା, ଉପାସନା ପ୍ରଭୃତି ଦେବୀ ବସୁମାତା ବା ଭୂଦେବୀଙ୍କର ବିବିଧ ଉପାସନା ମାତ୍ର ।

ଡଃ ସତ୍ୟନାରାୟଣ ରାଜଗୁରୁ ଜନଜାତିମାନଙ୍କର ଧର୍ମ ଧାରଣା ସମ୍ପର୍କରେ ମତ ଦେବାକୁ ଯାଇ କହନ୍ତି, 'ପାର୍ବତ୍ୟ ଜାତି କାଷ୍ଠ ବା ପାଷାଣରେ ଦେବତ୍ୱ ଆରୋପ କରି ପୂଜା କରୁଥିଲେ । ଖ୍ରୀ.ପୂ. ୧୫୦୦ ବା ୧୦୦୦ ବର୍ଷ ମଧ୍ୟରେ ପାର୍ବତ୍ୟ ଜାତିମାନଙ୍କ ମଧ୍ୟରେ ଯେଉଁ କାଷ୍ଠ ନିର୍ମିତ ସ୍ତମ୍ଭ ଭୂମିରେ ପ୍ରୋଥିତ ହୋଇ ପୂଜା ପାଉଥିଲେ, ତାହା କେବଳ ନିର୍ଦ୍ଦିଷ୍ଟ ବୃକ୍ଷର ଅଂଶ ବିଶେଷ' ।

ସେହି ଦାରୁ ସ୍ତମ୍ଭ ପୂଜାରୁ ଶ୍ରୀଜଗନ୍ନାଥ ଉପାସନାର ଉଦ୍‌ଭବ ହୋଇଥାଇପାରେ । ତେଣୁ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ସହ 'ଭୂଦେବୀ'ଙ୍କ ପୂଜା ସେହି ଆଦିବାସୀମାନଙ୍କର କାଷ୍ଠ ଓ ମୃତ୍ତିକା ପୂଜାର ବିବର୍ତ୍ତନ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏବେ ମଧ୍ୟ କେଉଁଠି କେଉଁଠି ଆଦିବାସୀମାନେ ଭଲ ଫସଲ ପାଇଁ ମାଟି ପୂଜା ଓ ବଳି ପ୍ରଥାକୁ ବିଶ୍ୱାସ କରୁଥିବାବେଳେ ଆଧୁନିକ ଉତ୍କଳର ରଜ ଉତ୍ସବରେ 'ଭୂମିଦହନ' ଓ 'ବସୁମତୀ ସ୍ନାନ' ଏକ ଗଣପର୍ବ ରୂପେ ପାଳିତ ହୋଇ ଆସୁଅଛି ।

କେତେକ ଭୂଦେବୀଙ୍କୁ ସରସ୍ୱତୀଙ୍କ ମାନ୍ୟତା ପ୍ରଦାନ କରିଥାନ୍ତି । କିନ୍ତୁ ଦେବୀଙ୍କ ବିଗ୍ରହ ସହିତ ସରସ୍ୱତୀଙ୍କ ବିଗ୍ରହର କୌଣସି ସାମଞ୍ଜସ୍ୟ ନାହିଁ । ଭୂଦେବୀ ଦକ୍ଷିଣ ହସ୍ତରେ ଜ୍ଞାନ ମୁଦ୍ରା ଧାରଣ କରି ହୃଦୟରେ ସ୍ଥାପନ କରିଛନ୍ତି । ବାମ ହସ୍ତରେ ପଦ୍ମଧାରଣ କରି ନବଘନ ରୁଚିର ଚିତ୍ର ପଟ୍ଟବସ୍ତ୍ର ପରିଧାନ କରିଛନ୍ତି । ମା' ତ୍ରିନେତ୍ରା ଓ ପଦ୍ମାସନସ୍ଥିତା । ତାଙ୍କ ହସ୍ତରେ ସରସ୍ୱତୀଙ୍କ ପରି ବୀଣା ନାହିଁ । ତଥାପି ଦେବୀ ଜ୍ଞାନ ମୁଦ୍ରାରତ ଥିବାରୁ ଜ୍ଞାନ ପ୍ରଦାୟିନୀ ରୂପେ ପରି ଗୃହୀତା ।

ପ୍ରତ୍ୟେକ ଗୁରୁବାର ମାଜଣା, ଝୁଲଣ, ଦେବଦୀପାବଳୀ, ଶ୍ରୀପଞ୍ଚମୀ, ଦୋଳୋତ୍ସବ, ଦୟଣାଚୋରି, ଅକ୍ଷୟ ତୃତୀୟା ଓ ଚନ୍ଦନ ପର୍ବରେ ଶ୍ରୀଦେବୀ ଓ ମଦନ ମୋହନଙ୍କ ସହ 'ଭୂଦେବୀ' ଏକତ୍ର ପୂଜିତ ହୋଇଥାନ୍ତି ।

ଏତଦ୍‌ବ୍ୟତୀତ ରତ୍ନସିଂହାସନସ୍ଥ ସପ୍ତଧାମୂର୍ତ୍ତି ମଧ୍ୟରେ ଅନ୍ୟତମା ପୂଜିତା ଭୂଦେବୀଙ୍କୁ ବୈଷ୍ଣବମାନେ କେହି 'ଲଳିତା' କୁହୁଥିବାବେଳେ କେହି 'ବିଶାଖା' ବୋଲି କହିଥାନ୍ତି ।

ଭଗବତୀ ଭୂଦେବୀ ସକଳ ଜୀବଜଗତ, ସ୍ଥାବର ଜଙ୍ଗମ ଧାରଣ କରିବା ସହିତ ସମସ୍ତ ଦେବାଦେବୀଙ୍କୁ ମଧ୍ୟ ଧାରଣ କରିଅଛନ୍ତି । ତେଣୁ ଯଥାର୍ଥରେ କୁହାଯାଇଛି, 'ଧାରଣାଚ୍ଚ ଧରା ପ୍ରୋକ୍ତା ପୃଥ୍ୱୀ ବିସ୍ତାର ଯୋଗତଃ'' ।

(ଦେବୀ ଭାଗବତ-୩/୧୩/୮)

ଭୂ, ଭୂମି, ଅଚଳା, ବିଶ୍ୱମ୍ଭରା, ଧରା, ଧରିତ୍ରୀ, ଧରଣୀ, କ୍ଷିତି, ସର୍ବସଂହା, ବସୁଧା, ବସୁମତୀ, ବସୁନ୍ଧରା, ପୃଥିବୀ, ଅବନୀ, ମେଦିନୀ, ମହୀ ଇତ୍ୟାଦି ନାମରେ ଭୂଦେବୀ ବିଭିନ୍ନ ଶାସ୍ତ୍ରରେ ପରିଦୃଷ୍ଟ ହୁଅନ୍ତି ।

କୃଷି ପ୍ରଧାନ ଓଡ୍ର, ଉଡ୍ର, କଳିଙ୍ଗ, ଉତ୍କଳ ଓଡଚଷାର ଦେଶ । ତେଣୁ ଉଡିଷ୍ୟା, ଓଡ଼ିଶା ଏ ଦେଶର ନାମ ହେବାରେ ଯୌକ୍ତିକତା ଅଛି । ବସୁଧା ହେଲା କୃଷିର ମୂଳାଧାର । ତେଣୁ ପଞ୍ଚମଭୂତ ମଧ୍ୟରେ କ୍ଷିତି ବା ମାଟି ହେଉଛି ସୃଷ୍ଟି ମୂଳାଧାର । ମାଟି କୁଦ, ସମାଧି, ଉଇହୁଙ୍କାକୁ ସୁସଜ୍ଜିତ କରି ପୂଜା କରାଯାଏ ।




ଭାଦ୍ରବ ମାସରେ ଖୁଦରୁଙ୍କୁଣୀ ଓଷା ବ୍ରତ ପାଳୁଥିବା ଝିଅମାନେ ମଧ୍ୟ ରବିବାର ସକାଳୁ ନଦୀ ଓ ପୁଷ୍କରିଣୀ କୂଳରେ ବାଲି ଓ ମାଟି କୁଦ କରି ଫୁଲ ଫଳରେ ସୁସଜ୍ଜିତ କରି ଓଦାବସ୍ତ୍ରରେ ମା' ମଙ୍ଗଳାଙ୍କ ପ୍ରତିନିଧି ସ୍ୱରୂପ 'ବାଲୁକା' ପୂଜା କରନ୍ତି । ବାଲି ତୃତୀୟାରେ ମଧ୍ୟ ବାଲୁକା ପୂଜା ବିଧି ରହିଛି ।

ପୁରୀ ଜିଲ୍ଲା, ଡେଲାଙ୍ଗବ୍ଲକ୍ ଅନ୍ତର୍ଗତ ବେନୁପଡା ମଠ ଏହି 'ଗାଦିବ୍ରହ୍ମ' ବା 'ମାଟି ବ୍ରହ୍ମ' ପୂଜାର ପ୍ରମୁଖ ପୀଠ । ବେନୁପଡାର ପୂର୍ବ ନାମ ବେଣୁପୁର ବା ବିନୋଦପୁର ଥିବାର ପ୍ରମାଣ ରହିଛି । ମହାପୁରୁଷ ଅଚ୍ୟୁତ ଏହି ପୀଠକୁ ଆସିଥିବାର ମଧ୍ୟ ପ୍ରମାଣ ଅଛି । ହିନ୍ଦୁ ଦର୍ଶନର ପଞ୍ଚଭୂତ 'କ୍ଷିତି, ଅପ୍, ତ୍ୟେଜ, ମରୁତ୍, ବ୍ୟୋମ'ର ପ୍ରତୀକ ସ୍ୱରୂପ (ବାଇଦାସ, କୃଷ୍ଣଦାସ, ଆର୍ତ୍ତଦାସ, ମାଧବ ଦାସ, ନୀଳାଦ୍ରି ଦାସ) ପଞ୍ଚ ମହାପୁରୁଷଙ୍କର ସମାଧି ମାଟି ଗାଦି 'ଗାଦିବ୍ରହ୍ମ' ରୂପେ ବିରାଜିତ । ମାଟିକୁ ନିମ୍ନରୁ ଗୋଲାକାର ଓ ସ୍ଥୂଳ କରି କ୍ରମଶଃ ଉପର ଆଡକୁ ସୂକ୍ଷ୍ମ କରାଯାଇ ଗାଦି ସ୍ଥାପନ କରାଯାଇଅଛି । ଉପରି ଭାଗ ଶୂନ୍ୟର ପ୍ରତୀକ । ଏଠାରେ ଥିବା ଗୋସାଇଁମାନେ ଶୂନ୍ୟ ଅଲେଖ ନିରଞ୍ଜନ ବା ନିରାକାରବାଦୀ ହେଲେ ମଧ୍ୟ ନିଜେ କୃଷି କାର୍ଯ୍ୟ କରନ୍ତି । 'ଗାଦିବ୍ରହ୍ମ'ଙ୍କର ଧର୍ମ ଦର୍ଶନ ଓ ଆଦର୍ଶକୁ ନେଇ ଓଡ଼ିଶାରେ ଧର୍ମ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଓଡ଼ିଶାର ପୁର ପଲ୍ଲୀରେ ୭୫୨ଟି ଗାଦି ପ୍ରତିଷ୍ଠା ହୋଇ ଅଦ୍ୟାବଧି ପୂଜାର୍ଚ୍ଚନା ଚାଲିଛି ।

'ଗାଦିବ୍ରହ୍ମ' ଧର୍ମ ଦର୍ଶନର ତିନୋଟି ମୁଖ୍ୟ ଦିଗ ହେଲା–

(୧) ମାଟି ପୂଜା (ଭୂଦେବୀଙ୍କ ପୂଜା),

(୨) ଶୂନ୍ୟପୂଜା (ନିରାକାର ଉପାସନା),

(୩) ବ୍ରହ୍ମ ପୂଜା (ଜୀବର ସ୍ଥଳ ନୁହେଁ ସୂକ୍ଷ୍ମ ସତ୍ତାର ଆରାଧନା) ଯାହାକି ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱସହ ଓତଃପ୍ରୋତଃ ଭାବେ ସଂଶ୍ଳିଷ୍ଟ ।

ମାଟିଠାରୁ ବଡ କେହି ନୁହେଁ । ସମସ୍ତେ ମାଟିରୁ ଜନ୍ମ, ମାଟିରେ ବିକାଶ, ମାଟିରେ ବିଲୟ ଓ ମାଟି ଅଚିରେ ସମସ୍ତଙ୍କୁ ଗ୍ରାସ କରେ । ତେଣୁ ଭୂଦେବୀଙ୍କ ଉପାସନା ପ୍ରକୃତି ବା ମାତୃ ଶକ୍ତିର ଉପାସନା । ଅଥର୍ବ ବେଦରେ କୁହାଯାଇଛି–

''ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ'' ।

ତେଣୁ ''ନମଇ ଭୂଦେବୀ ଚରଣ, ସୃଷ୍ଟିର ପରମ କାରଣ'' ।

ଅଧ୍ୟାପକ, ଡେଲାଙ୍ଗ କଲେଜ,
ଡେଲାଙ୍ଗ, ପୁରୀ–୭୫୨୦୧୫



# ଅନୁଭବୀ ଏକା ଜାଣେ

**ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ**

ତୁମେ ତ ରହିଛ ସକଳ ଘଟରେ
ତୁମକୁ ଦେଖିନି କିଏ
ଅନୁଭବୀ ଜାଣେ ତା'ର ଅନୁଭବ
କହିତ ପାରିବ ସିଏ ॥

ଜଳରେ ସ୍ଥଳରେ ତରୁରେ ତୃଣରେ
ସବୁଠି ଦେଖୁଛି ହରି
ମୋ' ଆଖିରେ ନାଚ କଳାକାହ୍ନୁ ହୋଇ
କମନୀୟ ରୂପ ଧରି
ତୁମରି ମୂରତି ଅନ୍ତରରେ ଦେଖି
ମାୟାଠୁ ଦୂରେଇ ନିଏ ॥

ଦେଖି ନପାରିଲେ ଶୁଣି ତ ପାରୁଛି
ଡାକୁଅଛି ଦୂରେ ଥାଇ
ଶୟନେ ସପନେ ନିରତେ ଭାବୁଛି
ସଂସାରକୁ ଭୁଲି ଯାଇ
ଜୀବନ ଜଞ୍ଜାଳୁ ପାରି କରି ଦେବ
ତୁମ ବିନା ଆଉ କିଏ ?



ଏଫ୍– ୧୧/୨, ୟୁନିଟ୍–୯ (ଫ୍ଲାଟ୍)
ପୋ–ଭୋଇନଗର, ଭୁବନେଶ୍ୱର–୨୨

# ନୀଳକନ୍ଦରସ୍ଥ ଶ୍ରୀମନ୍ଦିର ଚୂଡ଼ାରେ ଶ୍ରୀନୀଳଚକ୍ର

ଡକ୍ଟର ରମାକାନ୍ତ କର

ଶ୍ରୀଜଗନ୍ନାଥ ସଂସ୍କୃତିର ଐତିହ୍ୟ, ପରମ୍ପରା ତଥା ବୈଶିଷ୍ଟ୍ୟକୁ ନେଇ ବିଶ୍ୱ ସଂସ୍କୃତିରେ ସ୍ୱତନ୍ତ୍ର ସ୍ଥାନ ରକ୍ଷା କରିଛି । ହିନ୍ଦୁଧର୍ମ ପରମ୍ପରାରେ ମୁଖ୍ୟ ପୀଠ ଭାବରେ ନୀଳଗିରି ପର୍ବତସ୍ଥ ନୀଳାଚଳ ଅଞ୍ଚଳରେ ନୀଳାଚଳ ନାଥ ଶ୍ରୀଜଗନ୍ନାଥଙ୍କର ଶ୍ରୀମନ୍ଦିର ଅବସ୍ଥିତ । ଏହି ନୀଳାଚଳ ନାଥଙ୍କର ରତ୍ନ ସିଂହାସନ ଉପରେ ଆୟୁଧ ସୁଦର୍ଶନ ଚକ୍ର ଖମ୍ବାକାର ଥିବା ସ୍ଥଳେ ଶ୍ରୀମନ୍ଦିର ଚୂଡାରେ ହିଁ ନୀଳଚକ୍ର ନାମରେ ବିଖ୍ୟାତ ହୋଇଛନ୍ତି । କୌଳାଚାର ମତରେ ଶ୍ରୀଜଗନ୍ନାଥଙ୍କୁ ନୀଳତନ୍ତ୍ର ଅନୁସାରେ ଭୈରବ ଓ ମା' ବିମଳାଙ୍କୁ ଭୈରବୀ ଭାବରେ ପରିକଳ୍ପନା କରାଯାଇଛି । ରତ୍ନସିଂହାସନର ନିମ୍ନରେ ଥିବା ଗୂଢ ଶ୍ରୀଚକ୍ର ହିଁ ଶ୍ରୀମନ୍ଦିର ଚୂଡାରେ ନୀଳଚକ୍ର ଭାବରେ ବିଦ୍ୟମାନ । ଶ୍ରୀମନ୍ଦିରର ସୁରକ୍ଷା ପାଇଁ ନୀଳଚକ୍ର ସଦାସର୍ବଦା ପୂଜିତ । ତନ୍ତ୍ର ମତାନୁସାରେ ନୀଳଚକ୍ର ବିନା ପ୍ରଭୁଙ୍କର ଅମୃତ ମଣୋହି ଅସମ୍ଭବ । ଏହି ଭୈରବ-ଭୈରବୀ ତନ୍ତ୍ର ଅନୁସାରେ ସର୍ବଭାରତୀୟ ସ୍ତରରେ ବିଷ୍ଣୁ ମନ୍ଦିର ଓ ଦେବୀ ମନ୍ଦିର ଚୂଡାରେ ନୀଳଚକ୍ର ଶୋଭିତ ହେବାର ବିଧି ରହିଛି । ନୀଳଚକ୍ର ଓ ସୁଦର୍ଶନ ଚକ୍ର ଏ ଦୁହେଁ ଭିନ୍ନ ହୋଇଥିଲେ ହେଁ ଅଭିନ୍ନ । ନୀଳଚକ୍ର ସମ୍ବନ୍ଧରେ ଭାଗବତ କହେ-



''ପରମ ପୁରୁଷ ଦେଉଳ । ନୀଳଚକ୍ର ଯେ ଶୂନ୍ୟସ୍ଥଳ । ନେତ ଯେ ବ୍ରହ୍ମା, ବିଷ୍ଣୁ, ହର । ଉଡୁଣ ଅଛି ଫର ଫର ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ । ବୃନ୍ଦ ସ୍ୱରୂପେ ବିହରଇ''

ପୁଣି ମଧ୍ୟ ନୀଳଚକ୍ର ଗ୍ରନ୍ଥରେ ପର୍ଶୁରାମ ମହାପାତ୍ର ଗାଇଛନ୍ତି-

''ବୈକୁଣ୍ଠ ବିହାରୀଠାରୁ ନିଶ୍ଚେ ବଡ ତୁହି ।
ଏଣୁ ଶ୍ରୀମନ୍ଦିର ଚୂଳେ ଅଛୁ ସିନା ରହି
ପ୍ରଭୁଙ୍କ ଦର୍ଶନ ପାଇ ନପାରି ଭକତ
ତୋ ରୂପ ନିରେଖି ମନେ ହୁଏ କୃତ୍ୟ କୃତ୍ୟ''

ପୌରାଣିକ ମତ ଅନୁସାରେ (ମତ୍ସ୍ୟ ପୁରାଣ) ସୂର୍ଯ୍ୟଙ୍କର ପ୍ରଚଣ୍ଡ ତେଜ ସହି ନପାରି ବିଶ୍ୱକର୍ମାଙ୍କ ଅନୁରୋଧକ୍ରମେ ନିଜ ତେଜ ପୁଞ୍ଜରୁ କିଛି ବିଶ୍ୱକର୍ମାଙ୍କୁ ପ୍ରଦାନ କରି ନିଜେ ଲୋକାନନ୍ଦ ହୋଇପାରିଥିଲେ । ବିଶ୍ୱକର୍ମା ଏହି ତେଜ କୁଞ୍ଜରୁ ନୀଳମଣି ତେଜକୁ ଉଦ୍ଧାର କରି ସେଥିରେ ସୁଦର୍ଶନ ଚକ୍ର ନିର୍ମାଣ କରି ବିଷ୍ଣୁଙ୍କୁ ଆୟୁଧ ରୂପେ ପ୍ରଦାନ କରିଥିଲେ । ଏକ କିମ୍ବଦନ୍ତୀ ଅନୁସାରେ ଦକ୍ଷିଣ ହସ୍ତରେ ଥିବା ସୁଦର୍ଶନଙ୍କର ଅହମିକା ଯୋଗୁଁ ଓ ହନୁମାନଙ୍କୁ ପ୍ରଭୁଙ୍କ ନିର୍ଦ୍ଦେଶରେ ପ୍ରବେଶକୁ ବାଧା ଦେଇ ହନୁମାନ ଅଷ୍ଟଭୁଜ ଧାରଣ କରି ଚାରି ଭୁଜରେ ଚାରିଚକ୍ର ଧାରଣ କରି ଚାରିଦ୍ୱାର ବାଧାକୁ ଏଡାଇ ପ୍ରଭୁଙ୍କ ଦର୍ଶନ କଲେ । ସୁଦର୍ଶନଙ୍କର ଅହମିକାକୁ ଚୂର୍ଣ୍ଣ କରିବା ପାଇଁ ତାଙ୍କ ଡାହାଣ ହାତରେ ଚକ୍ରକୁ ସ୍ତମ୍ଭ ଆକାରରେ ବାମହାତ ପାର୍ଶ୍ୱରେ ରଖିଲେ । ପରେ ସୁଦର୍ଶନ ନିଜର ଭୁଲ ବୁଝିପାରି ପ୍ରଭୁଙ୍କୁ ପ୍ରାର୍ଥନା କରିବାରୁ ପ୍ରଭୁ ତାଙ୍କୁ ଶ୍ରୀମନ୍ଦିର ଚୂଡାରେ ବସାଇ ସମସ୍ତ ପାପତାପ ହରଣ କରିବାର ଶକ୍ତି ପ୍ରଦାନ କରି





ତାଙ୍କୁ ସନ୍ତୁଷ୍ଟ କରାଇଲେ । ସେହି ହନୁମାନ ମଧ୍ୟ ପ୍ରଭୁଙ୍କ ଦର୍ଶନ ପାଇଁ ଉତ୍ତର ଦ୍ୱାର ପାର୍ଶ୍ୱରେ ତପସ୍ୱୀ ହନୁମାନ ଭାବରେ ପୂଜିତ ହେଉଛନ୍ତି । ଏଣୁ କୁହାଯାଇଛି–

''ପ୍ରଭୁଙ୍କ ଆଜ୍ଞାରେ ଚକ୍ର ଶୂନ୍ୟକୁ ଗମଇ ।
ଦେଉଳ ଉପରେ ବସେ ମୂର୍ତ୍ତିମନ୍ତ ହୋଇ ।।''

ନୀଳଚକ୍ରର ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ ଦ୍ୱାଦଶ ଶତାବ୍ଦୀରେ ଅନଙ୍ଗଭୀମ ଦେବ (୩ୟ)ଙ୍କ ଦ୍ୱାରା ଶେଷ ହୋଇଥିବା ଶ୍ରୀମନ୍ଦିରର ଚୂଡାରେ ନୀଳଚକ୍ର ଅବସ୍ଥାନ କରିଥିଲେ । ବହୁ ରାଜାଙ୍କର ଆକ୍ରମଣ, ପ୍ରାକୃତିକ ବିପର୍ଯ୍ୟୟ, ବାତ୍ୟା ଓ ଝଡ ତୋଫାନାଦି ବହୁ ଘାତପ୍ରତିଘାତ ମଧ୍ୟରେ ଅଦ୍ୟାବଧି ପ୍ରଭୁ ନୀଳଚକ୍ର ସ୍ଥିତି ବଜାୟ ରଖି ପାରିଛନ୍ତି । ପ୍ରଥମ କରି ରକ୍ତବାହୁ ଶ୍ରୀମନ୍ଦିରକୁ ଆକ୍ରମଣ କରିବାର ୧୪୬ ବର୍ଷ ପରେ ସୋମବଂଶର ରାଜା ମହାଶିବଗୁପ୍ତ ଯଯାତି (୧ମ)ଙ୍କ ରାଜତ୍ୱ କାଳରେ ପୁରୁଷୋତ୍ତମଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ଏହା କାଳକ୍ରମେ ଧ୍ୱଂସ ପାଇବା ପରେ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଅନନ୍ତ ବର୍ମନ୍ ଚୋଡଗଙ୍ଗ ଦେବ ଶ୍ରୀମନ୍ଦିର ନିର୍ମାଣ ଶୁଭାରମ୍ଭ କରି ବିଦାୟ ନେବା ପରେ ମାଦଳାପାଞ୍ଜି ବର୍ଣ୍ଣନାନୁଯାୟୀ ଅନଙ୍ଗଭୀମ ଦେବ (୩ୟ) ମନ୍ଦିର ନିର୍ମାଣକୁ ପରିପୂର୍ଣ୍ଣ କରି କଳସୀ ଉପରେ ନୀଳଚକ୍ର ସ୍ଥାପନ କରିଥିଲେ ।

ଏହି ନୀଳଚକ୍ର ମନ୍ଦିରକୁ ସୁରକ୍ଷା କରିବା ପାଇଁ ବିଜ୍ଞାନ ଭିତ୍ତିରେ ଏକ ଆର୍ଥିଂ ଚାରି ଫୁଟ ଅଧ ଇଞ୍ଚ ଓସାରର ଏକତମ୍ବା ପାତିଆ ନୀଳଚକ୍ର ସହିତ ସଂଯୁକ୍ତ ହୋଇ ଦକ୍ଷିଣ ପାର୍ଶ୍ୱରେ ଥିବା ବିମଳା ମନ୍ଦିର ପାର୍ଶ୍ୱ କୂଅରେ ପଡିଥିଲା । ଏହା ମନ୍ଦିରର ପଥରକୁ ରକ୍ଷା କରିବା ସହିତ ପ୍ରାକୃତିକ ବିପର୍ଯ୍ୟୟରୁ ଶ୍ରୀମନ୍ଦିରକୁ ରକ୍ଷା କରୁଥିଲା । ନୀଳଚକ୍ର ବାହ୍ୟଚକ୍ର ଓ ଅନ୍ତଃଚକ୍ର ଭେଦରେ ଦୁଇ ରୂପରେ ବିଦ୍ୟମାନ । ବାହ୍ୟଚକ୍ରର ପରିଧି ୩୬ଫୁଟ, ଅନ୍ତଃ ଚକ୍ରର ପରିଧି ୧୦ ଫୁଟ । ଏହି ଦୁଇଚକ୍ରକୁ ୮ଟି ଅର ସଂଯୁକ୍ତ କରୁଛି । ପ୍ରତ୍ୟେକ ଅରର ଦୈର୍ଘ୍ୟ ୧ଫୁଟ୧୦ଇଞ୍ଚ ଓ ମୋଟା ୨ଇଞ୍ଚ । ବଡଦାଣ୍ଡରୁ ଶ୍ରୀମନ୍ଦିରର ଉଚ୍ଚତା ୨୧୪ ଫୁଟ ଥିବାବେଳେ ୨ଫୁଟ୍ ଅଢେଇ ଇଞ୍ଚ୍ ବ୍ୟାସର ଏକ ବୃତ୍ତାକାର ଶୂନ୍ୟସ୍ଥାନ ରହିଛି । ନୀଳଚକ୍ରଟି ଶ୍ରୀମନ୍ଦିର ବେଢାରୁ ପ୍ରାୟ ୧୯୪ଫୁଟ୍ ଉଚ୍ଚରେ । ପ୍ରତ୍ୟହ ସଂଧ୍ୟା ୫ଟାରେ ଧ୍ୱଜାବନ୍ଧା ହୁଏ । ଏହି ଚକ୍ରର ସେବକ ଚୂନେରା ପ୍ରାୟ ୭ମିନିଟରେ ମନ୍ଦିରକୁ ଅତିକ୍ରମ କରି, ଚଢି ଧ୍ୱଜା ବାନ୍ଧି ପାରନ୍ତି । ବାଟରେ ଯାଉଥିବା ଶ୍ରଦ୍ଧାଳୁ ଭକ୍ତମାନେ ନୀଳଚକ୍ର ଦର୍ଶନ କରି ଶୁଭଫଳ ଲାଭ କରନ୍ତି ।

ଗୁଡିଆ ସାହି, ପୁରୀ–୧

# ଅମୃତ ପରଶ

**ନିବେଦିତା ଭଞ୍ଜ**

ଦେହ ସିନା ବହୁ ଦୂରେ
ମନ ଅଛି ତୁମ ପାଶେ
ଜାଳୁଛି ଜାଗର ଦୀପ
ମନର ଶରଧା ବାଲିରେ... ।
ଫୁଟାଇ ଅନେକ ଫୁଲ
ହୃଦୟ କାନନେ
ଗୁନ୍ଥିଛି ବିଜୟମାଳା
ଲେପ ଦେଇ କର୍ପୂର ଚନ୍ଦନେ... ।
ଭାବନାର ଧୂପଦୀପ
ନୈବେଦ୍ୟ ଯେତେ
ଜପି ଜପି ପ୍ରୀତି ମନ୍ତ୍ର
ଅନୁଭବ କରିଛି ମୁଁ କେତେ... ।



ପହଣ୍ଡିତ ସରିଲାଣି
ବେଳ ହେଉଛି ଉଛୁର
ଗଡିଲାଣି ତାଳଧ୍ୱଜ
ଦେବଦଳନ ତତ୍ପର... ।
ପ୍ରତୀକ୍ଷାର ନନ୍ଦିଘୋଷେ ବସି
ଆସ ହେ ରସିକ
ଉନ୍ମାଦିତ ହେଉଛି ଧରଣୀ
ବିଭୋର ପବନରେ
ଉଡେ ଧୂଳି କଣା
ପାଇବାକୁ ଅମୃତ ପରଶ... ।

୮୬, ସତ୍ୟନଗର, ଭୁବନେଶ୍ୱର





# ଅବତାରୀ ଶ୍ରୀଜଗନ୍ନାଥଙ୍କ ବୌଦ୍ଧାବତାର

ତାରାକାନ୍ତ ମହାନ୍ତି

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର ଓ ନରୋତ୍ତମ କୃଷ୍ଣ ଉପାସନା ଓଡ଼ିଶାରେ ଭିନ୍ନ ରୂପ ନେଇଥିଲା । ଅନେକ କବି ଯେଉଁମାନେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଭକ୍ତ ବୋଲାଉଥିଲେ, ସେମାନେ ହିନ୍ଦୁ ଦେବାଦେବୀଙ୍କର ଭିନ୍ନ ଭିନ୍ନ ଉପାସକ ଥିଲେ, ଯେପରିକି ଶ୍ରୀରାମ, ଶ୍ରୀକୃଷ୍ଣ ଓ ପ୍ରଭୁ ଶ୍ରୀଜଗନ୍ନାଥ । ଅବଶ୍ୟ ସେମାନେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ଅପେକ୍ଷା ଉଚ୍ଚ ଆସନରେ ଅଭିଷିକ୍ତ କରାଇଥିଲେ । କବି ଅର୍ଜୁନ ଦାସ ଶ୍ରୀରାମ ଓ ଶ୍ରୀଜଗନ୍ନାଥଙ୍କୁ ଏକ ଆସନରେ ବସାଇଥିଲେ । ସେ ତାଙ୍କ ପ୍ରଣୀତ 'ରାମବିଭା'ରେ ଶ୍ରୀରାମଙ୍କୁ ଶ୍ରୀଜଗନ୍ନାଥ ରୂପେ ବର୍ଣ୍ଣନା କରିବାକୁ, ଏକା ଆସନରେ ବସାଇବାକୁ କୁଣ୍ଠାବୋଧ କରିନାହାନ୍ତି । ସେଠି ସେ ଶ୍ରୀଜଗନ୍ନାଥଙ୍କର ଗୌରବ ଓ ଗାରିମାକୁ ଅକ୍ଷୁଣ୍ଣ ରଖିଥିବାବେଳେ ଶ୍ରୀରାମଙ୍କୁ କୌଣସି ସାଧାରଣ ବା ନ୍ୟୂନ ଆସନରେ ବସାଇବାକୁ ଭୁଲି ନାହାନ୍ତି ।

ଚୈତନ୍ୟ ଯୁଗ ପରେ ଦୁଇ ଶ୍ରେଣୀ ବା ସମ୍ପ୍ରଦାୟ ମଧ୍ୟରେ ଯଥା– ଗୌଡୀୟ ବୈଷ୍ଣବ ଓ ଉତ୍କଳୀୟ ବୈଷ୍ଣବଙ୍କ ମଧ୍ୟରେ ବାଦାନୁବାଦ ପ୍ରାୟ ସପ୍ତଦଶ ଶତାବ୍ଦୀ ଓ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଚାଲି ଆସୁଥିଲା । ଗୌଡୀୟ ବୈଷ୍ଣବମାନଙ୍କ ମତରେ– ଶ୍ରୀକୃଷ୍ଣଙ୍କୁ ଭଗବାନ ସ୍ୱୟଂ ଏହି ଜୟ ଜୟକାର ଚାଲିଆସୁଥିଲା । ସେହି ସମ୍ପ୍ରଦାୟର ସ୍ତାବକମାନେ କହି ଆସୁଥିଲେ ଯେ ଭାଗବତ ଅନୁସାରେ ଶ୍ରୀକୃଷ୍ଣ ଅସୀମ ଓ ଅଖଣ୍ଡ କ୍ଷମତାର ଅଧିକାରୀ ଥିଲେ । ସେ କେବେ ଅବତାର ଗ୍ରହଣ କରିନାହାନ୍ତି । ସେ ନିଜେ ଅବତାରୀ । ଏହା ଅଭିମନ୍ୟୁ ସାମନ୍ତସିଂହାର (୧୭୫୮–୧୮୦୭) ତାଙ୍କର କାଳଜୟୀ ସୃଷ୍ଟି 'ବିଦଗ୍ଧ ଚିନ୍ତାମଣି'ର ୯୧ତମ ସର୍ଗରେ ଉଲ୍ଲେଖ କରିଛନ୍ତି । ସେ ହେଉଛନ୍ତି ସର୍ବୋତ୍ତମ ପ୍ରଭୁ ଏବଂ 'ନିତ୍ୟ ବୃନ୍ଦାବନ' ବର୍ଣ୍ଣନାରେ ଏହାକୁ ଶ୍ରୀକୃଷ୍ଣଙ୍କ ନିତ୍ୟସ୍ଥଳୀ ରୂପେ ଆଖ୍ୟା ଦେଇ ନିତ୍ୟରାସ କଥା ଉଲ୍ଲେଖ କରି ଶ୍ରୀକୃଷ୍ଣଙ୍କୁ ବିଶ୍ୱର ସର୍ବୋତ୍ତମ ପ୍ରଭୁ ରୂପେ ଉଲ୍ଲେଖ କରିବାକୁ ପଛାଇ ନାହାନ୍ତି ।

ମାତ୍ର ଅଭିମନ୍ୟୁ ସାମନ୍ତସିଂହାରଙ୍କ ଅର୍ଦ୍ଧଶତାବ୍ଦୀ ବା ପୂର୍ବରୁ ଗୌଡୀୟ ବୈଷ୍ଣବ ସମ୍ପ୍ରଦାୟ ଓ ଉତ୍କଳୀୟ ବୈଷ୍ଣବ ସମ୍ପ୍ରଦାୟଙ୍କ ମଧ୍ୟରେ ଗୋଟିଏ ବୁଝାମଣା ହୋଇଗଲା ଏବଂ ସେମାନେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ନୀଳାଚଳ ପୁରୀର ଶ୍ରୀଜଗନ୍ନାଥ ଓ ବ୍ରଜପୁରା (ବ୍ରଜପୁରୀ)ର ଶ୍ରୀକୃଷ୍ଣ ଏକ ଓ ଅଭିନ୍ନ । କେହି କାହାଠାରୁ ନ୍ୟୂନ ନୁହନ୍ତି । ଗୌଡୀୟ ବୈଷ୍ଣବ ସମ୍ପ୍ରଦାୟ ଓ ଉତ୍କଳ ବୈଷ୍ଣବ ସମ୍ପ୍ରଦାୟର ମହାମିଳନର ସମ୍ପ୍ରିତିରେ । ନୂତନ ବୈଷ୍ଣବ ସମ୍ପ୍ରଦାୟର ଅଭ୍ୟୁଦୟ ହେଲା ଏବଂ ରସକଲ୍ଲୋଳର କବି ଦୀନକୃଷ୍ଣ (୧୬୮୮–୧୭୧୩) ଏହି ନୂତନ ବୈଷ୍ଣବ ସମ୍ପ୍ରଦାୟର ଜଣେ ପୃଷ୍ଠପୋଷକ ଥିଲେ । ରସକଲ୍ଲୋଳର ପ୍ରଥମ ସର୍ଗରେ ମହାପ୍ରଭୁ






ଶ୍ରୀଜଗନ୍ନାଥଙ୍କୁ 'ଅବତାରୀ' ରୂପେ ବର୍ଣ୍ଣନା କରିଛନ୍ତି । ବିଷ୍ଣୁଙ୍କର ସବୁ ଅବତାର ଏପରିକି ଶ୍ରୀକୃଷ୍ଣଙ୍କୁ ମିଶାଇ ସବୁ ଅବତାରର ଜନକ ହେଉଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ । କିନ୍ତୁ ରସକଲ୍ଲୋଳର ୩୪ଟି ଯାକ ସର୍ଗରେ (ଛାନ୍ଦରେ) ସେ ନରୋତ୍ତମ ଶ୍ରୀକୃଷ୍ଣଙ୍କ ଲୀଳା ବିଷୟରେ ବର୍ଣ୍ଣନା କରିଛନ୍ତି ଏବଂ ୩୪ଟି ଯାକ ସର୍ଗ ଶେଷରେ ବା ଛାନ୍ଦରେ ସେ ସୁସ୍ପଷ୍ଟ ଭାବେ କହିଛନ୍ତି ଯେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିନା ସେ ଏହି ମହାନ୍ କାବ୍ୟକୁ ସମ୍ପୂର୍ଣ୍ଣ କରିପାରି ନଥାନ୍ତେ । ସବୁ ଶ୍ରୀଜଗନ୍ନାଥଙ୍କର ଅପାର ଓ ଅହେତୁକ କରୁଣା ଲାଗି ସେ ଏହି ମହାନ୍ କାବ୍ୟ ରଚନା କରିବାକୁ ସମର୍ଥ ହୋଇପାରିଲେ । ଭକ୍ତକବି ଜୟଦେବଙ୍କ ଦଶାବତାର ସ୍ତୋତ୍ରରେ ଶ୍ରୀରାମ ଓ ଶ୍ରୀବୁଦ୍ଧ ଅବତାରର ଉଲ୍ଲେଖ ରହିଛି ।

ଶ୍ରୀଜଗନ୍ନାଥଙ୍କ ଦଶାବତାର ମଧ୍ୟରୁ ମାନବ ଅବତାରଗୁଡ଼ିକ ହେଉଛି– ବାମନ, ପର୍ଶୁରାମ, ରାମ, ବଳରାମ ଓ ବୁଦ୍ଧ । ଅନ୍ୟ ୫ଟି ଅବତାର ଯଥା– ମୀନ, କଚ୍ଛପ, ବରାହ, ନରସିଂହ ଓ କଳ୍କୀ । ନରସିଂହ ଅବତାର ମାନବ ଓ ପଶୁର ସମଷ୍ଟି ।

ଏଠି ଗୋଟିଏ କଥା ବିଚାରଯୋଗ୍ୟ ଯେ ପ୍ରଭୁ ଶ୍ରୀଜଗନ୍ନାଥ କାହିଁକି ତାଙ୍କ ନବମ ଅବତାରରେ ବୁଦ୍ଧ ରୂପେ ଅବତାରୀ ଶାନ୍ତି, ଅହିଂସା, ମୈତ୍ରୀ ଓ କରୁଣାର ବାଣୀ ବୁଦ୍ଧଙ୍କ କଣ୍ଠରେ ଶୁଣାଇଲେ । ବାମନ, ରାମ, ବଳରାମ ଅବତାର ପରେ କାହିଁକି ନବମ ଅବତାରରେ ବୁଦ୍ଧ ଅବତାର ଗ୍ରହଣ କଲେ । ଆଗରୁ ଯେତେ ଅବତାର ହୋଇଛି ସବୁ ରକ୍ତପାତରେ ପ୍ରଭୁ ଜଡ଼ିତ ଥିଲେ । ସେ ଆଉ ଚାହୁଁ ନାହାନ୍ତି ଏହିପରି ଅବତାର ଗ୍ରହଣ କରିବାକୁ । କାରଣ କଳି ଶେଷ ହେବାର ସମୟ ଉପଗତ ହେଲାଣି । ବାକି କେତୋଟି ବର୍ଷ ରହିଲା । ଏହା ମଧ୍ୟରେ ଯଦି ଲୋକମାନେ ତିନି ଯୁଗ ପରେ (ସତ୍ୟ, ତ୍ରେତା, ଦ୍ୱାପର) ଏତେକଥା ସେ ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣଙ୍କ ମୁହଁରେ ଶୁଣାଇଛନ୍ତି ଲୋକେ ତାହା ନମାନିବେ ପୁଣି ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କ ବାଣୀ ସତ୍ୟରେ ପରିଣତ ହେବ ।

ତେଣୁ ବୁଦ୍ଧାବତାର ତାଙ୍କର ଧର୍ମ ରକ୍ଷା ଓ ପରିରକ୍ଷା ପାଇଁ ଏକ ଚେତାବନୀ । ଏଥିରେ ଲୋକେ ଯଦି ନିଜକୁ ବଦଳାଇ ପାରିବେ ନାହିଁ, ତେବେ ତାହା ସମ୍ଭବ ହେବ ଜଗନ୍ନାଥଙ୍କର ଦଶମ ଅବତାର କଳ୍କୀ ଅବତାରରେ । ଯାହା ଭକ୍ତକବି ଜୟଦେବ ଦଶାବତାରର ଶେଷ ସ୍ତୋତ୍ରରେ ବର୍ଣ୍ଣନା କରିଛନ୍ତି–

''ମ୍ଳେଚ୍ଛ ନିବହ ନିଧନେ କରୟସି କରବାଳ
ଧୂମକେତୁମିବ କିମପି କରାଳମ୍
କେଶବ ! ଧୃତ କଳ୍କୀ ଶରୀର ଜୟ ଜଗଦୀଶ ହରେ ।''

ଯାହାକୁ ପଞ୍ଚସଖା ଅଚ୍ୟୁତାନନ୍ଦ, ଯଶୋବନ୍ତ ଦାସ ଏବଂ ହାଡ଼ିଦାସ ତାଙ୍କ ମାଳିକାରେ ଉଲ୍ଲେଖ କରିଛନ୍ତି, ସମ୍ପ୍ରତି ପୃଥିବୀ ଅତିଷ୍ଠ ହୋଇଗଲାଣି ମହାପାପ, ମହାବ୍ୟଭିଚାର, ମହାଭ୍ରଷ୍ଟାଚାର ଓ ମହାଦୁରାଚାରରେ । ତେଣୁ ସାଧୁମାନଙ୍କୁ ପରିତ୍ରାଣ କରିବା ଲାଗି ସେ ବାଧ୍ୟ ହୋଇ କଳ୍କୀ ଅବତାର ଗ୍ରହଣ କରିବେ ।

ଏକଥା ସତ୍ୟ ଯେ ବୁଦ୍ଧଙ୍କ ପ୍ରବର୍ତ୍ତିତ ଧର୍ମ ବୌଦ୍ଧ ଧର୍ମ ଦିନେ ବିଶ୍ୱ ଧର୍ମରେ ପରିଣତ ହେବ । ସମ୍ପ୍ରତି ବର୍ତ୍ତମାନ ବିଶ୍ୱରେ ମହାପୁରୁଷ ବୁଦ୍ଧଙ୍କ ୨୫୫୫ତମ ଜୟନ୍ତୀ ପାଳନ ହେଉଛି । ଏହା ଆଉ ୪୬ ବର୍ଷ ପରେ ୨୬୦୦ତମ ଜୟନ୍ତୀରେ ପଦାର୍ପଣ କରିବ । ହିଂସା, ଅସୂୟା, ଈର୍ଷା, ଅସହିଷ୍ଣୁତାରୁ ଦୂରରେ ରହି ଏକ ଶାନ୍ତିପୂର୍ଣ୍ଣ ସମାଜ ପ୍ରତିଷ୍ଠା କରିବାକୁ ହେଲେ ବୁଦ୍ଧଙ୍କ ମାର୍ଗଦର୍ଶନ ହିଁ ଆମକୁ ଦିଗ୍‌ଦର୍ଶନ ଦେଇପାରିବ । ଓଡ଼ିଆରେ ଏକ ବାଣୀ ଅଛି– ''ଜାଣୁ ଜାଣୁ ଶୁଣୁ ଶୁଣୁ ନ ଜାଣୁରେ ଅଜଣା, ଆପେ ମଲେ ଯୁଗେ ଯାଏ, ପର ପାଇଁ କାନ୍ଦଣା ।'' ସେହି ନ୍ୟାୟରେ ସମାଜ ଦିଗ୍‌ଭ୍ରଷ୍ଟ ହୋଇଯାଉଛି । ଯାହା ଅତିବଡ଼ି ଜଗନ୍ନାଥ ଦାସ ଭାଗବତରେ କହିଛନ୍ତି ।

''ଏ ଘୋର କଳିକାଳ ରୀତି
ଲୋକେ ହୋଇବେ ଅନ୍ୟମତି
ଲୋକେ ହୋଇବେ ଖଳବଳ
ନାଶିବେ ଭୁବନ ମଣ୍ଡଳ ।''

ତେଣୁ ଆଜି ବିଶ୍ୱର ୮୦୦କୋଟି ଲୋକଙ୍କ ମଧ୍ୟରେ ହିଂସା ଓ ରକ୍ତପାତ ଜୋର୍‌ରେ ଲାଗି ରହିଛି । ଆଉ ୪୬ ବର୍ଷ ନଚେତ୍ ବୁଦ୍ଧଙ୍କର ୨୬୦୦ ଜୟନ୍ତୀ ପୂର୍ବରୁ ୨୫୯୯ ବେଳକୁ ଭଗବାନ କଳ୍କୀ ଅବତାର ଗ୍ରହଣ କରିବାକୁ ବାଧ୍ୟ ହେବେ । ଯାହା ଭୀମଭୋଇ ତାଙ୍କର ଭବିଷ୍ୟତ ମାଳିକାରେ କହିଯାଇଛନ୍ତି । ବର୍ତ୍ତମାନଠାରୁ ତା'ର ସୂଚନା ମିଳିଲାଣି । ପ୍ରସିଦ୍ଧ ଜ୍ୟୋତିଷ ଶାସ୍ତ୍ରୀମାନେ ଏହା ଆଗରୁ କହି ସାରିଛନ୍ତି । କାରଣ ସଂଖ୍ୟା ୩,୧୧,୧୩ ଏସବୁ ଅଶୁଭ ସଂଖ୍ୟା । ତେଣୁ ୩୦୦୦ ବର୍ଷ ବେଳକୁ ବୁଦ୍ଧ ଜନ୍ମର ଏହା ଅବଶ୍ୟ ଘଟିବ, ଏଥିରେ କିଛି ଶୋଚନା ନାହିଁ ।

ସତ୍ୟରେ ରାକ୍ଷସ ଥିଲା ୪ଅକ୍ଷର ବିଶିଷ୍ଟ ନାମ । 'ହିରଣାକ୍ଷ' ତାହାକୁ ବଧ କରିଥିଲେ ୪ଅକ୍ଷର ବିଶିଷ୍ଟ ନାରାୟଣ । କ୍ଷେତ୍ରାରେ ତିନି ଅକ୍ଷର ବିଶିଷ୍ଟ ରାକ୍ଷାସର ନାମ ଥିଲା ରାବଣ, ତାକୁ ହତ କଲେ ତିନି ଅକ୍ଷର ବିଶିଷ୍ଟ ଶ୍ରୀରାମ । ଦ୍ୱାପରରେ ଦୁଇ ଅକ୍ଷର ବିଶିଷ୍ଟ ରାକ୍ଷସର ନାମ ଥିଲା କଂସ, ତାକୁ ହତ କଲେ



ଦୁଇ ଅକ୍ଷର ବିଶିଷ୍ଟ କୃଷ୍ଣ । କଳିର ରାକ୍ଷସ ହେଉଛି ଏକ ଅକ୍ଷର ବିଶିଷ୍ଟ 'ମୁଁ' । ଏହାକୁ ହତ କରିବାକୁ ହେଲେ 'ଓଁ' ନାମକ ଦେବତାଙ୍କ ଶରଣାପନ୍ନ ହେବାକୁ ପଡିବ । ସେହି ଓଁକାରରେ ପ୍ରଭୁ ଜଗନ୍ନାଥସ୍ଥିତ ।

'ମୁଁ' ରାକ୍ଷସ କବଳରେ କଳି କବଳିତ । ସର୍ବତ୍ର ମୁଁ ମୁଁ କାରର ଜୟକାର । ମୁଁ ବଡ ପରମାଣୁ ଦେଶ, ମୋ' ସାଙ୍ଗରେ କେହି ରାଷ୍ଟ୍ର ଯୁଦ୍ଧ ଆହ୍ୱାନ କଲେ, ତାହା ଧ୍ୱଂସ ବିଧ୍ୱସ୍ତ ଓ ନିଶ୍ଚିହ୍ନ ହୋଇଯିବ । ମୋ'ଠାରୁ ବଳି ବଡ ରାଜନେତା କେହି ନାହିଁ । ମୁଁ ଲକ୍ଷ ଜନତାର ପ୍ରତିନିଧି । ମୋ' ଇଙ୍ଗିତରେ ପରିଚାଳିତ ହେଉଛି । ଶାସନ, ପ୍ରଶାସନ ମୋ' ଇଙ୍ଗିତରେ ଚାଲୁଛି । ଏହିପରି କେତେ ଓଁକାର ଭାବ । ମୋ'ଠାରୁ ବଡ ସମ୍ପାଦକ କେହି ନାହିଁ । ମୋ'ଠାରୁ ବଡ ସ୍ତମ୍ଭକାର କେହି ନାହିଁ । ମୋ'ଠାରୁ ଏହି ମୁଁ ମୁଁର ସ୍ୱର ସମଷ୍ଟି କଳିକୁ କରାହତ କରିବ । ବଡ କବି କେହି ନାହିଁ କି ବଡ ପ୍ରବଚକ କେହି ନାହିଁ । ସବୁଠାରୁ ମୁଁ ମୁଁ କାରର ଜୟଯାତ୍ରା । ମହାପ୍ରଭୁ ଜଗନ୍ନାଥ ଏହା ସହିଲେ ତ ! ଯଦିଓ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଆଉ ୪୪୨ବର୍ଷ ପରେ ଶ୍ରୀଜଗନ୍ନାଥ କଳ୍କୀ ରୂପରେ ଅବତାର ଗ୍ରହଣ କରିବେ । ତେଣୁ ମୁଁ କାରର ବିଲୋପ ହେଉ ।

ପ୍ରସିଦ୍ଧ ଇଂରାଜୀ କବିଙ୍କ ଭାଷାରେ– କେବେ ପୁରୁଷାକାର ଦେଖାଇ କୁହ ନାହିଁ, ମୁଁ ଅମୁକ ଅଟେ । ମୁଁ ଅମୁକ ହେବି । ମୁଁ ଅମୁକ ଥିଲି । ତୁମ୍ଭେ ଭୁଲି ଯାଉଛ ତୁମ୍ଭେ ଜଣେ ପାନ୍ଥଶାଳାର ପଥିକ ବୋଲି । ଗୋଟିଏ ରାତ୍ରି ପାନ୍ଥଶାଳାରେ ତୁମକୁ କଟାଇବାକୁ ପଡିବ । ଏହା ତୁମ୍ଭର ନିଜ ଘର ନୁହେଁ । ସେଠି ଖାଦ୍ୟ ଓ ବିଛଣା ଭଲ ହେଲା କହ ନାହିଁ, ସେ କଥା ଭାବିବା ନିର୍ବୋଧ । ରାତି ପାହିଲେ ତୁମେ ତୁମର ଗନ୍ତବ୍ୟ ସ୍ଥଳକୁ ଯିବ । ଏ ଦୁନିଆ ଏକ ପାନ୍ଥଶାଳା ଏବଂ ସେଠି କେହି ୫୦, କେହି ୬୦ ବର୍ଷ ଓ କେହି କେହି ୧୦୦ବର୍ଷ ପର୍ଯ୍ୟନ୍ତ ବଞ୍ଚୁଛି । ଅଧିକ ବଞ୍ଚିବାର ଶକ୍ତି ତା' ପାଖରେ ନାହିଁ । କାରଣ ସେ ବିଶ୍ୱ ନିୟନ୍ତା ନୁହେଁ । ସବୁରି ବିଶ୍ୱ ନିୟନ୍ତା ମହାପ୍ରଭୁ ଶ୍ରୀଜଗନ୍ନାଥ ।

ଡି– ୩୫, ଷ୍ଟାର ସିଟି, ପଟିଆ,
ପୋ: କିଟ୍, ଭୁବନେଶ୍ୱର–୭୫୧୦୨୪

# ତୁମେ ହିଁ ଛନ୍ଦ ମୋର

ବିମଳା ସିଂହ

ତୁମେ ମୋର ପ୍ରୀତି ତୁମେ ମୋର ଗୀତ
ତୁମେ ହିଁ ଛନ୍ଦ ମୋର
ତୁମେ ହିଁ ରାଗ ପ୍ରୀତି ଅନୁରାଗ
ହୃଦୟର ଝଙ୍କାର ।।

ତୁମେ ହିଁ ସକାଳ ତୁମେ ହିଁ ତ ସଞ୍ଜ
ଜୀବନର ଚଲାପଥେ,
ତୁମେ ହିଁ ବରଷା ତୁମେ ହିଁ ତ ଶୀତ
ଅନୁଭବ ସାଥେ ସାଥେ
ସବୁ ବସନ୍ତର ତୁମେ ହିଁ ପରଶ
ଆହେ ସତ୍ୟ ଶିବ ସୁନ୍ଦର ।।



ଅନ୍ତର ତଳର ଗୋପନ କଥାର
ତୁମେ ପରା କଳାକାର
ମନ ଯମୁନାର ଦୁଇକୂଳ ସାଥୀ
ନୀରବର ସୁଅଧାର
ଅମା ଅନ୍ଧାରରେ ଆଲୋକ ହୋଇତ
ଥାଅ ବାକି ଜୀବନର ।।

ଶିକ୍ଷୟିତ୍ରୀ,
ସରକାରୀ ଉଚ୍ଚ ବିଦ୍ୟାଳୟ, ଖଣ୍ଡଗିରି,
ଭୁବନେଶ୍ୱର







# ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥ କାହିଁକି ଓ କିପରି ?

**ରଜତ କୁମାର କର**

ଏଇ ପତ୍ରିକାର ପୂର୍ବ ବର୍ଷ ଗୁଣ୍ଡିଚା ସଂଖ୍ୟାରେ ଲେଖିଥିଲି ପ୍ରସ୍ତର ନିର୍ମିତ ତ୍ରିମୂର୍ତ୍ତିଙ୍କ ଦର୍ଶନ ପରେ ଜଗନ୍ନାଥ ତତ୍ତ୍ୱର କିଛି ପରିବର୍ତ୍ତିତ ତଥ୍ୟ ସମ୍ବନ୍ଧରେ ।

ବଲାଙ୍ଗୀର ସହରଠାରୁ ୨୦କିମି ଦୂରରେ ଥିବା ତେନ୍ତୁଲିଖୁଣ୍ଟି ଗ୍ରାମରେ ଏବେ ଜଣେ କନ୍ଧ ଭକ୍ତଙ୍କ ଦ୍ୱାରା ପୂଜିତ ପ୍ରସ୍ତର ତ୍ରିମୂର୍ତ୍ତି ଭାବେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ଏହି ମୂର୍ତ୍ତି ଦର୍ଶନ ଦ୍ୱାରା ମନରେ ଭାବନା ଆସିଥିଲା ଯେ ପଶ୍ଚିମ ଓଡ଼ିଶାରେ ନିଶ୍ଚିତ ଭାବରେ ଶ୍ରୀଜଗନ୍ନାଥ ତ୍ରିମୂର୍ତ୍ତି ପୂଜା ପ୍ରଚଳିତ ଥିଲା । ସମ୍ବଲପୁର ବଲାଙ୍ଗୀର ଅଞ୍ଚଳ ନବମ ଶତାବ୍ଦୀରେ ସମ୍ବଳ ଭାବେ ପରିଚିତ ଥିଲା । ସେଠାରେ ମହାଯାନ ବୌଦ୍ଧ ଚିନ୍ତାର ଶୂନ୍ୟ ଉପାସନା ପ୍ରାଧାନ୍ୟ ଲାଭ କରିଥିଲା ।



ଦୁଇ ଭାଗରେ ବିଭକ୍ତ ବୌଦ୍ଧ ଧର୍ମର ପ୍ରଥମ ସଂସ୍ଥା ହୀନଯାନ ଭାବେ କଥିତ ଥିଲା । ସେତେବେଳେ ବୁଦ୍ଧଙ୍କ ମୂର୍ତ୍ତି ଦେଖାଇବାକୁ ବାରଣ ଥିବାରୁ ବୁଦ୍ଧଙ୍କ ପ୍ରତୀକ ସ୍ୱରୂପ ବୃଦ୍ଧଙ୍କ ତପସ୍ୟା ସ୍ଥାନର କଳ୍ପ ବୃକ୍ଷକୁ ବୁଦ୍ଧଙ୍କ ସ୍ଥାନରେ ଦେଖାଯାଉଥିଲା । ଏବେ ଏ ପ୍ରବନ୍ଧର ଲେଖକ ମଧ୍ୟପ୍ରଦେଶ ସାଞ୍ଚିସ୍ତୁପ ଦେଖିବାକୁ ଯାଇଥିଲା । ସେ ସ୍ତୁପରେ ବୁଦ୍ଧଙ୍କ ସ୍ଥାନରେ ତ୍ରିରତ୍ନ ବା ବୁଦ୍ଧ, ଧର୍ମ ଓ ସଂଘକୁ ଦେଖାଯାଇଛି । ବୁଦ୍ଧଙ୍କ ଶୂନ୍ୟବାଦ ଉପରେ ପରବର୍ତ୍ତୀ କାଳରେ ଜୋର ଦିଆଗଲା । ଏହି ମହାଶୂନ୍ୟଙ୍କୁ ଆଦିବୁଦ୍ଧ ଜଗନ୍ନାଥ ମଧ୍ୟ କୁହାଗଲା । ଏହି ଜଗନ୍ନାଥ ମହାଶୂନ୍ୟଙ୍କଠାରୁ ପଞ୍ଚଧ୍ୟାନୀ ବୁଦ୍ଧ ଜାତ ହୁଅନ୍ତି ବୋଲି ମହାଯାନ ଦର୍ଶନରେ ପ୍ରଚାର କରାଗଲା । ହିନ୍ଦୁ ତନ୍ତ୍ରରୁ ଭାବନା ଆଣି କାଳୀ, କୁରୁକୁଲ୍ଲା, ତାରା ମହାକାଳ ଭଳି ଦେବାଦେବୀ ମଧ୍ୟ ସୃଷ୍ଟି କରାଗଲା । ବୁଦ୍ଧଙ୍କ ବିଭିନ୍ନ ମୂର୍ତ୍ତି ନିର୍ମିତ ହେଲା ।

ହିନ୍ଦୁ ଓ ମହାଯାନ ବୌଦ୍ଧ ଧର୍ମ ସମାନ୍ତରାଳ ଭାବରେ ଗତି କଲାବେଳେ ହିନ୍ଦୁ ଧର୍ମର ବିରାଟ ବନ୍ୟାରେ ବୌଦ୍ଧଧର୍ମ ବିଲୀନ ହୋଇ ନିଜର ସମ୍ପୂର୍ଣ୍ଣ ସତ୍ତା ହରାଇ ବସିଲା । ହିନ୍ଦୁ ଧର୍ମ ବୌଦ୍ଧ ଦେବାଦେବୀଙ୍କୁ ଗ୍ରହଣ କରି ସେମାନଙ୍କ ବୌଦ୍ଧ ପରିଚୟ ଅପହରଣ କରି ନେଲା । ଶଙ୍କରାଚାର୍ଯ୍ୟ ବୁଦ୍ଧଙ୍କୁ ''ଯୋଗୀନାଂ ଚକ୍ରବର୍ତ୍ତୀ'' କହି ବିଷ୍ଣୁଙ୍କୁ ନବମ ଅବତାର ଭାବେ ଗ୍ରହଣ କରିନେଲେ ।

ସାଞ୍ଚିରେ ଲେଖକ ଦେଖିଛି ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥଙ୍କ ଭଳି ତ୍ରିମୂର୍ତ୍ତି । ମାଡ୍ରାଜ ମ୍ୟୁଜିୟମ୍‌ରେ ସାରନାଥର ଭଗ୍ନ ସ୍ତୁପରେ ରହିଛନ୍ତି ବୁଦ୍ଧଙ୍କ ସ୍ଥାନରେ ଦୁଇ ବୃତ୍ତାକାର ପଥର । ଦେଖିବାକୁ ଜଗନ୍ନାଥଙ୍କ ପରି । ବୁଦ୍ଧଙ୍କୁ ଦେଖିବାକୁ ପ୍ରଜାମାନେ ଆସୁଛନ୍ତି । ସେଠି ଅଛନ୍ତି ଉପର ତଳ ହୋଇ ଦୁଇ ଗୋଲ ଛୋଟ ପଥର । ପୁରୀରେ ଖ୍ରୀ.ପୂ ୧ମ ଶତାବ୍ଦୀ ବା ପୂର୍ବରୁ ଥିବା ବୌଦ୍ଧ ସ୍ତୁପର ପୂଜିତ ବୁଦ୍ଧ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପରମ ବ୍ରହ୍ମ ରୂପେ ପୂଜିତ ଓ ଚିହ୍ନିତ ହେଲେ । ସମ୍ଭବ ଲାଗୁଛି ମହାଯାନି ବୌଦ୍ଧ ପୂଜକମାନେ ବର୍ତ୍ତମାନର ଦଇତାମାନଙ୍କ ପୂର୍ବ




ପୁରୁଷ । ଏମାନଙ୍କ ବୁଦ୍ଧ ଜଗନ୍ନାଥଙ୍କୁ ଆର୍ଯ୍ୟମାନେ ପୁରୁଷୋତ୍ତମ ଭାବେ ଗ୍ରହଣ କରି ପୂର୍ବରୁ ପୂଜିତ ନୀଳମାଧବ ପୁରୁଷୋତ୍ତମଙ୍କ ସହ ସମାନ ମର୍ଯ୍ୟାଦା ଦେଲେ ।

ମନେ ହେଉଛି, କ୍ଷୁଦ୍ର କଳେବର ବହନ କରି ସବୁ ସମୟରେ ସିଂହାସନରେ ବସିଥିବା ମାଧବ ମୂର୍ତ୍ତି ସେଇ ମୂଳ ଜଗନ୍ନାଥ । ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ୯ମ ଶତାବ୍ଦୀରେ ଚିହ୍ନାଯାଇଥିବା ବୁଦ୍ଧ ଜଗନ୍ନାଥ ପରବର୍ତ୍ତୀ କାଳରେ ରାମାନୁଜଙ୍କ ପ୍ରଚାରିତ ପଞ୍ଚରାତ୍ର ବୈଷ୍ଣବ ଧର୍ମ ପ୍ରଭାବରେ ତ୍ରିମୂର୍ତ୍ତି ହେଲେ । ସ୍ତୂପମାନଙ୍କରେ ଥିଲେ ଦୁଇ ଶୂନର ସମାହାରରେ ତ୍ରିମୂର୍ତ୍ତି- ବୁଦ୍ଧ, ଧର୍ମ ସଂଘ ଭାବରେ । ଦୁଇ ଗୋଲ ପଥରର ଉପର ତଳ ସ୍ଥିତି ଜଗନ୍ନାଥ ମୂର୍ତ୍ତିଙ୍କ ସାଦୃଶ୍ୟ ଦେଉଛି । ହିନ୍ଦୁ ଧର୍ମରେ ସତ୍ତ୍ୱ, ରଜ ଓ ତମ ସଦୃଶ ତ୍ରିତତ୍ତ୍ୱର ସମାହାର ଭଳି ବୁଦ୍ଧ ଧର୍ମ ଓ ସଂଘକୁ ବୌଦ୍ଧ ଧର୍ମରେ ତ୍ରିରତ୍ନ କୁହାଗଲା । ପଞ୍ଚମ ଶତାବ୍ଦୀରେ କୃଷ୍ଣ ଓ ବଳରାମଙ୍କ ମଧ୍ୟରେ ଦୁର୍ଗା ଏକାନଂଶାଙ୍କ ପୂଜା ପ୍ରଚଳନ କରାଇ ବରାହମିହିର ତ୍ରିମୂର୍ତ୍ତି ପୂଜା ଦ୍ୱାରା ପଞ୍ଚରାତ୍ର ବୈଷ୍ଣବ ଧର୍ମକୁ ପ୍ରଭାବିତ କରିଥିଲେ । ଓଡ଼ିଶାରେ ଭୁବନେଶ୍ୱର ଓ ତାହା ନିକଟବର୍ତ୍ତୀ ତୁରିନ୍ତରା ଓ ସାଇଲୋ ଗ୍ରାମରେ ମଧ୍ୟ ବଳରାମ, କୃଷ୍ଣ ଓ ଦୁର୍ଗା ରୂପୀ ସୁଭଦ୍ରା ପୂଜା ପାଇଲେ । ଏହି ପୂଜା ମଧ୍ୟ ପୁରୀରେ ପ୍ରବର୍ତ୍ତିତ ହୋଇଥିଲା । ଏବେ କଳ୍ପବଟ ନିକଟରେ ଏକ କୋଠରିରେ ଛୋଟ ପଥର ଫଳକରେ ଖୋଦିତ ଚତୁର୍ଭୁଜ ତ୍ରିମୂର୍ତ୍ତି ପୂଜା ପାଉଛନ୍ତି । ପୂର୍ବରୁ ପ୍ରସ୍ତର ତ୍ରିମୂର୍ତ୍ତି ପୁରୁଷୋତ୍ତମଙ୍କ ସହ ଛୋଟ ମାଧବ ମୂର୍ତ୍ତି ପୂଜିତ ହେଉଥିଲେ । ଯେତେବେଳେ ବାରମ୍ବାର ଯବନ ଆକ୍ରମଣ ଜନିତ ବିପଦ ହେତୁ ପ୍ରସ୍ତର ମୂର୍ତ୍ତି ସ୍ଥାନାନ୍ତର କରିବାରେ ଅସୁବିଧା ହେଲା, ସେତେବେଳେ ବୁଦ୍ଧ ଜଗନ୍ନାଥ ବା ମାଧବଙ୍କ ଅନୁରୂପ ତ୍ରିମୂର୍ତ୍ତି ସ୍ଥାପନା ସିଦ୍ଧାନ୍ତ ହୋଇଥିବା ସମ୍ଭବ ଲାଗୁଛି । ପରବର୍ତ୍ତୀ କାଳରେ ଆସିଛନ୍ତି ସୁଦର୍ଶନ । ତୁରିନ୍ତରା, ସାଇଲୋ ଓ ଲିଙ୍ଗରାଜ ମନ୍ଦିର ମଧ୍ୟରେ ଥିବା ଅନନ୍ତେଶ୍ୱର ମନ୍ଦିର ତ୍ରିମୂର୍ତ୍ତିଙ୍କ ପାଖରେ ସୁଦର୍ଶନ ନାହାନ୍ତି । ପରବର୍ତ୍ତୀ କାଳରେ ଅନନ୍ତ ବାସୁଦେବ ମୂର୍ତ୍ତିଙ୍କ ସାମନାରେ ସୁଦର୍ଶନ ଓ ମହାଲକ୍ଷ୍ମୀଙ୍କୁ ରଖାଯାଇଛି ।



କପିଳେଶ୍ୱର ଦେବଙ୍କ ସମସାମୟିକ ସାରଳାଦାସ ଶ୍ରୀଜଗନ୍ନାଥଙ୍କ ନିରାକାର ଶୂନ୍ୟ ଅବୟବ ବୌଦ୍ଧଙ୍କ ଦ୍ୱାରା ମଧ୍ୟ ପୂଜିତ ଦେଖି ଜଗନ୍ନାଥଙ୍କର ବୌଦ୍ଧାବତାର ହୋଇଛି ବୋଲି ଲେଖିଛନ୍ତି । ପରମ ପୁରୁଷ ଶୂନ୍ୟରୂପୀ ବୋଲି ପଞ୍ଚସଖାମାନେ କହିଲେ । ଏହି ଭାବନା ଦ୍ୱାରା ପ୍ରଭାବିତ ହୋଇ ଶିଳ୍ପୀମାନେ ମଧ୍ୟ ଦଶାବତାର ମଧ୍ୟରେ ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥଙ୍କୁ ରଖିଲେ । କଳିକାଳରେ ପ୍ରଭୁ ହସ୍ତପଦ ବିହୀନ ଶୂନ୍ୟରୂପୀ ବୌଦ୍ଧ ବା ବଉଦ ଅବତାର ବୋଲି ସାରଳା ଦାସ କହିଥିଲେ ।

ମଧ୍ୟପ୍ରଦେଶର ଶବରୀ ନାରାୟଣ ନିକଟବର୍ତ୍ତୀ ରାଜିମ୍‌ର ଶ୍ରୀରାମ ମନ୍ଦିର ସିଂହଦ୍ୱାର ଦଶାବତାର ମଧ୍ୟରେ ଜଗନ୍ନାଥ ରହିଲେ । ଏଲାହାବାଦ୍, ଗୟାରେ ବୁଦ୍ଧଙ୍କୁ ସେମାନଙ୍କ ପାଞ୍ଜିରେ ଜଗନ୍ନାଥ ସଙ୍କେତ ଦ୍ୱାରା ଚିହ୍ନା ଯାଉଛି ।

ଗଙ୍ଗବଂଶ ବେଳେ ଶ୍ରୀମନ୍ଦିର ପ୍ରତିଷ୍ଠା ହୋଇଥିଲା । ସେତେବେଳେ ଶଙ୍କରାଚାର୍ଯ୍ୟଙ୍କ ଉକ୍ତି ଅନୁସାରେ ''ଯୋଗୀନାଂ ଚକ୍ରବର୍ତ୍ତୀ'' ଭାବରେ ମନ୍ଦିର କାନ୍ଥରେ ବୁଦ୍ଧ ମୂର୍ତ୍ତିଙ୍କୁ ଦଶାବତାର ମଧ୍ୟରେ ରଖାଗଲା ।

କପିଳେନ୍ଦ୍ରଙ୍କ ପରେ ଭୋଇ ବଂଶ ଶାସନରେ ନାଟ ମନ୍ଦିର ତିଆରି ହୋଇ ମୁଖଶାଳା ଓ ଭୋଗ ମଣ୍ଡପ ଯୋଡି ଦିଆଗଲା । ଏଥିରେ ଭୋଗ ମଣ୍ଡପର ବହୁ କାରୁକାର୍ଯ୍ୟ ଲୁଚିଗଲା ।

ନାଟ ମନ୍ଦିର ଭିତରେ ଓ ସିଂହଦ୍ୱାରରେ ସାରଳାଙ୍କ କଳ୍ପିତ ବୌଦ୍ଧାବତାରର ଚୂନମୂର୍ତ୍ତି ଗଢିଲା ଶିଳ୍ପୀ । କୁହାଯାଉଛି ପୁରୁଷୋତ୍ତମ ଦେବ ଭୋଗ ମଣ୍ଡପ ନିର୍ମାଣ କରେଇଲେ । ଏ ତଥ୍ୟକୁ ଏ ପ୍ରବନ୍ଧର ଲେଖକ ଗ୍ରହଣ କରିପାରୁନାହିଁ । କୋଣାର୍କର କାରୁକାର୍ଯ୍ୟ ସହ ଏହି ଭୋଗ ମଣ୍ଡପର ଅସମ୍ଭବ ସାଦୃଶ୍ୟରୁ ଏହା ଲାଙ୍ଗୁଳା ନରସିଂହ ଦେବଙ୍କ କୃତି ବୋଲି ମନେ ହେଉଛି ।





କୋଣାର୍କର ତିନି ଜାଗାରେ ଜଗନ୍ନାଥ, ଶିବଲିଙ୍ଗ ଓ କ୍ଷୁଦ୍ର କଳେବରା ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ଏକତ୍ରାବସ୍ଥିତି ବିଷୟରେ ଏ ପ୍ରବନ୍ଧର ଲେଖକ ବହୁ ପ୍ରବନ୍ଧ ଲେଖି ଜଗନ୍ନାଥ ତତ୍ତ୍ୱ ସହ ଏହାର ସମ୍ପର୍କ ସୂଚାଇଛି । କୋଣାର୍କ ଗାତ୍ରରେ ଥିବା ରାଜାଙ୍କ ତ୍ରିଦେବ ଦେବୀ ପୂଜା ଦେଖାଯାଇଥିଲା । ସେ ନିଜକୁ ଦୁର୍ଗାପୁତ୍ର, ଶିବ ପୁତ୍ର ଓ ପୁରୁଷୋତ୍ତମ ପୁତ୍ର ବୋଲି ଚିହ୍ନାଉଥିଲେ । ପୁରୁଷୋତ୍ତମ ଦେବ ନିଜ କୃତିରେ ସେଭଳି କାରୁକାର୍ଯ୍ୟ ସୂଚାଇବେ କାହିଁକି ? ଭୋଗ ମଣ୍ଡପ ନରସିଂହ ଦେବଙ୍କ କୃତି । ଶ୍ରୀମନ୍ଦିର ମୁଖଶାଳା ତାଙ୍କ ପିତା ଅନଙ୍ଗଭୀମ ୩ୟଙ୍କ କୃତି । ଚୋଡଗଙ୍ଗ ଶ୍ରୀମନ୍ଦିର ମୂଳ ମନ୍ଦିରରେ ଦେବତା ପ୍ରତିଷ୍ଠା କରାଇଛନ୍ତି । ମୁଖଶାଳା ହୁଏତ ସମ୍ପୂର୍ଣ୍ଣ ହୋଇଛି ପୁତ୍ର କାମାର୍ଣ୍ଣବ ବା ଅନ୍ୟତମ ପୁତ୍ର ୨ୟ ଅନଙ୍ଗ ଭୀମ ବା ନାତି ୩ୟ ଅନଙ୍ଗଭୀମ ସମୟରେ । ଏହାର ଆଲୋଚନା କ୍ଷେତ୍ର ଅନ୍ୟତ୍ର ।

ଆଲୋଚନା ହେଉଥିଲା ଯେ ଭୋଗ ମଣ୍ଡପକୁ ମୁଖଶାଳା ସହ ଯୋଡାଗଲା । ଭୋଗ ମଣ୍ଡପ ପୃଷ୍ଠଭାଗର କାରୁକାର୍ଯ୍ୟ ଲୁଚିଲା । ମନ୍ଦିରର ଅନ୍ୟତ୍ର ସ୍ତମ୍ଭ ନଥିଲାବେଳେ ବହୁ ସ୍ତମ୍ଭ ହେଲା । ଚୂନରେ ତିଆରି ହେଲା କାଞ୍ଚି ଯାଉଥିବା କଳାଘୋଡାରେ ବଳଭଦ୍ର ଓ ଧଳା ଘୋଡାରେ ଜଗନ୍ନାଥ । ହାତଯୋଡି ଠିଆ ହେଲେ ବ୍ରହ୍ମା ଓ ଶିବଙ୍କ ଚୂନ ତିଆରି ମୂର୍ତ୍ତି ଗରୁଡସ୍ତମ୍ଭ ପୃଷ୍ଠରେ । ପାଖରେ ରହିଲେ ଚୂନ ତିଆରି ଦଶଅବତାର–ନବମ ସ୍ଥାନରେ ଜଗନ୍ନାଥ । ପ୍ରବେଶ ଦ୍ୱାରରେ ମଧ୍ୟ ଚୂନ ତିଆରି ଦଶଅବତାର ମଧ୍ୟରେ ଜଗନ୍ନାଥ । ସାରଳା ଦାସ, ଅଚ୍ୟୁତାନନ୍ଦ କହିଲେ ପତିତ ଜନଙ୍କୁ ଉଦ୍ଧାରିବା ପାଇଁ ଜଗନ୍ନାଥ ବୌଦ୍ଧାବତାର ହେଲେ ।

ସାରଳା ଦାସ ଲେଖିଲେ ବନପର୍ବରେ । ଇନ୍ଦ୍ରଦ୍ୟୁମ୍ନଙ୍କ ଦର୍ଶନ ସମୟରେ ବର୍ଣ୍ଣନା କଲେ ନିମ୍ନମତେ–

ନାସା କର୍ଣ୍ଣ ଶ୍ରବଣ ଯେ ନୟନ ନ ଦିଶି
ଦେଖି ଇନ୍ଦ୍ରଦ୍ୟୁମ୍ନ ମହା ବିସ୍ମୟରେ ବସି
ମହାବୌଦ୍ଧ ବିକାଶ ହୋଇଲା ତିନିରେଖା
କର ପଲ୍ଲବ ଚରଣ ନ ଦିଶଇ ଶିଖା ।

ଏ ଉଦ୍ଧୃତି ସାରଳା ମହାଭାରତର ମୂଳ ଲେଖା ନୁହେଁ । ପ୍ରକାଶକମାନେ ସାମାନ୍ୟ ବଦଳେଇ ଛନ୍ଦ ସମାନ କଲେ ମଧ୍ୟ ଭାବ ସମାନ ରହିଛି ।

କିମିତି ଦୋଷ ଦେବା ଶିଳ୍ପୀଙ୍କୁ ବା ବରାଦ କରିଥିବା ତତ୍କାଳୀନ ରାଜାଙ୍କୁ ? ସାଞ୍ଚିରେ ନିଜ ଆଖିରେ ତ୍ରିରତ୍ନ ଦେଖିଛି । ଡକ୍ଟର ମହତାବ ଲେଖିଥିବା କଲିକତା ମ୍ୟୁଜିୟମରେ ଥିବା ଓ ଉତ୍କଳରେ ଥିବା ସ୍ତୂପର ତ୍ରିରତ୍ନ ଓ ସ୍ୱର୍ଗତ ବନ୍ଧୁ ସୁରସିଂହ ପଟ୍ଟନାୟକଙ୍କ ସୂଚିତ ମାଦ୍ରାଜ ମ୍ୟୁଜିୟମ୍‌ର ସ୍ତୂପର ବୁଦ୍ଧ ରୂପୀ ଦୁଇ ପ୍ରସ୍ତରର ଜଗନ୍ନାଥଙ୍କ ସହ ସାଦୃଶ୍ୟ ବହୁ ଭାବରେ ପ୍ରଭାବିତ କରୁଛି ଏ ପ୍ରବନ୍ଧର ଲେଖକଙ୍କୁ ।

ପଶ୍ଚିମାଞ୍ଚଳରେ ଥିବା ଦୁଇ ପ୍ରସ୍ତରର ଏକତ୍ରାବସ୍ଥିତ ରୂପ ବୁଦ୍ଧ ଭାବେ ପୂଜିତ ହେବା ପରେ ଯଯାତିଙ୍କ ପ୍ରଭାବରେ ଓ ତାଙ୍କ ସମୟରେ ପୁରୁଷୋତ୍ତମ ଜଗନ୍ନାଥ ତ୍ରିମୂର୍ତ୍ତି ଭାବେ ପୂଜିତ ହେଲେ । ଯାହାଙ୍କୁ ମାଟିତଳୁ ପାଇଛୁ ବଲାଙ୍ଗୀର ତେନ୍ତୁଳିଖୁଣ୍ଟି ଗ୍ରାମରେ । ପ୍ରସ୍ତର ମୂର୍ତ୍ତି ପରେ ଦାରୁ ମୂର୍ତ୍ତି ଭାବେ ପୂଜା ପାଇଁ ବୈଷ୍ଣବୀୟ ତ୍ରିମୂର୍ତ୍ତି ରୂପେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ହେଲେ ।

ଗଙ୍ଗବଂଶ ରାଜତ୍ୱର ପ୍ରାରମ୍ଭରେ ସର୍ବଲୋକୈକ– ନାଥ, ହଳୀଚକ୍ରୀ ନାମ ଥିଲା । ପରବର୍ତ୍ତୀ କାଳରେ ସୂର୍ଯ୍ୟବଂଶ ଶାସନରେ ଜଗନ୍ନାଥ ନାମ ପ୍ରାଧାନ୍ୟ ଲାଭ କଲା ଓ ପୁରୁଷୋତ୍ତମ ନାମ ପୂର୍ବରୁ ଥିଲେ ମଧ୍ୟ ଧୀରେ ଅପସରିଗଲା ।

ଏନ୍–୧/୧୮୩, ଅନନ୍ୟ ନିକେତନ
ଆଇ.ଆର.ସି. ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର






# ରଥ ଉପରେ ବଡ଼ ତଡ଼ାଉ ବେଶ

**କୃଷ୍ଣପ୍ରିୟା ଦାସ**

''ଦେବ ଦେବ ଜଗନ୍ନାଥ ସର୍ବରୂପ ପରାୟଣମ୍ ।
ଏକ ନିର୍ଗୁଣ ଭଗବାନ ସଗୁଣେ ବହୁଧା ସ୍ତଥା ।।''

ବ୍ୟକ୍ତ ଅବ୍ୟକ୍ତ ଏବଂ ବ୍ୟକ୍ତା ବ୍ୟକ୍ତ ସମସ୍ତ ପରିସ୍ଥିତିର ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ ପ୍ରତୀକାତ୍ମକ ବିଗ୍ରହ, ସ୍ୱରାଟ ରାଟ ବିଶ୍ୱସମ୍ରାଟ ଶ୍ରୀଜଗନ୍ନାଥ ! ନିର୍ଗୁଣ ହେଲେ ମଧ୍ୟ ଅସରନ୍ତି ଚାପର ଭଣ୍ଡାର । ମହାମହିମ ପ୍ରଭୁ ରତ୍ନ ଗମ୍ଭିରାର ଚକା ବଇଠି ମାଡି ପ୍ରତୀକାତ୍ମକ ଅବସ୍ଥାନ କରୁଅଛନ୍ତି । ବିଶ୍ୱ ସମୁଦାୟରେ ପ୍ରତିମା ପୂଜନ ହେଉଥିବା ବେଳେ, ଏକମାତ୍ର ମର୍ତ୍ତ୍ୟବୈକୁଣ୍ଠ ଶ୍ରୀକ୍ଷେତ୍ର ଧାମରେ ସ୍ୱୟଂ ପ୍ରତୀକ ଭାବେ ବିରାଜମାନ ।

ତାଙ୍କ ନୀତି, ନିୟମ, ପୂଜାର୍ଚ୍ଚନା, ପର୍ବପର୍ବାଣି ଅନ୍ୟତ୍ର ବିରଳ । ଦିନମାନ ଚବିଶି ଘଣ୍ଟାରେ ଆଧାତ୍ମିକ ତତ୍ତ୍ୱାଧାରିତ ଅପୂର୍ବ ସାଜସଜାରେ ଚବିଶି ପ୍ରକାର ବେଶ ସେବକମାନଙ୍କ ତତ୍ତ୍ୱାବଧାନରେ ହୋଇଥାନ୍ତି । ଦର୍ଶନାର୍ଥୀ ଭକ୍ତ ଯଦି ସମ୍ପୂର୍ଣ୍ଣ ଚବିଶି ଘଣ୍ଟା ଏକାଗ୍ରତା ରଖି ଦର୍ଶନ କରେ, ବିଭୁକୃପା ମାଧ୍ୟମରେ ସୁନିଶ୍ଚିତ ଏହାର ବିବିଧତା ଓ ସ୍ୱତନ୍ତ୍ରତା ଅନୁଭବ କରିପାରିବେ । ତା' ନହୋଇଥିଲେ ଭକ୍ତ କଣ୍ଠରୁ ଏପରି ଭାବ ବିଭୋର ପଦାବଳୀ ଆସନ୍ତା କୋଉଠୁ ? ତାଙ୍କ ଦିବ୍ୟ ଦର୍ଶନରେ:

''ଚତୁର୍ବିଂଶତି ତତ୍ତ୍ୱକଥା । ଚବିଶି ବେଶର ବ୍ୟବସ୍ଥା ।।
କି ଦିବା ନିଶି ତୁ ମଗନ । ଚବିଶି ବେଶରେ ମଉନ ।।''

କେବଳ ଚବିଶି ବେଶ ଦର୍ଶନ ନୁହେଁ, ଏଥିରେ ଚତୁର୍ବିଂଶ ତତ୍ତ୍ୱର ମହାଗୂଢ ରହସ୍ୟ ମଧ୍ୟ ରହିଛି । ଭବ୍ୟ ବେଶର ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଉପରେ ପର୍ଯ୍ୟବସିତ ଭିନ୍ନ ଭିନ୍ନ ପରିକଳ୍ପନା । ଚବିଶି ବେଶ, ଚବିଶି ଅବତାର । ଯେଉଁପ୍ରଭୁ ଗଜଠାରୁ ମୃଗୁଣୀର ଗୁହାରି ଘେନା କରିଥିଲେ, ଘଣ୍ଟ ଘୋଡାଇ ରଖିଥିଲେ । ସାମାନ୍ୟ ଭରତୀୟା ପକ୍ଷୀ ଓ ତା'ର ଶାବକମାନଙ୍କୁ ସେ ଯେ କେତେବେଳେ କୋଉ ମୁହୂର୍ତ୍ତରେ କେଉଁ ଚାପରେ କାହାକୁ ତାରିବା ପାଇଁ ପ୍ରସ୍ତୁତ ହୋଇଯିବେ, ଏକଥା କିଏ କହିବ ? କିଏ ଦେବ ସେହି କଳ୍ପିତ ବେଶର ଉପମା ?



'କିବା ଚବିଶି ଅବତାର । କଳ୍ପିତ ବେଶେ ତୋ ପ୍ରଚାର ।।
ନାହିଁ ସେ ବେଶର ଉପମା । ବାକ୍ୟେ କେ ବର୍ଣ୍ଣିବ ମହିମା ।।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦୈନନ୍ଦିନ ନିତ୍ୟାଚାରକୁ ମନନ କଲେ ଏକ ମହାନ୍ ପରମ୍ପରା ଅନୁଭୂତ ହୁଏ । ଯାହାକି ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତର ଦ୍ୱାରଫିଟା ଠାରୁ ଆରମ୍ଭ ହୋଇ ବଡସିଂହାର ଦେବନୀତି ପର୍ଯ୍ୟନ୍ତ । ସାହାଣ ମେଳା, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଗୋପାଳ ବଲ୍ଲଭ, ସକାଳ ଧୂପ, ଭୋଗମଣ୍ଡପ, ମଧ୍ୟାହ୍ନ ଧୂପ, ମଇଲମ ଓ ବେଶ । ପରେ ମଧ୍ୟାହ୍ନ ବିରତି ପହୁଡ, ଦ୍ୱାରଫିଟା, ସନ୍ଧ୍ୟା ଆଳତୀ, ସନ୍ଧ୍ୟା ଧୂପ, ଚନ୍ଦନଲାଗି, ବଡସିଂହାର,




ବଡସିଂହାରଭୋଗ ଓ ରାତ୍ର ପହୁଡ । ଏହି ପହୁଡ ନୀତି ଦୈନନ୍ଦିନ ନୀତି ମଧ୍ୟରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କୀର୍ତ୍ତନକାରୀଙ୍କ ଭାବ ବିଭୋର ବାତ୍ସଲ୍ୟ ପ୍ରେମ ପୂରିତ ପଦ... ''ରଜନୀ ବହୁତ ଗୟେ, ମେରେୟାରେ...'' ପ୍ରଭୁଙ୍କ ରାତ୍ରୀ ଅନେକ ହେବାର ଆଭାସ ଦେଇ... ଭୋଜନ, ଶୟନକୁ ଶୀଘ୍ର ବିଜେ କରିବାକୁ ଅନୁନୟ ବିନୟ ଅନୁରୋଧ ।

ଲୀଳା ବିଧୃତ କଳେବର । ଭକ୍ତର ସମସ୍ତ ଇଚ୍ଛାକୁ ପୂର୍ଣ୍ଣମାତ୍ରାରେ ଅଙ୍ଗୀକାର କରି, ବ୍ରହ୍ମରେ ରୂପ କଳ୍ପନା ନାସ୍ତି ହେଲେ ମଧ୍ୟ, ସୁନ୍ଦର ବେଶ ବିନ୍ୟାସ, ହୃଦୟସ୍ପର୍ଶୀ ସିଙ୍ଗାର ସମ୍ପାଦନାରେ ଅସମ୍ପୂର୍ଣ୍ଣ ପୂର୍ଣ୍ଣତାରେ ପ୍ରତିଭାତ ହୁଅନ୍ତି ଏବଂ ସମସ୍ତ ଭବ୍ୟ ବେଶକୁ ସ୍ୱୀକାରୀ କୁଶଳୀ ସିଦ୍ଧହସ୍ତ ସେବକମାନଙ୍କୁ ସୌଭାଗ୍ୟ ବଣ୍ଟନ କରିଥାନ୍ତି । ସେବାକାରୀମାନଙ୍କ ସମ୍ପୃକ୍ତି ବାସ୍ତବରେ ତାତ୍ପର୍ଯ୍ୟପୂର୍ଣ୍ଣ । ଯେତେବେଳେ ଯେଉଁ ତୀର୍ଥରେ ଯେଉଁ ରୂପରେ ସଜାଇବା କଥା ସଜାଇ ଦିଅନ୍ତି । ନା' ଭଗବାନ ସ୍ୱୟଂ ସେହି ସେହି ରୂପରେ ଆବିର୍ଭାବ ହୋଇଯାଆନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଅନୁଭୂତ ହୁଏ ।' ସୁନିର୍ଦ୍ଦିଷ୍ଟ ବେଶ ସମ୍ଭାର ମଧ୍ୟରୁ ଅନ୍ୟତମ ଆକର୍ଷଣୀୟ ବେଶ କହିଲେ ସୁନା ବେଶକୁ ବୁଝାଏ । ସମସ୍ତ ବେଶ ମାଧୁର୍ଯ୍ୟମୟ ଅନୁଭୂତ ହେଉଥିବା ସ୍ଥଳେ, କେବଳ ସୁନାବେଶ ଐଶ୍ୱର୍ଯ୍ୟର ପ୍ରାବଲ୍ୟରେ ପରିସ୍ଫୁଟ । ବର ବରେଣ୍ୟ ବରଦ ବିଶ୍ୱ ସମ୍ରାଟ ରାଜରାଜେଶ୍ୱର ବେଶରେ ଅଧିଷ୍ଠିତ । ଓଡ଼ିଆ ଜାତିର ସମ୍ମାନାସ୍ପଦ ରାଷ୍ଟ୍ର ଦେବତା ଭାବେ ପ୍ରଚ୍ଛନ୍ନ ଅଭିବ୍ୟକ୍ତି ନିହିତ ।

ସେବା ନିର୍ବାହର ଭୂୟସୀ ଐତିହାସିକ ତଥ୍ୟକୁ ଅନୁଧ୍ୟାନ କଲେ ଜଣାଯାଏ, ଦ୍ୱିତୀୟ ଅନଙ୍ଗ ଭୀମ ଦେବ (୧୨୧୧-୧୨୩୮) ଶ୍ରୀଜଗନ୍ନାଥଙ୍କୁ ଉତ୍କଳ ସମ୍ରାଟର ମାନ୍ୟତା ଦେଇ ନିଜକୁ ଜଣେ ସେବକ କହି ସମର୍ପିତ ହୋଇଥିଲେ । ତାଙ୍କ ସୁଯୋଗ୍ୟ ସନ୍ତାନ ଲାଙ୍ଗୁଳା ନରସିଂହ ଦେବ (୧୨୩୮-୧୨୬୪) ମଧ୍ୟ ନିଜକୁ ଶ୍ରୀଜଗନ୍ନାଥଙ୍କ ପୁତ୍ର ବୋଲି ପ୍ରଚାର କରି ପିତୃଜ୍ଞାନରେ ସେବା କାର୍ଯ୍ୟ ପରିଚାଳନା କରାଉ ଥିଲେ । ତୃତୀୟ ଭାନୁ ଦେବ ଗଙ୍ଗବଂଶୀ ରାଜା (୧୩୦୮- ୧୩୨୮) ନୀଳାଦ୍ରି ବିହାରୀଙ୍କୁ ଉତ୍କଳର ମଉଡମଣି ରାଜାଧିରାଜ ଜ୍ଞାନରେ ଅଙ୍କଗଣନା ଆରମ୍ଭ କରାଇ ଥିଲେ । ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ କପିଳେନ୍ଦ୍ର ଦେବ (୧୪୩୫-୧୪୬୬) ଶ୍ରୀଜଗନ୍ନାଥଙ୍କ ଜାତୀୟ ଦେବତା, ସାର୍ବଭୌମ ଶାସକ ଭାବେ ଉଦ୍‌ଘୋଷଣ ଦେଇ ନିଜକୁ ସେବକ ଭାବରେ ଉତ୍ସର୍ଗ କରିଥିଲେ ।

ଶ୍ରୀଜଗନ୍ନାଥ ଏକ ଦାରବୀୟ ବିଗ୍ରହ ନୁହନ୍ତି, ଓଡ଼ିଆ ଜାତିର ନିରବଚ୍ଛିନ୍ନ ଇତିହାସର ଗନ୍ତାଘର, ଏହା ସର୍ବଜନବିଦିତ । ଯେଉଁ ମହିମା ମନ୍ଥନରେ ଥର ହର ହୋଇ ଇଂରେଜ ଶାସନଠାରୁ ମୋଗଲ ଶାସକ ପର୍ଯ୍ୟନ୍ତ ପଛଘୁଞ୍ଚା ଦେବାକୁ ବାଧ୍ୟ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱକୁ କିଏ ବା କହିପାରିବ ? କେବଳ ଆଲୋଚନା ପର୍ଯ୍ୟାଲୋଚନାରେ ଆତ୍ମାନନ୍ଦ ଅନୁଭବ କରିବା କଥା ।

ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ଖୋଜିବା ଅର୍ଥ- କୁହୁଡିରେ ପହଁରିବା । ଐତିହାସିକ ବିବରଣୀକୁ ମଧ୍ୟ ଆସ୍ଥା ସ୍ଥାପନ କରି ସ୍ୱରୂପ ନିର୍ଣ୍ଣୟ, ଆନୁମାନିକ ଓ ସଂଶୟାତ୍ମକ ଅଟେ ।

'ପୁରାଣ ସମର୍ଥିତ ତଥ୍ୟାନୁସାରେ- ଶ୍ରୀବିଗ୍ରହ ନିର୍ମାଣ ଅବ୍ୟାହତ ଥିବାବେଳେ, ପାଟ ମହାଦେଈଙ୍କ ଅହେତୁକ ଶଙ୍କା ଏବଂ ନିର୍ଦ୍ଧାରିତ ସମୟ ପୂର୍ବରୁ ଦ୍ୱାର ଉନ୍ମୁକ୍ତ, ଅସଂପୂର୍ଣ୍ଣ ବିଗ୍ରହ ଉଦ୍‌ଭାଷିତ । ରାଜା ଓ ରାଣୀଙ୍କ ମୃତ୍ୟୁ ସଂକଳ୍ପ, ଆତ୍ମଗ୍ଲାନି, ଏସବୁ ମାୟା କାହାର ? ପୁନଶ୍ଚ ମହାଶୂନ୍ୟରୁ ଆପ୍ତବାଣୀ- ' ହେ ରାଜ ଦମ୍ପତି... ! ବ୍ରହ୍ମଙ୍କ ଅବୟବ ପରିକଳ୍ପନା ଏକ ଉଦ୍‌ଭଟ ଚିନ୍ତାଧାରା । ସମ୍ମୁଖରେ ଯାହା ଦେଖୁଛ ତାହହିଁ ସତ୍ୟ । ମୋ ଇଚ୍ଛାରେ ମୁଁ ଗଠିତ, ସ୍ୱୟଂ ସମ୍ପୂର୍ଣ୍ଣ ପ୍ରତୀକ ! ତଥାପି ଯଦି ଅସମ୍ପୂର୍ଣ୍ଣ ମନେ ହେଉଛି... ଆବଶ୍ୟକ ପୂରଣ ପାଇଁ ସ୍ୱର୍ଣ୍ଣାଭରଣ ଦେଇ ସଜାଇ ପାର । କଳ୍ପନାନୁଯାୟୀ, ହସ୍ତ, ପଦ ଇତ୍ୟାଦି... ତୁମ ଇଚ୍ଛା ମୁତାବକ... ଯେଉଁ ବେଶ ଚାହିଁବ, ମୁଁ ସେହି ବେଶରେ ଦର୍ଶନ ଦେବି... ।'

ରାଜା ଓ ରାଣୀ କୃତ୍ୟ କୃତ୍ୟ ଭାବରେ ନିଜର ଭ୍ରମ ସଂଶୋଧନ କରି ଶ୍ରୀବିଗ୍ରହମାନଙ୍କୁ ସୁବର୍ଣ୍ଣ ହସ୍ତ, ପଦରେ ଆବୃତ୍ତ କରାଇବା ସହ ବିଭିନ୍ନ ରତ୍ନାଳଙ୍କାର ବିମଣ୍ଡିତ, ସଜାଇବା କାର୍ଯ୍ୟ ସର୍ବପ୍ରଥମେ ଆରମ୍ଭ କରିଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ କୃତ ବେଶ ହେତୁ, ଏହାକୁ 'ରାଜବେଶ' ବୋଲି ଆଖ୍ୟା ଦିଆଯାଇଛି । ପରେ ପରେ ଆଲୋଚ୍ୟ ସୁନାବେଶର ସୃଷ୍ଟି ବୋଲି ଅନୁମାନ କରାଯାଏ ।

ବାରମାସରେ ତେର ଯାତ୍ରା ମଧ୍ୟରୁ ସର୍ବ ସୁଦୀର୍ଘ ଯାତ୍ରା ହେଉଛି ଜ୍ୟେଷ୍ଠ ପୂର୍ଣ୍ଣିମାର ସ୍ନାନଯାତ୍ରାଠାରୁ ଆଷାଢ ଶେଷର ନୀଳାଦ୍ରି ବିଜେ ପର୍ଯ୍ୟନ୍ତ । ପ୍ରାୟ ମାସାଧିକ ଶାବରାୟିତ ସରଳ ନିରାଡମ୍ବର ଉପାସନା ସମାପ୍ତି ହୁଏ ଆଷାଢ ଶୁକ୍ଳ ବଡ ଏକାଦଶୀ ସୁନା ବେଶରେ । ପ୍ରାଚୁର୍ଯ୍ୟ ଐଶ୍ୱର୍ଯ୍ୟପୂର୍ଣ୍ଣ ସୁନାବେଶ ଦର୍ଶନକୁ ଚଉଦ ବ୍ରହ୍ମାଣ୍ଡର ପ୍ରତୀକ୍ଷା, ଯାହାକି ଅତ୍ୟନ୍ତ ଉପଭୋଗ୍ୟ ଓ ଅନ୍ୟତମ ଆକର୍ଷଣ ।

ସୁନାବେଶର ଅନ୍ୟନାମ 'ବଡତଢ଼ାଉ' ବେଶ । ଖ୍ରୀ.୧୪୬୦ରେ ରାଜା କପିଳେନ୍ଦ୍ର ଦେବ ଦିଗ୍‌ବିଜୟ କାମନାରେ




ଜୟଦୁର୍ଗାଙ୍କୁ ଆରାଧନା କରି ସିଦ୍ଧି ଲାଭ କଲେ । ଦେବୀ ପ୍ରସନ୍ନ ଚିତ୍ତରେ ବିଜୟ ଖଡଗ ଓ ଜୟ ଶଂଖ ପ୍ରଦାନ କରି ଦିଗ୍ ଯାତ୍ରାକୁ ପ୍ରେରଣ କରନ୍ତେ, ଅକ୍ଳେଶରେ ଦାକ୍ଷିଣାତ୍ୟ ଜୟ କରି, ରାଜନ୍ୟବର୍ଗଙ୍କ ଭେଟିଦ୍ରବ୍ୟ ବିପୁଳ ଧନ, ରତ୍ନ ଯାହାକି ୧୬ଟି ହସ୍ତୀ ପୃଷ୍ଠରେ ବୋଝେଇ କରି ଜୟ ଶଙ୍ଖ ବଜେଇ ଶ୍ରୀକ୍ଷେତ୍ରକୁ ପତ୍ୟାବର୍ତ୍ତନ କରିବାକୁ ସମର୍ଥ ହୋଇଥିଲେ ।

ଲୋଭମୁକ୍ତ ରାଜା... ଏ ବିଜୟ ଶ୍ରୀଜଗନ୍ନାଥଙ୍କ ବିଜୟ ମାନି, ଆଣିଥିବା ସମସ୍ତ ରତ୍ନସମ୍ପଦ ପ୍ରଭୁଙ୍କୁ ସମର୍ପି, କିପରି ତାହା ଶ୍ରୀଅଙ୍ଗ ଲାଗି କରାଯିବ ତା'ର ଉପାୟମାନ ରାଜଗୁରୁ ବଡତଡ଼ାଉ ମହାଶୟଙ୍କ ଉପରେ ନ୍ୟସ୍ତ କରନ୍ତେ, ଶାଢୀବନ୍ଧା ବଡତଡ଼ାଉ ସେବକ ଏକ ସୁନ୍ଦର ମନ୍ତବ୍ୟ ଦେଇ ଜଣାଇଲେ–

ଛାମୁ... ! ରତ୍ନ ଗମ୍ଭିରା ରତ୍ନସିଂହାସନ ଉପରେ ବର୍ଷସାରା ଅନେକ ବେଶ ଜୀଉମାନଙ୍କର ଅନୁଷ୍ଠିତ ହେଉଛି କିନ୍ତୁ ସବୁବର୍ଗର ଲୋକେ ସବୁବେଳେ ଦର୍ଶନ କରିବା ସମ୍ଭବ ହେଉନାହିଁ । ଏଣୁ ରଥଯାତ୍ରାର ଅନ୍ତିମ ପର୍ଯ୍ୟାୟରେ ସିଂହଦ୍ୱାର ଆଗରେ ଦକ୍ଷିଣାଭିମୁଖୀ ରଥ ଉପରେ ବଡ ଏକାଦଶୀ ଦିନ ଯଦି ତ୍ରିମୂର୍ତ୍ତିଙ୍କୁ ସୁବର୍ଣ୍ଣ ବେଶରେ ସଜେଇ ଦିଆଯାଆନ୍ତା, ବିଶ୍ୱ ସମୁଦାୟଙ୍କ ଉପଭୋଗ୍ୟ ହୋଇପାରନ୍ତା । ସବୁ ଶ୍ରେଣୀର ଭକ୍ତ ଦର୍ଶନ କରିପାରନ୍ତେ ।

ଦେଶ ବିଦେଶରୁ କୁଶଳୀ ସ୍ୱର୍ଣ୍ଣକାରମାନଙ୍କୁ ନିମନ୍ତ୍ରି, ସର୍ବପ୍ରଥମେ ଆରମ୍ଭ କରାଗଲା 'ବଡତଡ଼ାଉ' ନାମକ ଏକ ସୁରମ୍ୟ କଣ୍ଠିମାଳ । ତା'ପରେ ଶ୍ରୀଭୁଜ ଶୋଭିତ ଶଙ୍ଖ, ଚକ୍ର, ହଳ, ମୂଷଳ, ମୁକୁଟ, ପଦକ, ପଦପଲ୍ଲବ, ବାଜୁ, ବାହୁଟି, ବଳା, ଜାଲିତଡ଼ାଉ, କାନ୍ତିକବର, ମେଖଳା ଇତ୍ୟାଦି–୧୩୮ କିସମର ରତ୍ନଖଚିତ ଅଳଙ୍କାର । ନିର୍ଦ୍ଦିଷ୍ଟ ସମୟରେ ଠାକୁରମାନେ ରତ୍ନ ଆଭୂଷଣରେ ଭୂଷିତ ହୋଇ, ତିନିରଥର ପ୍ରାଣ କେନ୍ଦ୍ରରେ ବିରାଜି ଉଠିଥିଲେ ।

ମତାନ୍ତରେ...'ତଡ଼ାଉ' କହିଲେ ଶ୍ରୀଜଗନ୍ନାଥଙ୍କ ସେବା ଅନ୍ତର୍ଭୁକ୍ତ ସେବକ ବିଶେଷଙ୍କୁ ବୁଝାଏ । କେଉଁ କେଉଁ ବେଶରେ କେତେ କେତେ ଅଳଙ୍କାର ଲାଗିବ ଏ ସମ୍ବନ୍ଧୀୟ ଜ୍ଞାନ ସେହିମାନଙ୍କଠାରେ ନିହିତ । ତାଙ୍କର ନିର୍ଦ୍ଧାରଣ ଅନୁସାରେ ଭଣ୍ଡାର ମେକାପ ପର୍ଯ୍ୟାପ୍ତ ପରିମାଣର ବହୁମୂଲ୍ୟ ରତ୍ନାଳଙ୍କାର ଭଣ୍ଡାର ମଧ୍ୟରୁ ଗଣତିକରି ବଢାଇଥାନ୍ତି । ସିଂହାରୀ ଖଣ୍ଡୁଆଶାଢୀ କରାଇବା ପରେ, ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କ ଶ୍ରୀହସ୍ତରେ ନେତଫିଟା ହୁଏ । ବସ୍ତ୍ର ଭୂଷଣ ଉପରେ ଖଞ୍ଜାଯାଏ ସ୍ୱର୍ଣ୍ଣାଳଙ୍କାର । ହସ୍ତ, ପଦ, ଆୟୁଧାଦିରେ ରାମ, ଜଗନ୍ନାଥ ସୁସଜ୍ଜିତ ହେଉଥିବା ବେଳେ, ଦେବୀ ସୁଭଦ୍ରାଙ୍କର ହସ୍ତପଦ ଯୋଚିତ ନଥାଏ, ମାତ୍ର ତ୍ରିମୂର୍ତ୍ତିଙ୍କ ଶ୍ରୀମୁଖ ସିଙ୍ଗାର ଗୋଟିଏ ପ୍ରକାର । ଜୀଉମାନଙ୍କ କପାଳ ଚୁମ୍ବିତ ଅଳକା ପାଟି, ଚୂର୍ଣ୍ଣକୁନ୍ତଳର ଭ୍ରମ ସୃଷ୍ଟି କରୁଥିବା ଅଗସ୍ତି ଫୁଲର କଳିକା ସଦୃଶ୍ୟ ସୁଦିବ୍ୟ ସ୍ୱର୍ଣ୍ଣାଳଙ୍କାର । ତିନି ଠାକୁରଙ୍କ ରଥଚକ ଅନୁପାତରେ ଯଥାକ୍ରମେ–୧୬,୧୪,୧୨ ସଂଖ୍ୟକ ସ୍ୱର୍ଣ୍ଣକମଳ ବେଷ୍ଟନ କରାଯାଇଥାଏ । ତା'ପରେ ବୋଳା ଶାଢୀର ଭାଙ୍ଗ ମଣ୍ଡଣୀ କରାଇ ଆଡକାନି (ସୁନାକ୍ଲିପ୍) ଲଗାଯାଏ ଯାହାକି ଶିର ଓ ପୃଷ୍ଠଭାଗକୁ ସୁଦୃଢ କରି ରଖିପାରିବ । ମସ୍ତକ ମଣ୍ଡିତ ହୋଇ ଝଲସୀ ଉଠେ କାରୁକାର୍ଯ୍ୟ ଭରା ଦିବ୍ୟାତିଦିନ ସ୍ୱର୍ଣ୍ଣକିରୀଟ, ଚୂଳରେ ସୁବର୍ଣ୍ଣର ମୟୂର ଚନ୍ଦ୍ରିକା, ମଧ୍ୟଭାଗରେ କିରୀଟ ତିଳକ । ଚନ୍ଦ୍ରସୂର୍ଯ୍ୟ, ସୁନାପାତର ଧାର ରାହୁରେଖା, ସୁଦୀର୍ଘ କପାଳରେ ସୁନାଚିତା । ଚିତାକୁ ବେଷ୍ଟନ କରି ଉର୍ଦ୍ଧ୍ୱ ପୁଣ୍ଡରିକ ତିଳକ ସଦୃଶ୍ୟ ସ୍ୱର୍ଣ୍ଣାଳଙ୍କାର । କେବଳ ଦେବୀ ସୁଭଦ୍ରାଙ୍କ କର୍ଣ୍ଣ ଯୁଗଳରେ 'ତଡକି' ନାମକ ସ୍ୱତନ୍ତ୍ର ଆଭୂଷଣ ଖଞ୍ଜାଯାଇଥାଏ । ତିନି ବିଗ୍ରହଙ୍କ କର୍ଣ୍ଣରେ ତିନିହଳ ସ୍ୱର୍ଣ୍ଣକୁଣ୍ଡଳ, ତା'ଉପରେ ଓଡିଆଣୀ ନାମକ ଚନ୍ଦ୍ରହାର, ଅଣ୍ଟାରେ ଗୋଠ ବା କଟିମେଖଳା । ଗଳାରେ ବାହାଡାମାଳି, ତାବିଜମାଳି, ହରିଡାମାଳି, କଦମ୍ବମାଳି, ବ୍ୟାଘ୍ରନଖ, ସେବତୀମାଳି ଇତ୍ୟାଦି ଲାଗି କରାଇବା ପରେ ପୁଷ୍ପ ନିର୍ମିତ ନାକୁଆସୀ, ଝୁମ୍ପା, ଅଧର ଚୁମ୍ବିତ ମାଳା, ତୁଳସୀ ଧଣ୍ଡା ଲମ୍ବାଇ ସେବାୟତମାନେ ତ୍ରୁଟି ମାର୍ଜନା ପାଇଁ ପ୍ରାର୍ଥନା କରି, ଆଭୂମ ପ୍ରଣତି ଜ୍ଞାପନ ସହ ଭବ୍ୟସିଙ୍ଗାର 'ବଡତଡ଼ାଉ' ବେଶକୁ ସାଙ୍ଗ କରିଥାନ୍ତି ।

କେବଳ ସ୍ୱର୍ଣ୍ଣ କିରୀଟ ବିମଣ୍ଡିତ ଅସ୍ତ୍ରରାଜ ସୁଦର୍ଶନଙ୍କୁ ଦେଖିଲେ ମନେହୁଏ ସେ' ଯେପରି ଜାଗ୍ରତ ପ୍ରହରୀଭାବେ ପ୍ରଭୁଙ୍କ ଆଜ୍ଞାକୁ ଅପେକ୍ଷା କରିଅଛନ୍ତି । ସଂସାରର ସମସ୍ତ ପାପ, ତାପକୁ ସହସ୍ରକିରଣ ଜ୍ୱାଳାରେ ଜାଳିଦେଇ, ସନ୍ଥମାନଙ୍କୁ ସୁରକ୍ଷା ଯୋଗାଇଦେବାକୁ ।

ଦିବ୍ୟଦ୍ରଷ୍ଟାମାନେ ସମର୍ପଣର ମହାମନ୍ତ୍ରରେ ସର୍ବହରା ପଣକୁ ଆପଣେଇ, କାନ୍ତକବିଙ୍କ ଭାଷାରେ– ସଂତାପିତ ପ୍ରାଣକୁ ଶାନ୍ତ୍ୱନା ଦେଇ କହୁଥାନ୍ତି–

''ସମର୍ପି ତୋହରିଠାରେ ମୋର ଯାହାକିଛି
ସର୍ବହରା ନାମ ଆପେ ବାଛି ମୁଁ ନେଇଛି
ପ୍ରଭୁ ହେ... ସେହି ଆଣ୍ଠଧରି,
ସକଳ ସଂତାପଯାକ ଦେଇଛି ପାଶୋରି ।''

ଗଜପତି ନଗର
ମୈଥିଳୀ ନିବାସ, ୫୮, ପୁରୀ–୨




# ଗଞ୍ଜାମର ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି(ହାରିତସ)

ଗଞ୍ଜାମ ଆମ ଓଡ଼ିଶାର ଏକ ସଂସ୍କୃତି ସମ୍ପନ୍ନ ଜିଲ୍ଲା । ଗଞ୍ଜାମର ଗଳିକନ୍ଦିରେ ଲୁଚିରହିଥିବା କଳା ସାହିତ୍ୟ ଜ୍ଞାନକୌଶଳ ସାରା ରାଜ୍ୟରେ ଦୁଷ୍ପ୍ରାପ୍ୟ । ସାରା ରାଜ୍ୟର ଅର୍ଦ୍ଧାଧିକ ମଠ ମନ୍ଦିର ଦେବାଦେବୀଙ୍କ ନିବାସସ୍ଥଳ ଏହି ସଂସ୍କୃତିମୟ ଗଞ୍ଜାମରେ । ଅତୀତରେ ଗଞ୍ଜାମର ପରିସୀମା ଥିଲା ସୁଦୀର୍ଘ । ଉତ୍ତରରେ ବାଲୁଗାଁଠାରୁ ଦକ୍ଷିଣରେ ବିଜୟନଗର ତଥା ବିଶାଖା ପାଟଣା ପର୍ଯ୍ୟନ୍ତ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବେଳେ ଏହି ଜିଲ୍ଲାର କିଛି ଅଂଶ ଭାଗ ହୋଇ ଆନ୍ଧ୍ର ରାଜ୍ୟରେ ରହିଗଲା । ତା' ପରବର୍ତ୍ତୀ କାଳରେ ସ୍ୱର୍ଗୀୟ ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକଙ୍କ ପ୍ରଶାସନରେ ଓଡ଼ିଶାରେ ଯେଉଁ ନୂତନ କରି ୧୭ଟି ଜିଲ୍ଲା ସୃଷ୍ଟି ହେଲା, ସେହି ବିଭାଜନ ବେଳେ ଗଞ୍ଜାମ ଜିଲ୍ଲା ବିଭାଜିତ ହୋଇ ଦକ୍ଷିଣାଞ୍ଚଳକୁ ଗଜପତି କୁହାଗଲା । ପ୍ରାଚୀନ ଗଞ୍ଜାମ ଜିଲ୍ଲାର ସୀମା ସରହଦ ଆଜିପାଇଁ ବିଭାଜିତ ହୋଇଥିଲେ ହେଁ, ଗଞ୍ଜାମର ସାଂସ୍କୃତିକ ଧାରା ସାରା ଅବିଭକ୍ତ ଗଞ୍ଜାମ ଅଞ୍ଚଳରେ ଆଗଭଳି ବିଛେଇ ହୋଇରହିଅଛି । ଏମିତିକି ଆଜିବି ଅଭିଭକ୍ତ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ତଥା ଗଜପତି ଜିଲ୍ଲାର ସାଂସ୍କୃତିକ ଗୌରବ ସାରା ଓଡ଼ିଶାରେ ପ୍ରାଧାନ୍ୟ ବିସ୍ତାର କରି ରହିଛି । ଓଡ଼ିଶାକୁ ଜଗନ୍ନାଥ ସଂସ୍କୃତିର ପ୍ରଦେଶ କୁହାଯାଉଥିବା ବେଳେ ଗଞ୍ଜାମ ଓ ଗଜପତି ଜିଲ୍ଲା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଗୌରବ ରକ୍ଷା କରିବାରେ ସାରା ଦେଶରେ ଅଦ୍ୱିତୀୟ । ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଅନୁଷ୍ଠିତ ପୁରୀ ରଥଯାତ୍ରା ଭଳି ଗଞ୍ଜାମର ପ୍ରତିଟି ପୁରପଲ୍ଲୀରେ ରଥଯାତ୍ରା ପାଳିତ ହୋଇଥାଏ । ସେଭଳି ଗଜପତି ବଂଶଧର ପାରଳାଖେମୁଣ୍ଡି ରାଜପରିବାର ଦ୍ୱାରା ପରିଚାଳିତ ରଥଯାତ୍ରା– ଓଡ଼ିଶାରେ ଜଗନ୍ନାଥ ଚେତନାକୁ ବହୁ ଗୁଣିତ କରାଏ ।

ଅତୀତରେ ଗଞ୍ଜାମର ବିଭିନ୍ନ ଗଡଜାତ ଅଞ୍ଚଳ ଓ ଜମିଦାରୀମାନଙ୍କର ରଥଯାତ୍ରା ମହାସମାରୋହରେ ଅନୁଷ୍ଠିତ ହେଉଥିଲା । ଅବଶ୍ୟ ବର୍ତ୍ତମାନ ରାଜରାଜୁଡା ଓ ଜମିଦାରମାନଙ୍କର ପ୍ରଭାବ କମି ଆସିବା ପରେ ପାରମ୍ପରିକ ଭାବେ ସେହିସବୁ ଅଞ୍ଚଳମାନଙ୍କରେ ପ୍ରତିଷ୍ଠା ପାଇଥିବା ଶ୍ରୀଜଗନ୍ନାଥଙ୍କ ମନ୍ଦିର ତରଫରୁ ଜନସାଧାରଣଙ୍କ ସହଯୋଗରେ ରଥଯାତ୍ରା ପାଳିତ ହେଉଛି । ଘୁମୁସର, ଧରାକୋଟ, ଖଲ୍ଲିକୋଟ, ଆଠଗଡ, ସେରଗଡ, ବଡଖେମୁଣ୍ଡି, ସାନଖେମୁଣ୍ଡି, ଚିକିଟି, ମହୁରୀ ଆଦି ଜମିଦାରୀରେ ରଥଯାତ୍ରା ପାଳନ କରାଯାଉଛି । ନୂତନ ଓ ପୁରାତନ କାଳରୁ ବିଭିନ୍ନ ଗ୍ରାମ ଓ ସହରାଞ୍ଚଳମାନଙ୍କରେ ରହିଆସିଥିବା ଜଗନ୍ନାଥ ମଠ ଓ ମନ୍ଦିରମାନଙ୍କରେ ମଧ୍ୟ ରଥଯାତ୍ରା ଅନୁଷ୍ଠିତ ହେଉଛି । ଏହି ସମସ୍ତ ମନ୍ଦିରମାନଙ୍କର ରଥଯାତ୍ରା ବିଷୟରେ ଏକ ନିବନ୍ଧ ଲେଖିବାର ପ୍ରଚେଷ୍ଟା କରାଯାଇଛି । ଯାହାକି ସମଗ୍ର ଗଞ୍ଜାମ ଜିଲ୍ଲାର ଅନୁଷ୍ଠିତ ରଥଯାତ୍ରାର ଏକ ଛାପ ପ୍ରଦାନ କରିବ । ଅବଶ୍ୟ ସମ୍ଭବ, ସାଧ୍ୟ, ତଥ୍ୟାବଳୀର ପ୍ରାସଙ୍ଗିକତା ଉପରେ ଲେଖାଟି ପ୍ରସ୍ତୁତ କରିବାର ଚେଷ୍ଟା କରାଯାଇଛି ।

ଘୁମୁସରର ରଥଯାତ୍ରା

ଘୁମୁସର ଜମିଦାରୀର ଆୟତନ ଏକଶହ କୋଡିଏ କୋଶ ତଥା ୨୪୦ମାଇଲ । ଏଠାରେ ଷୋଡଶ ଶତାବ୍ଦୀରେ ରାଜା ପ୍ରତାପ ଧନଂଜୟ ଭଞ୍ଜ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ମୂର୍ତ୍ତି ସ୍ଥାପନ କରିଥିଲେ କିନ୍ତୁ ରାଜା କୃଷ୍ଣ ଭଞ୍ଜ ୧୭୫୪ ମସିହାରେ ଘୁମୁସରର ରାଜା ହେବାପରେ ନଅରକୁ ଲାଗି କୁଲାଗଡରେ ଏକ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରଟିଏ ନିର୍ମାଣ କରି ତିନି ଦିଅଁଙ୍କୁ ସ୍ଥାପନା କରିଥିଲେ । ଏହି ମନ୍ଦିରରେ ଦୁଇଟି ଅଁଳାଶ୍ରୀ ଥିବା ଏକ ସ୍ୱାତଂତ୍ର୍ୟ । ସେହିକାଳରୁ କୁଲାଡଠାରେ ଗୋଟିଏ ରଥ ନିର୍ମାଣ କରି ତିନିଠାକୁରଙ୍କ ରଥଯାତ୍ରା ପୁରୀର ବିଧି ପାଳନ ପୂର୍ବକ ଅନୁଷ୍ଠିତ ହୋଇଥାଏ ଓ ଏହି ଅଞ୍ଚଳରେ ଯାତ୍ରା ଦେଖିବା ପାଇଁ ବହୁଜନ




ସମାଗମ ହୋଇଥାନ୍ତି । ଏହାବ୍ୟତୀତ ଜଗନ୍ନାଥ ପ୍ରସାଦ, ବୁଗୁଡା ଓ ବାଲିପଦର ଅଞ୍ଚଳରେ ମଧ୍ୟ ରଥଯାତ୍ରା ପାଳିତ ହୁଏ । ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କର ତିନିପୁତ୍ର ହରିଶରଣ, ସଦାଶିବ ଓ ଜଗନ୍ନାଥଙ୍କୁ ନିଜ ଜମିଦାରୀର ଜଗନ୍ନାଥ ପ୍ରସାଦ ମୁଠା, ବୁଗୁଡା ମୁଠା, ବାଲିପଦର ମୁଠା ଯଥାକ୍ରମେ ପ୍ରଦାନ କରିଥିଲେ । ସେହି ସମୟରୁ ରାଜାମାନଙ୍କ ଦ୍ୱାରା ଜଗନ୍ନାଥ ପ୍ରସାଦ, ବୁଗୁଡା ଓ ବାଲିପଦରଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଅଛି । ଏହାସହ ପୁରୁଣା ଘୁମୁସର ଗଡରେ ବାସୁଦେବଙ୍କ ମନ୍ଦିର ପାଖରେ ରାଜା ଲକ୍ଷ୍ମଣଭଞ୍ଜ ଅନ୍ୟଏକ ଜଗନ୍ନାଥ ମନ୍ଦିର ନିର୍ମାଣ କରି ପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ବିଧିପାଳନ କରିଥିଲେ । ଅଦ୍ୟାବଧି ଘୁମୁସର ଅଞ୍ଚଳରେ ଜଗନ୍ନାଥଙ୍କ ରଥଯାତ୍ରା ପାଳିତ ହୋଇ ଆସୁଅଛି । ବେଲଗୁଣ୍ଠା, ବଡ଼କୋଦଣ୍ଡା, ପାଇଲିପଡା, ନେଟେଙ୍ଗା, ପଞ୍ଚଭୂତି ଓ ଭଞ୍ଜନଗର ସହରର ବିଭିନ୍ନ ଛୋଟବଡ ଅଞ୍ଚଳରେ ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରିବା ସହ ରଥଯାତ୍ରା ଅନୁଷ୍ଠିତ ହେଉଅଛି ।

ମହୁରୀର ରଥଯାତ୍ରା

ମହୁରୀ ୫୨୧ ବର୍ଗ ମାଇଲିରେ ୪୧୧ ଗ୍ରାମ ଅନ୍ତର୍ଭୁକ୍ତ ଏକ ଜମିଦାରୀ ଥିଲା । କେରାଣ୍ଡିମାଳ ପର୍ବତକୋଳ ତଥା ମହୁଡା ଅଞ୍ଚଳରେ ମହୁରୀ ରାଜା ନିଜ ଗଡ ସ୍ଥାପନ କରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ସୁରକ୍ଷା ଓ ସୁବିଧା ଦୃଷ୍ଟିରୁ ନିକଟସ୍ଥ ସହର ବ୍ରହ୍ମପୁରକୁ ନିଜ ନଅର ସ୍ଥାନାନ୍ତର କରିଥିଲେ । ଏହି ରାଜା ଜଣେ ପ୍ରଭୁ ବିଶ୍ୱାସୀ, ଧର୍ମପ୍ରାଣ ବ୍ୟକ୍ତିଥିବାରୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର, ଅଷ୍ଟଶଂଭୁ ଆଦିଙ୍କ ମନ୍ଦିର ନିର୍ମାଣ କରିଥିଲେ । ଅତୀତ କାଳରେ ସେହି ଜଗନ୍ନାଥ ମନ୍ଦିରମାନଙ୍କରେ ରଥଯାତ୍ରା ଅନୁଷ୍ଠିତ ହେଉଅଛି ।

ଏହା ବ୍ୟତୀତ ବ୍ରହ୍ମପୁର ସହରରେ ବଡଜଗନ୍ନାଥ, ସାନଜଗନ୍ନାଥ, ଉତ୍କଳ ଆଶ୍ରମ, ଗୋଇଲୁଣ୍ଡି, ଆଙ୍କୁଲି, ଶିଳ୍ପାଞ୍ଚଳ, ମିଲଟାରୀ ଲାଇନ, କୋଟପେଟା, ହାତୀବନ୍ଧ ସାହି, ବିଜିପୁର, ଗୋସାଣୀ ନୁଆଗାଁଠାରେ ଜଗନ୍ନାଥଙ୍କ ରଥଯାତ୍ରା ମହାସମାରୋହରେ ପାଳନ କରାଯାଉଛି । ବର୍ତ୍ତମାନ ଖାସ୍‌ପା ସାହିରେ ଅବସ୍ଥିତ ବଡଜଗନ୍ନାଥ ମନ୍ଦିର ଓ ଗୋସାଣୀ ନୂଆଗାଁର ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିରର ରଥଯାତ୍ରା ବେଶ୍ ଜାକଜମକରେ ଅନୁଷ୍ଠିତ ହେଉଅଛି । ଖାସ୍‌ପା ସାହିରେ ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିର ପ୍ରାୟତଃ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ 'ନାଇନା' ନାମର ଜଣେ ବ୍ୟବସାୟୀଙ୍କ ଦ୍ୱାରା ନିର୍ମାଣ କରାଯାଇଥିବା ଜାଣିବାକୁ ମିଳେ । ନୌବାଣିଜ୍ୟରେ ପ୍ରତିଷ୍ଠିତ ହୋଇଥିବା ଦୁଇ ଭାଇଥିଲେ ନାଇନା ଓ ଆଇନା । ଦୁହେଁ ଧର୍ମପ୍ରାଣ ବ୍ୟକ୍ତିଥିଲେ । ସେମାନେ ବାଣିଜ୍ୟ ବ୍ୟବସାୟରୁ ବହୁ ଅର୍ଥ ଲାଭ କରୁଥିଲେ ହେଁ ସେମାନଙ୍କ ଭାବନା ଥିଲା ଧର୍ମ ଅର୍ଜନ କରିବା । ଭାଇ ଆଇନା ଏକ ପୋଖରୀ ନିର୍ମାଣ ଓ ପ୍ରତିଷ୍ଠା କଲେ ଯାହା ଆଜି 'ଆଇନା ବନ୍ଧ' ନାମରେ ପରିଚିତ । ସେଭଳି ନାଇନା ଜଗନ୍ନାଥ ମନ୍ଦିର ନିର୍ମାଣ କରି ପ୍ରଭୁ ଜଗନ୍ନାଥଙ୍କ ଜାନିଯାତ୍ରା ପାଇଁ ଭୂସମ୍ପତ୍ତି ଅର୍ପଣ କରିଥିଲେ । ସେହିଦିନରୁ ଏହି ଜଗନ୍ନାଥଙ୍କଠାରେ ବିଧିଅନୁସାରେ ପୂଜା ଯାତ୍ରାମହୋତ୍ସବ ଆଦି ପାଳିତ ହୋଇଆସୁଅଛି ।

ଗୋସାଣି ନୂଆଗାଁର ରଥଯାତ୍ରା

ପ୍ରତିଷ୍ଠା କରାଯାଇଥିବା ଜଗନ୍ନାଥ ମନ୍ଦିର ସେଠାକାର ଜଣେ ପରିଶ୍ରମୀ ଧର୍ମଭାବାପନ୍ନ ଚଉଧୁରୀ ମହାଶୟଙ୍କ କଷ୍ଟାର୍ଜିତ ଧନବ୍ୟୟରୁ ସୃଷ୍ଟି । ଏଠାରେ ମହାସମାରୋହରେ ତିନୋଟି ରଥରେ ତିନିଠାକୁରଙ୍କୁ ଗୁଣ୍ଡିଚା ମନ୍ଦିରକୁ ନବଦିନ ପୂଜା ପାଇଁ ନିଆଯାଇଥାଏ । ବର୍ତ୍ତମାନ ବ୍ରହ୍ମପୁର ମହାନଗରର ଏକ ବିଶିଷ୍ଟ ଯାତ୍ରା ରୂପରେ ଖ୍ୟାତି ଲାଭ କରିଛି ।

ମନ୍ତ୍ରିଡିର ରଥଯାତ୍ରା

ବ୍ରହ୍ମପୁରର ଦକ୍ଷିଣପୂର୍ବ ପ୍ରାୟ ୬ଠର କିମି ବ୍ୟବଧାନରେ ପ୍ରାଚୀନ ପଣ୍ୟବନ୍ଦର ମନ୍ତ୍ରିଡିର ଅବସ୍ଥିତ। ଏଠାରେ ମା' ସିଦ୍ଧଭୈରବୀଙ୍କ ପବିତ୍ର ଶାକ୍ତକ୍ଷେତ୍ର ରହିଥିଲା ବେଳେ ଭୈରବୀ କ୍ଷେତ୍ରର ପୀଠ ରକ୍ଷକରୂପେ ନୂତନ କରି ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଛି ଏବଂ ଏଠାରେ ତିନୋଟି ରଥ ନିର୍ମାଣ କରାଯାଇ ରଥଯାତ୍ରା ପାଳିତ ହେଉଛି । ଏହା ବ୍ୟତୀତ ଏଠାରେ ସମ୍ଭବତଃ ଷୋଡଶ ଶତାବ୍ଦୀରେ ନିର୍ମିତ ଏକ ପ୍ରାଚୀନ ଜଗନ୍ନାଥ ମନ୍ଦିର ରହିଛି । ପଛକୁ ପଛ ହୋଇ ଚାରିଟି ମନ୍ଦିର ନିର୍ମାଣ କରାଯାଇଛି। ପ୍ରଥମେ ସିଂହଦ୍ୱାର ଗମ୍ଭିରା ପଛକୁ ସାତଟି(ବାଇଶି) ପାହାଚ ପରେ ଜଗମୋହନ, ନାଟମଣ୍ଡପ ଓ ମୁଖ୍ୟ ଗର୍ଭ ମନ୍ଦିର । ଏଠାରେ ତିନି ଠାକୁରଙ୍କ କଳାପୂର୍ଣ୍ଣ ସୁନ୍ଦର ମୂର୍ତ୍ତି ପୂଜା ପାଉଛନ୍ତି । ଏହି ମନ୍ଦିରର ନିର୍ମାତା ଜଣେ ନୌବାଣିଜ୍ୟ କରୁଥିବା କମାବ୍ରାହ୍ମଣ । ଜଗନ୍ନାଥଙ୍କ ଦୟାରୁ ରାସ୍ତାକଡରୁ ଏକ ପୁତ୍ର ସନ୍ତାନ ପ୍ରାପ୍ତ ହୋଇ ଏହି ମନ୍ଦିରର ଧର୍ମକର୍ତ୍ତା ଭାବରେ ବଂଶାନୁକ୍ରମରେ ମନ୍ଦିର ପରିଚାଳନା ସହ ରଥଯାତ୍ରାଦି ଉତ୍ସବ ପାଳନ କରାଯାଉଥିଲା । ଠାକୁରଙ୍କ ନାମରେ ପ୍ରାୟ ୩୦୦ ଏକର ଭୂସମ୍ପତ୍ତି ଦାନ କରିଥିଲେ । ମନ୍ତ୍ରିଡିର ରଥଯାତ୍ରା ଅତୀତ କାଳରେ ଦକ୍ଷିଣ ଓଡିଶା କାହିଁକି ଆନ୍ଧ୍ର ଉପାନ୍ତ ଅଞ୍ଚଳ ପାଇଁ ଅତି ପ୍ରସିଦ୍ଧ ଥିଲା । ବହୁ ପ୍ରାଚୀନ କାଳରୁ ଏଠାରେ ରଥଯାତ୍ରା ପୁରୀ ରଥଭଳି ଉଚ୍ଚ ଓ




ସୁନ୍ଦର ସାଜସଜ୍ଜାରେ ହଜାର ହଜାର ଲୋକଙ୍କ ସମାବେଶରେ ରଥଯାତ୍ରା ଅନୁଷ୍ଠିତ ହେଉଥିଲା । ପ୍ରଥମେ ତିନୋଟି ରଥରେ ତିନି ଠାକୁରଙ୍କୁ ଯାତ୍ରାରେ ନିଆଯାଉଥିବା ବେଳେ ପରେ ଅର୍ଥାଭାବରୁ ଗୋଟିଏ ବଡରଥ ନିର୍ମାଣ କରି ଯାତ୍ରା ପାଳନ କରାଗଲା । ଏବେ କିନ୍ତୁ ରୟତମାନଙ୍କ ଠାକୁରଙ୍କ ପାଇଁ ମହାସୁଲ ନଆସିବା ଫଳରେ ରଥ ନିର୍ମାଣର ଖର୍ଚ୍ଚ ନତୁଲାଇ ପାରିବା ଯୋଗୁଁ ରଥ ନିର୍ମାଣ ହୋଇପାରୁନାହିଁ । ତିନିଠାକୁର ଓ ସୁଦର୍ଶନଙ୍କୁ ପହଣ୍ଡି କରାଇ ମାଉସୀମା ଘରକୁ ନିଆଯାଉଛି । ଏହି ପ୍ରାଚୀନ ଜଗନ୍ନାଥ ମନ୍ଦିର ବ୍ୟତୀତ ରାଧାକାନ୍ତ ମଠରେ ମଧ୍ୟ ତିନିଠାକୁର ପୂଜା ପାଉଛନ୍ତି ଓ ଗୁଣ୍ଡିଚା ରଥଯାତ୍ରା ଅନୁଷ୍ଠିତ ହେଉଛି । ଠାକୁରଙ୍କ ନାମରେ କେତୋଟି ମନ୍ତ୍ର ରହିଛି ଓ ତନ୍ମଧ୍ୟରୁ ଜଗନ୍ନାଥପୁର (ସିଗିଡିଗାଁ) ଅନ୍ୟତମ । ମନ୍ତ୍ରିଡି ସନ୍ନିକଟରେ ଥିବା ବୟାଳୀ(ଅତୀତର ବୟାଳିଶୀ ବ୍ରାହ୍ମଣ ଶାସନ ପ୍ରତିଷ୍ଠାର ମୂଳପୀଠ)ରେ ଥିବା ଚାରିଶହ ବର୍ଷରୁ ଅଧିକା ପୁରୁଣା ଶ୍ରୀରାଧାରମଣ ମଠରେ ଜଗନ୍ନାଥଙ୍କ ଏକ ଛୋଟ କଳାତ୍ମକ ମୂର୍ତ୍ତି (ଦଧିବାମନ) ପୂଜା ପାଇଆସୁଛନ୍ତି । ଠାକୁରଙ୍କ ସେବାପୂଜା ପାଇଁ ଆର୍ଥିକ ଦୁରବସ୍ଥା ରହିଥିଲେ ହେଁ ଗୋଟିଏ ରଥ ୨୦ଫୁଟ୍ ଉଚ୍ଚତାର ନିର୍ମାଣ କରାଯାଇ ଗ୍ରାମରେ ରଥଯାତ୍ରା ଅନୁଷ୍ଠିତ ହେଉଛି । ସୁନପୁର ଏକ ପ୍ରାଚୀନ ବନ୍ଦର । କିଛିବର୍ଷ ପୂର୍ବେ ସମୁଦ୍ରରେ ଭାସିଭାସି ଆସୁଥିବା ତିନୋଟି ଦାରୁମୂର୍ତ୍ତିକୁ ଉଦ୍ଧାର କରାଯାଇ ଏଠାରେ ପୂଜା କରାଗଲା ଓ ପରେ ଏକ ମନ୍ଦିରରେ ରଖାଯାଇ ରଥଯାତ୍ରା ଅନୁଷ୍ଠିତ ହେଲା । କୌଣସି ଏକ ଦୁର୍ଘଟଣାରୁ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଅଗ୍ନିଦାହ ହେବା ଯୋଗୁଁ– ଏଠା ଠାକୁରଙ୍କର ନବ କଳେବରର ଆବଶ୍ୟକତା ରହିଛି ।

ଗଞ୍ଜାମର ଦକ୍ଷିଣ ପ୍ରାନ୍ତରେ ଥିବା ଜରଡା, ସୁରଙ୍ଗୀ ରଥଯାତ୍ରା ପାଇଁ ପ୍ରସିଦ୍ଧି ରହିଛି । ଜରଡାର ରାଜା ବିରଭଦ୍ରଦେବଙ୍କ ଦ୍ୱାରା ନିର୍ମିତ ପାର୍ଥସାରଥିଙ୍କ ମନ୍ଦିର ପୂଜା ଓ ରଥଯାତ୍ରାର ସ୍ୱାତନ୍ତ୍ର୍ୟ ରହିଛି । ସୁରଂଗୀ ରାଜାଙ୍କ ପୃଷ୍ଠପୋଷକତାରେ ସୁରଂଗୀରେ ବହୁଦିନରୁ ରଥଯାତ୍ରାର ପରଦିନ ଏଠାରେ ରଥଯାତ୍ରା ତଥା ରଥଟଣା ଅନୁଷ୍ଠିତ ହୋଇଥାଏ । ଏହାବ୍ୟତୀତ ଚିକିଟିରେ ମଧ୍ୟ ରଥଯାତ୍ରା ମହା ସମାରୋହରେ ପାଳିତ ହେଉଛି । ଏଠାରେ ଅତି ସୁନ୍ଦର ଜଗନ୍ନାଥ ମନ୍ଦିର ସାଙ୍ଗକୁ ଗୁଣ୍ଡିଚା ମନ୍ଦିର ରହିଛି । ଦିଗପହଣ୍ଡି ରାଜ ନଅର ଭିତରେ ଅନ୍ୟ ରାଜରାଜୁଡାଙ୍କ ଭଳି ଶ୍ରୀଜଗନ୍ନାଥଙ୍କ ମନ୍ଦିରଟିଏ ଅଛି । ସେଠାରେ ମଧ୍ୟ ତିନିଠାକୁରଙ୍କ ରୀତିନୀତି ପାଳିତ ହୋଇ ରଥଯାତ୍ରା ଅନୁଷ୍ଠିତ ହେଉଛି । କିନ୍ତୁ ବଡ ଦୁଃଖର କଥା ଗଞ୍ଜାମ ଜିଲ୍ଲା କାହିଁକି ସାରା ରାଜ୍ୟରେ ବର୍ତ୍ତମାନର ମଠମନ୍ଦିରମାନଙ୍କ ଅବସ୍ଥା ଭଗ୍ନ ପ୍ରାୟ । ଏପରିସ୍ଥଳେ ବିନା ସରକାରୀ ସହାୟତାରେ କେଉଁଠି କିଛି ଯାନିଯାତ୍ରା ଠାକୁରମାନଙ୍କ ନୀତି ଓ ପରମ୍ପରାକୁ ପାଳନ କରିବା କଷ୍ଟକର ହୋଇପଡିଛି । ଏଭଳି କଷ୍ଟ ହେଲେ ମଧ୍ୟ ଜିଲ୍ଲାର କୋଦଳା, ପୋଲସରା, କବିସୂର୍ଯ୍ୟନଗର, ପୁରୁଷୋତ୍ତମପୁର, ଗଞ୍ଜାମ, ଚିଲିକା, ପାରିକୁଦ, ରମ୍ଭା, ଛତ୍ରପୁର, ହୁମା, ହିଞ୍ଜିଳିକାଟୁ, କାଳକଣ୍ଠପୁର, ଆସ୍କା ଆଦି ଗ୍ରାମ ଓ ସହରମାନଙ୍କରେ ଧର୍ମଭାବାପନ୍ନ ବ୍ୟକ୍ତିମାନଙ୍କ ଦ୍ୱାରା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପୂଜାନୀତି ପାଳନ ପୂର୍ବକ ରଥଯାତ୍ରା ଅନୁଷ୍ଠିତ ହେଉଅଛି । ଓଡ଼ିଶାର ଏକମାତ୍ର ପାର୍ଥସାରଥି ଧାମ ଭାବରେ ପରିଚୟ ଲାଭ କରିଥିବା ଜରଡାର ସାରଥି ଗୋସାଇଁଙ୍କ ମଠ ମନ୍ଦିର ସହ ରଥଯାତ୍ରା ଦକ୍ଷିଣ ଓଡ଼ିଶାରେ ପ୍ରସିଦ୍ଧିଲାଭ କରିଛି । ରଥଯାତ୍ରା ଦିନ ସମସ୍ତ ଦେବନୀତି ପାଳିତ ହେବାପରେ ଜରଡା ରାଜାଙ୍କ ଦ୍ୱାରା ଛେରାପହଁରା କରାଯାଇ ରଥଟଣା ଆରମ୍ଭ ହୁଏ । ଆନ୍ଧ୍ରର ମଂଜୁଷା, ପାରଳା, ଟେକେଲି, ରାମଗିରି, ସାବାଗଡ, କୋରାପୁଟ, ପଶ୍ଚିମବଙ୍ଗ, ଛତିଶଗଡ ଅଞ୍ଚଳରୁ ସାରଥି ମହାପ୍ରଭୁଙ୍କ ଦର୍ଶନ ପାଇଁ ବହୁ ତୀର୍ଥଯାତ୍ରୀ ଏହିପୀଠ ସ୍ଥାନକୁ ଆସିଥାଆନ୍ତି । ଛତ୍ରପୁରରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ମହାଆଡମ୍ବର ସହକାରେ ଶତାଧିକ ବର୍ଷଧରି ପାଳିତ ହୋଇଆସୁଛି । ସହରର ତାଡେପଲ୍ଲୀ ସାହିରେ ଥିବା ତିନିଠାକୁରଙ୍କ ରଥଯାତ୍ରାରେ ଚିକିଟି ରାଜବଂଶର ମହାରାଜା କୈଳାସ ଚନ୍ଦ୍ର ଦେଓ ରଥରେ ଛେରାପହଁରା କରିବାର ବିଧି ପାଳିତ ହେଉଛି । ମଝିବଜାର ଜଗନ୍ନାଥ ମନ୍ଦିରର ରଥକୁ ଭକ୍ତମାନେ ଟାଣିଟାଣି ବସ୍‌ଷ୍ଟାଣ୍ଡଠାରେ ଥିବା ଗୁଣ୍ଡିଚା ମନ୍ଦିରରେ ପହଁଚାଇଥାନ୍ତି । ସେହିଭଳି ସହର ସନ୍ନିକଟ ନରେନ୍ଦ୍ରପୁର, ଟାଙ୍ଗଣାପଲ୍ଲୀ, ବିପୁଳିଂଗି, ଆଇ.ଆର୍.ଇ ଗ୍ରାମରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ପାଳିତ ହେଉଛି । ଗଞ୍ଜାମ ସହରରେ ଥିବା ଚାରୋଟି ଜଗନ୍ନାଥ ମନ୍ଦିରରେ ରଥଯାତ୍ରା ଅନୁଷ୍ଠିତ ହୁଏ । ଚୌଧୁରୀ ସାହି ଜଗନ୍ନାଥ ମନ୍ଦିରମାନଙ୍କରେ ଆର୍ଥିକ ଅବସ୍ଥା ଭଲନଥିଲେ ମଧ୍ୟ ଲୋକଙ୍କ ପ୍ରଚେଷ୍ଟାରେ ବିଧିମୁତାବକ ଠାକୁରମାନଙ୍କର ପହଣ୍ଡି ଓ ଯାତ୍ରା ଭକ୍ତିର ସହ ପାଳିତ ହୁଏ । ସେହିପରି ଗଞ୍ଜାମ ବ୍ଲକ ଅନ୍ତର୍ଗତ ଗଡହୁମ୍ମାଠାରେ ମଧ୍ୟ ଜଗନ୍ନାଥଙ୍କ ଯାତ୍ରା ପାଳନ କରାଯାଉଛି । ଘୁମୁସରର ପ୍ରସିଦ୍ଧ କୁଲାଡ ରଥଯାତ୍ରାରେ ଭଞ୍ଜବଂଶୀୟ ରାଜାମାନେ ଛେରା ପହଁରା କରୁଥିବାର ବିଧି ପାଳିତ ହେଉଛି । ବଡକୋଦଣ୍ଡା ବାଲିପଦର, ବେଲଗୁଣ୍ଠାର ଜଗନ୍ନାଥ ମନ୍ଦିରରେ ମଧ୍ୟ ମହାସମାରୋହରେ ଠାକୁରଙ୍କ ଯାତ୍ରା ସମ୍ପାଦିତ ହୋଇଥାଏ । ପୁରୁଷୋତ୍ତମପୁର ଏକ ପ୍ରାଚୀନ ଜଗନ୍ନାଥ, ସଂସ୍କୃତି ବିଜଡିତ ସହର । ଏଠାରେ ରଥସାହିରେ ଥିବା ଜଗନ୍ନାଥ ମନ୍ଦିରରେ



ବିଧିପୂର୍ବକ ଯାତ୍ରା ଅନୁଷ୍ଠିତ ହୁଏ । ଏହାସହ ପୁରୁଷୋତ୍ତମ ସନ୍ନିକଟ କୁମାରୀ କନକା, ସୁନାଥର, ସଂହାପୁର, ରାଇପୁର ଓ ଶିକୁଳା ଆଦି ଗ୍ରାମମାନଙ୍କରେ ଥିବା ଜଗନ୍ନାଥ ମଠ ଓ ମନ୍ଦିରମାନଙ୍କରେ ମଧ୍ୟ ରଥଯାତ୍ରା ପାଳନ କରାଯାଉଛି । ଆସିକା ଗଞ୍ଜାମ ଜିଲ୍ଲାର ଏକ ଶିଳ୍ପ ସହର କହିଲେ ଅତ୍ୟୁକ୍ତି ହେବନାହିଁ । ଆସିକାର ସୁନାମ୍ବ ସାହି, ନୂଆଗାଁର ଚିନିକାରଖାନା ଅଞ୍ଚଳରେ ଥିବା ସୁନ୍ଦର ଶ୍ରୀଜଗନ୍ନାଥ ମନ୍ଦିର, ବଜାର ସାହି, ଖମ୍ବେଶ୍ୱରୀ ପାଟଣା, ଲାଲାଗୋର୍ଜି ଛକ ଆଦି ବହୁ ଅଞ୍ଚଳରେ ଜଗନ୍ନାଥ ମନ୍ଦିରମାନଙ୍କରେ ତିନି ଠାକୁରଙ୍କର ପହଣ୍ଡି ବିଜେ, ରଥଟଣା ଅତି ଭକ୍ତି ଓ ଉତ୍ସାହରେ ଅନୁଷ୍ଠିତ ହୋଇଆସୁଛି । ଏହାସହ ବ୍ରହ୍ମପୁର ନିକଟବର୍ତ୍ତୀ କୁକୁଡାଖଣ୍ଡି, ହିଞ୍ଜିଳିକାଟୁରେ ନୂତନ ଓ ପୁରାତନ ଜଗନ୍ନାଥ ମନ୍ଦିରମାନଙ୍କରେ ମଧ୍ୟ ରଥଯାତ୍ରା ପାଳିତ ହେଉଛି । ଏହାସହ ହିଞ୍ଜିଳିକାଟୁର ରାଜବାଟୀ, ପାଟଣା ସାହି ଲକ୍ଷ୍ମୀନୃସିଂହ ମନ୍ଦିରରେ ପୂଜିତ ଏକକ ଦଧିବାମନ ଶ୍ରୀଜଗନ୍ନାଥଙ୍କ ରଥ ଓ ଠାକୁରଙ୍କର ନବଦିନବ୍ୟାପୀ ଯାତ୍ରା ମହାସମାରୋହରେ ପାଳିତ ହୋଇ ଆସୁଛି । ଦକ୍ଷିଣ ଗଞ୍ଜାମର ଜରଡା, ସୁରଂଗୀ, ଚିକିଟି ଭଳି ପାତ୍ରପୁରଠାରେ ମଧ୍ୟ ଜଗନ୍ନାଥଙ୍କ ଯାତ୍ରା ଅନୁଷ୍ଠିତ ହେଉଛି । ଜୟନ୍ତୀପୁର, ପଦାଦିଗ, ନୂଆଗଡ, ଭ୍ରମରପୁର, ଗୋପୀନାଥପୁର ଆଦି ସ୍ଥାନରେ ମଧ୍ୟ ରଥଯାତ୍ରା ପାଳନ କରାଯାଉଛି ।

ପ୍ରାଚୀନ ଖେମୁଣ୍ଡି ରାଜବଂଶ ଦ୍ୱାରା ପ୍ରତିଷ୍ଠିତ ଅବିଭକ୍ତ ଖେମୁଣ୍ଡି ଷଡରାଜ୍ୟର ଐତିହାସିକ ରାଜଧାନୀ ସାନଖେମୁଣ୍ଡି ଅନ୍ତର୍ଗତ ପ୍ରତାପଗିରିଠାରେ ତିନିଠାକୁରଙ୍କ ଦାରୁବିଗ୍ରହ ରହିଛି । କିନ୍ତୁ ଦାରୁ ବିଗ୍ରହଙ୍କ ପାଇଁ ମନ୍ଦିର ନଥିବାରୁ ଦୀର୍ଘ ୨୫୦ ବର୍ଷରୁ ଅଧିକ ବର୍ଷ ଧରି ଏକ ଜରାଜୀର୍ଣ୍ଣ ରୋଷେଇଶାଳ ଗୃହରେ ତିନିଠାକୁର ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କ ପୂଜାର୍ଚ୍ଚନା କରାଯାଉଛି । ଖେମୁଣ୍ଡି ରାଜା ପୁରୁଷୋତ୍ତମ ଅନଂଗଭୀମ ଦେବଙ୍କ ଦ୍ୱାରା ସ୍ଥାପିତ ତିନି ବିଗ୍ରହ ସେହି ସମୟରୁ ଏକ ସଂକୀର୍ଣ୍ଣ ରୋଷେଇଶାଳ ମଧ୍ୟର ଏକପାର୍ଶ୍ୱରେ ରଖାଯାଇ ପୂଜିତ ହେଉଛନ୍ତି । ପରବର୍ତ୍ତୀ ଅବସ୍ଥାରେ ଖେମୁଣ୍ଡି ରାଜ୍ୟ ବିଭାଜନ ହୋଇ ବଡଖେମୁଣ୍ଡି ଓ ସାନଖେମୁଣ୍ଡି ବିଭକ୍ତ ହେଲା । ଏକଦା ପ୍ରତାପଗିରି ସାନଖେମୁଣ୍ଡିର ଅଭେଦ୍ୟ ଦୁର୍ଗଭାବେ ବ୍ରିଟିଶ ସୈନ୍ୟଙ୍କୁ ମଧ୍ୟ ଭୟଭୀତ କରାଇ ରଖିଥିଲା । ତେବେ ଏହି ମାଟିଦୁର୍ଗକୁ ଘନ ଘନ ତୋପମାଡ କରି ବ୍ରିଟିଶମାନେ ଧ୍ୱଂସ କରିବା ପରେ ସାନଖେମୁଣ୍ଡିର ରାଜଧାନୀ ପୋଡାମାରୀକୁ ସ୍ଥାନାନ୍ତର କରାଯାଇଥିଲା । ରାଜା ଚନ୍ଦ୍ରମଣି ଦେବଙ୍କ ସମୟରେ ୧୮୦୧ ମସିହାରେ ରାଜଧାନୀ ସ୍ଥାନାନ୍ତର ଯୋଗୁଁ ପ୍ରତାପଗିରିରେ ଜଗନ୍ନାଥ ମନ୍ଦିର ନିର୍ମାଣ କରାଯିବାରେ ଅସୁବିଧା ହେଲା ଓ ସେହି ସମୟରୁ ପ୍ରତି ରଥଯାତ୍ରାରେ ରୋଷେଇଶାଳରୁ ହିଁ ଗୁଣ୍ଡିଚା ଘରଯାଏ, ତିନୋଟି ରଥରେ ବସାଇ ନିଆଯାଏ । ଏବେ କେବଳ ଗୋଟିଏ ରଥରେ ତିନିଠାକୁରଙ୍କୁ ରଥାରୂଢ଼ କରି ରଥଯାତ୍ରା ପାଳନ କରାଯାଉଅଛି । ଏଠାକାର ଜଗନ୍ନାଥଙ୍କ ନାମରେ ୬୦୦ଏକରରୁ ଉର୍ଦ୍ଧ୍ୱ ଚାଷଜମି ରହିଥିଲେ ମଧ୍ୟ ସେ'ସବୁ ଜବରଦଖଲରେ ରହିଥିବା ଯୋଗୁଁ ଠାକୁରଙ୍କର ପୂଜାରେ ଅନେକ ଅସୁବିଧା ହେଉଛି। ଅଞ୍ଚଳର ଲୋକେ ଭକ୍ତମାନଙ୍କଠାରୁ କିଛି କିଛି ଅର୍ଥ ସଂଗ୍ରହ କରି ଠାକୁରମାନଙ୍କ ପାଇଁ ଏକ ଜଗନ୍ନାଥ ମନ୍ଦିର ନିର୍ମାଣର ପ୍ରଚେଷ୍ଟାରେ ଅଛନ୍ତି । ବର୍ତ୍ତମାନ ଏହି ମନ୍ଦିର ଅର୍ଦ୍ଧନିର୍ମିତ ଅବସ୍ଥାରେ ପଡିରହିଛି ଓ ସମ୍ପୂର୍ଣ୍ଣ କରିବା ପାଇଁ ଆହୁରି ପଚାଶରୁ ଷାଠିଏ ଲକ୍ଷ ଟଙ୍କାର ଆବଶ୍ୟକତା ରହିଛି ଓ ଅର୍ଥାଭାବରୁ ଏହି ମନ୍ଦିର ନିର୍ମାଣ ଅଟକି ରହିଯାଇଛି । ଏହି ଅଞ୍ଚଳର ବିଧାୟକ, ସାଂସଦ ବା ସରକାରୀ ପାଣ୍ଠିରୁ କିଛି ଯୋଗାଯାଇ ପାରିଲେ ଏତେ ସୁନ୍ଦର ଐତିହ୍ୟ ସମ୍ପୂର୍ଣ୍ଣ କୀର୍ତ୍ତିରାଜିର ସୁରକ୍ଷା ହୋଇପାରିବ ବୋଲି ଆଶା କରାଯାଏ । ଓଡ଼ିଶାର ପ୍ରତାପଗିରି ଜଗନ୍ନାଥ ସଂସ୍କୃତି ଓ ଐତହ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ବହନକରେ । ସଂସ୍କୃତି ପ୍ରେମୀଙ୍କ ମଧ୍ୟରେ ଗଭୀର ରେଖାପାତ କରିବା ସହ ରୋଷେଇଶାଳରେ ଖେମୁଣ୍ଡି ଜାତିର ସ୍ୱର୍ଣ୍ଣାଭ ଐତିହ୍ୟ ଓ ସଂସ୍କୃତିକୁ ଉଜ୍ଜୀବିତ କରି ଆବହମାନ କାଳରୁ ରହିଥିବା ତିନିଠାକୁରଙ୍କୁ ଏଭଳି ଅବସ୍ଥାରୁ କେବେ ମୁକୁଳା ଯାଇ ପାରିବ, ତାହା ଏବେ ବି ଏକ ପ୍ରଶ୍ନ ହୋଇରହିଛି । ଭାରତ ଏକ ଶାନ୍ତିମୈତ୍ରୀ, ଧର୍ମଧାରଣାର ଦେଶ । ଏଠାରେ ଯଦି ଠାକୁରମାନଙ୍କର ଭୂ-ସମ୍ପତ୍ତିକୁ ଜଗନ୍ନାଥ ଧର୍ମରେ ଦୀକ୍ଷିତ ଭକ୍ତ ଅବା ଶିକ୍ଷିତ ବ୍ୟକ୍ତିମାନଙ୍କ ଦ୍ୱାରା ଲୁଣ୍ଠିତ ହେବ ଓ ଠାକୁରମାନେ ଭଗ୍ନ ମନ୍ଦିରର ଅଳନ୍ଧୁ ଲଗା କୋଣରେ ପଡିରହି ନଷ୍ଟ ହେବାକୁ ଲାଗିବେ, ତା'ହେଲେ ଏ'ଜାତି, ଏ'ସମାଜ, ଏ'ଧର୍ମ ଓ ଏହି ଜନତା ଜନାର୍ଦ୍ଦନଙ୍କର ମଙ୍ଗଳ ହେବତ ? ଆଠଗଡର ରାଜାଙ୍କୁ ପୁରୀ ରାଜା ଶରଣ ପଂଜର ଉପାଧିରେ ଭୂଷିତ କରିଛନ୍ତି । ସେଥିପାଇଁ ମାଇଦା ମନ୍ଦିର ପ୍ରସିଦ୍ଧ । ବର୍ଣ୍ଣିତ ଯେ, ଆଠଗଡର ରାଜା ରଘୁନାଥ ହରିଚନ୍ଦନ ୧୭୨୮ରେ ଜଗନ୍ନାଥ ମନ୍ଦିର ନିର୍ମାଣ କରି ଶ୍ରୀଜୀଉମାନଙ୍କର ପୂଜାଅର୍ଚ୍ଚନା କରାଯାଉଥିବା ଇତିହାସବିତମାନେ କୁହନ୍ତି । ଖଲ୍ଲିକୋଟ ରାଜାଙ୍କ ନଅର ସମ୍ମୁଖ ଭାଗରେ ଏକ ଜଗନ୍ନାଥ ମନ୍ଦିର ଅନ୍ୟ ଗଡଜାତ ଅଞ୍ଚଳ ଭଳି ରହିଛି । ଏଠା ମନ୍ଦିର ପୁରୀଶୈଳୀରେ ନିର୍ମିତ ଓ ତିନିମୂର୍ତ୍ତିଙ୍କର ପୂଜାଉପାସନା ପୁରୀଶ୍ରୀକ୍ଷେତ୍ର ଧାମର ସମାନ ଢାଞ୍ଚାରେ ପରିଚାଳିତ । ଖଲ୍ଲିକୋଟର ଏହି ଦେବାୟତନରେ ପ୍ରବେଶ କଲେ

ଯେମିତି ମନେହେବ ଏକକ୍ଷୁଦ୍ର ପୁରୀରେ ପହଁଚି ପୁରୁଷୋତ୍ତମ କ୍ଷେତ୍ରର ଦର୍ଶନରେ ଅଛନ୍ତି । କଥିତ ଯେ ଖଲ୍ଲିକୋଟ ରାଜା ଜଗନ୍ନାଥ ମର୍ଦ୍ଦରାଜ ମୂର୍ତ୍ତିସ୍ଥାପନ କରିଥିଲେ । ଗଞ୍ଜାମ ସହର ଅତୀତର ସମୃଦ୍ଧ ସହର । ଏଠାରେ ଜିଲ୍ଲା ସଦର ମହକୁମା କାର୍ଯ୍ୟାଳୟ ଫରାସୀ, ଡଚ୍ ଓ ଇଂରେଜମାନଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇ ସମଗ୍ର ଗଞ୍ଜାମ ଜିଲ୍ଲାକୁ ଶାସନ କରାଯାଉଥିଲା । ବ୍ରହ୍ମପୁରର ବିକାଶ ହେବାପୂର୍ବରୁ ଗଞ୍ଜାମ ହିଁ ଥିଲା ଜିଲ୍ଲାର ପ୍ରଧାନ ସହର । ଗଞ୍ଜାମ ଭଳି ଅନ୍ୟଏକ ସହର ଥିଲା ମନ୍ତ୍ରିଡି । ଅନୁରୂପ ବିଘଟନ ଯୋଗୁଁ ବର୍ତ୍ତମାନର ଇଚ୍ଛାପୁର (ଆନ୍ଧ୍ର) ସହର ଗଢି ଉଠିଥିଲା । ବର୍ତ୍ତମାନ ଗଞ୍ଜାମ ସହରରେ ତିନିରୁ ଚାରୋଟି ଜଗନ୍ନାଥ ମନ୍ଦିର ରହିଛି । ଜନସାଧାରଣଙ୍କ ସହଯୋଗରେ ପ୍ରତି ମନ୍ଦିର ପରିସରରେ ରଥଯାତ୍ରା ଅନୁଷ୍ଠିତ ହେଉଛି । ଧରାକୋଟ, ସେରଗଡ, ଆଠଗଡ, ଆସିକା (ଚିନି କାରଖାନା ପାଖ) ଜଗନ୍ନାଥ ମନ୍ଦିରଗୁଡିକ କଳାଭାସ୍କର୍ଯ୍ୟପୂର୍ଣ୍ଣ ଓ ଏଠାକାର ରଥଯାତ୍ରା ମଧ୍ୟ ଦର୍ଶକମାନଙ୍କୁ ବିମୋହିତ କରିଦେଇଥାଏ ।

ଅବସରପ୍ରାପ୍ତ ଅଧ୍ୟକ୍ଷ
ସଂସ୍କୃତି ସଦନ, କଚେରୀଘର,
ବୟାଳୀ(ମନ୍ତ୍ରିଡି), ଗଞ୍ଜାମ-୭୬୧୦୦୮

# ବିଚିତ୍ର ଦେବତା

**କାଞ୍ଚନ ମିଶ୍ର**



ସର୍ବମୟ କର୍ତ୍ତା ବିଚିତ୍ର ଦେବତା
ତୁମେ ପ୍ରଭୁ ଜଗନ୍ନାଥ
ମହୋଦଧି ତଟେ ତୁମ ପ୍ରିୟସ୍ଥଳୀ
ଶ୍ରେଷ୍ଠଧାମ ବିବେଚିତ ।

ଅତୀତରେ ପ୍ରଭୁ ବିଶ୍ୱକର୍ମା ରୂପେ
ହୋଇକରି ଅବତୀର୍ଣ୍ଣ
ନିଜର ସ୍ୱରୂପ ଗଢି ତୋଳିଥିଲ
ସ୍ୱୟଂ ପ୍ରଭୁ ଭଗବାନ ॥

ଦାରୁ ବ୍ରହ୍ମରୂପୀ ଶ୍ରୀପୁରୁଷୋତ୍ତମ
ନୀଳାଚଳେ ନୀଳଗିରି
ନିତ୍ୟଲୀଳା ଲାଗେ ଶ୍ରୀକ୍ଷେତ୍ର ଯାହାର
ପ୍ରିୟ ତୁମ କ୍ଷେତ୍ର ପୁରୀ ॥

ବାରମାସେ ତେର ଯାନିଯାତ୍ରା ବେଶ
ସାଜସଜ୍ଜା ରମଣୀୟ
ଆନନ୍ଦ ବଜାର ସୁସ୍ୱାଦୁ ବ୍ୟଞ୍ଜନ
ନାହିଁ ତା'ର ତୁଳନୀୟ ॥

ବୈଦିକ ଯୁଗରୁ ଶ୍ରୀକ୍ଷେତ୍ର ଧାମକୁ
ଦେଖିବାକୁ ରଥଯାତ
ଦେଶ ବିଦେଶରୁ ଶ୍ରଦ୍ଧାଳୁ ଭକତ
ଆସୁଛନ୍ତି ଅବିରତ ॥

ଓଡ଼ିଆ ଘରର ବିଭା, ବ୍ରତ, ଜନ୍ମ
ସବୁ କାମେ ତୁମ ନାମ
ସ୍ମରଣ କରିଲେ ଶୁଭ ଦିବସରେ
ପୂର୍ଣ୍ଣ ହୁଏ ସବୁକାମ ॥

ମାନବ ସେବାର ସମସ୍ତ ଲକ୍ଷଣ
ତୁମଠାରେ ବିଦ୍ୟମାନ
ନୀଳାଚଳ ଧାମେ ତୁମେ ମହାପ୍ରଭୁ
ସର୍ବଶ୍ରେଷ୍ଠ ଆକର୍ଷଣ ॥

ତୁମ ପାଇଁ ଆଜି ଓଡ଼ିଶା ବିଖ୍ୟାତ
ସର୍ବଜନ ଏକମତ
ସମଗ୍ର ବିଶ୍ୱର ସର୍ବମୟ କର୍ତ୍ତା
ଭାବେ ପ୍ରଭୁ ସର୍ବାଦୃତ ।

୧୦୧୧, ଜୟଦୁର୍ଗା ନଗର,
ବମିଖାଲ, ଭୁବନେଶ୍ୱର



# ଗୁଣ୍ଡିଚା ଯାତ୍ରା

ହରିଶ୍ଚନ୍ଦ୍ର ବେହେରା

ନୀଳାଚଳ କ୍ଷେତ୍ର ନାମଟି ନୀଳଗିରି ବା ନୀଳ ପର୍ବତ ନାମରୁ ଆସିଛି । କ୍ଷେତ୍ରର ମଧ୍ୟସ୍ଥଳରେ ବିଦ୍ୟମାନ ଶ୍ରୀମନ୍ଦିର । ଶ୍ରୀମନ୍ଦିର ରତ୍ନସିଂହାସନ ଉପରେ ବିରାଜମାନ କରନ୍ତି ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା, ସୁଦର୍ଶନ ଓ ଅନ୍ୟାନ୍ୟ ଦେବାଦେବୀମାନେ । ଜଗନ୍ନାଥ ସଂସ୍କୃତି ପୃଥିବୀର ଏକ ପ୍ରାଚୀନତମ ସଂସ୍କୃତି । ଚାରି ଧାମ ଉତ୍ତରରେ ବଦ୍ରିନାଥ ଧାମ, ଦକ୍ଷିଣରେ ରାମେଶ୍ୱରମ୍, ପଶ୍ଚିମରେ ଦ୍ୱାରିକାନାଥ ଧାମ ଓ ପୂର୍ବରେ ଜଗନ୍ନାଥ ଧାମ । ତନ୍ମଧ୍ୟରୁ ଜଗନ୍ନାଥ ଧାମ ଶ୍ରେଷ୍ଠ ଅଟନ୍ତି । ଶ୍ରୀଜଗନ୍ନାଥ ଯଦିଓ ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ତଥାପି ରଥଯାତ୍ରା ସମୟରେ ତଥା ଅନ୍ୟାନ୍ୟ ସମୟରେ ପୃଥିବୀର ବିଭିନ୍ନ କୋଣ ଅନୁକୋଣରୁ ବିଭିନ୍ନ ଧର୍ମାବଲମ୍ବୀମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସିଥାନ୍ତି । ଶ୍ରୀଜଗନ୍ନାଥ ସମନ୍ୱୟର ଦେବତା । ତାଙ୍କଠାରେ କୌଣସି ଧର୍ମ ବା ଜାତିର ବିଚାର ନଥାଏ । ଶୈବ, ଶାକ୍ତ, ଗାଣପତ୍ୟ, ସୌର, ବୈଷ୍ଣବ, ଜୈନ, ବୁଦ୍ଧ, ନାନକ, ଆର୍ଯ୍ୟ, ଅନାର୍ଯ୍ୟ ସମସ୍ତଙ୍କର ସେ ଦେବତା ଅଟନ୍ତି । ବହୁ ମତବାଦୀ ଧର୍ମାବଲମ୍ବୀମାନେ ଏହି କ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥଙ୍କର ମହିମା ଓ ପ୍ରଶସ୍ତି ଗାନ କରିଛନ୍ତି । ପରିଶେଷରେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଜଗନ୍ନାଥ ଧର୍ମରେ ଦୀକ୍ଷିତ ହୋଇଛନ୍ତି ।



ଯେଉଁଠାରେ ମନୁଷ୍ୟମାନଙ୍କର ସମସ୍ତ ପାପ କ୍ଷୟ ହୁଏ, ତାକୁ ହିଁ କ୍ଷେତ୍ର କୁହାଯାଏ । ସ୍ୱୟଂ ଜଗନ୍ନାଥ ଯେଉଁଠି ସର୍ବଦା ବିରାଜମାନ ହୁଅନ୍ତି, ତାହା ହିଁ ଶ୍ରୀକ୍ଷେତ୍ର ତଥା ପୁରୁଷୋତ୍ତମ ଅଟନ୍ତି ।

ଏଠାରେ କ୍ଷେତ୍ର ଓ କ୍ଷେତ୍ରାଧିପତି ଉଭୟେ ରାଜା ଅର୍ଥାତ୍ ଶ୍ରେଷ୍ଠ ଅଟନ୍ତି । ଭାରତ କିମ୍ବା ପୃଥିବୀର କୌଣସିଠାରେ କ୍ଷେତ୍ର ଓ କ୍ଷେତ୍ରାଧିପତି ଶ୍ରେଷ୍ଠତ୍ୱ ପ୍ରତିପାଦନ କରୁଥିବାର ଦେଖାଯାଏ ନାହିଁ ।

ଏହି କ୍ଷେତ୍ରର ଲମ୍ବ ଦଶ ଯୋଜନ ତଥା ପ୍ରସ୍ଥ ପାଞ୍ଚ ଯୋଜନ ଅଟେ । ଏହି କ୍ଷେତ୍ର ନାନା ଆଶ୍ଚର୍ଯ୍ୟ ଘଟଣାବଳୀରେ ପରିପୂର୍ଣ୍ଣ ଏବଂ ଏହି କ୍ଷେତ୍ର ସମଗ୍ର କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇଥିବାରୁ ଅତ୍ୟନ୍ତ ଦୁର୍ଲ୍ଲଭ ଅଟନ୍ତି ।

ଏହି କ୍ଷେତ୍ରର ଆକୃତି ଶଙ୍ଖାକୃତି ହୋଇଥିବାରୁ ଏହାକୁ ସ୍କନ୍ଦପୁରାଣ ଅନ୍ତର୍ଗତ ଉତ୍କଳଖଣ୍ଡରେ ଶଙ୍ଖକ୍ଷେତ୍ର ବୋଲି ବର୍ଣ୍ଣନା କରାଯାଇଛି । ଏହି କ୍ଷେତ୍ରର ମହିମାକୁ ବିଭିନ୍ନ ପୁରାଣ ଉପନିଷଦ୍ କାବ୍ୟମାନଙ୍କରେ ସବିଶେଷ ଭାବରେ ବର୍ଣ୍ଣନା କରାଯାଇଛି ।





ଏହି କ୍ଷେତ୍ର ଯେତିକି ରହସ୍ୟମୟ, ଏହାର କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥ ମହାପ୍ରଭୁ ତତୋଧିକ ରହସ୍ୟମୟ ଅଟନ୍ତି । ସେଥିପାଇଁ କୁହାଯାଇଛି–

ରହସ୍ୟ ପୁରୁଷୋତ୍ତମସ୍ୟ ଦେବାଃ ନଜାନନ୍ତି କୁତଃ ମନୁଷ୍ୟ, ଅର୍ଥାତ୍ ପୁରୁଷୋତ୍ତମ କ୍ଷେତ୍ରର ରହସ୍ୟ ଦେବତାମାନଙ୍କୁ ଅଗୋଚର ଥିବାବେଳେ ଛାର ମନୁଷ୍ୟ ତାହାର ଭେଦ କ'ଣ ପାଇବ ।

ଲକ୍ଷେ ଶାଳଗ୍ରାମ ଉପରେ ନିର୍ମିତ ରତ୍ନବେଦୀ ବା ରତ୍ନ ସିଂହାସନ ଉପରେ ବସିଛନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ସୁଦର୍ଶନ ।

ପ୍ରତିବର୍ଷ ଆଷାଢ ଶୁକ୍ଳ ଦ୍ୱିତୀୟା ଦିନ ରଥଯାତ୍ରା ଆରମ୍ଭ ହୁଏ । ନବଦିନ ପାଇଁ ଶ୍ରୀଜଗନ୍ନାଥ ଭାଇ ଭଉଣୀ ସହିତ ନିଜ ନିଜ ରଥାରୋହଣ କରି ମାଉସୀ ମା' ମନ୍ଦିର ଅର୍ଥାତ୍ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରନ୍ତି । ସମସ୍ତଙ୍କ ପାଇଁ ମଙ୍ଗଳ ଉଦ୍‌ଘୋଷଣ କରୁଥିବାରୁ ଏହାକୁ ଘୋଷଯାତ୍ରା ମଧ କୁହାଯାଏ । ମଙ୍ଗଳାରୋପଣ ସମୟରେ ବିଦ୍ୟାପତି ବଂଶଜ କୌଣ୍ଡିନ୍ୟ ଗୋତ୍ରାଧିପତି ପତିମହାପାତ୍ରେ ସଂକଳ୍ପ ପାଠ କରନ୍ତି ।

ଆଷାଢ ଶୁକ୍ଳ ଦ୍ୱିତୀୟା ପୂର୍ବଦିନ ଅର୍ଥାତ୍ ପ୍ରତିପଦା ତିଥିରେ ସ୍ୱୟଂ ପ୍ରଭୁ ଜଗନ୍ନାଥ ପ୍ରାତ୍ୟକୃତ୍ୟ ସମାପନ କରି ମହାସ୍ନାନ କରନ୍ତି । ସେହି ଦିନ ନବଯୌବନ ବେଶ ଧାରଣ କରନ୍ତି । ଏହାପରେ ସେ ବିଧିବିଧାନର ସହ ପାରମ୍ପରିକ ରୀତିରେ ନିତ୍ୟ ଉପଚାର ପୂଜା ଗ୍ରହଣ କରନ୍ତି । ପୂର୍ବରୁ ପ୍ରସ୍ତୁତ କରାଯାଇଥିବା ରଥ ତ୍ରୟକୁ ସେଦିନ ଶ୍ରୀମନ୍ଦିର ସଂହଦ୍ୱାର ସମ୍ମୁଖରେ ସ୍ଥାପନ କରାଯାଏ ଏବଂ ବିଧିବିଧାନ ସହ ରଥ ପ୍ରତିଷ୍ଠା କରାଯାଏ । ଏହା ପରଦିନ ଅର୍ଥାତ୍ ଦ୍ୱିତୀୟା ତିଥିରେ ବ୍ରାହ୍ମ ମୁହୂର୍ତ୍ତରେ ବିଶ୍ୱାବସୁ ଓ ବିଦ୍ୟାପତି ବଂଶଜ ସେବକମାନେ ପ୍ରଭୁଙ୍କ ନିଦ୍ରା ଭଙ୍ଗ କରନ୍ତି । ମହାପ୍ରଭୁ ପ୍ରାତଃକୃତ୍ୟ ସମାପନ କରି ବିଧି ବିଧାନର ସହ ସମସ୍ତ ଉପଚାରର ପୂଜା ଗ୍ରହଣ କରନ୍ତି । ଏହି ସମୟରେ ମଙ୍ଗଳାରୋପଣ ଏବଂ ବନ୍ଦାପନା ସମସ୍ତ କର୍ମ ଖୁବ୍‌ଶୀଘ୍ର ସମାପ୍ତ ହେବାପରେ ଗଜପତି ମହାରାଜା ଠାକୁରମାନଙ୍କୁ ପୁଷ୍ପାଞ୍ଜଳି ପ୍ରଦାନ କରି ପ୍ରଭୁଙ୍କୁ ଘୋଷଯାତ୍ରାକୁ ବିଜେ କରିବା ଲାଗି ନିବେଦନ କରନ୍ତି ।

ମୃଦଙ୍ଗ, କଂସାଳ, ଶଙ୍ଖ, ଘଣ୍ଟା, ଭେରୀ, ତୂରୀ ଆଦି ନାନାଦି ବାଦ୍ୟ ବାଦନରେ ଶ୍ରୀକ୍ଷେତ୍ର ଆନନ୍ଦ ମୁଖରିତ ହୋଇଉଠେ । ଛତ୍ର, ଚାମର ଆଲଟ, ତରାସ ଆଦି ଆନ୍ଦୋଳିତ କରିବା ପାଇଁ ନିଯୁକ୍ତ ହୋଇଥିବା ସେବକମାନେ ସେବା କରୁଥାନ୍ତି । ବିପ୍ରମାନଙ୍କର ବେଦପାଠ ଏବଂ ଭକ୍ତମାନଙ୍କର ହରିବୋଲ ଧ୍ୱନି ମଧ୍ୟରେ ପ୍ରଭୁଙ୍କର ପହଣ୍ଡିବିଜେ ଆରମ୍ଭ ହୋଇଥାଏ । ପହଣ୍ଡିରେ ଶ୍ରୀସୁଦର୍ଶନ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥ କ୍ରମାନ୍ୱୟରେ ପହଣ୍ଡି ଯାତ୍ରା ଆରମ୍ଭ କରନ୍ତି । ଠାକୁରମାନେ ରଥ ପରିକ୍ରମା କରି ରଥ ଉପରେ ବିଜେ କରନ୍ତି । ଠାକୁରମାନେ ଶ୍ରୀମନ୍ଦିର ଉତ୍ତର ଦ୍ୱାର ସପ୍ତ ପାହାଚ ଅତିକ୍ରମ କରି ଲକ୍ଷ୍ମୀମନ୍ଦିର ସମ୍ମୁଖରେ ଥିବା ପ୍ରଶସ୍ତ ପ୍ରାଙ୍ଗଣକୁ ଆସନ୍ତି । ଏହାପରେ ପୂର୍ବମୁଖା ହୋଇ ଆନନ୍ଦ ବଜାରକୁ ଆସି ପୁଣି ଦକ୍ଷିଣ ମୁଖା ହୋଇ ବାଇଶି ପାହାଚ ଉପରକୁ ଆସନ୍ତି । ଏହାପରେ ପୂର୍ବମୁଖା ହୋଇ ବାଇଶି ପାହାଚ ଅତିକ୍ରମ କରି ବଡଦାଣ୍ଡକୁ ଆସନ୍ତି ।

ପାହୁଣ୍ଡ ବା ପହୁଣ୍ଡ ଆଦି ଶବ୍ଦରୁ ପହଣ୍ଡି ଶବ୍ଦର ଉତ୍ପତ୍ତି । ପହଣ୍ଡି ହେବା ଅର୍ଥାତ୍ ଧୀରେ ଧୀରେ ଅଗ୍ରସର ହେବା । ସୁଦର୍ଶନ ଓ ସୁଭଦ୍ରାଙ୍କୁ ଦଇତାମାନେ ସମ୍ମିଳିତ ଭାବରେ ଉତ୍ତୋଳନ କରି ଆଣୁଥିବା ବେଳେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପହଣ୍ଡେଇ ଆଣନ୍ତି, ଅର୍ଥାତ୍ ପାହୁଣ୍ଡ ପାହୁଣ୍ଡ ହୋଇ ଆଗକୁ ଆଗକୁ ଆସନ୍ତି, ପୁଣି ଟିକିଏ ଥକ୍କା ମାରି ଆଗକୁ ପାହୁଣ୍ଡ ପକାନ୍ତି । ଏହା ପ୍ରଭୁଙ୍କର ଲୀଳା ।

କିଏ କୁହେ ମହାପ୍ରଭୁଙ୍କର ପାଦ ନାହିଁ ବୋଲି, କିଏ କୁହେ ହାତ ନାହିଁ, କିଏ କୁହେଁ କାନ ନାହିଁ । ପ୍ରଭୁଙ୍କର ସବୁ କିଛି ଅଛି ପୁଣି ସବୁ କିଛି ନାହିଁ । ପ୍ରଭୁଙ୍କର କଳେବର ତ ଦାରୁରେ ନିର୍ମିତ ଓ ସେଥିରେ ପୁଣି ବ୍ରହ୍ମ ଯୁକ୍ତ ହୋଇଛନ୍ତି । ସେଥିପାଇଁ ତ ସିଏ ଦାରୁବ୍ରହ୍ମ ଭାବରେ ଜଗତ ବିଖ୍ୟାତ । ଦାରୁ ସ୍ଥୂଳରୂପୀ ହେଲେ ବ୍ରହ୍ମ ସୂକ୍ଷ୍ମରୂପୀ ଅଟନ୍ତି । ଏହାହିଁ ଦାରୁବ୍ରହ୍ମଙ୍କର ରହସ୍ୟ ।

ତାଙ୍କର ପାଦ ନାହିଁ କିନ୍ତୁ ସେ ଚାଲୁଛନ୍ତି, ତାଙ୍କର ହାତ ନାହିଁ କିନ୍ତୁ ସେ ନାନାବିଧ କର୍ମମାନ କରୁଛନ୍ତି, ତାଙ୍କର ମୁଖ ନାହିଁ କିନ୍ତୁ ସବୁ ରସାସ୍ୱାଦନ କରୁଛନ୍ତି, ତାଙ୍କର କାନ ନାହିଁ କିନ୍ତୁ ସେ ସବୁ ଶୁଣିପାରୁଛନ୍ତି, ତାଙ୍କର ଆଖିନାହିଁ କିନ୍ତୁ ସେସବୁ ଦେଖୁଛନ୍ତି, ତାଙ୍କର ଦେହ ନାହିଁ କିନ୍ତୁ ସବୁ ସ୍ପର୍ଶକୁ ଅନୁଭବ କରିପାରୁଛନ୍ତି । ଏହା ହିଁ ହେଉଛି ବ୍ରହ୍ମ ଚେତନାର ଉତ୍ସ । ବ୍ରହ୍ମ ସର୍ବତ୍ର ବିଦ୍ୟମାନ କିନ୍ତୁ ତାଙ୍କୁ ସର୍ବତ୍ର ଦେଖି ହୁଏନାହିଁ, ସ୍ପର୍ଶ କରିହୁଏ ନାହିଁ ମାତ୍ର ଜ୍ଞାନ ଚକ୍ଷୁରେ ଜ୍ଞାନୀମାନେ, ଋଷିମାନେ ଜାଣିପାରନ୍ତି, ଦେଖିପାରନ୍ତି ।

ବଡ ଠାକୁର ତାଳଧ୍ୱଜ ରଥରେ ବିଜେ କରନ୍ତି । ତାଙ୍କର ଆୟୁଧ ହଳ ଓ ମୂଷଳ ଅଟେ । ଏହି ରଥର ଚକ ସଂଖ୍ୟା ୧୪ ଓ ଏହାର ଉଚ୍ଚତା ୩୨ହାତ ୧୦ ଆଙ୍ଗୁଳ । ଏହା ୭୬୩ଟି କାଠ ଦ୍ୱାରା ନିର୍ମିତ ହୋଇଥାଏ । ରଥର ଆବରଣ ରକ୍ତ ନୀଳ । ଏହି ରଥର ରକ୍ଷକ ହେଲେ ବାସୁଦେବ ।





ଏହାର ଭଦ୍ରପୀଠ ହେଲା– ଅଷ୍ଟଦଳ ପଦ୍ମ । ଅନନ୍ତ ନାଗ ହେଲେ ରଥମୂର୍ଦ୍ଧନି ଦେବତା । ରଥର ସାରଥୀଙ୍କ ନାମ ହେଲା ମାତଳୀ । ଏହାର ଦ୍ୱାରପାଳ ହେଲେ ନନ୍ଦ ଓ ସୁନନ୍ଦ । ରଥ ରକ୍ଷକ ଭାସ୍କର । ରଥର ଚାରି ଅଶ୍ୱମାନେ ହେଲେ ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ । ରଥରଜ୍ଜୁ ହେଉଛନ୍ତି ବାସୁକୀ । ରଥର ପାଶ୍ୱଦେବତାଗଣ ହେଲେ– ପ୍ରାଣମ୍ଭାରୀ, ଗଦାନ୍ତକାରୀ, ହରିହର, ତ୍ର୍ୟେମ୍ବକ, ବାସୁଦେବ, ନାଟ୍ୟାମ୍ବର, ଅଘୋର ଓ ତ୍ରିପୁରାରି ଶିବ । ଏହାର ଚର ଦେବତା ଦ୍ୱୟ ହେଲେ ବ୍ରହ୍ମା ଓ ଶିବ । ରଥ ମୃଦ୍ଧି ହେଲେ– କେତୁଭଦ୍ରା । ଏଥିରେ ରଥ ଭୈରବ ହେଲେ କ୍ଷେତ୍ରପାଳ ଓ ରଥ ଗନ୍ଧର୍ବ ହେଲେ ହୁ ହୁ । ରଥ ଚାରଣ କରନ୍ତି ମହାସିଦ୍ଧ, ଉଲେମୀ ଓ ଗର୍ଭାଧିଶ୍ୱରୀ । ରଥର ଋଷିପଟାରେ ବିରାଜମାନ କରିଥାନ୍ତି ଅଙ୍ଗିରା, ପୌଲସ୍ତ୍ୟ, ପୁଲ୍ଲହ, ଅଗସ୍ତି, କୃଷ୍ଣ, ମୁଦ୍ଗଲ, ଆତ୍ରେୟ ଓ କାଶ୍ୟପ । ରଥ କୁମ୍ଭର ନାମ ହେଲା ଭୁବନ, ବିମ୍ବ, ପୃଥିବୀ, ଚକ୍ରାୟୁଧ ଓ ହୁଁ ବୀଜ । ରଥ ନେତର ନାମ ହେଲା ଉନ୍ନନି । ଏହାର ଶକ୍ତିମାନେ ହେଲେ ତୁଙ୍ଗା, ତୁଙ୍ଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ, ନନ୍ଦା ଓ ସୁନନ୍ଦା ।

ଦେବୀ ସୁଭଦ୍ରା ଏବଂ ସୁଦର୍ଶନ ଦ୍ୱିତୀୟ ରଥ ଦର୍ପଦଳନ ବା ଦେବୀଦଳନ ରଥରେ ବିଜେ କରନ୍ତି । ଏହି ରଥ ଦେବତାମାନଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲା । ପହଣ୍ଡି ସମୟରେ ସୁଦର୍ଶନ ସର୍ବପ୍ରଥମେ ଏହି ରଥରେ ବିଜେ ହୁଅନ୍ତି । ଦେବୀ ସୁଭଦ୍ରାଙ୍କର ଆୟୁଧ ପଦ୍ମକହ୍ଲାର ଅଟେ । ରଥର ଉଚ୍ଚତା ହେଲା ଏକତିରିଶ ହାତ । ଏହା ୫୯୩ଖଣ୍ଡ କାଠରେ ନିର୍ମିତ ହୋଇଥାଏ । ରଥରେ ବାରଟି ଚକ, ବର୍ଷର ବାରମାସର ପ୍ରତୀକ ଏବଂ ଆବରଣ ହେଲା କୃଷ୍ଣ ଲୋହିତ । ରଥର ରକ୍ଷକ ହେଲେ ଜୟଦୁର୍ଗା । ରଥର ସାରଥୀଙ୍କ ନାମ ହେଲା ଅର୍ଜୁନ । ଏହାର ଦ୍ୱାର ପାଳିକା ହେଲେ ଦ୍ୱାଦଶା ବରଣ ଭୁବନେଶ୍ୱରୀ, ଚକ୍ର, ଗଙ୍ଗା ଓ ଯମୁନା । ଦର୍ପଦଳନର ଚାରୋଟି ଅଶ୍ୱ ହେଲେ ରୋଚିକା, ମୋଚିକା, ଜିତା ଓ ଅପରାଜିତା । ରଥ ରଜ୍ଜୁ ହେଲେ ସ୍ୱର୍ଣ୍ଣଚୂଡ ନାମକ ନାଗ । ଉଗ୍ରଚଣ୍ଡୀ ଏହି ରଥକୁ ରକ୍ଷା କରନ୍ତି । ରଥରପାର୍ଶ୍ୱ ଦେବୀଗଣ ହେଲେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡୀକା, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟଦୁର୍ଗା ଓ କାଳୀ । ରଥ ଶିରର ଦେବତା ହେଲେ ଭକ୍ତିର୍ସମେଧ । ରଥ ଧ୍ୱଜାରେ ତ୍ରିପୁରା ସୁନ୍ଦରୀ ବିରାଜମାନ । ଏହି ରଥରେ ଚାମର ସେବା କରନ୍ତି ସୁମେଧା ଦେବୀ । ରଥର ଦେବୀ ହେଲେ ଶ୍ରୀଭୂ । ଦର୍ପଦଳନ ରଥର ମୁଖ ହେଲା ବ୍ରହ୍ମକର୍ତ୍ତା । ଏହି ରଥର ଗନ୍ଧର୍ବଙ୍କ ନାମ ହେଲା ହା ହା ଓ ଯକ୍ଷଙ୍କ ନାମ ହେଲା ଙ୍କିଜଳିକା । ରଥ ଚାରଣଙ୍କ ନାମ ହେଉଛି ମହାକର । ଋଷି ପଟାରେ ବିରାଜମାନ କରୁଥିବା ଛଅଜଣ ଋଷି ହେଲେ ଭୃଗୁ, ସୁପ୍ରଭ, ବଜ୍ର, ଶୃଙ୍ଗୀ, ଧ୍ରୁବ ଓ ଭଲ୍ଲୁକ । ରଥ କୁମ୍ଭର ନାମ ହେଲା ଅମୃତା, ଜୀବା, କାୟ, ହ୍ରିଂବୀଜ । ରଥ ନେତର ନାମ ହେଲା ନାଦାମ୍ବିକା । ରଥ ଗର୍ଭର ଅଧିଶ୍ୱରୀମାନେ ହେଲେ ଶକ୍ତିଶପ୍ତା, ଜୟା, ବିଜୟା, ଘୋରା, ଅଘୋରା, ସୂକ୍ଷ୍ମା ଓ ଜ୍ଞାନା ।

ମହାପ୍ରଭୁ ସ୍ୱୟଂ ଜଗନ୍ନାଥ ତୃତୀୟ ରଥ ନନ୍ଦିଘୋଷରେ ବିଜେ କରନ୍ତି । ଏହି ନନ୍ଦିଘୋଷ ରଥ ଇନ୍ଦ୍ରଙ୍କ ଦ୍ୱାରା ପ୍ରଦତ୍ତ ଅଟେ । ଜଗନ୍ନାଥଙ୍କର ଆୟୁଧ ହେଲା ଚକ୍ର ଓ ଶଙ୍ଖ । ନନ୍ଦିଘୋଷ ରଥର ଉଚ୍ଚତା ହେଲା ତେତିଶ ହାତ ପାଞ୍ଚ ଆଙ୍ଗୁଳି । ଏହା ଆଠଶହ ବତିଶ ଖଣ୍ଡ କାଠରେ ତିଆରି । ରଥରେ ରହିଛି ଷୋହଳଟି ଚକ ଯାହା ଷୋହଳ କଳାର ପ୍ରତୀକ । ରଥର ଆବରଣ ହେଲା ରକ୍ତପୀତ । ରଥର ରକ୍ଷକ ହେଲେ ଗରୁଡ । ରଥମୃଦ୍ଧନୀ ଦେବତା ହେଲେ କଲ୍ୟାଣ ସୁନ୍ଦର । ରଥର ସାରଥି ହେଲେ ଦାରୁକ । ଦ୍ୱାରପାଳ ଦ୍ୱୟଙ୍କ ନାମ ହେଲା ଜୟ ଓ ବିଜୟ । ରଥର ଚାରି ଅଶ୍ୱ ହେଲେ ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦାଶ୍ୱ । ରଥ ରଜ୍ଜୁ ହେଲା ଶଙ୍ଖ ଚୂଡ ନାମକ ନାଗୁଣୀ । ରଥ ଦେବୀ ହେଲେ ଯୋଗମାୟା । ରଥରେ ନଅଜଣ ପାର୍ଶ୍ୱ ଦେବତାଗଣ ହେଲେ ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନଧାରୀ, ଚିନ୍ତାମଣି, ରାଘବ ଏବଂ ନୃସିଂହ । ରଥର ଶକ୍ତି ହେଲେ ବିମଳା ଓ ବିରଜା । ରଥ ଗର୍ଭାଧିଶ୍ୱର ହେଲେ ଏକପାଦ ନନ୍ଦ ଓ କୁମେର ଚାରଣ । ରଥ ଯକ୍ଷ ହେଲେ ହର୍ଯ୍ୟକ୍ଷ, ରଥର ଉତ୍କର୍ଷିଣୀ ହେଲେ ତ୍ରିୟକ୍ଷା, ଯୋଗା, ଆଜ୍ଞା, ଅନୁଜ୍ଞା, ପ୍ରଜ୍ଞା ଓ ମେଧା । ରଥ ଋଷିପଟାରେ ନାରଦ, ଦେବନ୍ଦ, ବ୍ୟାସ, ଶୁକ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଓ ରୁଦ୍ର ଆଦି ଆଠଜଣ ଋଷି ବିରାଜମାନ କରନ୍ତି । ରଥ ଧ୍ୱଜାଧିପତି ହେଲେ ବୀର ହନୁମାନ । ରଥ କୁମ୍ଭର ନାମ ହେଲା ହିରଣ୍ୟନ୍ମୟ । ନନ୍ଦିଘୋଷ ରଥର ନେତ ତ୍ରୈଲୋକ୍ୟ ମୋହିନୀ ଅଟେ । ରଥର ଅଧିଶ୍ୱର ହେଲେ ସ୍ୱୟଂ ଶ୍ରୀଜଗନ୍ନାଥ । ପହଣ୍ଡି ପରେ ତିନି ରଥରେ ତିନି ଠାକୁର ବିରାଜମାନ ହୁଅନ୍ତି । ରଥ ଉପରେ ବିରାଜମାନ ହୋଇଥିବା ତିନି ଠାକୁରଙ୍କୁ ଦର୍ଶନ କଲେ ପୁନର୍ଜନ ହୁଏନାହିଁ ବୋଲି ବିଶ୍ୱାସ ରହିଛି ।

ସିଂହାସନରୁ ରଥକୁ ଓ ରଥରୁ ସିଂହାସନକୁ ତିନିମୂର୍ତ୍ତି ପହଣ୍ଡି ବିଜେ ହୋଇଆସନ୍ତି । ଗୋଟି ପହଣ୍ଡି ଓ ଧାଡି ପହଣ୍ଡି ଭେଦରେ ପହଣ୍ଡି ଦୁଇପ୍ରକାର । ମହାପ୍ରଭୁମାନଙ୍କୁ ଗୋଟି ଗୋଟି କରି ପହଣ୍ଡି ବିଜେ କରିବାକୁ ଗୋଟି ପହଣ୍ଡି ଓ ଏକାବେଳକେ ମହାପ୍ରଭୁମାନଙ୍କୁ

ବିଜେ କରିବାକୁ ଧାଡି ପହଣ୍ଡି ବିଜେ କୁହାଯାଏ । ଠାକୁରମାନେ ରଥ ଉପରକୁ ବିଜେ ହେଲାବେଳେ ଧାଡି ପହଣ୍ଡି ଓ ରଥରୁ ଉଭୟ ଗୁଣ୍ଡିଚା ମଣ୍ଡପ ବା ଶ୍ରୀମନ୍ଦିରର ସିଂହାସନ ଉପରକୁ ବିଜେ ହେଲାବେଳେ ଗୋଟି ପହଣ୍ଡି ବିଜେ ହୁଅନ୍ତି ।

ଠାକୁରମାନଙ୍କ ପହଣ୍ଡି ବିଜେ ପରେ ପୁରୀର ଠାକୁରରାଜା ନିଜେ ଜଗନ୍ନାଥଙ୍କ ରଥ ଉପରେ ପହଁରନ୍ତି । ରୂପା ପାତ୍ରରେ ଚନ୍ଦନ ପୁଷ୍ପାଦି ସମ୍ଭାରକୁ ରଥ ଉପରେ ବିକ୍ଷିପ୍ତ ଭାବରେ ପକାଇବା ପରେ ଗଜପତି ମହାରାଜା ତାକୁ ସୁବର୍ଣ୍ଣ ମାର୍ଜନିରେ ପହଁରିବା ପରେ ସୁବାସିତ ଜଳ ଛିଞ୍ଚାଯାଏ । ଗଜପତି ମହାରାଜା ଠାକୁରମାନଙ୍କୁ ସେହି ସମୟରେ ସ୍ୱତନ୍ତ୍ର ଭାବରେ ପୂଜା ଆରାଧନା କରନ୍ତି । ଏହି ନୀତିକୁ ଛେରାପହଁରା କୁହାଯାଏ ।

ତା'ପରେ ରଥ ତ୍ରୟରେ ଅଶ୍ୱମାନ ଯୋଚା ଯାଆନ୍ତି । ରଥରେ ସେବାୟତମାନେ ଘଣ୍ଟ, କାହାଳୀ ବଜାନ୍ତି । ରଥରେ ତିନୋଟି ଲେଖାଏଁ ଦଉଡି ବନ୍ଧାଯାଏ । ତା' ପରେ କ୍ରମାନ୍ୱୟରେ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ରଥଗୁଡିକୁ ଭକ୍ତମାନେ ଅତି ଆନନ୍ଦରେ ହରିବୋଲ ଓ ହୁଳହୁଳି ଶବ୍ଦରେ ଗୁଣ୍ଡିଚା ଘର ଆଡକୁ ଟାଣି ନିଅନ୍ତି ।

ଏହି ରଥଯାତ୍ରା ଦେଖିବା ପାଇଁ ଭାରତ ତଥା ପୃଥିବୀର ବିଭିନ୍ନ ଦେଶରୁ ବିଭିନ୍ନ ଜାତି, ଧର୍ମ ଓ ବର୍ଣ୍ଣର ଲୋକମାନେ ବଡଦାଣ୍ଡରେ ଏକତ୍ରିତ ହୁଅନ୍ତି । ସମସ୍ତଙ୍କ ମନରେ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାର ଚେତନା ଉଦ୍ରେକ ହୋଇଥାଏ ।

ଗୁଣ୍ଡିଚା ମନ୍ଦିରରେ ନବଦିନ ରହିବା ପରେ ରଥ ତ୍ରୟରେ ଠାକୁରମାନେ ବାହୁଡା ଯାତ୍ରା କରନ୍ତି ଓ ସିଂହଦ୍ୱାରରେ ପହଞ୍ଚିବା ପରେ ସୁନାବେଶ ହୁଅନ୍ତି । ସୁନାବେଶ ଦେଖିବା ପାଇଁ ଲକ୍ଷାଧିକ ଲୋକଙ୍କର ବଡ ଦାଣ୍ଡରେ ଭିଡ ହୋଇଥାଏ । ଏହାପରେ ଠାକୁରମାନଙ୍କର ବିଭିନ୍ନ ନୀତିମାନ ସମାପନ କରି ଠାକୁରମାନଙ୍କୁ ପହଣ୍ଡି କରି ରତ୍ନସିଂହାସନକୁ ସେବକମାନେ ନେଇଯାଆନ୍ତି ।

ଘର ନଂ- ଏସ୍-୧୧୩, ମୈତ୍ରୀବିହାର
ଭୁବନେଶ୍ୱର

# ପ୍ରଭୁ ପାଦେ ଅଭିମାନ

**ଖଗେଶ୍ୱର ମହାନ୍ତି**

ଜଗନ୍ନାଥ ହୋ ତୋତେ ଦେଉଛି ଗାଳି
ମୋ ଗାଳି କି ତୋତେ ଟଳାଇ ପାରିବ
ଲାଗିବ ତୋତେ ସେ ଚନ୍ଦନ ଭଳି ।

ଗାଳି ଦେଇଥିଲେ ଧୃତରାଷ୍ଟ୍ର ସୁତେ
ଦେଇଦେଲୁ ମୁକ୍ତି ମହାଭାରତେ
ମୋତେ ସେହିପରି ଦେଖାଇ ଦେବୁ କି
ବୈକୁଣ୍ଠ ପୁରକୁ ଯିବା ଅର୍ଗଳି ।

ଗାଳିଦେଲେ ତୋତେ ଯେତେ ଯେତେ ଜନ
ପଠାଇଲୁ ତାଙ୍କୁ ନିଜ ସଦନ
ଶ୍ରୀବସ୍ତ ବ୍ରାହ୍ମଣ ଲାତେକ ମାଇଲା
ବକ୍ଷସ୍ଥଳେ ତାହା ଉଠଇ ଝଳି ।



ଗେହ୍ଲେ ଗାଳିଦେଲେ ଯଶୋମତୀ ମା'
ଦେଖାଇଲୁ ବିଶ୍ୱ କରିଣ ଆଁ
ଇନ୍ଦ୍ର କୋପ କରି ହାରିଥିଲା ଜାଣ
ଦର୍ପ ଚୂର୍ଣ୍ଣ କଲୁ ମନ୍ଦିର ତୋଳି ।

ଏତେ ଗାଳିଦେଲି ନାହିଁ ଟିକେ ଦୁଃଖ
ପ୍ରଭୁ କି ତୁମକୁ ଲାଗିଲା ସୁଖ
ମନେ ଯଦି ଖେଦ ଆହେ ଜଗନ୍ନାଥ
ବାରେ ସୁଦର୍ଶନ ଦେବୁ ତୁ ଚାଳି
ଜଗନ୍ନାଥ ହୋ ତୋତେ ଦେଉଛି ଗାଳି ।

ଗ୍ରା/ପୋ- ନାୟକାଣୀଡିହି
ଜିଲ୍ଲା-ଭଦ୍ରକ



# ସାତ ପାହାଚ

**ଦାମୋଦର ପାଢ଼ୀ**

ଇନ୍ଦ୍ରଧନୁର ସପ୍ତରଙ୍ଗ, ଝଲସି ଉଠୁଥିବା କାନ୍ତି ବିଭବ ମଉଳି ଯାଏ, ଫିକା ପଡିଯାଏ ଯେବେ ଶ୍ରୀମନ୍ଦିର ଜଗମୋହନରୁ ନାଟ୍ୟମଣ୍ଡପ ଦେଇ ଗରୁଡ ସମ୍ମୁଖରେ ଝୁଲି ଝୁଲି ପହଣ୍ଡି ବିଜେରେ କାଳିଆ, ଚକାଡୋଳିଆ ଆସି ସାତପାହାଚକୁ ସ୍ପର୍ଶ କରେ । ଏହି ସେହି ସାତପାହାଚ ଯୁଗ ଯୁଗରୁ କାଳିଆ-ଜଗାବଳିଆ, ଭଗ୍ନି ସୁଭଦ୍ରା, ସୁଦର୍ଶନ ସହ ନବଦିନାତ୍ମକ ଘୋଷଯାତ୍ରାରେ ଶ୍ରୀମନ୍ଦିର ରତ୍ନସିଂହାସନରୁ ଓହ୍ଲାଇ ଯିବାବେଳେ ସାତପାହାଚକୁ ତାର ଶୃଙ୍ଗାରର ସାକ୍ଷୀ ଓ ସଖୀ ରୂପେ ବିବେଚନା କରି ପ୍ରଥମ ପାହାଚ ଉପରେ ଟାହିଆ ଲଗାଇଥାଏ । ଟାହିଆ ଲଗାଇ ମତହସ୍ତୀ ପରି ଝୁଲି ଝୁଲି ଯେବେ ସାତପାହାଚ ଓହ୍ଲାଇବା ଆରମ୍ଭ କରେ ମହୀ ଦୁଲୁକୁ ଥାଏ । କାଳିଆ ଯାଏରେ ମହୀ ଦୋହଲାଇ, ଗୁରୁ ଗର୍ଜ୍ଜନର ଝଙ୍କାର ଶୁଣାଇ ଟାହିଆ ଝୁଲାଇ କେତେ ରଙ୍ଗରେ ଭେଳିକି ଖେଳକୁ ଭକ୍ତକୁ ଦେଖାଇ, ସେବକଙ୍କୁ ଖେଳ ଖେଳାଇ ଚକା ଚାହାଣୀରେ ମନଲୋଭାଇ ଓହ୍ଲାଇ ଆସେ । ସ୍ନାନପୂର୍ଣ୍ଣମୀ ଓ ଶ୍ରୀଗୁଣ୍ଡିଚା ରଥଯାତ୍ରାରେ ଦୁଇଥର ସାତପାହାଚରୁ ଟାହିଆ ଲଗାଇ ଝୁଲି ଝୁଲି କୂର୍ମବେଢ଼ା, କୀର୍ତ୍ତନ ଚକଡା ହୋଇ ଆନନ୍ଦବଜାର ବାଇଶି ପାହାଚ ଶୋଭା ବଢାଇ ସିଂହ ଦ୍ୱାର ଅରୁଣସ୍ତମ୍ଭକୁ ପୁଲକିତ କରି ନନ୍ଦିଘୋଷେ ବିଜେ କରୁଥାନ୍ତି । ନୀଳାଦ୍ରି ବିଜେ ପରେ ଫେରେ ସେହି ସାତ ପାହାଚ ଶୋଭାବଢାଇ ବିଭୀଷଣ ବନ୍ଦାପନା, ଗରୁଡ ବନ୍ଦାପଦା-ଆଳତୀ ଚଢାଇ, ଜୟ-ବିଜୟ ଦ୍ୱାରରୁ ଭିତର ଗମ୍ଭୀରାରେ ପ୍ରବେଶ କରଇ ଓ ରତ୍ନସିଂହାସନର ଶୋଭାକୁ ଶ୍ରୀମଣ୍ଡିତ କରାଇ, ଭକ୍ତଙ୍କୁ ଦର୍ଶନ ଦିଏ ଆନନ୍ଦାଶ୍ରୁ ଗଡାଇ । ସ୍ନାନଯାତ୍ରାର ସୁନାକୂଅରୁ ସୁବାସିତ ୧୦୮ କଳସ ମନ୍ତ୍ରପୂତ ଜଳରେ ଶ୍ରୀଅଙ୍ଗମାନଙ୍କରେ ଢଳାଯାଇ ସ୍ନାନ କରି ଦିବ୍ୟ ଦର୍ଶନ ଦେଇ ଖୋଲା ମୁକ୍ତାକାଶରେ ଦେବ, କିନ୍ନର, ନର ବାନର ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ରାତି ଅଧରେ ଶ୍ରୀମନ୍ଦିରକୁ ସାତପାହାଚ ଦେଇ ଫେରିବା ବେଳେ ଆଉ ରତ୍ନସିଂହାସନକୁ ଯାଇନଥାନ୍ତି ।



ଅନବସରରେ ଅନବସର ଗୃହରେ ୧୫ଦିନ ଜ୍ୱରରେ ଅସୁସ୍ଥ ହୋଇ ପଡିରହନ୍ତି । ଏହି ଅବସରରେ ପ୍ରଭୁଙ୍କୁ ପତି-ମହାପାତ୍ର ଓ ଦଇତା ସେବକମାନେ ନାନା ଉପଚାରରେ ସେବା କରିଥାନ୍ତି । ରାଜପୁରୋହିତଙ୍କ ପଥି ପାଚନରେ ଆରୋଗ୍ୟ ଲାଭ କରି ନେତ୍ରୋତ୍ସବ ସହ ନବଯୌବନ ଦର୍ଶନ ଦେଇଥାନ୍ତି ଓ ଉଭାଯାତ୍ରାରେ ଭକ୍ତଙ୍କ ନିମନ୍ତେ ଉଭା ହୋଇଥାନ୍ତି । ଅନବସର ସମୟରେ ପଟି ଦିଅଁ ରୂପେ ଅନ୍ୟ ନାମରେ ପୂଜିତ ହୋଇଥାନ୍ତି ।




ସାତପାହାଚରୁ ଟାହିଆ ଝୁଲାଇ ପହଣ୍ଡି ବିଜେରେ ଝୁଲି ଝୁଲି ଆସିଥାଏ କଳା ଠାକୁର । ସେ ତ ସ୍ୱୟଂ ବ୍ରହ୍ମ, ପରମବ୍ରହ୍ମ, ନାଦବ୍ରହ୍ମ, ଶୂନ୍ୟବ୍ରହ୍ମ, ପୂର୍ଣ୍ଣବ୍ରହ୍ମ, ଦାରୁବ୍ରହ୍ମ । ପ୍ରଭୁଙ୍କର ସେବା ସ୍ପର୍ଶ ଲାଗି ସପ୍ତଲୋକର ତପି, ଋଷୀମାନେ, ବରଷର ଜ୍ୟେଷ୍ଠ ପୂର୍ଣ୍ଣିମାରୁ ଆଷାଢର ଶୁକ୍ଳ ନବମୀ ସନ୍ଧ୍ୟା, ଦଶମୀ ବଡ଼ଏକାଦଶୀ, ସୁନାବେଶ, ଅଧରପଣା ଓ ନୀଳାଦ୍ରି ବିଜେ ଯାଏଁ ଅପେକ୍ଷା କରିଥାନ୍ତି ପ୍ରଭୁଙ୍କ ଯିବା ବାଟକୁ ନୀଳାଦ୍ରି ବିଜେରେ ପୁଣି ଫେରିବା ବାଟକୁ । ଏହି ସାତପାହାଚର ସପ୍ତଲୋକ–ସପ୍ତଋଷି ହେଲେ– ସନକ, ସନନ୍ଦ, ସନାତନ, କପିଳ, ଆସୁରୀ, ବୋଢୁ ଓ ପଞ୍ଚଶିଖ ।

କୀର୍ତ୍ତନ ଚକଡାରୁ ଭକ୍ତମାନେ ସାତପାହାଚରେ ଟାହିଆଧାରୀ କଳାଠାକୁରଙ୍କୁ ଦେଖିବା ମାତ୍ରେ ମାନବ ଜନ୍ମର ସାର୍ଥକତା ଅନୁଭବ କରି ସାତପୁରୁଷର ଜନ୍ମ ସାର୍ଥକତା ଲାଭ କରିଥାନ୍ତି ଓ ଜୀବନ ସାର୍ଥକ ହେବାର ଉପଲବ୍ଧି କରିଥାନ୍ତି । ପ୍ରଭୁ ଶ୍ରୀଜଗନ୍ନାଥ ସର୍ବ ଅବତାର ବୀଜ ରୂପେ ପୂଜିତ । ଉତ୍କଳ ଗଙ୍ଗବଂଶର ସପ୍ତମ ରାଜା ଅନଙ୍ଗଭୀମଦେବ ଜଣେ ବିଖ୍ୟାତ ସୌର୍ଯ୍ୟବୀଜ ଓ ସଦ୍‌ଗୁଣ ସମ୍ପନ୍ନ ରାଜା ସିଂହାସନ ଆରୋହଣର ଦ୍ୱିତୀୟ ଅଙ୍କରେ ଚୋଳଗଙ୍ଗଦେବ ଆରମ୍ଭ କରିଥିବା ନୂତନ ଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟକୁ ପୁଣି ଆଗେଇ ନେଇ ୧୫ବର୍ଷ ପରେ ସମ୍ପୂର୍ଣ୍ଣ କରାଇଥିଲେ । ସେ କେବଳ ବଡଦେଉଳ– ଶ୍ରୀମନ୍ଦିର, ଜଗମୋହନ, ବାହାର ପାଚେରୀ, ମହାଲକ୍ଷ୍ମୀ ଓ ବିମଳା ଦେବୀଙ୍କ ମନ୍ଦିର ନିର୍ମାଣ କରାଇଥିଲେ ଓ ସାତପାହାଚରୁ ପ୍ରଭୁଙ୍କର ରତ୍ନସିଂହାସନ ସହ ପତିତପାବନ ଯାତ୍ରା, ସ୍ନାନଯାତ୍ରାର ସଂଯୋଗ ସ୍ଥାପନ ହୋଇଥିଲା । ପୁରୀର ସାତସାହି, ବୟାଳିଶ କନ୍ଦିର ମାହାତ୍ମ୍ୟ ବେଶୀ । କାରଣ ୩୬ ନିଯୋଗ ସେବାୟତ ଏହି ସାତ ସାହିରେ ହିଁ ରହନ୍ତି ଯାହାକୁ ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ ଦେଖିବାକୁ ମିଳେ । ଏହାକୁ ବୈକୁଣ୍ଠ ପୁରୀ ରୂପେ ବିବେଚନା କରାଯାଏ । ଏହି ସାତସାହି ପ୍ରଭୁଙ୍କର ସାତପାହାଚ ଦେଇ ବିଭିନ୍ନ ସେବାପୂଜାରେ ମୁଖ୍ୟ ଭୂମିକା ନିର୍ବାହ କରୁଛି । ପ୍ରଭୁଙ୍କର ନବଦିନାତ୍ମକ ପତିତପାବନ ଯାତ୍ରାକୁ ଇନ୍ଦ୍ରଦ୍ୟୁମ୍ନ ରାଜା ପ୍ରବର୍ତ୍ତିତ କରିଥିଲେ ମଧ ପ୍ରଭୁଙ୍କର ଜନ୍ମସ୍ଥାନ ଯାତ୍ରାକୁ ଯଜ୍ଞବେଦୀ, ମହାବେଦୀ ଜନକପୁରୀ ବା ଯଜ୍ଞ ମଣ୍ଡପ କୁହାଯାଏ । ସେଠାରେ ସାତ ଦିନରୁ ଅଧିକ ଦିନ ପ୍ରଭୁ ରହିନଥାନ୍ତି ।

ବରଷକେ ଥରେ ଜାତି, ଧର୍ମ, ବର୍ଣ୍ଣ, ଧନୀ, ମାନୀ ସମସ୍ତ ପତିତ ନର ନାରାୟଣଙ୍କ ନିକଟକୁ ଛୁଟି ଆସନ୍ତି ପତିତପାବନ ନବଦିନାତ୍ମକ ଯାତ୍ରାରେ । ଗୁଣ୍ଡିଚା, ବାହୁଡା, ବଡଏକାଦଶୀ, ସୁନାବେଶରେ ବଡଦାଣ୍ଡରେ ୩ ବା ୪ ଦିନ ଭକ୍ତଙ୍କ ଗହଣରେ କଟାଇ ୭ଦିନ ଜନକପୁରୀ ଗୁଣ୍ଡିଚାମନ୍ଦିରେ ରହି ଅସଂଖ୍ୟ ଭକ୍ତଙ୍କୁ ଭକ୍ତାଶ୍ରୁରେ ଆହ୍ଲାଦିତ କରିଥାନ୍ତି । ସେହି ତ କଳାବାମନ, ଚକାନୟନ ତା' ଡୋରି ଲାଗିଲେ ଆପେ ଆପେ ଟାଣି ହୋଇ ଶ୍ରୀକ୍ଷେତ୍ର ଭୂଇଁକୁ ଭକ୍ତ ଆସିଥାନ୍ତି ଓ ଚକା ନୟନ, କଳାବଦନକୁ ରତ୍ନ ସିଂହାସନ ଉପରୁ କିମ୍ବା ନନ୍ଦିଘୋଷ ଉପରୁ ଦେଖି ମାନବ ଜୀବନର ସାର୍ଥକତା ଉପଲବ୍ଧି କରିଥାନ୍ତି । ମଙ୍ଗଳଆଳତୀ, ଅବକାଶ ନୀତି, ବଡସିଂହାର କିମ୍ବା ମହାଦୀପ ଉଠୁଥିବା ଏକାଦଶୀ ସବୁର ଅନୁଭବ ଅନୁଭବୀ ହିଁ ବୁଝିଥାଏ । ତୁମ ଦର୍ଶନ ପାଇଁ ଲକ୍ଷ ଲକ୍ଷ ଭକ୍ତ ଆସୁଥିବା ଘୋଷଯାତ୍ରାରେ ସେମାନଙ୍କ ସେବା ନିମନ୍ତେ ବିଭିନ୍ନ ମାର୍ଗରେ ପ୍ରତ୍ୟେକଟି ଲୋକଙ୍କୁ ତୋ ଡୋରିରେ ବାନ୍ଧି ରଖିଛୁ । ସାତ ପାହାଚରେ ବସି ଚାହିଁ ଦେଲେ ନୀଳଚକ୍ରକୁ, ପତିତପାବନ ବାନାକୁ ଓ ଚକ୍ରନାରାୟଣ, କପିଚକ୍ରକୁ ସବୁ ଦୁଃଖ, ଗ୍ଲାନି, ଆଖିର ଆନନ୍ଦାଶ୍ରୁରେ ଧୋଇ ହୋଇଯାଏ । ପୌରାଣିକ ପୃଷ୍ଠ ଭୂମିରେ ମହାବିଷ୍ଣୁ ପରମବ୍ରହ୍ମ, ଜଗତକର୍ତ୍ତାଙ୍କ ଆବାସସ୍ଥଳୀ ବୈକୁଣ୍ଠଧାମକୁ ପ୍ରବେଶ କରିବାକୁ ହେଲେ ୭ଟି ଅଭେଦ୍ୟ ଦୁର୍ଗକୁ ପାର କରିବାକୁ ହୁଏ । ଠିକ୍ ସେହିପରି ମର୍ତ୍ତ୍ୟବୈକୁଣ୍ଠ ଶ୍ରୀକ୍ଷେତ୍ରଧାମର ଶ୍ରୀମନ୍ଦିର ପ୍ରବେଶ ପୂର୍ବରୁ ସାତ ପାହାଚ ପାରି ହୋଇଯିବାକୁ ହେବ । ଏହି ସପ୍ତଋଷି ସମସ୍ତ ପାତକକୁ ଶୋଧନ କରି ଭକ୍ତଙ୍କ ହୃଦୟରେ ଶାଶ୍ୱତ ଶୁଦ୍ଧପୂତ ଚିନ୍ତାଧାରା ଭରି ଦେଇଥାନ୍ତି ଯଦ୍ୱାରା ମହାବାହୁ, ଶରପଞ୍ଜରର ଚକାନୟନ, କଳାବଦନକୁ ଦର୍ଶନ କରିବାର ସୁଯୋଗ ମିଳିଯାଏ । ବୈକୁଣ୍ଠଧାମ ପ୍ରବେଶ ଉପରେ ଯୋଗ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି ଯେ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର ଧ୍ୟାନ ଓ ଧାରଣା ହିଁ ସପ୍ତମାର୍ଗ । ଏସବୁକୁ ଯେଉଁ ଲୋକ ନିଜର ଧର୍ମ ପରାକାଷ୍ଠାରେ ଅତିକ୍ରମ କରିପାରେ, ସେ ହିଁ ବ୍ରହ୍ମ ସାକ୍ଷାତ କରିପାରେ ।

ଶ୍ରୀମନ୍ଦିର ଉତ୍ତର ଦ୍ୱାରରୁ କୂର୍ମବେଢା କୀର୍ତ୍ତନ ଚକଡା ହୋଇ ସାତପାହାଚକୁ ଆସିବାବେଳେ ଏହାର ସୁରକ୍ଷାରେ ଧାତା ଓ ବିଧାତା ରହିଥାନ୍ତି କାରଣ ଜଗତର ନାଥ, ବିଶ୍ୱବ୍ରହ୍ମାଣ୍ଡ କର୍ତ୍ତାଙ୍କ ବିଜେସ୍ଥଳୀ, ମର୍ତ୍ତ୍ୟ ବୈକୁଣ୍ଠଧାମରେ ପ୍ରଭୁ ପରମବ୍ରହ୍ମ ବିଜେ କରିଛନ୍ତି ।

ସପ୍ତପୁରୀ ଅମାବାସ୍ୟା ଶ୍ରୀମନ୍ଦିରରେ ପାଳନ ବେଳେ ବିଶ୍ୱନିୟନ୍ତା ପ୍ରଭୁ ଶ୍ରୀ କଳାଠାକୁରଙ୍କ ସୃଷ୍ଟି ସପ୍ତସ୍ୱର୍ଗ ସପ୍ତପାତାଳ ସପ୍ତସାଗର ଓ ସପ୍ତଦ୍ୱୀପ ଆପେ ଆପେ ମାନସପଟ୍ଟକୁ ଆସିଥାଏ । ଗର୍ଭଗୃହ ରତ୍ନସିଂହାସନ ସପ୍ତାବରଣ ପୀଠ ରୂପେ ସୁପରିଚିତ ।





ପ୍ରଭୁ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ମାତା ସୁଭଦ୍ରା, ସୁଦର୍ଶନ ଚତୁର୍ଦ୍ଧାମୂର୍ତ୍ତି ସହ ଶ୍ରୀଦେବୀ, ଭୂଦେବୀ ଓ ମାଧବ ରତ୍ନସିଂହାସନରେ ଶୋଭାପାଇଥାନ୍ତି । ଏଣୁ ସପ୍ତାବରଣ ପୀଠର ଅଧୀଶ୍ୱର ପ୍ରଭୁ ଶ୍ରୀଜଗନ୍ନାଥ ସ୍ନାନଯାତ୍ରା, ଘୋଷଯାତ୍ରାରେ ଜୟ-ବିଜୟ ଦ୍ୱାର ଦେଇ ସାତ ପାହାଚକୁ ଆସିବା ମାତ୍ରେ ଟାହିଆ ଲାଗି ଓ ବିଡିଆ ସେବା ପ୍ରଭୁଙ୍କର ହୋଇଥାଏ । ଏହି ସେବା ଅବସରରେ ସପ୍ତଋଷି, ସନକ, ସନନ୍ଦ, ସନାତନ, କପିଳ, ଆସୁରୀ, ବୋଢୁ ଓ ପଞ୍ଚଶିଖ ପ୍ରଭୁଙ୍କର ସେବାରେ ନିଜକୁ ଉତ୍ସର୍ଗ କରିଥାନ୍ତି । ଏହି ସପ୍ତଋଷିଙ୍କ ପୂର୍ବରୁ ସପ୍ତର୍ଷି ମଣ୍ଡଳର ସପ୍ତଋଷି ଅରୁନ୍ଧତୀଙ୍କ ସହ ଅନନ୍ତ ଆକାଶରେ ପ୍ରଭୁ ଚକାନୟନଙ୍କ ନୀଳାଦ୍ରି ବିଜେ ସମୟରେ ପୁଷ୍ପବର୍ଷଣ ପୂର୍ବକ ଦର୍ଶନ କରିଥାନ୍ତି । ପରମବ୍ରହ୍ମ ସ୍ୱରୂପ ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କ ନାମାନୁଯାୟୀ ଶ୍ରୀକ୍ଷେତ୍ରକୁ ପୁରୁଷୋତ୍ତମ ଧାମ ରୂପେ ବିବେଚନା କରାଯାଉଥିବା ବେଳେ ଦ୍ୱାପର ଯୁଗରେ କୃଷ୍ଣାବତାରରେ ଜରାଶବରର ଶରାଘାତରେ ଶଯ୍ୟାଶାୟୀ ଶ୍ରୀକୃଷ୍ଣଙ୍କ ମର ଶରୀର ଭସ୍ମୀଭୂତ ହୋଇଥିଲେ ମଧ୍ୟ ଆତ୍ମବ୍ରହ୍ମ ସ୍ୱରୂପ ନଷ୍ଟ ନହୋଇ ଦାରୁରେ ରୂପାନ୍ତରିତ ହୋଇ ଦାରୁବ୍ରହ୍ମ ରୂପେ ଶ୍ରୀଜଗନ୍ନାଥଙ୍କ ହୃଦୟରେ ବିରାଜମାନ କରିଛନ୍ତି । ଭାଗବତ ଗୀତା ଅନୁଯାୟୀ ଶ୍ରୀମନ୍ଦିରର ମୁଖ୍ୟମନ୍ଦିର ପଞ୍ଚରଥ ସଦୃଶ ।

ଶ୍ରୀଜଗନ୍ନାଥ ପ୍ରଭୁ କଳା ସାଆନ୍ତ କାଳାତୀତ । ଭକ୍ତଙ୍କ ଗହଣରେ ଭକ୍ତଙ୍କ ସହ ଖେଳ ରଚିବାରେ ସେ ପାରଙ୍ଗମ । ଏଣୁ ଦ୍ୱାଦଶ ଯାତ୍ରା ରଚିଛନ୍ତି । କାଳିଆର ସମସ୍ତ ଲୀଳା, ଖେଳା ଏଠାରେ ପ୍ରତୀୟମାନ । ସେ ଆର୍ଯ୍ୟ ଅନାର୍ଯ୍ୟ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ ଧର୍ମର ସମନ୍ୱୟ । ସେ ସ୍ୱୟଂ ପ୍ରତୀକାତ୍ମକ ଦେବତା । ରଥଯାତ୍ରାରେ ଅଗଣିତ ଭକ୍ତଙ୍କ ମନକୁ ଟାଣିଆଣି ନିଜର ଆତ୍ମାରେ ବିଲୀନ କରିଦିଏ ସେହି ଦୁଇ ଚକାଆଖି । ଜୀବନର ସବୁ କାମନା, ଭାବନା, ଚେତନା, ସୁଖ, ଲୁହ ପ୍ରଭୁଙ୍କର ଏହି ଦୁଇ ଆଖିରେ ମିଶି ଗଲେ ଅପାର ସୁଖ ଶାଶ୍ୱତର ସ୍ୱର୍ଶ ମିଳିଥାଏ । କଳାବାମନ ଜଗନ୍ନାଥଙ୍କୁ ରଥରେ ବସିଥିବା ଦର୍ଶନରେ ଜୀବନର ସାର୍ଥକତା ମିଳିଥାଏ ।

ରତ୍ନ ସିଂହାସନକୁ ମହାଭାରତରେ ଅର୍ନ୍ତବେଦୀ ଓ ଶଙ୍ଖନାଭିମଣ୍ଡଳ ରୂପେ ବର୍ଣ୍ଣିତ । ଏହା ଅଲୌକିକ ଓ ଏହାର ସ୍ୱର୍ଶ ଓ ପରିକ୍ରମାରେ ମୁକ୍ତି ମିଳିଥାଏ । କାରଣ ଏହା ସପ୍ତବର୍ଣ୍ଣ ପୀଠ ବା ସପ୍ତାଭରଣ ରୂପେ ସୁବିଦିତ । ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ସହ ସୁଦର୍ଶନ, ଶ୍ରୀଦେବୀ, ଭୂଦେବୀ ଓ ନୀଳମାଧବ ବସିଛନ୍ତି । ସପ୍ତପାହାଚ ଦେଇ ସପ୍ତାଭରଣକୁ ପ୍ରବେଶରେ ମୁକ୍ତ, ଶାନ୍ତି ମିଳିଥାଏ । କଳାହାଟ ଦ୍ୱାର ଅତିକ୍ରମ କରିଲେ ଗର୍ଭଗୃହ ରତ୍ନସିଂହାସନକୁ ଯାଇ ସପ୍ତାଭରଣ ସ୍ୱର୍ଶରେ ଅଲୌକିକ ତୃପ୍ତି ଭକ୍ତ ଲାଭ କରିଥାନ୍ତି । ଜୀବନର ସମସ୍ତ ସୁଖଦୁଃଖ ଗ୍ଳାନି ଯେତେବେଳେ ଭାରାକ୍ରାନ୍ତ ହୋଇଯାଏ ସେହି ସମୟରେ ସାତପାହାଚରେ ବସି ପତିତପାବନକୁ ଥରେ ଚାହିଁଦେଲେ ଓ ନୀଳଚକ୍ରରେ ନିଜର ଏକାଗ୍ରତାକୁ ଯୋଡିଦେଲେ ସମସ୍ତ କ୍ଳାନ୍ତି ଦୂର ହୋଇ ମନ-ଚୈତନ୍ୟ ଆହ୍ଲାଦିତ ହୋଇଥାଏ ।

ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ
ପୁରୀ



# ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି ଠାକୁର ଓ ରଥଯାତ୍ରା

ପୀତାମ୍ବର ପ୍ରଧାନୀ

ଶ୍ରୀଜଗନ୍ନାଥ ମହାପ୍ରଭୁ ପ୍ରାୟ ୧୬୬ କୋଟି ବର୍ଷ ପୂର୍ବେ ଶ୍ରୀକ୍ଷେତ୍ରରେ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲେ । ଶ୍ରୀମନ୍ଦିର ପ୍ରାୟ ୧୯୬ କୋଟି ବର୍ଷ ତଳେ ନିର୍ମିତ ହୋଇଥିଲା । ଏହା ସ୍କନ୍ଦ ପୁରାଣରେ ବର୍ଣ୍ଣିତ ହୋଇଛି । ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି ଠାକୁରଙ୍କ ପରମ୍ପରା ମଧ୍ୟ ସେହିପରି ପୁରାତନ । ଆମ୍ଭର ବ୍ୟକ୍ତିଗତ କାର୍ଯ୍ୟଠାରୁ ସାମାଜିକ ତଥା ରାଜନୈତିକ କ୍ଷେତ୍ରରେ ପ୍ରତିନିଧିତ୍ୱ କରିବାର ଆବଶ୍ୟକତା ରହିଛି । କୌଣସି କାର୍ଯ୍ୟ ପାଇଁ ଆମେ ନିଜେ ନଯାଇ ପାରିଲେ ଆମ୍ଭର ପ୍ରତିନିଧିତ୍ୱ ସ୍ୱରୂପ ଜଣେ ଲୋକଙ୍କୁ ପଠାଇଥାଉ ।



ଯେଉଁମାନେ ଶ୍ରୀମନ୍ଦିରର ଦୈନିକ ନୀତି କିମ୍ବା ପ୍ରତିଦିନର ପର୍ବପର୍ବାଣିରେ ଅନୁଷ୍ଠିତ ହେଉଥିବା ପୂଜା ଆରାଧନା ଓ ଉତ୍ସବଗୁଡ଼ିକର ଅନୁଶୀଳନ କରୁଛନ୍ତି, ସେମାନେ ଜାଣନ୍ତି ଏଠାରେ ମଧ୍ୟ ଠାକୁରଙ୍କ ପ୍ରତିନିଧିତ୍ୱର ବ୍ୟବସ୍ଥା ରହିଛି । ତେଣୁ ମନରେ ପ୍ରଶ୍ନ ଉଠେ ସ୍ୱୟଂ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ବଡଦେଉଳରେ ବିଜେ ହୋଇଥିଲେ ମଧ୍ୟ ଏମିତି ପ୍ରତିତିଧିତ୍ୱ କରିବା ଆବଶ୍ୟକ ହୁଏ କାହିଁକି ?

ଶିଳ୍ପ ଶାସ୍ତ୍ରରେ ତିନିପ୍ରକାର ମୂର୍ତ୍ତିର ଅବତାରଣା କରାଯାଇଛି । ଚଳ, ଅଚଳ ଓ ଚଳାଚଳ । ଯେଉଁ ମୂର୍ତ୍ତିକୁ ସହଜରେ ବାହାରକୁ ନିଆଯାଇପାରେ ଏହା ଚଳମୂର୍ତ୍ତି । ଉଦାହରଣ ସ୍ୱରୂପ ଦୋଳ ବିମାନରେ ରାଧାକୃଷ୍ଣ ମୂର୍ତ୍ତି । ଯେଉଁ ମୂର୍ତ୍ତିକୁ ପ୍ରତିଷ୍ଠା ହୋଇଥିବା ସ୍ଥାନରୁ ଅନ୍ୟତ୍ର ଉଠାଇ ନିଆଯାଇ ପାରିବ ନାହିଁ, ତାହାହେଲା ଅଚଳ ମୂର୍ତ୍ତି । ଉଦାହରଣ ସ୍ୱରୂପ ପ୍ରତିଷ୍ଠିତ ଶିବଲିଙ୍ଗ । ଯେଉଁ ମୂର୍ତ୍ତି ଅଚଳ ଭାବରେ ଥାନ୍ତି ଏବଂ ମଝିରେ ମଝିରେ ବାହାରକୁ ଯା'ନ୍ତି ତାକୁ ଚଳାଚଳ ମୂର୍ତ୍ତି କୁହାଯାଏ । ରଥଯାତ୍ରାରେ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ହେଉଛନ୍ତି ଏହିପରି ଚଳାଚଳ ମୂର୍ତ୍ତି ଏବଂ ଶ୍ରୀଦେବୀ, ଭୂଦେବୀ ଓ ନୀଳମାଧବ ହେଉଛନ୍ତି ଚଳମୂର୍ତ୍ତି । ଏଠାରେ ସୂଚାଇ ଦିଆଯାଇପାରେ ଯେ ଜଗନ୍ନାଥ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ବୃହତ କଳେବର ଦୃଷ୍ଟିରୁ ଗୁରୁ ହୋଇଥିବାରୁ ବେଶୀ ଚଳପ୍ରଚଳ କରାଇବା ସମ୍ଭବ ନୁହେଁ । ମାତ୍ର



ଶ୍ରୀଦେବୀ ସୁବର୍ଣ୍ଣ ପ୍ରତିମା, ଭୂଦେବୀ ସରସ୍ୱତୀ ପ୍ରତିମା ରୌପ୍ୟ ପ୍ରତିମା, ନୀଳମାଧବ ଦାରୁ ପ୍ରତିମା ଗୁରୁ ହୋଇନଥିବାରୁ ସେମାନଙ୍କୁ ଚଳପ୍ରଚଳ କରାଇବା ସହଜ ।

ବର୍ଷରେ କେବଳ ଦୁଇଥର ଅର୍ଥାତ୍ ସ୍ନାନପୂର୍ଣ୍ଣିମା ଓ ରଥଯାତ୍ରାରେ ଠାକୁରମାନେ ରତ୍ନବେଦୀ ଛାଡି ବାହାରକୁ ଯା'ନ୍ତି । ପୁରାତନ କାଳରେ ଝୁଲଣ ଯାତ୍ରାବେଳେ ସ୍ୱୟଂ ଠାକୁରମାନଙ୍କୁ ଝୁଲଣ ମଣ୍ଡପକୁ ନିଆଯାଉଥିଲା । ୧୫୬୦ ଖ୍ରୀଷ୍ଟାବ୍ଦରେ ରାଜା ଗୋବିନ୍ଦଦେବଙ୍କ ରାଜତ୍ୱ କାଳରେ ଝୁଲଣ ମଣ୍ଡପରେ ଠାକୁରମାନେ ଝୁଲୁଥିବା ବେଳେ ଲୁହା ଶିକୁଳି ଛିଣ୍ଡି ଯିବାରୁ ଜଗନ୍ନାଥ ଗଡିପଡି ତାଙ୍କ ହାତ ଖଣ୍ଡିଆ ହେଲା । ତେଣୁ ସେହିଦିନଠାରୁ ଠାକୁରମାନଙ୍କୁ ଝୁଲଣ ମଣ୍ଡପକୁ ନିଆଯାଏ ନାହିଁ । ଏହି କାରଣରୁ ଦୈନିକ ନୀତି ଓ ପର୍ବପର୍ବାଣିରେ ଠାକୁରମାନଙ୍କୁ ପ୍ରତିନିଧିତ୍ୱ କରିବା ପାଇଁ ବ୍ୟବସ୍ଥା ରହିଛି ।

ତେଣୁ କେଉଁ ନୀତି ବା ପର୍ବରେ ଯେଉଁ ପ୍ରତିମା ତାଙ୍କ ପ୍ରତିନିଧିତ୍ୱ କରନ୍ତି ତାହା ଜାଣିବା ଲାଗି ମନରେ କୌତୁହଳ ଜାଗ୍ରତ ହେବା ସ୍ୱାଭାବିକ । ଅଳ୍ପ କେତୋଟି ପର୍ବରେ ବଳଭଦ୍ରଙ୍କ ପ୍ରତିନିଧିତ୍ୱ କରିବା ପାଇଁ ପ୍ରତିମା ଅଛନ୍ତି । ମାତ୍ର ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ବ୍ୟତୀତ ରତ୍ନବେଦୀରେ ବିରାଜିତ ଅନ୍ୟ ଠାକୁରମାନଙ୍କର ସ୍ୱତନ୍ତ୍ର ପୂଜା ନଥିବାରୁ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତିନିଧି ପ୍ରତିମାମାନଙ୍କ ବିଷୟରେ ମୁଖ୍ୟତଃ ସୂଚନା ଦିଆଯାଇଛି ।

ଦୈନିକ ନୀତି

ବଡସିଂହାର ଧୂପ ପରେ ପହୁଡ ସମୟ ହେଲେ ଖଟଶେଯ ଘରୁ ରତ୍ନ ପଲଙ୍କ ଆଣି ରତ୍ନବେଦୀ ସାମନାରେ ଯାହାକୁ ପୋଖରୀଆ କୁହାଯାଏ, ଠାକୁରମାନଙ୍କ ଶୟନ ବ୍ୟବସ୍ଥା କରାଯାଏ ମାତ୍ର ଠାକୁରମାନେ ରତ୍ନସିଂହାସନରୁ ଓହ୍ଲାଇ ପଲଙ୍କରେ ଶୟନ କରନ୍ତି ନାହିଁ । ମହାପ୍ରଭୁଙ୍କ ପ୍ରତିନିଧି ସ୍ୱରୂପ ସୁବର୍ଣ୍ଣ ନାରାୟଣ ଠାକୁର (ଅର୍ଦ୍ଧନାରୀଶ୍ୱର)ଙ୍କୁ ଭଣ୍ଡାର ଘରୁ ଅଣାଯାଇ ପୂଜାର୍ଚ୍ଚନା କରି ଜଗନ୍ନାଥଙ୍କ ସାମନାରେ ପଡିଥିବା ରତ୍ନପଲଙ୍କରେ କିଛି ସମୟ ପହୁଡ କରି ପୁଣି ଭଣ୍ଡାର ଘରକୁ ଫେରାଇ ନିଆଯାଏ । ତେଣୁ ସୁବର୍ଣ୍ଣ ନାରାୟଣ ଠାକୁର ପ୍ରତିଦିନ ପହୁଡନୀତି ବେଳେ ଜଗନ୍ନାଥଙ୍କ ପ୍ରତିନିଧି ଭଳି କାର୍ଯ୍ୟ କରିଥାନ୍ତି । ତାଙ୍କୁ ମଧ୍ୟ ଶୟନ ଠାକୁର କୁହାଯାଏ । ଆଉ ଗୋଟିଏ ଦୈନିକ ନୀତି ରହିଛି । ରାତ୍ର ପହୁଡ ପରେ ପ୍ରତିଦିନ ଦ୍ୱାର ବନ୍ଦକରି ମୁଦ ଦେବା ଠାକୁରଙ୍କର ଜଣେ ସେବକ ତଳୁଛ ମହାପାତ୍ର ଯେଉଁ ସିଲ ବା ମୋହରରେ ମୁଦ କରନ୍ତି, ସେ ମୋହର ହେଉଛି ମଦନ ମୋହନଙ୍କ ପ୍ରତିଛବି । ଏ ନୀତିରୁ ଜଣାଯାଇଛି ଯେ ଦକ୍ଷିଣ ଘରେ ରହି ପୂଜା ପାଉଥିବା ମଦନ ମୋହନ ହେଉଛନ୍ତି ଜଗନ୍ନାଥଙ୍କ ପ୍ରଧାନ ପ୍ରତିନିଧି । ଅଧିକାଂଶ ସ୍ୱତନ୍ତ୍ର ଓ ପର୍ବ ନୀତିରେ ମଦନ ମୋହନ ମଧ୍ୟ ମହାପ୍ରଭୁଙ୍କ ପ୍ରତିନିଧିତ୍ୱ କରନ୍ତି ।

ସ୍ୱତନ୍ତ୍ର ନୀତି

ପ୍ରତି ସପ୍ତାହର ଗୁରୁବାର ଠାକୁରଙ୍କ ସ୍ୱନକ୍ଷତ୍ର ଏକାଦଶୀ ଓ ଅମାବାସ୍ୟାରେ ସ୍ୱତନ୍ତ୍ର ନୀତି ହୁଏ । ଗୁରୁବାର ନୀତି ବେଳେ ସ୍ୱନକ୍ଷତ୍ର ଦିନ, କ୍ଷେତ୍ର ବନ୍ଦାପନା ବେଳେ ଏକାଦଶୀ ନୀତିରେ ମଦନ ମୋହନ ଜଗନ୍ନାଥଙ୍କ ପ୍ରତିନିଧିତ୍ୱ କରନ୍ତି । ଏକାଦଶୀ ସୋମବାର ଦିନ ପଡିଲେ ଶମ୍ଭୁ ଏକାଦଶୀ ନୀତି ପାଳିତ ହୁଏ । ସେଦିନ ମଧ୍ୟ ମଦନ ମୋହନ ପ୍ରତିନିଧିତ୍ୱ କରନ୍ତି । କେବଳ ଅମାବାସ୍ୟା ଦିନ ପ୍ରତିପ୍ରଦା ସ୍ପର୍ଶ କଲେ ଭଣ୍ଡାର ଘରୁ ନାରାୟଣ ମୂର୍ତ୍ତିକୁ ଅଣାଯାଇ ଜଗନ୍ନାଥଙ୍କ ପ୍ରତିନିଧି ଭାବରେ ପୂଜାର୍ଚ୍ଚନା କରାଯାଏ ।

ଯେଉଁସବୁ ନୀତିରେ ପ୍ରତିନିଧି ଠାକୁରମାନେ ବାହାରକୁ ଯା'ନ୍ତି ପ୍ରଥମେ ସେମାନଙ୍କୁ ପୂଜାର୍ଚ୍ଚନା କରି ରତ୍ନବେଦୀ ଉପରକୁ ଅଣାଯାଏ । ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗ ଲାଗି କରାଯାଇ ମହାପ୍ରଭୁଙ୍କର ଆଜ୍ଞାମାଳ ହେଲେ ସେମାନେ ଠାକୁରଙ୍କର ପ୍ରତିନିଧି କରିବାକୁ ସକ୍ଷମ ହୁଅନ୍ତି ।

ପ୍ରଧାନୀ ଓ ବିମାନବଡୁ ସେବାୟତ
ବିମାନବଡୁ ସାହି
ପୋ/ଜି: ପୁରୀ





# ଦର୍ଶନ ମାତ୍ରକେ କଲ୍ୟାଣ

ଓମ୍ ପ୍ରକାଶ

ରଥଯାତ୍ରା ଆସିଲେ ଗୁଣ୍ଡିଚା ମନ୍ଦିରର ଗୁରୁତ୍ୱ ବଢିଯାଇଥାଏ । କାରଣ ଜଗତର ନାଥ ଜଗନ୍ନାଥ ଏହି ସମୟରେ ଏଠାକୁ ଆସି ଅବସ୍ଥାନ କରନ୍ତି । ଜଗନ୍ନାଥ ଏଠାକୁ ଆସିବାର ତାତ୍ପର୍ଯ୍ୟ ରହିଛି । କାରଣ ଗୁଣ୍ଡିଚାଘର ହେଉଛି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଜନ୍ମସ୍ଥାନ । କୁହାଯାଏ ଯେ ରାଜା ଇନ୍ଦ୍ରଦ୍ୟୁମ୍ନ ଅନନ୍ତ ମହାରଣା ନାମକ ବିଶ୍ୱକର୍ମାଙ୍କୁ ଗୁଣ୍ଡିଚାଘରେ ଶ୍ରୀଜୀଉମାନଙ୍କ ମୂର୍ତ୍ତି ଗଢିବାକୁ ଦାୟିତ୍ୱ ଦେଇଥିଲେ । ମୂର୍ତ୍ତି ନିର୍ମାଣ ପାଇଁ ସ୍ଥିର କରାଯାଇଥିବା କୋଠରୀକୁ ଏକୋଇଶି ଦିନ ପର୍ଯ୍ୟନ୍ତ ନଖୋଲିବାକୁ ଯଦିଓ ଅନନ୍ତ ମହାରଣାଙ୍କୁ ରାଜା ପ୍ରତିଶ୍ରୁତି ଦେଇଥିଲେ ତଥାପି ଷୋହଳ ଦିନ ବେଳକୁ ରାଣୀ ଗୁଣ୍ଡିଚା ମହାରଣାଙ୍କ ସ୍ୱରଶବ୍ଦ ନଶୁଣିବାରୁ ଅତ୍ୟନ୍ତ ଅସ୍ଥିର ହୋଇଉଠିଥିଲେ। ରାଣୀଙ୍କ କଥାରେ ରାଜା ଇନ୍ଦ୍ରଦ୍ୟୁମ୍ନ ଦ୍ୱାର ଖୋଲିବାରୁ ଅଧାଗଢା ବିଗ୍ରହମାନଙ୍କୁ ଦେଖିଥିଲେ। ଅନ୍ତର୍ଦ୍ଧାନ ହୋଇଯାଇଥିଲେ ବିଶ୍ୱକର୍ମା ଅନନ୍ତ ମହାରଣା । ଏଇଠି ହୋଇଥିଲା ପ୍ରଭୁଙ୍କ ଜନ୍ମ । ତେଣୁ ଶ୍ରୀଜଗନ୍ନାଥଙ୍କ ସବୁଠାରୁ ବଡଯାତ୍ରାର ନାମ ରାଣୀ ଗୁଣ୍ଡିଚାଙ୍କ ନାମରେ ଉତ୍ସର୍ଗୀକୃତ କରାଯାଇ ଶ୍ରୀଗୁଣ୍ଡିଚା ବୋଲି କୁହାଯାଉଛି । ଗୁଣ୍ଡିଚା ଘରର ଅନ୍ୟ ନାମ ଆଡପମଣ୍ଡପ । ଗୁଣ୍ଡିଚା ବେଢାଟି ଗୋଟିଏ ଆୟତ କ୍ଷେତ୍ର ସ୍ୱରୂପ । ଏହାର ଲମ୍ବା ୪୩୦ ଫୁଟ ଓ ପ୍ରସ୍ଥ ୩୨୦ ଫୁଟ । ଏ କ୍ଷେତ୍ରକୁ ଘେରି ରହିଥିବା ପ୍ରାଚୀରଟି ବଡଦେଉଳ ପ୍ରାଚୀର ଶୈଳୀରେ ନିର୍ମାଣ କରାଯାଇଛି । ଗୁଣ୍ଡିଚା ମନ୍ଦିରରେ ରହିଛି ବାହାର ବେଢା ପ୍ରାଚୀର ଓ ଭିତର ବେଢା ପ୍ରାଚୀର । ଗଠନ ଦୃଷ୍ଟିରୁ କିନ୍ତୁ ଗୁଣ୍ଡିଚା ମନ୍ଦିର ବଡଦେଉଳଠାରୁ ସମ୍ପୂର୍ଣ୍ଣ ଭିନ୍ନ । ତେବେ ଏଠାରେ ରହିଛି ଚାରିଟି ଦେବାଳୟ । ପଶ୍ଚିମରୁ ପୂର୍ବକୁ ଧାଡି ହୋଇ ରହିଥିବା ଚାରିଟି ମୁଖ୍ୟ ଦେବାଳୟ ହେଲା ଗର୍ଭଗୃହ ବିଶିଷ୍ଟ ପ୍ରଧାନ ଦେଉଳ ବା ବିମାନ, ଜଗମୋହନ, ନାଟ ମନ୍ଦିର ଓ ଭୋଗ ମଣ୍ଡପ ।

ପ୍ରଧାନ ଦେଉଳ: ପ୍ରଧାନ ଦେଉଳଟି ୫୫ଫୁଟରେ ୪୬ଫୁଟ ପରିମିତ ସ୍ଥାନ ଉପରେ ଅବସ୍ଥିତ । ଗର୍ଭଗୃହରେ କଳାମୁଗୁନି ପ୍ରସ୍ତରରେ ନିର୍ମିତ ୪ଫୁଟ୍ ଉଚ୍ଚ ଏବଂ ୧୯ଫୁଟ ଲମ୍ବର ଏକ ସିଂହାସନ ରହିଛି । ଏହାକୁ ରତ୍ନବେଦୀ କୁହାଯାଏ । ଗୁଣ୍ଡିଚା ଯାତ୍ରା ସମୟରେ ଏହି ପବିତ୍ର ରତ୍ନବେଦୀ ଉପରେ ଚତୁର୍ଦ୍ଧା ମୂର୍ତ୍ତି ବିଜେ କରନ୍ତି । ସାତଦିନ ବ୍ୟାପୀ ଠାକୁରମାନଙ୍କ ଅବସ୍ଥାନ ସମୟରେ ଏହିଠାରେ ଠାକୁରମାନଙ୍କ ସମସ୍ତ ନୀତି ସମ୍ପାଦିତ ହୋଇଥାଏ ।

ଜଗମୋହନ: ଆୟତନ ଦୃଷ୍ଟିରୁ ଜଗମୋହନ ହେଉଛି ସବୁଠାରୁ ବଡ । ଜଗମୋହନକୁ ଆସିବା ପାଇଁ ତିନୋଟି ଦ୍ୱାର ରହିଛି । ଜଗମୋହନର ଡାହାଣ ପାର୍ଶ୍ୱରେ ରହିଛି ଭଣ୍ଡାର ଘର ।

ମନ୍ଦିରର ଦ୍ୱାର: ଗୁଣ୍ଡିଚା ମନ୍ଦିର ମଧ୍ୟକୁ ପ୍ରବେଶ କରିବା ପାଇଁ ତିନିଟି ଦ୍ୱାର ରହିଛି। ସେଗୁଡିକ ହେଲା ସିଂହଦ୍ୱାର, ନାକଚଣା ଦ୍ୱାର ଓ ଉତ୍ତର ଦ୍ୱାର । ମନ୍ଦିର ମଧ୍ୟକୁ ପ୍ରବେଶ କରିବା ପାଇଁ ମୁଖ୍ୟ ଦ୍ୱାରକୁ ସିଂହଦ୍ୱାର କୁହାଯାଏ । ଏହି ଦ୍ୱାରର ଉପରି ଭାଗରେ ନବଗ୍ରହପାଟକ ବିଦ୍ୟମାନ । ଦ୍ୱାର ଦେଶର ଦୁଇପାର୍ଶ୍ୱରେ ଦୁଇଟି ସିଂହ ମୂର୍ତ୍ତି ବିଦ୍ୟମାନ । ରଥଯାତ୍ରା ସମୟରେ ଠାକୁରମାନେ ରଥରୁ ଓହ୍ଲାଇ ଏହି ସିଂହଦ୍ୱାର ଦେଇ ରତ୍ନବେଦୀକୁ ବିଜେ କରନ୍ତି । ଅନ୍ୟ ଏକ ଦ୍ୱାର ସିଂହଦ୍ୱାରର ପୂର୍ବପାର୍ଶ୍ୱରେ ଅବସ୍ଥିତ । ଏହାକୁ ନାକଚଣା ଦ୍ୱାର କୁହାଯାଏ । ଏହି ଦ୍ୱାର ସମ୍ପର୍କରେ ବିଭିନ୍ନ ଜନଶ୍ରୁତି ଶୁଣିବାକୁ ମିଳେ । ଇନ୍ଦ୍ରଦ୍ୟୁମ୍ନ ରାଣୀ ଗୁଣ୍ଡିଚା ଦେବୀ ନିଜର ନାକଚଣା (ସ୍ୱର୍ଣ୍ଣ, ହୀରା ଖଚିତ ମୂଲ୍ୟବାନ ରତ୍ନ ଅଳଙ୍କାର)କୁ ବିକ୍ରି କରି ସେହି ଅର୍ଥରେ ମନ୍ଦିରର ଏକ ଦ୍ୱାର ନିର୍ମାଣ କରିଥିଲେ । ତେଣୁ ଉକ୍ତ ଦ୍ୱାରର ନାମ ନାକଚଣା ରଖାଯାଇଛି ବୋଲି କେହି କେହି କହନ୍ତି । ଆଉ କେତେକ କହନ୍ତି ଯେ ହେରାପଞ୍ଚମୀ ଦିନ ଲକ୍ଷ୍ମୀ କ୍ରୋଧାନ୍ୱିତ ହୋଇ ପଶ୍ଚିମ ଦ୍ୱାର(ସିଂହଦ୍ୱାର) ବାଟେ ପ୍ରବେଶ କରି ଦକ୍ଷିଣ



ଦ୍ୱାରରେ ବାହାରିବା ସମୟରେ ଚଣାକୃତି ନାକ ଅଳଙ୍କାର ଦ୍ୱାର ନିକଟରେ ଖସିପଡିଥିଲା । ତେଣୁ ଦକ୍ଷିଣ ଦ୍ୱାରର ନାମ ନାକଚଣା ଦ୍ୱାର କୁହାଯାଏ । ନୃସିଂହ ମନ୍ଦିର ପାର୍ଶ୍ୱର ମୁଖ୍ୟ ପ୍ରାଚୀରରେ ଥିବା ଏକ କ୍ଷୁଦ୍ର ଦ୍ୱାରକୁ ଉତ୍ତର ଦ୍ୱାର କୁହାଯାଏ ।

ନାଟ ମନ୍ଦିର: ଜଗମୋହନର ପୂର୍ବ ସଂଲଗ୍ନରେ ରହିଛି ନାଟ ମନ୍ଦିର । ଭିତର ବେଢା ଅତିକ୍ରମ କରି ନାଟମନ୍ଦିରକୁ ଯିବା ପାଇଁ ରହିଛି ଦୁଇଟି ଦ୍ୱାର । ରଥରୁ ଓହ୍ଲାଇବା ପରେ ଗରୁଡସ୍ତମ୍ଭ ସମ୍ମୁଖରେ ଥିବା ଦ୍ୱାର ଦେଇ ଠାକୁରମାନେ ରତ୍ନବେଦୀକୁ ବିଜେ କରନ୍ତି । ଏହି ଦ୍ୱାର ଦେଇ ଭକ୍ତମାନେ ମଧ୍ୟ ନାଟମଣ୍ଡପ ଓ ଗରୁଡସ୍ତମ୍ଭ ନିକଟକୁ ଯାଇ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରିଥାନ୍ତି । ନାଟ ମଣ୍ଡପ ଛାତଟି ଚାରୋଟି ସ୍ତମ୍ଭ ଉପରେ ଅଧିଷ୍ଠିତ । ଗୋଟିକିଆ କଳାମୁଗୁନି ପଥରରେ ନିର୍ମିତ ପ୍ରତ୍ୟେକ ସ୍ତମ୍ଭର ଉଚ୍ଚତା ୨୫ଫୁଟ ।

ଭୋଗମଣ୍ଡପ: ନାଟ ମନ୍ଦିରକୁ ଲାଗିକରି ରହିଛି ଭୋଗ ମଣ୍ଡପ । ଏହାର ଲମ୍ବା ହେଉଛି ୫୫ଫୁଟ୍, ପ୍ରସ୍ଥ ୨୦ ଫୁଟ ଓ ଉଚ୍ଚତା ୨୫ଫୁଟ । ଭୋଗମଣ୍ଡପରେ ଗୋଟିଏ ଅଣଉଚ୍ଚା କାଠମଞ୍ଚା ରହିଛି । ଏହା ଉପରେ ଦୁଇହସ୍ତ ବିଶିଷ୍ଟ ଦେବୀଙ୍କ ମୂର୍ତ୍ତି ପୂଜା ପାଇଥାଏ । ଏହି ମୂର୍ତ୍ତି ରାଣୀ ଗୁଣ୍ଡିଚାଙ୍କର ପ୍ରତିମୂର୍ତ୍ତି ବୋଲି ପୂଜକମାନେ କହନ୍ତି । ତେବେ ଯାତ୍ରା ସମୟରେ ଏଇ ମୂର୍ତ୍ତିକୁ ଦ୍ୱାରବତୀ ନାମକ ସ୍ଥାନକୁ ସ୍ଥାନାନ୍ତର କରାଯାଏ ।

ରୋଷଘର: ଗୁଣ୍ଡିଚା ମନ୍ଦିରରେ ମଧ୍ୟ ରହିଛି ଏକ ବିଶାଳ ରୋଷଘର । ଏହା ଠିକ୍ ଶ୍ରୀମନ୍ଦିରର ରୋଷଘର ପରି । ଏଥିରେ ରହିଛି ଶତାଧିକ ତିନି ପ୍ରକାରର ଚୁଲି (ଅନ୍ନ ଚୁଲି, ଅହିଆ ଓ ପିଠାଚୁଲି) । ଏହି ରୋଷଶାଳାର ଲମ୍ବା ହେଉଛି ୧୯୫ ଫୁଟ ଓ ପ୍ରସ୍ଥ ୯୬ଫୁଟ । ରୋଷଘରକୁ ପ୍ରବେଶ ପାଇଁ ୬ଟି ପଥ ରହିଛି । ଏତେସବୁ ବ୍ୟବସ୍ଥା ସତ୍ତ୍ୱେ ବର୍ଷକରେ ଅଡିବେଶୀରେ ସାତଦିନ ପାଇଁ ଏଠାରେ ରନ୍ଧାରନ୍ଧି ହୁଏ ।

ଗୁଣ୍ଡିଚା ମନ୍ଦିରରେ ମହାପ୍ରସାଦ କିପରି ହୁଏ: ପ୍ରଥମେ ନୈବେଦ୍ୟ ବିମଳାଙ୍କୁ ସମର୍ପଣ ହେବା ପରେ ତାହା ମହାପ୍ରସାଦ ହୋଇଥାଏ । ତେବେ ବିମଳାଙ୍କ ମନ୍ଦିର ଗୁଣ୍ଡିଚା ମନ୍ଦିରରେ ନାହିଁ । ପୁଣି ଗୁଣ୍ଡିଚା ମନ୍ଦିର ରତ୍ନବେଦୀରେ ଭୂଦେବୀ, ଶ୍ରୀଦେବୀ ପୂଜିତ ହୋଇନଥାନ୍ତି । କାରଣ ସେମାନେ ମହାଲକ୍ଷ୍ମୀଙ୍କର ଅଂଶ ହୋଇଥିବାରୁ ଶ୍ରୀମନ୍ଦିରରେ ଥାନ୍ତି । ତେଣୁ ନବଦିନ ଯାତ୍ରା ସମୟରେ ଗୁଣ୍ଡିଚା ମନ୍ଦିରରେ ମହାପ୍ରସାଦ କିପରି ହୁଏ, ତାହା ସାଧାରଣରେ ପ୍ରଶ୍ନବାଚୀ ସୃଷ୍ଟି କରିଥାଏ । ଗୁଣ୍ଡିଚା ମଣ୍ଡପର ଜଗମୋହନର ଏକ ସ୍ତମ୍ଭରେ ବିମଳାଙ୍କ ସ୍ଥିତି କଳ୍ପନା କରାଯାଇଥିବାରୁ ସେଠାରେ ଅନ୍ନପ୍ରସାଦ ସମର୍ପଣ କରାଯାଏ । ପରେ ଥାଳି ଅନ୍ନ ଶ୍ରୀମନ୍ଦିରରେ ଥିବା ବିମଳାଙ୍କ ପାଖକୁ ଆସିଥାଏ । ଏଠାରେ ନୈବେଦ୍ୟ ପ୍ରଥମେ ସ୍ତମ୍ଭରୂପୀ ବିମଳାଙ୍କୁ ଅର୍ପଣ କରାଯାଉଥିବାରୁ ତାହା ମହାପ୍ରସାଦର ମର୍ଯ୍ୟାଦା ପାଇଥାଏ ।

ଭିତର ବେଢା: ଗୁଣ୍ଡିଚା ଘର ଭିତର ବେଢାଟି ସମୁଦାୟ ୮୯୬ ଡିସିମିଲ ଭୂମି ଉପରେ ଅବସ୍ଥିତ । ଏଥିରୁ ୧୬ ଡିସିମିଲ ଉପରେ ଶ୍ରୀଗୋପାଳଜୀଉଙ୍କ ବିଜେସ୍ଥଳୀ ରହିଛି । ଭିତର ବେଢାର ଡାହାଣ ପାର୍ଶ୍ୱରେ ରହିଛି ମୁକ୍ତିମଣ୍ଡପ । ଏହି ମଣ୍ଡପର ଲମ୍ବ ୧୬ହାତ ଏବଂ ଓସାର ୨୦ ହାତ । ଠାକୁରମାନେ ଗୁଣ୍ଡିଚା ଘରେ ଅବସ୍ଥାନ କରୁଥିବା ସମୟରେ ମୁକ୍ତିମଣ୍ଡପାଧିକାରୀ ବ୍ରାହ୍ମଣମାନେ ଏହି ମଣ୍ଡପରେ ବସିଥାନ୍ତି । ବାହୁଡା ଯାତ୍ରା ଦିନ ଠାକୁରମାନେ ପହଣ୍ଡି ବିଜେ ସମୟରେ ଏହି ମଣ୍ଡପ ଉପରେ ପନ୍ତୀ ଭୋଗ ଖାଇଥାନ୍ତି । ଭିତର ବେଢାରେ ଥିବା ସୂର୍ଯ୍ୟପୂଜା ମଣ୍ଡପରେ ସୂର୍ଯ୍ୟପୂଜା ନୀତି ଅନୁଷ୍ଠିତ ହୁଏ । ବୃନ୍ଦାବତୀ ଏବଂ ଗୌରାଙ୍ଗ ମହାପ୍ରଭୁଙ୍କ ପାଦ ଚିହ୍ନ ଥିବା କ୍ଷୁଦ୍ରାକୃତି ମନ୍ଦିର ବା ମଣ୍ଡପ ମଧ୍ୟ ଭିତରେ ବେଢା ମଧ୍ୟରେ ରହିଛି । ଗୁଣ୍ଡିଚା ଯାତ୍ରା ସମୟରେ ବ୍ରତ ପାଳନ କରୁଥିବା ଧର୍ମପ୍ରାଣ ବ୍ୟକ୍ତିମାନେ ଏହିଠାରେ ଅବସ୍ଥାନ କରନ୍ତି ।

ବାହାର ବେଢା: ଗୁଣ୍ଡିଚା ମନ୍ଦିର ଭିତର ବେଢାରୁ ବାହାର ବେଢାକୁ ଯିବା ପାଇଁ ଦୁଇଟି ଗୁମୁଟ ରହିଛି । ବାହାର ବେଢାର ନାକଚଣା ଦ୍ୱାରକୁ ଯିବାପୂର୍ବରୁ ଆନନ୍ଦ ବଜାର ରହିଛି । ଗୁଣ୍ଡିଚା ଯାତ୍ରା ସମୟରେ ଏହିଠାରେ ମହାପ୍ରସାଦ ବିକ୍ରି ହୋଇଥାଏ । ବାହାର ବେଢା ପ୍ରାଚୀରର ଲମ୍ବ ୪୩୦ଫୁଟ୍, ପ୍ରସ୍ଥ ୩୨୦ଫୁଟ ଏବଂ ପ୍ରାଚୀରର ଉଚ୍ଚତା ୨୦ଫୁଟ ।

ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ମଧ୍ୟରୁ ଶ୍ରୀଗୁଣ୍ଡିଚାଯାତ୍ରା ଶ୍ରେଷ୍ଠତମ । ଏହି ଯାତ୍ରା ଯେପରି ମହାନ୍ ସେହିପରି ପୁଣ୍ୟମୟ । ଏହି ଯାତ୍ରା ସମୟରେ ଏକପକ୍ଷରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଅପୂର୍ବ ମିଳନ ଘଟୁଥିବା ବେଳେ ଅନ୍ୟପକ୍ଷରେ ପ୍ରଭୁଙ୍କ ଜନ୍ମସ୍ଥାନ ହୋଇଉଠେ ଉତ୍ସବମୁଖର । ଆଷାଢ ମାସରେ ପ୍ରଭୁ ଜଗନ୍ନାଥଙ୍କ ସହିତ ବଡଠାକୁର ବଳଭଦ୍ର ଓ ଭଉଣୀ ଦେବୀ ସୁଭଦ୍ରା ବର୍ଷକୁ ଥରେ ରଥଚଢି ଯାତ୍ରା କରନ୍ତି ନିଜର ଜନ୍ମସ୍ଥାନ ପ୍ରିୟ ଗୁଣ୍ଡିଚା ମନ୍ଦିରକୁ । ଏହାକୁ ମନ୍ଦିର କୁହାଯାଉଥିଲେ ହେଁ ଏହା ପ୍ରକୃତରେ ଯଜ୍ଞମଣ୍ଡପ ବା ଯଜ୍ଞବେଦୀ । ଗୁଣ୍ଡିଚା ମନ୍ଦିରକୁ ବା ଗୁଣ୍ଡିଚା ଘରକୁ ଯଥାକ୍ରମେ ଆଡପମଣ୍ଡପ, ଯଜ୍ଞମଣ୍ଡପ, ମହାବେଦୀ, ଗୁଣ୍ଡିଚା ମଣ୍ଡପ, ଦାରୁବ୍ରହ୍ମଙ୍କ ଜନ୍ମସ୍ଥାନ ଓ ଜଳକାପୁରୀ କୁହାଯାଏ ।





ମହାରାଜା ଇନ୍ଦ୍ରଦ୍ୟୁମ୍ନ ଏହିଠାରେ ଯଜ୍ଞବେଦୀ ନିର୍ମାଣ କରି ଅଶ୍ୱମେଧ ଯଜ୍ଞ କରିଥିଲେ । ତେଣୁ ଏହି ସ୍ଥାନକୁ ଯଜ୍ଞବେଦୀ ବା ମହାବେଦୀ କୁହାଯାଏ । ଏହି ବେଦୀ ଉପରେ ରାଜା ଇନ୍ଦ୍ରଦ୍ୟୁମ୍ନ ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ଶ୍ରୀବିଷ୍ଣୁଙ୍କ ପ୍ରିତ୍ୟର୍ଥେ ଆହୁତି ପ୍ରଦାନ କରିଥିଲେ । ଏହି ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ଆଦି ନୃସିଂହଙ୍କୁ ପ୍ରତିଷ୍ଠା ପୂର୍ବକ ଯଜ୍ଞାନୁଷ୍ଠାନ କରିଥିଲେ । ତେଣୁ ଗୁଣ୍ଡିଚା ମନ୍ଦିର ସମେତ ଏହାର ସନ୍ନିକଟ ଦକ୍ଷିଣ ଭାଗରେ ଅବସ୍ଥିତ ନୃସିଂହ ମନ୍ଦିର ଅଞ୍ଚଳ ନୃସିଂହ କ୍ଷେତ୍ର ଭାବେ ପରିଚିତ ।

ଗୁଣ୍ଡିଚା ମନ୍ଦିରରେ ରଥ ଲାଗିବା ପରେ ଠାକୁରମାନଙ୍କୁ ଗୁଣ୍ଡିଚା ମଣ୍ଡପ ବା ଆଡପ ମଣ୍ଡପରେ ବିଜେ କରାଯାଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ଅର୍ଥାତ୍ ଶ୍ରୀଗୁଣ୍ଡିଚାରୁ ବାହୁଡା ଦଶମୀ ପର୍ଯ୍ୟନ୍ତ ନବଦିନ ବ୍ୟାପୀ ପ୍ରଭୁଙ୍କର ଏହି ଜନ୍ମସ୍ଥାନ ଯାତ୍ରା ସମୟରେ ଦାରୁବ୍ରହ୍ମ ସାତ ଦିନ ପାଇଁ ଆଡପ ମଣ୍ଡପରେ ଅବସ୍ଥାନ କରନ୍ତି । ଏହି ଯାତ୍ରା ନବଦିନର ହୋଇଥିଲେ ମଧ୍ୟ ଶ୍ରୀଗୁଣ୍ଡିଚା ଯାତ୍ରା ଓ ବାହୁଡା ଯାତ୍ରା ଦିନକୁ ବାଦଦେଲେ ଅବଶିଷ୍ଟ ସାତ ଦିନ ପାଇଁ ପ୍ରଭୁ ଶ୍ରୀଗୁଣ୍ଡିଚା ମନ୍ଦିରରେ ଅବସ୍ଥାନ କରନ୍ତି । ଗୁଣ୍ଡିଚା ମନ୍ଦିରରେ ଉପବେଶନ ସମୟରେ ଶ୍ରୀଜଗନ୍ନାଥ ଓ ଆଦିନୃସିଂହଙ୍କ ଅପୂର୍ବ ମିଳନ ଘଟିଥାଏ । ଏହି ଅପୂର୍ବ ସମାରୋହ ଗୁଣ୍ଡିଚା ମଣ୍ଡପ ପରିସରରେ ହେଉଥିବାରୁ ଏହି ସ୍ଥାନ ଅତିପବିତ୍ର ତଥା ପୁଣ୍ୟମୟ । ଅତଏବ ଚତୁର୍ଦ୍ଧା ମୂର୍ତ୍ତିଙ୍କର ଆଷାଢ଼ ଶୁକ୍ଳ ତୃତୀୟାରୁ ଗୁଣ୍ଡିଚା ମନ୍ଦିରରେ ଯେଉଁ ରହଣୀ ହୁଏ, ସେହି ସମୟରେ ଶ୍ରୀଜୀଉମାନଙ୍କର ଶ୍ରୀମନ୍ଦିରର ପ୍ରଥା ପରମ୍ପରା ଓ ରୀତିନୀତି ଅନୁସାରେ ଗୁଣ୍ଡିଚା ମନ୍ଦିରରେ ମଧ୍ୟ ଠିକ୍ ସେହିପରି ଉପଚାରରେ ନୀତି ସମ୍ପାଦିତ ହୋଇଥାଏ ।

ହେରାପଞ୍ଚମୀ: ଶ୍ରୀଜୀଉମାନଙ୍କ ଗୁଣ୍ଡିଚା ମନ୍ଦିରରେ ରହଣି ସମୟର ମୁଖ୍ୟ ଆକର୍ଷଣ ହେଉଛି ହେରାପଞ୍ଚମୀ । ଶ୍ରୀଜଗନ୍ନାଥ ଗୁଣ୍ଡିଚା ଘରେ ପାଦ ଦେବାର ଦୁଇ ଦିନ ନପୁରୁଣୁ ଲକ୍ଷ୍ମୀ ଆସନ୍ତି ଅଭିମାନ ଓ କ୍ରୋଧରେ ଜର୍ଜରିତା ହୋଇ । ସେ ଆସନ୍ତି ହେରାପଞ୍ଚମୀ ଦିନ ସନ୍ଧ୍ୟା ଧୂପ ପୂର୍ବରୁ । ହେରାପଞ୍ଚମୀ ବେଳକୁ ରତ୍ନ ସିଂହାସନରେ ବସୁଥିବା ଲକ୍ଷ୍ମୀ ସତେ ଯେମିତି ଅତିଷ୍ଠ ହୋଇ ଉଠନ୍ତି ପ୍ରଭୁଙ୍କ ବିଚ୍ଛେଦ ବେଦନାରେ । ତେଣୁ ପାଲିଙ୍କିରେ ଚଢ଼ି ଶ୍ରୀମନ୍ଦିରରୁ ବାହାରି ଆସନ୍ତି ଗୁଣ୍ଡିଚା ମନ୍ଦିରକୁ । ଲକ୍ଷ୍ମୀ ପହଞ୍ଚିବା ମାତ୍ରେ ପୂଜାପଣ୍ଡାମାନେ ତାଙ୍କୁ ବନ୍ଦାପନା କରନ୍ତି । ତେବେ ପ୍ରଭୁଙ୍କ ଉପରେ ଅଭିମାନ କରିଥିବା ଲକ୍ଷ୍ମୀ ନନ୍ଦିଘୋଷ ରଥର ଏକ କାଠକୁ ଭାଙ୍ଗି ଦିଅନ୍ତି । ଏହାପରେ ଲକ୍ଷ୍ମୀ ଯାଆନ୍ତି ଗୁଣ୍ଡିଚା ଘରକୁ । ଗୁଣ୍ଡିଚା ଘରେ ସେତେବେଳେ ତିନି ଦିଅଁଙ୍କ ପାଇଁ ସନ୍ଧ୍ୟା ଧୂପର ଆୟୋଜନ ହୋଇଥାଏ । ଗର୍ଭଗୃହର ସିଂହାସନ ଆଗରେ ବଢ଼ା ଯାଇଥାଏ ଅନ୍ନଭୋଗ । ଏହି ସମୟରେ ଦ୍ୱାର ମୁହଁରେ ପାଲିଙ୍କିରେ ଚଢ଼ି ଦେବୀ ପହଞ୍ଚନ୍ତି । ଶ୍ରୀଜଗନ୍ନାଥଙ୍କ କିଛି ଅଙ୍ଗଲାଗି ଫୁଲ ଆଣି ଲକ୍ଷ୍ମୀଙ୍କୁ ଅର୍ପଣ କରାଯାଏ । ଜଗନ୍ନାଥ ଓ ଲକ୍ଷ୍ମୀଙ୍କୁ ପୂଜା କରାଯିବା ପରେ ସେ ଶ୍ରୀମନ୍ଦିରକୁ ହେରାଗୋହିରୀ ସାହି ଦେଇ ବାହୁଡ଼ି ଯାଆନ୍ତି ।

ଅନ୍ୟାନ୍ୟ ନୀତି: ଏହି ରୀତି ଛଡା ଗୁଣ୍ଡିଚା ଘରେ ମହାପ୍ରଭୁ ବିଜେ କରିବା ସମୟରେ ଆଉ ବିଶେଷ କିଛି ରୀତି ଆୟୋଜିତ ହୁଏନାହିଁ । ତେବେ ପ୍ରତିଦିନ ତିନି ଠାକୁରଙ୍କର 'ଯାତ୍ରୀଙ୍ଗୀ ମହାସ୍ନାନ' ନାମରେ ଏକ ପ୍ରକାର ସ୍ନାନ ହୁଏ । ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥିରେ ସନ୍ଧ୍ୟାଧୂପ ସରିବା ପରେ ମଦନ ମୋହନଙ୍କୁ ନେଇ ଜଗମୋହନରେ ଏକ ସିଂହାସନ ଉପରେ ରଖାଯାଏ । ସେଠାରେ ତାଙ୍କୁ କୋରାଭୋଗ ଅର୍ପଣ କରାଯାଏ । ନବମୀରେ ସକାଳ ଧୂପ ପରେ ଘଣ୍ଟା ବାଜି, ଛତ୍ରୀ ସହ ଗୋଟିଏ ଧୂପ ଦିଅଁମାନଙ୍କୁ ଅର୍ପଣ କରାଯାଏ । ଏହି ଭୋଗକୁ ଘଣ୍ଟଛତା ଭୋଗ ବୋଲି କୁହାଯାଏ ।

ଧ୍ୱଜପୂଜା: ଗୁଣ୍ଡିଚା ମନ୍ଦିରରେ ମହାପ୍ରଭୁ ବିଜେ କରିଥିବା ବେଳେ ତିନି ରଥରେ ଧ୍ୱଜକୁ ପୂଜା କରାଯାଏ । ରଥତ୍ରୟର ଧ୍ୱଜ ପୂଜା ପାଇଁ ପତ୍ରିବଡୁ ରଥକୁ ଭୋଗ ନିଅନ୍ତି ଓ ପୂଜାପଣ୍ଡା ଭୋଗ କରନ୍ତି । ଗୁଣ୍ଡିଚା ମନ୍ଦିରରେ ପ୍ରଭୁଙ୍କ ମଧ୍ୟାହ୍ନ ଧୂପ ସରିବା ପରେ ଧ୍ୱଜପୂଜା ନୀତି କରାଯାଏ ।

ରଥ ଦକ୍ଷିଣ ମୋଡ: ହେରାପଞ୍ଚମୀ ପରଦିନ ତିନିରଥ ଦକ୍ଷିଣ ମୋଡ ହୋଇଥାଏ । ଉକ୍ତ ଦିନ ସକାଳ ଧୂପ ନୀତି ସମାପନ ପରେ ତିନି ରଥ ପାଇଁ ଆଜ୍ଞାମାଳ ବିଜେ କରାଯାଇ ରଥଟଣା କାର୍ଯ୍ୟକ୍ରମ ଆରମ୍ଭ ହୋଇଥାଏ । ଗୁଣ୍ଡିଚା ମନ୍ଦିର ସିଂହଦ୍ୱାର ସମ୍ମୁଖରୁ ତିନି ରଥ ଯାକ ଦକ୍ଷିଣ ମୋଡ ହୋଇ ନାକଚଣା ଦ୍ୱାରା ସମ୍ମୁଖରେ ରଖାଯାଇଥାଏ ।

ଗୁଣ୍ଡିଚା ଘରେ ତିନି ଠାକୁରଙ୍କୁ ଅର୍ପିତ ଅମୁଁଣିଆ ସାମଗ୍ରୀରେ ଚାଉଳ ଚୂନା ଓ ଗୁଡରେ ବିଶେଷ ଭାବେ ପ୍ରସ୍ତୁତ 'ଟାକୁଆ' ଦୈନିକ ଅର୍ପଣ କରାଯାଏ । ମୋଟ ଉପରେ ଏଠାକାର ଭୋଗ ଓ ମହାପ୍ରସାଦ ବଡଦେଉଳ ପରି ।

ଶ୍ରୀଗୁଣ୍ଡିଚା ଯାତ୍ରାକୁ ଦଶାବତାର ଯାତ୍ରା
କାହିଁକି କୁହାଯାଏ ?

ବିଭିନ୍ନ ପୁରାଣରେ ରଥଯାତ୍ରାକୁ ଯେଉଁ ନାମରେ ନାମିତ କରାଯାଇଛି, ସେଥିମଧ୍ୟରୁ ଦଶାବତାର ଯାତ୍ରା ଅନ୍ୟତମ ।




ରଥଯାତ୍ରା ସମୟରେ ଜଗନ୍ନାଥ ଦଶ ଅବତାର ଧାରଣ କରିଥିବାରୁ ଏହି ଯାତ୍ରାକୁ ଦଶାବତାର ଯାତ୍ରା ବୋଲି ଅନେକ କହନ୍ତି । ଆଉ କେତେକଙ୍କ ମତରେ ରଥଯାତ୍ରା ସମୟରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ସହିତ ବାସୁଦେବ, ଜୟଦୁର୍ଗା, ଯୋଗମାୟା, ମଦନମୋହନ, ରାମ ଓ କୃଷ୍ଣ– ଏହି ଦଶମୂର୍ତ୍ତି ରଥରେ ବସି ଯାତ୍ରା କରୁଥିବାରୁ ଏହାକୁ ଦଶାବତାର ଯାତ୍ରା କୁହାଯାଏ । ଅନ୍ୟ କେହି ପୁରୀ ବା ଶ୍ରୀକ୍ଷେତ୍ରକୁ ଦଶ ଅବତାର କ୍ଷେତ୍ର କହି ତାଙ୍କର ଯାତ୍ରାକୁ ଦଶାବତାର ଯାତ୍ରା ମଧ୍ୟ କହିଥାନ୍ତି ।

ଆଡପ ମଣ୍ଡପରେ ପ୍ରଭୁ ଦର୍ଶନର ପୁଣ୍ୟଫଳ

ମହାବେଦୀରେ ଜଗନ୍ନାଥଙ୍କ ଅବସ୍ଥିତିକୁ ମହାବେଦୀ ଯୋଗ କୁହାଯାଏ । ଏହା ଅତି ପବିତ୍ର ସମୟ । ମଘା ନକ୍ଷତ୍ରଯୁକ୍ତ ଶୁକ୍ଳ ପଞ୍ଚମୀ ଦିନ ଶ୍ରାଦ୍ଧ କଲେ ପିତୃପୁରୁଷ ପରମ ସନ୍ତୋଷ ଲାଭ କରନ୍ତି । ଆଷାଢ ଶୁକ୍ଳ ପଞ୍ଚମୀ ତିଥି, ମଘା ନକ୍ଷତ୍ର ଓ ଜଗନ୍ନାଥଙ୍କ ମହାବେଦୀ ସମାଗମ ଏହି ତିନି ମହାବେଦୀ ଯୋଗର ତ୍ରିପାଦ ସ୍ୱରୂପ ।

ଠାକୁରମାନେ ଗୁଣ୍ଡିଚା ମଣ୍ଡପରେ ବିଜେ ସମୟରେ ବନ ଜାଗରଣ ବ୍ରତ ପାଳନ କଲେ ମହାପୁଣ୍ୟ ହୁଏ । ଶୁକ୍ଳ ଦ୍ୱିତୀୟା ଦିନ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ସ୍ନାନ କରି ଶ୍ରୀ ନୃସିଂହ ଦେବଙ୍କଠାରେ ସଂକଳ୍ପ ବ୍ରତ କରାଯାଏ । ଏହାକୁ ମହାବେଦୀ ମହୋତ୍ସବ ବ୍ରତ ମଧ୍ୟ କୁହାଯାଏ । ଶ୍ରୀଗୁଣ୍ଡିଚା ସମୟରେ ବ୍ରତଚାରିଣୀମାନେ ଏଠାରେ ଆଷାଢ ଶୁକ୍ଳ ତୃତୀୟାଠାରୁ ନବମୀ ପର୍ଯ୍ୟନ୍ତ ସପ୍ତମ ଦିବସ ବ୍ରତ ପାଳନ କରିଥାନ୍ତି ।

ନବମୀ ଦିନଟି ସନ୍ଧ୍ୟା ଦର୍ଶନ ଭାବେ ପରିଚିତ । ସାଧାରଣ ଦିନ ନୀତି ଭଳି ଯାତ୍ରାଙ୍ଗୀ ମହାସ୍ନାନ ଶେଷ ହେବା ପରେ ସର୍ବାଙ୍ଗ ଓ ରାହସକୁ ଦିଅଁ ବିଜେ, ପହୁଡ ଆରତୀ, ଶ୍ରୀମୁଖ ଖଣ୍ଡୁଆ ଆଦି ନୀତି ଅଧିକା ହୋଇଥାଏ । ଉକ୍ତ ଦିନ ଗୁପ୍ତ ନୀତି ଥିବାରୁ ରାତି ପ୍ରାୟ ୯ଟା ପରେ ସର୍ବସାଧାରଣ ଦର୍ଶନ ବନ୍ଦ ରଖାଯାଏ । ଏହି ଦିନରେ ପ୍ରତ୍ୟେକ ସନାତନ ଧର୍ମୀ ହିନ୍ଦୁ ଲୋକଙ୍କର ବିଶ୍ୱାସ ରହିଛି ଯେ ଶ୍ରୀମନ୍ଦିରରେ ଦଶବର୍ଷ ଦର୍ଶନ କଲେ ଯାହା ଫଳ ମିଳେ ଗୁଣ୍ଡିଚା ମଣ୍ଡପ ବା ଆଡପ ମଣ୍ଡପରେ ଗୋଟିଏ ଦିନ ଦର୍ଶନରେ ସେତିକି ଫଳ ମିଳେ । ବିଶେଷ କରି ଦିନରେ ଦର୍ଶନ କରିବା ଅପେକ୍ଷା ରାତିରେ ଦର୍ଶନ କଲେ ତା'ର ଦଶଗୁଣ ଅଧିକ ପୁଣ୍ୟ ହୋଇଥାଏ । ସେଥିପାଇଁ ଏପରି କୁହାଯାଇଛି–

ନୀଳାଦ୍ରୌ ଦଶବର୍ଷାଣି, ଆଡପ ମଣ୍ଡପେ ଦିନେ ।
ଦିବାତଦର୍ଶନଂ ପୁଣ୍ୟଃ, ରାତ୍ରୌ ଦଶଗୁଣ ଭବେତ୍ ॥

ସେ ଯାହା ହେଉନା କାହିଁକି ଶ୍ରୀଜଗନ୍ନାଥଙ୍କ ପରିକଳ୍ପନା ବହୁ ପ୍ରାଚୀନ । ସର୍ବପ୍ରାଚୀନ କୁହାଯାଉଥିବା 'ବ୍ରହ୍ମପୁରାଣ'ରେ ଜଗନ୍ନାଥଙ୍କର ଆବିର୍ଭାବ ସମ୍ପର୍କରେ ସୂଚନା ମିଳେ ଯେ 'ପୂର୍ଣ୍ଣାନନ୍ଦମୟଂ ବ୍ରହ୍ମ ଦାରୁବ୍ୟାଜ ଶରୀର ଧୃକ୍' । ଏହା ବ୍ୟତୀତ ସାରଳା ଦାସଙ୍କ ଦ୍ୱାରା ରଚନା କରାଯାଇଥିବା ମହାଭାରତରୁ ଉଦ୍ଧୃତ ଶ୍ରୀବିଷ୍ଣୁ ସହସ୍ରନାମରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ପରିକଳ୍ପନା କରାଯାଇ ଏପରି କୁହାଯାଇଛି ଯେ– 'ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ' । ଜଗନ୍ନାଥ ହେଉଛନ୍ତି ବିଶ୍ୱର ଅନନ୍ୟ ଦେବତା ଯାହାକୁ ଦର୍ଶନ ମାତ୍ରକେ କଲ୍ୟାଣ ମିଳେ । ଜଗନ୍ନାଥ ହେଉଛନ୍ତି ଶୂନ୍ୟ ଦେବତା । ପୂର୍ଣ୍ଣବ୍ରହ୍ମ । ତେଣୁ ଏହି ଦାରୁ ଦେବତାଙ୍କର ଆଖି ଗୋଲ, ପେଟ ଗୋଲ, ହାତ ଗୋଲ, ପାଦ ମଧ୍ୟ ଗୋଲ । ଏ ସମସ୍ତ ଶୂନ୍ୟବାଦର ପ୍ରତୀକ ଏବଂ ନିଜକୁ ଶୂନ୍ୟ ନକଲେ ବା ତାଙ୍କଠାରେ ନିଜକୁ ସମର୍ପଣ ନକଲେ ତାଙ୍କୁ ଚିହ୍ନିବା ଅସମ୍ଭବ । ତେଣୁ ପ୍ରତ୍ୟେକ ମଣିଷ ତା'ର ସୂକ୍ଷ୍ମ ଶରୀରର ଚର୍ମ ଚକ୍ଷୁରେ ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରି ସାନ୍ନିଧ ଲାଭ କରିବା ଦରକାର । ଅଚ୍ୟୁତାନନ୍ଦଙ୍କ ଭାଷାରେ:

ଆଖିକୁ ଆଖିରେ ଦେଖରେ ବାବୁ ।
ଆଖିସେବି ଚକାଆଖି ପାଇବୁ ॥

ଦଶମୀ ଦିନ ମଙ୍ଗଳ ଆରତୀ, ଅବକାଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ସକାଳ ଧୂପ ନୀତି ସରିବା ପରେ ବାହୁଡା ପହଣ୍ଡିରେ ଠାକୁରମାନେ ରଥାରୂଢ ହୋଇ ଶ୍ରୀମନ୍ଦିର ଅଭିମୁଖେ ଯାତ୍ରା କରନ୍ତି ।

ଲକ୍ଷ ଲକ୍ଷ ଭକ୍ତ ବ୍ରତଚାରିଣୀମାନେ ଆଡପ ମଣ୍ଡପରେ ମହାପ୍ରଭୁଙ୍କୁ ଦର୍ଶନ କରି ବ୍ରାହ୍ମଣଠୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତଙ୍କୁ ମହାପ୍ରସାଦ ଭୋଜନ ଦେଇ ଆତ୍ମତୃପ୍ତି ଲାଭ କରିବା ସହ ପୁଣ୍ୟ ଅର୍ଜନ କରନ୍ତି । ଏହି ସମୟରେ ପିତୃଗଣଙ୍କ ପ୍ରୀତ୍ୟାର୍ଥେ ବ୍ରାହ୍ମଣମାନଙ୍କୁ ଭୋଜନ ବା ମହାପ୍ରସାଦ ସେବା କରିବା ବିଧି ରହିଛି । ସମଗ୍ର ସନାତନ ଧର୍ମୀ ହିନ୍ଦୁମାନଙ୍କ ପାଇଁ ଏହି ନଅ ଦିନ ସମୟ ହେଉଛି ପୁଣ୍ୟ ଲାଭ ନିମନ୍ତେ ଏକ ପ୍ରଗାଢ ଧର୍ମ ବିଶ୍ୱାସର ସମୟ ।

ସମ୍ପାଦକ, ପବ୍ଲିକ ଟ୍ରଷ୍ଟ ଅଫ୍ ଇଣ୍ଡିଆ
ଇ–୨୦୮, ୟୁନିଟ୍–୮, ଭୁବନେଶ୍ୱର–୧୨




# ରଥୀ ରଥ ଓ ରଥଯାତ୍ରା

**ଡକ୍ଟର ଗଣେଶ୍ୱର ସ୍ୱାଇଁ**

ଓଡ଼ିଆ ଜାତିର ଆରାଧ୍ୟ ଠାକୁର, କୋଟି କୈବଲ୍ୟନାଥ, ଭକ୍ତ ଜନ ବାନ୍ଧବ ମହାପ୍ରଭୁ ଶ୍ରୀଜଗନ୍ନାଥ ବିପୁଳ ଭୁଜ ବିସ୍ତାର କରି ଆଲିଙ୍ଗନ ମୁଦ୍ରାରେ ସକଳ ବିଶ୍ୱବାସୀଙ୍କୁ ପ୍ରତୀକ୍ଷମାଣ । ଭାରତର ଦକ୍ଷିଣ ସିନ୍ଧୁ ତଟ ଦେଶସ୍ଥ ଭୂସ୍ୱର୍ଗ ପୁରୁଷୋତ୍ତମ କ୍ଷେତ୍ରରେ ରାଜାଧିରାଜ, ଦେବାଧିଦେବ ମହାପ୍ରଭୁ କାହିଁ କେଉଁ ଅନାଦି କାଳରୁ ଦାରୁବ୍ରହ୍ମ ରୂପେ ପୂଜିତ । ଚାରିଧାମ ମଧ୍ୟରୁ ପ୍ରମୁଖ ଧାମ ଭୋଗକ୍ଷେତ୍ର, ଐଶ୍ୱର୍ଯ୍ୟ ବିମଣ୍ଡିତ, ଆର୍ଯ୍ୟ ଅନାର୍ଯ୍ୟଙ୍କ ମିଳନ ସ୍ଥଳ ଶ୍ରୀକ୍ଷେତ୍ର ପୁରୀ । ଭକ୍ତ ଜନଙ୍କ ଆଗମନରେ ମହାପ୍ରଭୁ ଯେତିକି ଚଳଚଞ୍ଚଳ ଏହାର ଜଳ, ସ୍ଥଳ, ଅନ୍ତରୀକ୍ଷ ମଧ୍ୟ ସେତିକି ବୈଭବ ବିମଣ୍ଡିତ ତଥା ଗୌରବାନ୍ୱିତ । ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏଠି ଏକାକାର । ଭକ୍ତ ଜନମାନଙ୍କ ସହ ଖେଳାଲୀଳା କରିବା ପାଇଁ ମହାପ୍ରଭୁ ବାରମାସରେ ତେର ଯାତ୍ରା ଭିଆଣ କରିଛନ୍ତି । ଏମାନଙ୍କ ମଧ୍ୟରେ ଶ୍ରୀଗୁଣ୍ଡିଚା ଯାତ୍ରା ବା ରଥଯାତ୍ରା ସର୍ବୋତ୍କୃଷ୍ଟ ।



ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ମହାପ୍ରଭୁ ଶ୍ରୀଜଗନ୍ନାଥ ରତ୍ନ ସିଂହାସନ ପରିତ୍ୟାଗ କରି ସହସ୍ର ଜନତାଙ୍କ ଅଭିବାଦନ ଗ୍ରହଣ ନିମନ୍ତେ ବଡ ଦାଣ୍ଡକୁ ଓହ୍ଲାଇ ଆସନ୍ତି ।

''ସ୍ନାନ ଗୁଣ୍ଡିଚାଏ ବେନି ସ୍ୱୟଂ ଲୀଳା ଯା'ର
ପତିତପାବନ ଅର୍ଥେ ପ୍ରାସାଦୁ ବାହାର ।''

ଶ୍ରୀକ୍ଷେତ୍ର ହୋଇଯାଏ ଲୋକାରଣ୍ୟ, ଅତ୍ରତତ୍ର, ସର୍ବତ୍ର ଜଗନ୍ନାଥମୟ । ଏଠି ରଥ ଦେବତା ପଥ ଦେବତା ଅପୂର୍ବ ଦୃଶ୍ୟ ତଥା ଭାବକୁ ଅନୁଭବ କରିବା ପାଇଁ ବିଶ୍ୱର ବିଭିନ୍ନ ଦେଶର ବହୁ ଭକ୍ତ ଜନମାନେ ପୁରୀକୁ ଆଗମନ କରିଥା'ନ୍ତି । ପ୍ରାଚୀନ ଧର୍ମ ଶାସ୍ତ୍ର କଠୋପନିଷଦରେ ଉଲ୍ଲେଖ ଅଛି– ମଣିଷ ଶରୀର ଏକ ରଥ । ଉକ୍ତ ରଥକୁ ଯେ ଚଳାଉଛନ୍ତି, ସେ ହଉଛନ୍ତି ରଥୀ ସ୍ୱୟଂ ଶ୍ରୀଜଗନ୍ନାଥ ।

''ଆତ୍ମାନଂ ରଥିନଂ ବିଦ୍ଧି
ଶରୀରଂ ରଥମେବତୁ
ବୁଦ୍ଧିଂତୁ ସାରଥୀଂ ବିଦ୍ଧିଂ ମନଃ ପ୍ରଗ୍ରହମେବଚ ।''

ପଞ୍ଚଦଶ ଶତାବ୍ଦୀର ମୂର୍ଦ୍ଧନ୍ୟ ପ୍ରତିଭା, ନେମାଳ ମଠର ମହନ୍ତ ଅଚ୍ୟୁତାନନ୍ଦ ମହାପୁରୁଷ କହିଲେ ପ୍ରଭୁ ଆପଣଙ୍କ ରଥକୁ ଭକ୍ତଜନମାନେ ବଡଦାଣ୍ଡରେ ଟାଣୁଛନ୍ତି । ମୋ' ଜୀବନ ନନ୍ଦିଘୋଷକୁ ମୋ' ଭାଇ ବନ୍ଧୁ କୁଟୁମ୍ବମାନେ ମୋ' ଗାଁ ଦାଣ୍ଡରେ ଟାଣିନେବା ବେଳେ ଆପଣଙ୍କ ନାମକୁ ଜପିଜପି ସଂସାରରୁ ବିଦାୟ ନେବି ।




ଦିବସେ ମରଣ ହେବ
ଯମ ଦଣ୍ଡ ଆଉ ମୋତେ ନହେବ ହେ
ରାଧାଗୋବିନ୍ଦ
ଏତିକି ସୁଦୟା ଥିବ ହେ...(୧)
ହରେକୃଷ୍ଣ ହରେରାମ
ନିତି ଜପୁଥିବି ତୁମରି ନାମ ହେ
ରାଧା ଗୋବିନ୍ଦ
ଜୀବ ହେବ ପରିତ୍ରାଣ ହେ...(୨)

ପତିତ ଜନଙ୍କୁ ଉଦ୍ଧାର ପାଇଁ ମହାପ୍ରଭୁ ଶ୍ରୀଜଗନ୍ନାଥ କାମପାଳ ବଳଭଦ୍ର, କାମ୍ପିଲ୍ୟ ବାସିନୀ ମା' ସୁଭଦ୍ରା ତିନୋଟି ରଥରେ ବିରାଜମାନ କରି ଅଗଣିତ ଭକ୍ତଜନଙ୍କ ଗହଣରେ ଯାତ୍ରା କରିଥା'ନ୍ତି । ଯାହାକି ପ୍ରସିଦ୍ଧ ଘୋଷଯାତ୍ରା ବା ରଥଯାତ୍ରା ନାମରେ ସର୍ବଜନ ବିଦିତ । ଭକ୍ତ ଭଗବାନ ଧୂଳି ଧରିତ୍ରୀ ବକ୍ଷରେ ଏକାକାର । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥର ନାମ ଗରୁଡଧ୍ୱଜ ବା ନନ୍ଦିଘୋଷ । ଏହାର ଉଚ୍ଚତା ୩୩ହାତ ୫ଆଙ୍ଗୁଳ, ୮୩୨ ଖଣ୍ଡ କାଠରେ ରଥ ନିର୍ମିତ । ୧୬ଟି ଚକ, ରଥର ସାରଥୀ ଦାରୁକ । ୪ଟି ଶ୍ୱେତ ଅଶ୍ୱ ଯଥା ଶଙ୍ଖ ବଳାହକ ଶ୍ୱେତ ହରିତାଶ୍ୱ ଉକ୍ତ ରଥକୁ ଭିଡିଥା'ନ୍ତି । ରଥ ଉପରେ କପିକେତନ ଫରଫର ହୋଇ ଉଡୁଥାଏ । ରକ୍ତ ପୀତ ବସ୍ତ୍ରରେ ରଥଟି ସମ୍ପୂର୍ଣ୍ଣ ଆବୃତ୍ତ ହୋଇ ଅପୂର୍ବ ଶୋଭାଶ୍ରୀରେ ଜନମାନସକୁ ଆକୃଷ୍ଟ କରେ । ଚତୁଃପାର୍ଶ୍ୱରେ ନବଦେବତା ଶ୍ରୀରାମ, ଲକ୍ଷ୍ମଣ, ହନୁମାନ, ନାରାୟଣ, ଶ୍ରୀକୃଷ୍ଣ, ଗୋବର୍ଦ୍ଧନଧାରୀ, ଚିନ୍ତାମଣି, ରାଘବ ଓ ନୃସିଂହ ବିରାଜମାନ କରିଥାନ୍ତି । ଦେବରାଜ ଇନ୍ଦ୍ର ଉକ୍ତ ନନ୍ଦିଘୋଷ ରଥକୁ ନିର୍ମାଣ କରି ଜଗନ୍ନାଥ ମହାପ୍ରଭୁଙ୍କୁ ଭେଟି ଦେଇଥିବାର ପ୍ରମାଣ ପୁରାଣରେ ବର୍ଣ୍ଣିତ ।

କାମପାଳ ବଳଭଦ୍ରଙ୍କ ରଥକୁ ଦେବତାମାନେ ତାଳବଣରେ ପ୍ରଦାନ କରିଥିବାରୁ ରଥର ନାମ ତାଳଧ୍ୱଜ । ଉଚ୍ଚତା ୩୨ହାତ ୧୦ ଆଙ୍ଗୁଳ, ୭୬୩ ଖଣ୍ଡ କାଠରେ ନିର୍ମିତ । ୧୪ଚକ ବିଶିଷ୍ଟ ଉକ୍ତ ରଥକୁ ୪ଟି ଅଶ୍ୱ ଯଥା ତୀବ୍ର, ଘୋର, ଦୀର୍ଘ, ସ୍ୱର୍ଣ୍ଣନାଭ ଭିଡିଥା'ନ୍ତି । ନନ୍ଦସୁନନ୍ଦ ଏହାର ଦ୍ୱାରପାଳ । ସାରଥୀ ପ୍ରଦ୍ୟୁମ୍ନ । ଲାଲ ଓ ଶାଗୁଆ ବସ୍ତ୍ରରେ ଆବୃତ୍ତ ରଥରେ ବିରାଜମାନ କରିଥା'ନ୍ତି ଅଷ୍ଟଦେବତା । ଯଥା ଗଦାନ୍ତକାରୀ ହରିହର, ତ୍ରୈମ୍ବୁକ, ବାସୁଦେବ ନାଟାମ୍ବର, ଅଘୋର ତ୍ରିପୁରାରୀ ଶିବ ।

ମା' ସୁଭଦ୍ରାଙ୍କ ରଥର ନାମ ପଦ୍ମଧ୍ୱଜ ବା ଦର୍ପଦଳନ । ଉଚ୍ଚତା ୩୧ହାତ, ୫୯୩ଖଣ୍ଡ କାଠରେ ନିର୍ମିତ । ୧୨ଚକ ବିଶିଷ୍ଟ ରଥର ରକ୍ଷକ ଉଗ୍ରଚଣ୍ଡୀ, ସାରଥୀଙ୍କ ନାମ ଅର୍ଜୁନ । ଉକ୍ତ ରଥରେ ୪ଟି କଷରା ବର୍ଣ୍ଣର ଅଶ୍ୱ ଯଥା ରୁଚିକା, ମୃଚିକା, ଜିତା, ଅପରାଜିତା ଯୋଚା ହୋଇଥା'ନ୍ତି । ଦ୍ୱାରପାଳ ଘୋରା ଓ ଅଘୋରା । ଚତୁଃପାର୍ଶ୍ୱରେ ନବ ମହାଶକ୍ତି ଯଥା ବିମଳା, ଚାମୁଣ୍ଡା, ଭଦ୍ରକାଳି, ହରଚଣ୍ଡିକା, ମଙ୍ଗଳା, ବରାହୀ, କାତାୟାନୀ, ଜୟଦୁର୍ଗା ଓ କାଳି ବିରାଜମାନ କରିଥା'ନ୍ତି ।

ଉକ୍ତ ରଥର ସୃଷ୍ଟି ସମ୍ପର୍କରେ ବିଭିନ୍ନ ପୁରାଣ ଶାସ୍ତ୍ରରୁ କିଞ୍ଚିତ ଆଭାସ ମିଳେ । ''ଶତପଥ ବ୍ରାହ୍ମଣ''ରୁ ଜଣାଯାଏ ଦେବରାଜ ଇନ୍ଦ୍ର, ବୃତ୍ରାସୁର ସହ ଯୁଦ୍ଧ କରୁଥିବା ସମୟରେ କ୍ରୋଧ ବସତଃ ବଜ୍ର ନିକ୍ଷେପ କରନ୍ତେ । ଉକ୍ତ ବଜ୍ର ୪ ଭାଗରେ ବିଭକ୍ତ ହେଲା, ଯଥା– ସ୍ୟ, ସୂପ, ରଥ ଓ ଶର ତୃତୀୟ ଖଣ୍ଡ ରଥ ରୂପରେ ମର୍ତ୍ତ୍ୟରେ ବ୍ୟବହୃତ ହେଲା । ଏପରିକି ରଥ ବେଦର ପ୍ରାଚୀନତମ ଯାନ ଓ ରଥଯାତ୍ରା ବୈଦିକ ସଂସ୍କୃତିର ବଳିଷ୍ଠ ଅଙ୍ଗ । ବୈଦିକ ଯୁଗରୁ ରଥ ଯାତ୍ରାର ଅୟାରମ୍ଭ ହୋଇଥିବା ପ୍ରମାଣ ଦୃଷ୍ଟିଗୋଚର ହୁଏ । ଋକ୍‌ବେଦରେ ଉଲ୍ଲେଖ ଅଛି ସୂର୍ଯ୍ୟଦେବ ଏକ ଚକ୍ର ବିଶିଷ୍ଟ ସପ୍ତଅଶ୍ୱଯୁକ୍ତ ସବିତା ନାମକ ରଥରେ ଭୁବନ ପରିକ୍ରମା କରିଥା'ନ୍ତି ।

''ହିରଣ୍ମୟେନ ସବିତା ରଥେନ
ଦେବୋଜାତି ଭୁବନାନି ପଶ୍ୟନ୍ ।''

ହିନ୍ଦୁ ସଂସ୍କୃତିରୁ ରଥଯାତ୍ରାର ଜନ୍ମ । କାଳକ୍ରମେ ଏହାର ମାଧୁର୍ଯ୍ୟତାକୁ ଉପଲବ୍ଧି କରି ଅନ୍ୟ ସମ୍ପ୍ରଦାୟମାନେ ନିଜ ଆରାଧ ଦେବତାଙ୍କୁ ରଥରେ ଉପବେଶନ କରାଇ ପରିକ୍ରମା କରିଥା'ନ୍ତି । ଧର୍ମଶାସ୍ତ୍ର ପୁରାଣକୁ ଅନୁଶୀଳନ କଲେ ରଥଯାତ୍ରାର ପ୍ରାଚୀନତା ସମ୍ପର୍କରେ ରାଶିରାଶି ପ୍ରମାଣ ଦୃଶ୍ୟମାନ ହୁଏ । କୂର୍ମ ଓ ଭବିଷ୍ୟ ପୁରାଣରେ ଭାଦ୍ରବ ମାସରେ ସୂର୍ଯ୍ୟଙ୍କ ରଥଯାତ୍ରା, ଦେବୀ ପୁରାଣରେ କାର୍ତ୍ତିକ ମାସରେ ଦେବୀଙ୍କ ରଥଯାତ୍ରା । ପଦ୍ମ ପୁରାଣରେ କାର୍ତ୍ତିକ ମାସରେ ଶ୍ରୀକୃଷ୍ଣଙ୍କ ରଥଯାତ୍ରା, ମତ୍ସ୍ୟ ପୁରାଣରେ ଚୈତ୍ରମାସରେ ଶିବଙ୍କ ରଥଯାତ୍ରା ସ୍କନ୍ଦ ପୁରାଣରେ କାର୍ତ୍ତିକ ଶୁକ୍ଳ ଦଶମୀ ତିଥିରେ ବିଷ୍ଣୁଙ୍କ ରଥଯାତ୍ରା ଅନୁଷ୍ଠିତ ହୁଏ ।

ସତ୍ୟଯୁଗରେ ଭକ୍ତ ପ୍ରହ୍ଲାଦରେ ଐକାନ୍ତିକ ନିଷ୍ଠା ତଥା ଭକ୍ତିରେ ଭଗବାନ ସ୍ତମ୍ଭରୁ ଆବିର୍ଭୂତ ହୁଅନ୍ତେ ସକଳ ଦେବତା ଗନ୍ଧର୍ବମାନେ ଭକ୍ତ ପ୍ରହ୍ଲାଦକୁ ପ୍ରଥମେ ରଥରେ ବସାଇ ନଗର ପରିକ୍ରମା କରାଇଥିଲେ । ତ୍ରେତୟା ଯୁଗରେ ଭଗବାନ ଶ୍ରୀରାମ ସାନୁଜ ଲକ୍ଷ୍ମଣ ତଥା ଜାନକୀଙ୍କୁ ରଥରେ ବସାଇ ସାରଥୀ ସୁମନ୍ତ ଘୋର ବନକୁ ଯାତ୍ରା କରିଥିଲେ । ଏପରିକି ଭକ୍ତ ଭରତ ଚିତ୍ରକୂଟକୁ ରଥଯାତ୍ରା କରିଥିବା ପ୍ରମାଣ ମୂଳ ରାମାୟଣରେ ଦେଖିବାକୁ





ମିଳେ । ଦ୍ୱାପର ଯୁଗରେ ଭକ୍ତ ଅକ୍ରୁର କୃଷ୍ଣ ବଳରାମଙ୍କୁ ରଥରେ ବସାଇ ମଥୁରା ଯାତ୍ରାବେଳେ ଭକ୍ତକବି ଭକ୍ତ ଚରଣଙ୍କ ଅପୂର୍ବ ବର୍ଣ୍ଣନା ବିଶେଷ ପ୍ରଣିଧାନଯୋଗ୍ୟ ।

ତାହାଙ୍କୁ ସୁମନ୍ତ୍ର ରଥରେ ବସାଇ ଘେନିଗଲା ଘୋର ବନକୁ ଅକ୍ରୁର ତୁମଙ୍କୁ ସେହି ପରକାର ଘେନିଯାଏ ମଧୁ ବନକୁ । କୃଷ୍ଣ ହେ, ସେ ସଂଗେ ନେଇଥିଲେ ନାରୀ । ଏହି ଗୁଣେ ତୁମ୍ଭେ ଊଣା ପଡୁଅଛ ଆଉ ସକଳ ଗୁଣେ ସରି ।

ମହାଭାରତ ଯୁଦ୍ଧରେ ସ୍ୱୟଂ କୃଷ୍ଣ ନିଜେ ସାରଥୀ ହୋଇ ଅର୍ଜୁନଙ୍କ ରଥ ପରିଚାଳନା କରିଥିଲେ । ଖ୍ରୀଷ୍ଟପୂର୍ବ ୫୬୪ରେ ବୁଦ୍ଧଦେବଙ୍କୁ ସାରଥୀ ଛନ୍ଦକ ରଥରେ ବସାଇ ନଗର ଭ୍ରମଣ କରିଥିବା ବର୍ଣ୍ଣନା ବୌଦ୍ଧ ଜାତକରୁ ମିଳେ ।

କଳିଯୁଗରେ ମର୍ତ୍ତ୍ୟ ବୈକୁଣ୍ଠ ଶ୍ରୀକ୍ଷେତ୍ର ଧାମରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଶ୍ୱ ପ୍ରସିଦ୍ଧ ଘୋଷଯାତ୍ରା ଆଷାଢ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ସ୍ମରଣାତୀତ କାଳରୁ ପୁରୁଷୋତ୍ତମ ଧାମରେ ଅନୁଷ୍ଠିତ ହୋଇ ଆସୁଛି । କତିପୟ ଗବେଷକ ସ୍ୱକୀୟ ଚିନ୍ତାଧାରାରେ ରଥଯାତ୍ରାର ସମୟ ନିରୂପଣ କରିଥିଲେ ମଧ ତାହା ସର୍ବଜନ ଗ୍ରାହ୍ୟ ନୁହେଁ । ମହାକାଳ ପକ୍ଷରେ ବହୁ ଉତ୍‌ଥାନ ପତନ ଦେଇ ଓଡ଼ିଆ ଜାତିର ମହାନ ସାଂସ୍କୃତିର ମହୋତ୍ସବ ଘୋଷଯାତ୍ରା ପାଳିତ ହୋଇ ବିଶ୍ୱଜନମାନଙ୍କୁ ଆକୃଷ୍ଟ କରିଛି । କେହି କେହି ଏହାକୁ ଶ୍ରୀଗୁଣ୍ଡିଚା ଯାତ୍ରା, ରଥଯାତ୍ରା, ପତିତପାବନ ଯାତ୍ରା, ଦଶାବତାର ଯାତ୍ରା, ନବଦୀନାତ୍ମକ ଯାତ୍ରା, ଆଡପ ମଣ୍ଡପ ଯାତ୍ରା ନାମରେ ନାମିତ କରିଥା'ନ୍ତି । ପବିତ୍ର ଗୁଣ୍ଡିଚା ଯାତ୍ରା ସ୍ୱକୀୟ ମହାନତା ତଥା ପବିତ୍ରତା ପାଇଁ ଭାରତର ସୀମା ସରହଦ ଡେଇଁ ସାତଦରିଆ ତେରନଈ ଆର ପାରିରେ ରଥ ଯାତ୍ରାର ଅପୂର୍ବ ଉନ୍ମାଦନା ଓ ଭାବୋଚ୍ଛ୍ୱାସ ଦେଖିବାକୁ ମିଳେ । ସମୟର ଆବର୍ତ୍ତନ ବିବର୍ତ୍ତନରେ ଅନେକ ପରିବର୍ତ୍ତନ ଘଟିପାରେ, ମାତ୍ର ପ୍ରଗତିର ରଥଚକ୍ର ଘୋର ଘର୍ଘର ନାଦରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପତିତପାବନ ଜୟତ୍ର ପତାକା ଉଡାଇ ସକଳ ବିଶ୍ୱବାସୀଙ୍କୁ ''ବସୁଧୈବ କୁଟୁମ୍ବକମ୍'' ମହାମନ୍ତ୍ରରେ ଅଭିମନ୍ତ୍ରିତ କରିବ ।

ସାଧାରଣ ସମ୍ପାଦକ
ବାଙ୍କୀ ମହୋତ୍ସବ, ଶୁକର୍ଣ୍ଣିକା ସଂଗ୍ରହାଳୟ
ଗ୍ରାମ/ପୋ– ହରିରାଜପୁର
ଭାୟା– ବାଙ୍କି, ଜି– କଟକ

# ଭାବର ବଣିକ

ଗଙ୍ଗାଧର ମହାନ୍ତି

ଓଡ଼ିଆ ଜାତିର ହୃଦ ସ୍ପନ୍ଦନ
ପ୍ରଭୁ ତୁମେ ଚକାଡୋଳା
ପରିଚୟ ତୁମେ ସଂସ୍କାର ତୁମେ
ସଂସ୍କୃତି ତୁମେ ପରା ॥

ସବୁ ମତ ପଥ ଧରମ ଧାରଣା
ଏକାକାର କରି ଦେଇ
ଜଗତର ନାଥ ବୋଲାଇଛ ପ୍ରଭୁ
ସକଳ କୋଳେଇ ନେଇ ॥

ପ୍ରଭୁ ତୁମେ କେବେ ଜାତି ଖୋଜି ନାହଁ
ମାପି ନାହଁ ଧନ ମାନ
ଭାବଗ୍ରାହୀ ନାଥ ଭାବର ବଣିକ
ଖୋଜିଛ ଭକତ ମନ ॥

ଯବନ ହେଲେ ବି କୋଳେଇ ନେଇଛ
ହରିଦାସ, ସାଲବେଗ



ବାଲିଗାଁ ବାଉରୀ, ଦାସିଆ ନଡିଆ
ହାତ ବଢାଇଣ ମାଗ ॥

ଲକ୍ଷ୍ମୀ ଯା' ଘରଣୀ ଷାଠିଏ ପଉଟି
ଖଞ୍ଜା ସଦା ଯାହା ପାଇଁ
ସାମାନ୍ୟ ଶ୍ରୀଫଳେ ଶରଧା ବଳିଲା
ଭାବେ ଯେଣୁ ଥିଲା ଦେଇ ॥

ସେହି ଭରଷାରେ ପତିତ ମୁଁ ଜଣେ
ବସି ବଡଦାଣ୍ଡେ ତୋ'ର
ହାତପାତି ମାଗେ କଣାଏ କରୁଣା
ଭାବଗ୍ରାହୀ ଦୟାକର ॥

ଅବସରପ୍ରାପ୍ତ ଶିକ୍ଷକ
ଗ୍ରା: ଅସଲପୁର, ପୋ: ଅମଠପୁର
ଜିଲ୍ଲା–ଯାଜପୁର

# ଢୋକି ଦେଲି ମୁଁ ସୋରା ସୋରା ଲୁହକୁ

ଡକ୍ଟର ବୀଣାପାଣି ସିଂହ

ଜଗନ୍ନାଥ,
ମୋ' ଓଜନିଆ ମନକୁ
ଟିକେ ହାଲୁକା କରିବାକୁ
ଭାବିଲି ତମ ପାଖୁ
ଟିକେ ଯିବି
ଯିବି ଶ୍ରୀକ୍ଷେତ୍ର... ।

ପୁଣି ଭାବିଲି
ଟିକେ ଭିତରକୁ ଚାହେଁ
ଚାହେଁ ଟିକେ
ମୋ' ଛାତି ଭିତରକୁ
ସେଠି ଯଦି ତମକୁ ଦେଖିବି
ତେବେ ଆଉ କାହିଁକି
ଯିବି ନୀଳାଦ୍ରି ?

ଟିକେ ଥିର ହେଇ
ବସିଲି ମୁଁ
ନିଶ୍ଚୁପ ହେଇଗଲି ଟିକେ
ଅନେଇଲି ମୋ' ଭିତରକୁ
ନାଁ, ସେଠି ତମେ ନାହଁ
ଜମା ନାହଁ... ।

ମନେ ମନେ ଟିକେ
ହସି ଦେଲି ମୁଁ
ମୁଁ କ'ଣ ହନୁମାନ
ହେଇଛି ଯେ !
ତମକୁ ସେଠି ନପାଇ
ମୁଁ ବାହାରିଲି
ତମ କ୍ଷେତ୍ରକୁ... ।







ତମ ପାଖରେ ତ
ସବୁବେଳେ ଭିଡ
ଭିଡ ଭିଡ ବହୁତ ଭିଡ
ସେଇ ବହୁତ ଭିଡ ଭିତରେ
ଉହୁଁକି ଦି' ପାଦ ଟେକି
ତମକୁ ଟିକେ ଦେଖିଲି...
ସଦା ହସହସ ତମ ମୁହଁଟା
ଶୁଖି କଳାକାଠ ପଡିଯାଇଥିଲା
ଆଖିରେ ପୂରି ରହିଥିଲା
ଅନେକ ଅକୁହା କଥା
ମୁଁ ଘାବରେଇ ଗଲି ମହାପ୍ରଭୁ
ଘାବରେଇ ଗଲି...

ଭାବିଥିଲି ଚାଉଳ ଧୁଆରେ
ପୂରେଇ ନେଇଥିବା
ମୋ' ଦୁଃଖ ସବୁକୁ
ତମକୁ ଦେଇ ଦେବି
ହେଲେ ତମ ଦୁଃଖ ଯେ
ମୋ' ଦୁଃଖଠୁ
ବହକି ପଡିଛି... ।

ଏକଥା ଦେଖି
ଉତୁରି ଆସୁଥିବା
ସୋରା ସୋରା ଲୁହକୁ
ଢୋକି ଦେଇ
ମୁଁ ବାହୁଡି ଆସିଲି... ।

ବିଭୁକରୁଣା, ମହାନଦୀ ବିହାର
କଟକ-୪

# ଜଗଦୀଶ ରଖ ଭବ ବନ୍ଧନୁ ଉଦ୍ଧରି

**ଚନ୍ଦ୍ରଶେଖର ପଣ୍ଡା**



କରୁଣାକର କରୁଣାକରି ଡେରି କର୍ଣ୍ଣ
ଖରତରେ ଖଣ୍ଡଦୁଃଖ ହେ ମଧୁସୂଦନ
ଗରୁଡ ଆସନ ହରି
ଘୋର ବିପଦେ ପଡିଣ ଡାକେ ତ୍ରିପୁରାରି ॥

ଓଁକାରୁ ଉଦ୍ଭବ ତୁମେ ପ୍ରଭୁ ଆଦିକନ୍ଦ
ଚିତ୍ତ ବିନୋଦିଆ ଚିନ୍ତାମଣି ପୂର୍ଣ୍ଣାନନ୍ଦ
ଛନ୍ଦ ପଣ ବାରେ ଛାଡି
ଜଗଦୀଶ ରଖ ଭବ ବନ୍ଧନୁ ଉଦ୍ଧରି ॥



ଝମକଇ ସିଂହ ଯେହ୍ନେ ଦେଖିଣ ହରିଣୀ
ନକ୍ରନାଶନ ତେସନ ବିପତ୍ତି ତା'ଠାଣି
ଟାଣ ପଣ ଦେଖାଉଛି
ଠିକଣା ବେଳେ ଉଦ୍ଧର ଦିଅ ନାହିଁ ଠକି ॥

ଡକା ପଡେ ତୁମେ ଯେଣୁ ବିପଦ ନାଶନ
ଢ଼କ୍କା ବାଜେ ଉଚ୍ଚନାଦେ ଚଉଦ ଭୁବନ
ନାହିଁ ବଡପଣେ ଆନ
ତେଣୁ ଆଶ୍ରା କରିଅଛି ଅଭୟ ଚରଣ ॥



ଥକ୍କା ମାରିଯିବ ଯେବେ ଶୁଣି ମୋ ଆକୁଳ
ଦୀନେ ଦୟା କରିବ କେ ପ୍ରଭୁ ଆଦିମୂଳ
ଧନ ରହେ ମୋର ଆଶ
ନାହିଁ ମୋ ଭବ ବନ୍ଧନ ଫେଡ ପୀତବାସ ॥

ପର କରି ଦେବ ଯଦି ମୋରେ ଚକ୍ରଧର
ଫକିର ପ୍ରାୟେ ବୁଲିବି ନିଶ୍ଚେ ବାର ଦ୍ୱାର
ବାସହରା ପ୍ରାୟ ହୋଇ
ଭାବବିନୋଦିଆ ରାହା ନ ପାଇବି କାହିଁ ॥

ମୁହିଁ ଯେବେ ଆଶ୍ରା କରି ତୁମ୍ଭ ଶ୍ରୀପୟର
ଯିବି ଭାସି ଅବିନାଶି କି ବୋଲିବେ ନର
ରହିବକି ବଡ ପଣ
ଲକ୍ଷ୍ମୀନାହା କିଏ ସାହା ହେବ ମନେ ଘେନ ॥

ବେନି ନେତ୍ର କରି ଶ୍ୱେତ ପୁଣ୍ଡରୀକ କଇଁ
ଶୁଣ ବା ନ ଶୁଣ ସିଂହଦ୍ୱାରେ ଡାକିବଇଁ
ଷଡାକ୍ଷର ମନ୍ତ୍ରଧ୍ୟାୟି
ସର୍ବମୟ ଜଗନ୍ନାଥ ନ ଘୁଞ୍ଚିବି କାହିଁ ॥

ହେ ଅରିସୂଦନ ଯେତେ ପାତକ ଅର୍ଜିଛି
କ୍ଷମାନୁକମ୍ପାଧର ଶ୍ରୀକରେ ଦିଅ ପୋଛି
ଯେଥୁ କି ଅବା ଅଧିକ
ଲକ୍ଷ୍ମୀପତି ମାଗିବି ବା କହୁନି ବିବେକ ॥

ଆଦ୍ୟରୁ ପ୍ରାନ୍ତ ବ୍ୟଞ୍ଜନ ବର୍ଣ୍ଣେ କରି ଶେଷ
ଯୋଡିକର ଜଣାଉଛି ଘେନ ହେ ବିଦୁଷ
ଦୋଷମୋର ନ ଧରିବ
ରୋଷନୋହି ଉଦାର ହୃଦୟେ କ୍ଷମା ଦେବ ॥

କ୍ୱାର୍ଟର ନଂ- ୨ଆର୍‌.ବି-୪୨
ରୋଡ୍ ନଂ- ୬, ଭୁବନେଶ୍ୱର-୯



# ମଝିରେ ମଝିରେ ଶ୍ୟାମ ! ଆସ ବୃନ୍ଦାବନ

ଇଞ୍ଜିନିୟର ରଘୁନାଥ ପାତ୍ର

ରତ୍ନ ସିଂହାସନ ତେଜି ନୀଳାଦ୍ରି ବିହାରୀ
ଯାତ୍ରା କରୁଛନ୍ତି ଦେଖ ରମ୍ୟ ବୃନ୍ଦାବନ
ସୁରଂଗ ସୁବାସ ପୁଷ୍ପ ଟାହିଆ ହଲାଇ
ଚାଲିଛନ୍ତି ମନ୍ଦହାସେ ନୀଳାଦ୍ରି ମୋହନ ।

ଗୋପାଳ ବାଳକଗଣ ଦଇତା ରୂପରେ
ଭକ୍ତି ପାଟ ଡୋରେ ବାନ୍ଧି ଟାଣୁଛନ୍ତି ବଳେ
ପଛରୁ ଟାଣନ୍ତି ଦ୍ୱାରାବତୀର ସେବକ
ଟହଲି ଚାଲନ୍ତି ପ୍ରଭୁ ମତ୍ତର ଗତିରେ ।

ଘଣ୍ଟ ମୃଦଙ୍ଗ ନିନାଦେ ଉଛୁଳେ ମନ୍ଦିର
ଖୋଜିଲା ଖୋଜିଲା ନେତ୍ରେ ଚାହାନ୍ତି ଗୋବିନ୍ଦ
ପ୍ରିୟଜନଙ୍କ ଦର୍ଶନେ ହୃଦ ଉଚ୍ଚାଟିତ
ବାମେ ଦକ୍ଷିଣେ ଅନାଇ ଲଭନ୍ତି ଆନନ୍ଦ ।

ଗୋପ ବାଳକ ଆଗରେ ଶ୍ରୀମୁଖ ଦୁର୍ବଳ
ଭୁଜକୁ ଧରି ଟାଣନ୍ତି ଦିବ୍ୟ ସାଖ୍ୟ ଭାବେ
କାଖରେ ଭୁଜରେ ଆଗେ ଗୋପାଳ ବାଳକ
ଡାକନ୍ତି ''ଗୋପକୁ ଆସ ସଖା ଅବିଳମ୍ବେ ।''

''ସେତିକି ଦେଖାଅ କାହ୍ନା ! ତବ ରାଜପଣ
ତୁମେ ତ ଆମର ପ୍ରିୟ ବୃନ୍ଦାବନ ସଂଗୀ
ଐଶ୍ୱର୍ଯ୍ୟରେ ରହି ତୁମେ ଭୁଲିଛ ମାଧୁର୍ଯ୍ୟ
ବଦଳିଛି ସଖା ତବ ପୂର୍ବ ଦୃଷ୍ଟିଭଙ୍ଗୀ ।

ହୃଦୟେ ଭାବନ୍ତି ପ୍ରଭୁ ''ଭୁଲିକି ପାରିବି
ନନ୍ଦବାବା ଯଶୋମତୀ ସ୍ନେହଶ୍ରଦ୍ଧା କେବେ
ଭୁଲିକି ପାରିବି କେବେ ରମ୍ୟ ବୃନ୍ଦାବନ
ଯମୁନା ପୁଳିନ ବେଣୀ ତମାଳକୁ ଲବେ !



ଭୁଲିକି ପାରିବି ବୃନ୍ଦାବନ ପଶୁପକ୍ଷୀ
ଗୋପାଳ ବାଳକ ସଙ୍ଗେ କ୍ରୀଡା କଉତୁକ
ଭୁଲିକି ପାରିବି ସଖା ସୁବଳ ସୁଦାମ
ଲଳିତା ବିଶାଖା ବିନୋଦିନୀ ଅଂଗ ସୁଖ !''

କାଳିଆ ସାତ ପାହାଚ, ବାଇଶି ପାହାଚ
ଡେଇଁ ପହଞ୍ଚିଲେ ଆସି ଶ୍ରୀମନ୍ଦିର ଦ୍ୱାରେ
ପୂର୍ବରୁ ଭାଇ ଭଉଣୀ ବସିଛନ୍ତି ରଥେ
ରୁଣ୍ଡ ହୋଇଛନ୍ତି ଗୋପୀ ବୈଷ୍ଣବ ବେଶରେ ।

ଆସିଛନ୍ତି ରାଧା ସଙ୍ଗେ ଲଳିତା ବିଶାଖା
ଅଷ୍ଟସଖୀ ସଙ୍ଗେଛନ୍ତି ଗଉର ସୁନ୍ଦର
ପଞ୍ଚସଖା ସଙ୍ଗେ ହରିଦାସ ସନାତନ
ସାଲବେଗ, ଦାସିଆକୁ ଦେଖି ପ୍ରଭୁ ଭୋଳ ।

ଶୁଭୁଛି ଉଦାତ୍ତ କଣ୍ଠେ ''ଜୟ ଜଗନ୍ନାଥ''
ହୁଳ ହୁଳିରେ ଉଛୁଳେ ରମ୍ୟ ସିଂହଦ୍ୱାର
ସୁସଜ୍ଜିତ ନନ୍ଦିଘୋଷ ଛିଡା ସମ୍ମୁଖରେ
ଭକ୍ତଙ୍କୁ ଦେଖି ଅଧୀର ନୀଳାଦ୍ରି ସୁନ୍ଦର ।

ଗୋପୀକା କହନ୍ତି ''ଶ୍ୟାମ ! ହୋଇଛ କି ବାଇ
ଭାବୁଛ କି ବୃନ୍ଦାବନେ ରହିବ ସର୍ବଦା
ମାତ୍ର କିଛି ଦିନ ରହି ଫେରିବ ଗୋବିନ୍ଦ
ତୁମ ସୁଖେ ଆମେ ସୁଖୀ, ଦୁଃଖେ ଦୁଃଖୀ ସଦା ।

ରାଜକୀୟ ସେବା କାର୍ଯ୍ୟ ପରେ ନନ୍ଦିଘୋଷ
ଘୁ'ଘୁ' ସ୍ୱରେ ଦାଣ୍ଡେ ଚାଲିଲା ଆଗେଇ
ପ୍ରେମ ଭକ୍ତିରେ ଉଛୁଳେ କବି ରଘୁ ହୃଦ
ନନ୍ଦିଘୋଷ ସାଥେ ଚାଲେ ହରି ଲୀଳା ଗାଇ ।

ବୃନ୍ଦାବନ ଧାମ, ଲୋକନାଥ ରୋଡ୍
ପାଟଣାହାଟ ସାହି ଛକ, ପୁରୀ-୭୫୨୦୦୧




# ବଡ଼ଦାଣ୍ଡେ ଜଗନ୍ନାଥ

ଗୀତାଞ୍ଜଳି ପଣ୍ଡା

ବଡ଼ଦାଣ୍ଡ ପଡେ ଉଚ୍ଛୁଳି
ବିଜେ ଜଗତନାଥ
ପୁଲକିତ ଆଜି ଧରଣୀ
ଆସ ଦେଖିବ ମିତ ।

ବିଜେ କରୁଛନ୍ତି ମଣିମା
ଦେଖ କେତେ ଭଙ୍ଗୀରେ
କେତେଦୂରୁ ଭକ୍ତେ ଆସନ୍ତି
ଚାଲ ଦେଖିବା ଥରେ ।

ଭଜନ ଜଣାଣ ସାଙ୍ଗକୁ
ଢୋଲ କାହାଳୀ ଧରି
ଘଣ୍ଟା ଘଣ୍ଟ ମାଡ କରନ୍ତି
କିଛି ନୁହଁଇ ବାରି ।

ରସିକ ଭିତରେ ରସିକ
ସେତ ରସିକ ଶିଖ
ଧନ୍ୟ ତାର ବାଙ୍କ ଚାହାଣୀ
ଲୀଳା ଖେଳାକୁ ଦେଖ ।

ମାୟା ଜଞ୍ଜାଳରେ ବାନ୍ଧିଛି
ବଡ ମାୟାବି ସେତ



ଦେଖିଦେଲେ ତା'ର ରୂପକୁ
ମିଳେ କୋଟି ପୁଣ୍ୟ ତ
ଆଜି ଇଚ୍ଛା ପୂର୍ଣ୍ଣ ହୋଇଲା
ରଥେ ଦେଖିଲି ଜଗତ ନାଥ
ଶ୍ରଦ୍ଧା, ଜ୍ଞାନ, ଭକ୍ତି, କରୁଣା
କ୍ଷମା ରହୁ ମୋ ଚିତ୍ତ ।

ଧରମ ଦାଣ୍ଡରେ ପ୍ରଭୁ ହେ
ଅଧର୍ମ ହେଉ ନାଶ
ସତ୍ୟ ନ୍ୟାୟ ଧର୍ମ ପାଇଁକି
ସଦା ରହୁ ତୁମ ଯଶ ।

ଏତିକି କରୁଣା କର ହେ
ପ୍ରଭୁ ଜଗତନାଥ
ତୁମ ଶ୍ରୀଚରଣେ ରହୁ
ସଦା ମୋରି ମାଥ

ଗ୍ରାମ/ପୋଷ୍ଟ- ଗୁଆଳିପଡା
ଭାୟା- ବେରୋବୋଇ
ଜିଲ୍ଲା-ପୁରୀ - ୭୫୨୦୧୬






# ତୁମେ ପ୍ରଭୁ ପୂର୍ଣ୍ଣବ୍ରହ୍ମ



**ଶ୍ୟାମ ପ୍ରକାଶ ସେନାପତି**

ହେ ନିଖିଳ ବ୍ରହ୍ମାଣ୍ଡର ଅଧୀଶ୍ୱର !
ତୁମେ ଆଦିର ଆଦି
ଅନନ୍ତ ଅନ୍ତ, ସାଧନାର ସାଧ
ଆଉ ତପସ୍ୟାର ସିଦ୍ଧି ।

ତୁମେ ସକଳ ରହସ୍ୟର ରହସ୍ୟ
କଳ୍ପନାର କଳ୍ପନା-ବାରିଧି ।
ତୁମେ କାର୍ଯ୍ୟ, ତୁମେ ହିଁ କାରଣ
ତୁମେ ପୁଣି ମହାଧାର
ସୃଷ୍ଟି, ସ୍ଥିତି, ସଂହାରର ।

ମହକିତ ମହିମାରେ
ତୁମେ ପରିବ୍ୟାପ୍ତ
ଭୂମିଠାରୁ ଭୂମା ଯାଏ ।

ଯେଉଁଠାରେ ନିତ୍ୟ ବିରାଜିତ
ତୁମ ଇଙ୍ଗିତରେ
ଆନନ୍ଦ ଓ ଆଲୋକର ସୂତ୍ର ।

ପୁଣି ନିଃଶ୍ୱାସ ଓ ପ୍ରଶ୍ୱାସରେ
ବିଶ୍ୱାସ ଚହଟେ,
ତୁମ ବିଭୂତିରେ
ଜୀବନର ରାଗ-ରଙ୍ଗ ଫୁଟେ ।

ତୁମେ ପ୍ରଭୁ ପୂର୍ଣ୍ଣବ୍ରହ୍ମ
ନିଖିଳ ବିଶ୍ୱରେ
ତୁମକୁ ଆଶ୍ରୟ କରି ବଞ୍ଚିଥାଏ
ଆପଣାର ଶୂନ୍ୟ ପୃଥିବୀରେ ॥

ସେନାପତି ଭବନ, ଗ୍ରାଣ୍ଡରୋଡ୍, ପୁରୀ-୭୫୨୦୦୧

# ମର୍ତ୍ତ୍ୟ ବୈକୁଣ୍ଠ



**ଅଧିକାରୀ ସ୍ୱାଇଁ**

ଗୁଣ୍ଡିଚା ମନ୍ଦିର ଡେଇଁଲେ ଦେଖିବୁ
ବଦଳି ଯିବ ତୋ' ମନ
ଆଗକୁ ଆଗକୁ ପାଦ ବଢାଇଲେ
ନିଜକୁ ମଣିବୁ ଧନ୍ୟ ॥

ମାଉସୀ ମା'ର ମନ୍ଦିର ଦୁଆରେ
ଘଡିଏ ହେବୁ ତୁ ଠିଆ
ସବୁ ଧାମଠାରୁ ପୁରୀ ଧାମ ତୋତେ
ଲାଗିବରେ ନୂଆ ନୂଆ ॥

ନୀଳଚକ୍ର ତୁହି ନିରେଖି ଦେଖିବୁ
ନେତ ଉଡେ ଫରଫର
ବାଇଶି ପାହାଚେ ପାଦ ଦେଉ ଦେଉ
ସବୁ ଦୁଃଖ ହେବ ଦୂର ॥

ଅମନ୍ କଭିଲ୍ ରୋଡ୍, ଇର୍ଣ୍ଣାକୁଲାମ୍, କୋଚିନ୍-୩୫(କେରଳ)




# ମହାବାହୁ ! ଏହି ଅଳି ଶ୍ରୀଛାମୁରେ

ସମରେନ୍ଦ୍ରନାଥ ମହାପାତ୍ର

କେତେ ଦୁଃଖରେ ମତେ ରଖିଚ ମହାବାହୁ
ଦିନ ଦିନ ଅଥୟ ଆତୁର, ରାତି ରାତି ଉଜାଗର
ଅଭାବ ଅଧୀର ସଂଜ ସକାଳ ।
ଗଲାସନ ସ୍ତ୍ରୀ ଗଲା କ୍ୟାନ୍‌ସର୍‌ରେ
ପୁଅ ମଲା ଅଇରି ଗୁଳିରେ
ଦୁଇ ଦୁଇଟା ଝିଅ ଜଳିଗଲେ ଯୌତୁକ ଜୁଇରେ
ଏୟା କ'ଣ ଦେଖିବାକୁ ଥିଲା ମୋର
ସତୁରି ବର୍ଷର ବୁଢା ଆଖିରେ ?

କେବେ ଦିନେ ମାଗିଥିଲି ଧନଜନ
ଏ ବଡଦାଣ୍ଡରେ, ମାଗିଥିଲି ଗୋପଲକ୍ଷ୍ମୀ ସୁନାର ସପନ
ସେ ସପନ ଦେଲନାହିଁ, ଦେଲ ଖାଲି ଧନଜନ ହାନି
ପ୍ରାଣପୀଡା, ସବୁଯାକ ଦୁଃଖ ଓ ଜ୍ୱଳନ
ମନଟାକୁ କରିଦେଲ ଖିନ୍‌ଭିନ୍ ବିଷଣ୍ଣ ବିପନ୍ନ ।

କିଏ କହେ ତୁମେ ପ୍ରଭୁ ମହାବାହୁ
ସାହା ହୁଅ ଦୀନଦୁଃଖୀ ଆକୁଳ ଜନଙ୍କୁ
ଭାଇ ପରି ବନ୍ଧୁ ପରି ରହିଥାଅ ପାଖେ ପାଖେ
ଅଭୟ ମୁଦ୍ରାରେ, କିଏ କହେ ତୁମେ କାଳେ
ଶୁଣିପାର ପ୍ରାର୍ଥନା ମୁକର, ବୁଝିପାର ମରମର ସ୍ୱର





ମୁଁ କିନ୍ତୁ ଦେଖିଲି ନାହିଁ ତୁମର ସେ ପାରିବାର ପଣ
ଜଗନ୍ନାଥ ! କାହିଁକି ଦାରୁଣ ?

ଆଜି ଏଇ ବଡଦାଣ୍ଡେ ତୁମର ଯେ ଘୋଷଯାତ୍ରା ଚାଲେ
ନେଇଯାଅ ପ୍ରଭୁ ମୋତେ ବାହୁଡା ଯାତ୍ରାରେ
ଦଳିତ ପତିତ ହେଇ ବଞ୍ଚିବାଟା ବଡ କଷ୍ଟ
ଲୋଡାନାହିଁ ଏ ମୁତ୍‌ଫର୍କା ଜୀବନ ।
ନିଅନାହିଁ ଆଉ ମୋତେ ବାହୁ ଟୋଳି
ଦିଅନାହିଁ ଅଭୟ ବରଦ, ସଂସାରର ସୁଖ କ'ଣ
ଦେଖିଲି ମୁଁ, ଭୋଗିଲି ବି ରକ୍ତମାଂସ ଧରି
ବରଂ ଏମିତି କର ଯେ ତୁମ ରଥଚକ ଚଢିଯାଉ
ଏ ପୁଣ୍ୟ ତିଥିରେ, ପ୍ରାଣ ମୋର ଚାଲିଯାଉ
ଏ ବଡଦାଣ୍ଡରେ, ସମସ୍ତେ ଜାଣନ୍ତୁ ଯେ
ସତୁରି ବର୍ଷର ବୋଝ ଓହ୍ଲାଇ ପାରିଚି ମୁଁ
ଅନ୍ତତଃ ତୁମରି ଦୟାରେ, ମହାବାହୁ !
ଏହି ଅଳି ମୋର ଶ୍ରୀଛାମୁରେ ।

ସମ୍ପାଦକ, 'ଝର୍କା', ସମରଗ୍ରାଫିକ୍ସ, ସହଦେବଖୁଣ୍ଟା
ବାଲେଶ୍ୱର-୭୫୬୦୦୧




# ଯୁଗେ ଯୁଗେ ଜଗନ୍ନାଥ

ଶକୁନ୍ତଳା ଆଚାର୍ଯ୍ୟ



ଦୀନଜନ ଦୁଃଖ ହାରି ହେ ଠାକୁର
ଭକ୍ତଜନ ହିତକାରି,
ହେ ନନ୍ଦ ନନ୍ଦନ ଶ୍ରୀଛନ୍ଦା ଚରଣ
ତୁମେ ସେ ମୁରଲୀ ଧାରି,
ଦୀନଜନ ଦୁଃଖ ହାରି ହେ ଠାକୁର
ଭକ୍ତ ଜନ ହିତ କାରି... ।

ହେ ବିଶ୍ୱ ସମ୍ରାଟ, ଶ୍ରୀକ୍ଷେତ୍ର ମଣ୍ଡନ
ଦେଉଳ ଶିଖରେ ତୋ ନୀଳ କେତନ
ଉଡେ ଫର ଫର, ଦରଶନେ ନର
ସର୍ବପାପ ଦିଏ ସାରି ।
ନାହିଁ କରେ ବଂଶୀ, ନାହିଁ ସେ ଚରଣ
ବଙ୍କିମ ଚାହାଣୀ ନୁହେଁ ଏ ନୟନ
ସେ ଆଖି ଏ ଆଖି, ସତେ କି ବିଚିତ୍ର
ଝରୁଛି କରୁଣା ବାରି ।

ସେ ଯୁଗରେ ରଥେ ଘେନିଲା ଅକ୍ରୁର
ଆଜି ଏ ରଥକୁ ଭକତେ ତୁମର
ସେନେହ ରଜୁରେ, ବାନ୍ଧି ଆଣୁଛନ୍ତି
ସେବାୟତ ପ୍ରତିହାରି ।

ବାଜିଲାଣି ଭେରୀ, ମୃଦଙ୍ଗ କାହାଳୀ
ହରିବୋଲ ହୁଳ ହୁଳି କରତାଳି
ଜୟଜଗନ୍ନାଥ ସ୍ୟନ୍ଦନେ ବିଜୟ
କର, କରନ୍ତି ଗୁହାରି ।

ରତ୍ନସିଂହାସନ, ତେଜି ନବଦିନ
ଗୁଣ୍ଡିଚା ମନ୍ଦିରେ ଭକତ ମିଳନ
ଡାକୁ ଅଛ ପ୍ରଭୁ ବାହୁକୁ ବିସ୍ତାରି
କରିବାକୁ ଭବୁ ପାରି ।

ଚାଲିଥିଲେ ଦିନେ, ଶରଧା ବାଲିରେ
ଚିତା ଶଯ୍ୟା ସୁଖ ସରଗ ଦୁଆରେ
ଶ୍ରୀପାଦେ ପ୍ରଣମି, ଶରଣ ମାଗନ୍ତି
ତୋ ଆଶ୍ରା ପ୍ରେମ ଭିକାରୀ ।

ମାର୍ଫତ/ଶ୍ରୀ ବ୍ରଜବନ୍ଧୁ ଆଚାର୍ଯ୍ୟ,
ଖାକିମଠସାହି, ପୁରୀ-୨

# ଦିବ୍ୟସ୍ନାନ

ଡାକ୍ତର ସରୋଜିନୀ ଷଡ଼ଙ୍ଗୀ

ମନ୍ତ୍ର ସ୍ନାନ ନୁହେଁ ନୁହେଁ
ନୁହେଁ ମହାସ୍ନାନ
ପବିତ୍ର ଜ୍ୟେଷ୍ଠ ପୂର୍ଣ୍ଣିମା
ଶୁଭ ମୁହୂର୍ତ୍ତରେ
ସମଗ୍ର ପୃଥିବୀଟିର
ତୀର୍ଥଜଳେ ଭରିଗଲା
ଚାହୁଁ ଚାହୁଁ ସୁନା କୂଅ
ଏ ବିଶ୍ୱର ସବୁନଦୀ
ଆନନ୍ଦରେ ପଠାଇଲେ
ବିନ୍ଦୁ ବିନ୍ଦୁ ପାଣିର ଫୁଆର ।

ରତ୍ନ ସିଂହାସନ ଛାଡି
ଓହ୍ଲାଇଲେ ଚତୁର୍ଦ୍ଧା ମୂରତି
ସୁନ୍ଦର ଟାହିଆ ପିନ୍ଧି
ଧୀରେ ଧୀରେ ପାହୁଣ୍ଡ ପକାଇ
ଅପୂର୍ବ ଛନ୍ଦରେ–
ଖୋଳ, କରତାଳ ଆଉ
ଘଣ୍ଟ ଧ୍ୱନି, ହୁଳହୁଳି
କାହାଳୀ ବଜାଇ
ଢଳି ଢଳି ପ୍ରଭୁ ମୋର
ବିଜେ କଲେ ସ୍ନାନ ମଣ୍ଡପକୁ

ଏମିତି ସେମିତି ନୁହେଁ
ଶହେ ଆଠଗରା ପାଣି,



କସ୍ତୁରୀର ସୁବାସିତ ଜଳେ
ଐଶ୍ୱର୍ଯ୍ୟମୟ ବେଶରେ
ଜଗନ୍ନାଥ, ବଳଭଦ୍ର
ମା' ସୁଭଦ୍ରା କଲେ ଭବ୍ୟସ୍ନାନ
ଇନ୍ଦ୍ରଦେବ ବର୍ଷାଇଲେ
ଅସଂଖ୍ୟ ମେଘର ଫୁଲ
ଅନନ୍ତ ଏ ଆକାଶ ମାର୍ଗରୁ
ସବୁ ଦେବ ଦେବୀ ମିଶି
ଏକ ସଙ୍ଗେ ନିରେଖିଲେ
ପ୍ରଭୁଙ୍କର ରମଣୀୟ ଗଜାନନ ବେଶ ।

ଏ ବେଶକୁ ଥରଟିଏ ଦେଖିଦେଲେ
ଏ ମନ ଶୂନ୍ୟ ତରାଜୁ
ପୁଣ୍ୟମୟ ଆବେଗରେ
ନିମିଷକେ ହୋଇଯାଏ ଭାରି
ସ୍ନାନର ସନ୍ଦର୍ଶନରେ
ଏ ଚକ୍ଷୁ ଉଜ୍ଜ୍ୱଳ ହୁଏ
ଏ ଦେବସ୍ନାନର ଦୃଶ୍ୟ
ଦର୍ଶନ ମାତ୍ରକେ
ସହସ୍ର ଜନ୍ମର ପାପ ଧୋଇଯାଏ
ଶହଶହ ପୁନର୍ଜନ୍ମ ଟଳିଯାଏ
ମୋକ୍ଷର ଅକ୍ଷୟ ମାଳ
ସରାଗରେ ଆତ୍ମା ପିନ୍ଧିନିଏ ।

ଲିଙ୍କରୋଡ୍
କଟକ–୧୨

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**June 2012**

୬୮ ଭାଗ ୧୧ଶ ସଂଖ୍ୟା ଜ୍ୟେଷ୍ଠ–ଆଷାଢ଼ ଜୁନ–୨୦୧୨



**ପ୍ରତିଖଣ୍ଡ : ଟ. ୫.୦୦**

---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪–୨୫୩୦୨୧୧

# ସୂଚୀ

# ଶ୍ରୀଜଗନ୍ନାଥାଷ୍ଟକ



ଗୋପଅଙ୍ଗନା–ବଦନ– କମଳୁଁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ–ନାଦ,
କାଳିନ୍ଦୀ–ତଟ–ବିପିନ କଲାକ ମୋଦେ ମଗନ
ରମା ଶମ୍ଭୁ ଆଦିରେ ଯେ ପୂଜିତ–ପଦ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୧)

ବାମକରେ ମୁରଲିକା ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୨)



ଯେହୁ ମହୋଦଧିତୀରେ ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୩)

ଯେହୁ କୃପା–ପାରାବାର ନବନୀରଦ ରୁଚିର
ରମାବାଣୀ–ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ ଶିରେ ଯା'ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା'ଙ୍କୁ କରେ ବଖାଣ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୪)



ଯେ ପ୍ରଭୁ କରୁଣାସିନ୍ଧୁ ଅଖିଳ ଜଗତବନ୍ଧୁ
ସିନ୍ଧୁ–ସୁତା–ଚିରି–ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ' ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୫)



ବିରଞ୍ଚି ଶିରଭୂଷଣ ପଦ୍ମପଲାଶଲୋଚନ
ନିଳାଦ୍ରି ବିହାରୀ ଯେ ଅନନ୍ତ–ମସ୍ତକେ,
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ–ଆଶ୍ଳେଷ ସୁଖେ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ,
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି
ପରାଣ ଲୋଡ଼େ ମୋ' ତାଙ୍କୁ ଦିନଯାମିନୀ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ' ଖରେ ମୁକୁନ୍ଦ
ଅଥଳ ପାପପୟୋଧି ଦିଅ ଶୁଖାଇ,
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୮)



ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରୟତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,
ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର
ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,
ପାତକି–ପାତକମାନ ହୁଅଇ ହେଲେ ଦହନ
ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା' ଭଲେ,
ଜୟ ଜୟ ଶ୍ରୀଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମାଥ । (୯)




**(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)**

(ସଂସ୍କୃତରେ ଲିଖିତ 'ଜଗନ୍ନାଥାଷ୍ଟକମ୍'କୁ ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥାନ୍ତୁ କି ଶ୍ରୀଶଙ୍କରାଚାର୍ଯ୍ୟ ରଚନା କରିଥାନ୍ତୁ, ତାହାର ଓଡ଼ିଆ ଅନୁବାଦ କରିଥିଲେ କବି ଓ ଅନୁବାଦକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । କଟକରେ ୧୯୪୪ରେ ସେ 'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ଓ ଭଂଜ ସାହିତ୍ୟର ପ୍ରସାରକ ଭାବେ ପରିଚିତ ଥିଲେ । ୧୯୪୨ରେ ସେ ଓଡ଼ିଶା ସରକାରଙ୍କଦ୍ୱାରା ଅନୁବାଦକ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗରେ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସଂପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ତାଙ୍କର ସୁପୁତ୍ର ଶ୍ରୀପୁରୁଷୋତ୍ତମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହା ପ୍ରାପ୍ତ ।)



**ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।**

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗ
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉତ୍ସ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କେଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟଶ୍ୱେରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଡ଼ୈ ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଡ଼ୈଶ୍ୱର
୪୬. ଶିଆଳି ଲଟା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାଟ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାନ୍ଦୁ ନୃସିଂହ
୬୭. କାନ୍ଦୁ ଆଶ୍ରମ
୬୮. ନିକୁମ୍ଭିଳାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଳୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କେଣ୍ଡେଶ୍ୱର
୭୮. ମାର୍କେଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ଲେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଶାନି (ମାଉସୀମା)
୯୪. ମାର୍ଚ୍ଛିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର

# ଜନନେତାଙ୍କ ବିୟୋଗରେ...

ଓଡ଼ିଶାର ବିଶିଷ୍ଟ ସମାଜସେବୀ ଓ ଜନନେତା ତଥା ପୂର୍ବତନ ସାଂସଦ ଶ୍ରୀ ପତିତପାବନ ପ୍ରଧାନଙ୍କର ଇତିମଧ୍ୟରେ ସମ୍ବଲପୁରଠାରେ ତାଙ୍କର ନିଜ ବାସଭବନରେ ପରଲୋକ ହୋଇଯାଇଛି । ତାଙ୍କ ବିୟୋଗରେ ଓଡ଼ିଶା ଜଣେ ଅତି ବିଶିଷ୍ଟ ଉଦାରମନା ଭଦ୍ରଲୋକ, ସ୍ନେହୀ, ପରୋପକାରୀ ଓ ଦୀନଦୁଃଖୀଙ୍କ ବାନ୍ଧବ ତଥା ନୀତିବାନ ରାଜନେତାଙ୍କୁ ହରାଇଲା ଯାହା ଅପୂରଣୀୟ । ସେହି ଅମର ଆତ୍ମାଙ୍କର 'ଉତ୍କଳ ପ୍ରସଙ୍ଗ' ସଦ୍‌ଗତି କାମନା କରୁଛି ।

ସେହିପରି ଆଉ ଜଣେ ଲୋକପ୍ରିୟ ଓ ପରୋପକାରୀ ଜନନେତା ତଥା ଓଡ଼ିଶା ରାଜନୀତିରେ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ ପୂର୍ବତନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କର ବିୟୋଗ ଘଟିଛି । 'ଉତ୍କଳ ପ୍ରସଙ୍ଗ' ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛି । ସେମାନଙ୍କର ପରିବାର, ଆତ୍ମୀୟ ତଥା ସେମାନଙ୍କୁ ଭଲ ପାଉଥିବା ଓଡ଼ିଶାବାସୀଙ୍କ ସହିତ 'ଉତ୍କଳ ପ୍ରସଙ୍ଗ' ମଧ୍ୟ ସମଦୁଃଖୀ ।

**ସମ୍ପାଦକ**

# ଲେଖକମାନଙ୍କୁ ନିବେଦନ

'ଉତ୍କଳ ପ୍ରସଙ୍ଗ' ପାଇଁ ବହୁ ଲେଖା ଆମର ହସ୍ତଗତ ହେଉଛି । ସେଥିପାଇଁ ଆମେ ଲେଖକ/ଲେଖିକାମାନଙ୍କ ନିକଟରେ କୃତଜ୍ଞ । ମାତ୍ର ଆମେ ଦୁଃଖିତ ଯେ, ଅନେକ ଉପାଦେୟ ଲେଖାମାନଙ୍କୁ ହାତଲେଖା ଅକ୍ଷରକୁ ସଠିକ୍ ପଢିବା କଷ୍ଟକର ହେଉଥିବାରୁ ପ୍ରକାଶିତ କରିବା ସମ୍ଭବପର ହୋଇପାରୁନାହିଁ । ତେଣୁ ଲେଖକ/ଲେଖିକାମାନଙ୍କୁ ଅନୁରୋଧ ଯେ ସେମାନେ ନିଜ ଲେଖା ଡି.ଟି.ପି.(D.T.P.) କିମ୍ବା ତା'ର ସିଡି (କେବଳ ଶ୍ରୀଲିପିରେ) ପ୍ରସ୍ତୁତ କରି ପଠାଇଲେ 'ଉତ୍କଳ ପ୍ରସଙ୍ଗ'ରେ ପ୍ରକାଶ କରିବା ସହଜ ହୋଇପାରିବ ।

ସୁଖର କଥା ଇତିମଧ୍ୟରେ ରାଜ୍ୟ ସରକାର ଉତ୍କଳ ପ୍ରସଙ୍ଗର ଲେଖକ/ଲେଖିକାମାନଙ୍କର ପାରିତୋଷିକ ଅର୍ଥ ବୃଦ୍ଧି କରିଛନ୍ତି । ଚଳିତ ମାସରୁ ପ୍ରତି ଲେଖା ପାଇଁ ଫଟୋ ନଥିଲେ ୨୫୦ ଟଙ୍କା ଓ ଫଟୋ ଥିଲେ ୩୦୦ ଟଙ୍କା ପାରିତୋଷିକ ପ୍ରଦାନ କରାଯିବ ।

**ସମ୍ପାଦକ**